# ଗୋପାଳ ଛୋଟରାୟ ଚୟନିକା

(ଗୋପାଳ ଛୋଟରାୟଙ୍କ ନିର୍ବାଚିତ ଶ୍ରେଷ୍ଠ ନାଟକ)

ସଂକଳକ

**ହେମନ୍ତ କୁମାର ଦାସ**



ସାହିତ୍ୟ ଅକାଦେମି

*Gopal Chhotray Chayanika* : An anthology of selected Plays of Gopal Chhotray in Odia, compiled and edited by Hemant Kumar Das, Sahitya Akademi, New Delhi 2017. Price : ₹ 380.00.



ISBN : 978-81-260-5366-7

ପ୍ରଥମ ପ୍ରକାଶ : ୨୦୧୭

ସାହିତ୍ୟ ଅକାଦେମି

ରବୀନ୍ଦ୍ର ଭବନ, ୩୫ ଫିରୋଜ ସାହ ରୋଡ଼, ନୂଆ ଦିଲ୍ଲୀ ୧୧୦୦୦୧

ବିକ୍ରୟ କେନ୍ଦ୍ର :'ସ୍ୱାତୀ', ମନ୍ଦିର ମାର୍ଗ, ନୂଆ ଦିଲ୍ଲୀ ୧୧୦୦୦୧

୪, ଡି. ଏଲ୍. ଖାଁ ରୋଡ଼, କୋଲକାତା ୭୦୦୦୨୫

ଗୁଣ କମ୍ପ୍ଲେକ୍ସ, ମେନ୍ ବିଲ୍ଡିଂ, ୪୪୩(୩୦୪) ଆନ୍ନାସଲାଇ, ଟେନାମପେଟ୍, ଚେନ୍ନାଇ ୬୦୦୦୧୮

୧୭୨ ମୁମ୍ବାଇ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦୦୧୪

ସେଣ୍ଟ୍ରାଲକଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲଡିଂ, ଡ. ଆମ୍ବେଦକର ଭିଧୀ, ବେଙ୍ଗାଲୁରୁ ୫୬୦୦୦୧

ମୂଲ୍ୟ : ୩୮୦ଟଙ୍କା

ପ୍ରଚ୍ଛଦ : ପ୍ରଣବେଶ ମାଇତି

ଅକ୍ଷର ବିନ୍ୟାସ :

ବି ଆଇଡିଆଜ, ୨୦/୩ ବାଲିଗଞ୍ଜ ପ୍ଲେସ୍, କୋଲକାତା ୭୦୦୦୧୯

ମୁଦ୍ରଣ :

ଡି.ଜି. ଅଫ୍‌ସେଟ୍, ୯୬/ଏନ୍. ମହାରାଣୀ ଇନ୍ଦିରାଦେବୀ ରୋଡ଼, କୋଲକାତା ୭୦୦୦୬୦

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ମୁଖଶାଳା | ୧ |
| ଫେରିଆ | ୧୯ |
| ଭରସା | ୧୩୧ |
| ଘର-କଲମ | ୨୨୩ |
| ନଷ୍ଟ-ଉର୍ବଶୀ | ୩୨୧ |

# ମୁଖଶାଳା

A play when enacted is a drama, when read is a fiction, when seen is a painting and when listened is a 'lyric'- ଏହି ଉକ୍ତିଟିକୁ ଉଦ୍ଧାର କରି ଦିନେ ମଧୁସ୍ରାବୀ ସଂଳାପକାର ଗୋପାଳ ଛୋଟରାୟ ତାଙ୍କ ନିଜ ରଚନାର ଆଭିମୁଖ୍ୟ ସ୍ପଷ୍ଟ କରି ଦେଇଥିଲେ । ମଞ୍ଚରେ ଦର୍ଶକ କିମ୍ବା ବେତାରରେ ଶ୍ରୋତା ଯେତେବେଳେ ତାଙ୍କର କୃତି-ଉପଭୋଗ କରୁଥାଆନ୍ତି, ସେତେବେଳେ ପୂର୍ବୋକ୍ତ ମନ୍ତବ୍ୟର ଯଥାର୍ଥତା ମର୍ମେ ମର୍ମେ ଅନୁଭବ କରୁଥାଆନ୍ତି । ଛୋଟରାୟଙ୍କ ପାଇଁ ନାଟକ ହେଉଛି ଏକ ଯାତ୍ରା- ବରଂ ଏକ ତୀର୍ଥଯାତ୍ରା, ଯାହାର ସହଯାତ୍ରୀ ଭାବରେ ଆମେ ଦେଖିପାରିବା ତାଙ୍କର ପରିପାର୍ଶ୍ୱରୁ ଆଦର୍ଶରୁ କିମ୍ବା ଦୂର ଅତୀତର ଅନ୍ଧାର ଭିତରୁ ସଂଗୃହୀତ ଅନେକଙ୍କ ଚରିତ୍ରକୁ ଯେଉଁମାନେ ନୀତିନୈତିକତା, ଆଦର୍ଶ, ମୂଲ୍ୟବୋଧ ଏବଂ ପରମ୍ପରା ପ୍ରଭୃତି ପ୍ରଥା ଦ୍ୱାରା ନିୟନ୍ତ୍ରିତ ।

ନାଟ୍ୟକାର ଭଲଭାବେ ଜାଣିଥିଲେ ତାଙ୍କ ସୃଷ୍ଟିର ଜଗତ୍ ହେଉଛି ଏକାନ୍ତ ଭାବରେ ଅବାସ୍ତବତାର ଜଗତ୍ ଯେଉଁଠି ତାଙ୍କୁ ବାସ୍ତବତାର ଏକ କୁହୁକ ସୃଷ୍ଟି କରିବାକୁ ହେବ । ବାସ୍ତବ ଏବଂ ମଞ୍ଚ ଜୀବନ ମଧ୍ୟରେ ସୁଦୂରର ବ୍ୟବଧାନ ରହୁଥିଲେ ମଧ୍ୟ ଉଭୟ ମଧ୍ୟରେ ଏକ କଳାତ୍ମକ ସେତୁ ସ୍ଥାପନ କରିପାରିଲେ ଦର୍ଶକ ସମସ୍ୟା ଜଟିଳ ବାସ୍ତବ ଜଗତ୍ ଭିତରୁ ବାହାରି କଳାର ଏଇ କାଞ୍ଚନିକ କୋଣାର୍କର ସ୍ୱପ୍ନମୟ ଇଲାକା ଭିତରେ ହଜିଯିବ । ତାହାହିଁ ଅନୁଭବ ସେ କରିଛନ୍ତି । ଅନୁଭବର ନିର୍ମମତାକୁ କଳ୍ପନାର ରମଣୀୟତାରେ ରୂପାନ୍ତରିତ କରିବାର କଳା ଛୋଟରାୟଙ୍କୁ ଭଲଭାବରେ ଜଣାଥିଲା ବୋଲି ସେ ନାଟକରେ 'ନିତ୍ୟନୂତନ ଆନନ୍ଦବାଦର' ଚାରଣ ହୋଇପାରିଛନ୍ତି ।

ସେ ଆହୁରି ଅନୁଭବ କରିଥିଲେ- 'ସରଳପ୍ରକାଶ ଭଙ୍ଗୀହିଁ ହେଉଛି ନାଟକର ଅନନ୍ତ ଜୀବନ-ଶକ୍ତିର ଆଧାର । ଅନାବଶ୍ୟକ ଜଟିଳତାରେ ଛନ୍ଦି ହୋଇ ଦର୍ଶକ ଏହାର ଆନନ୍ଦଲୋକରୁ ଦୂରେଇଯାଏ । ଜଟିଳତାର କୋଳାହଳରେ ସଦାମୁଖର ଏଇ ସମାଜର ବାର୍ତ୍ତା ଅନ୍ୟ ଏକ ଜଟିଳତର ମାଧ୍ୟମ ଦ୍ୱାରା ଦର୍ଶକ ମଧ୍ୟରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିପାରେ ନାହିଁ । ଏହି ଅଭ୍ରାନ୍ତ ସତ୍ୟଟିକୁ ଭଲ ଭାବରେ ବୁଝିଥିବାରୁ ଛୋଟରାୟ ଜଣେ ସଫଳ ନାଟ୍ୟକାର । ଅନ୍ୟକଥାରେ କହିବାକୁ ଗଲେ 'ଅବାସ୍ତବକୁ ବାସ୍ତବ'ର ସାଜରେ ସରଳ ଭାବରେ ଦର୍ଶକମାନଙ୍କ ନିକଟରେ ଉପସ୍ଥାପିତ କରିପାରିବାର କଳାତ୍ମକ କୌଶଳ ଆୟତ୍ତ କରିପାରିଥିବାରୁ ହିଁ ସେ ଓଡ଼ିଆ ନାଟକର 'ସୁବର୍ଣ୍ଣଯୁଗ'ର ଶ୍ରେଷ୍ଠବିଦ୍ଧାଣୀ ।

ଅବିଭକ୍ତ କଟକ ଜିଲ୍ଲାର ପୁରୁଣାଗଡ଼ ଗ୍ରାମରୁ କିଶୋର ଗୋପାଳ କଟକ ଆସିଥିଲେ ପାଠପଢ଼ି ନିଜର ଭବିଷ୍ୟତ ଗଢ଼ିବା ପାଇଁ । ମନଭିତରେ ଥିଲା ନାଟକ ଅନୁରକ୍ତ ଅନୁଭବଟିଏ । ଭାଗ୍ୟ ତାଙ୍କୁ ଯୋଡ଼ିଦେଲା ନାଟକ ଜଗତ୍ ସହିତ । ଦୁଇଟି ଘଟଣାରୁ ଏହା

ସମ୍ଭବ ହେଲା । ଦ୍ୱିତୀୟ ବିଶ୍ୱଯୁଦ୍ଧକୁ ସମର୍ଥନ ଦେବା ପାଇଁ ସ୍ଥାପିତ ହୋଇଥିବା 'ଯୁଦ୍ଧଫ୍ରଣ୍ଟ' ଦ୍ୱାରା ଆୟୋଜିତ ନାଟକ ପ୍ରତିଯୋଗିତାରେ ଅଶ୍ୱିନୀ କୁମାର ଏବଂ କାଳୀଚରଣ ପ୍ରମୁଖ ସେ ଯୁଗର ଦୁଇ ନାଟମହାରଥୀଙ୍କ ନାଟକକୁ ପଛରେ ପକାଇ ଏହି ନବୀନ ନାଟ୍ୟକାରଙ୍କ ନାଟକ 'ସାଗର-କନ୍ୟା' (୧୯୪୧-ସହଧର୍ମିଣୀ' ନାମରେ ଯୁଦ୍ଧଫ୍ରଣ୍ଟର ଓଡ଼ିଶା ଅଧକ୍ଷ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା ନାମିତ) ପ୍ରଥମସ୍ଥାନ ଅଧିକାର କରିବା ଏବଂ ଦ୍ୱିତୀୟ ଘଟଣାଟି ହେଲା ସେ ସମୟର କେତେକ କଳାନୁରାଗୀ ଯୁବକଙ୍କ ଦ୍ୱାରା ସ୍ଥାପିତ 'ଭାରତୀ ଥିଏଟର୍ସ'ରେ ତାଙ୍କର ଜଣେ ଅଭିନେତା ରୂପରେ ଯୋଗଦେବା- ଏ ଉଭୟ ଘଟଣା ହେଉଛି ନାଟ୍ୟକାର ରୂପରେ ଛୋଟରାୟଙ୍କର ପ୍ରସ୍ତୁତିର ମୂଳଭିତ୍ତି । ଏହାକୁହିଁ କୁହାଯିବ ତାଙ୍କର ପରବର୍ତ୍ତୀ ଅର୍ଦ୍ଧଶତକର ସଫଳ ନାଟ୍ୟକାର ଜୀବନର ଆଦ୍ୟ-ଆବାହନୀ । ଏହାର ପ୍ରଥମ ସ୍ତବକ ହେଉଛି ତାଙ୍କର ପ୍ରଥମ ପୂର୍ଣ୍ଣାଙ୍ଗ ମଂଚନାଟକ 'ଫେରିଆ' (୧୯୪୬) ଦୁଇ-ବିଶ୍ୱଯୁଦ୍ଧର ଘନଘଟା ଭିତରେ ଆସନ୍ନ ସ୍ୱାଧୀନତାର ସମ୍ଭାବନାମୟ ମୁହୂର୍ତ୍ତରେ ଜାତିର ପିତାଙ୍କର 'ଗାଁକୁ ଫେରିଚାଲ' ଆହ୍ୱାନର ପୃଷ୍ଠଭୂମିରେ ପୁଷ୍ପିତ ଏହାର କଳେବର । ଗାନ୍ଧିଜୀଙ୍କ ଭଳି ତରୁଣ ଛୋଟରାୟ ମଧ୍ୟ ସେଦିନ ଅନୁଭବ କରିପାରିଥିଲେ ସ୍ୱାଧୀନ ଭାରତର ସାଢ଼େ ସାତଲକ୍ଷ ଗ୍ରାମରେ ପ୍ରବାହିତ ଏହାର ପ୍ରକୃତ ପ୍ରାଣସ୍ପନ୍ଦନକୁ । ପରିଣାମରେ ନଗର ଏବଂ ପଲ୍ଲୀମଧ୍ୟରେ ସୃଷ୍ଟ ଆସନ୍ନ ଦ୍ୱନ୍ଦ୍ୱର ଚିତ୍ର ସୂଚିତ ନାଟକରେ ଦେଖାଇ ଦେବାସୁର ସଂଗ୍ରାମରେ ଦେବଶକ୍ତିର ବିଜୟ ଭଳି ଆଶା ନେଇ ନାଟ୍ୟକାର ଏଥିରେ ପଲ୍ଲୀ ସଂସ୍କୃତିର ବିଜୟ ଦେଖାଇଥିଲେ । ଦୃଢ଼ରାଜନୈତିକ ଇଚ୍ଛାଶକ୍ତିର ଅଭାବରୁ ତାଙ୍କର ସେ ସ୍ୱପ୍ନ ଅବଶ୍ୟ ସଫଳ ହେଲା ନାହିଁ । ମାତ୍ର ଏହାର ପରିଣାମ-ସ୍ୱପ୍ନଭଙ୍ଗର ମର୍ମପୀଡ଼ାରେ ଜର୍ଜରିତ ନାଟ୍ୟକାର ଦେଖାଇଲେ ଆଠବର୍ଷପରେ ରଚିତ ତାଙ୍କର ନାଟକ 'ପରକଲମ' (୧୯୫୪)ରେ । ଏ ଭିତରେ ସେ ଲେଖିଲେ ଯୁଦ୍ଧୋତ୍ତର ସ୍ୱାଧୀନ ଭାରତରେ ଶିଳ୍ପୀ-କଳାକାରମାନଙ୍କର ଦୁର୍ଦ୍ଦଶାକୁ ନେଇ ଆଉ ଏକ ମର୍ମ ବିଦାରକ ନାଟକ 'ଭରସା' (୧୯୫୩) । କଳାକୁ ନେଇ ନିଜର ପରିଚୟ ଲୋଡ଼ୁ ଥିବା ରାଜ୍ୟରେ ଆଦର୍ଶନିଷ୍ଠ କଳାକାରଟିଏ କିଭଳି ନିର୍ଯାତିତ ହେଉଛି, ତା'ର ନିଖୁଣ ଚିତ୍ର ଶିଳ୍ପୀ ମୋହନ ମାଧ୍ୟମରେ ସେ ଦର୍ଶକମାନଙ୍କୁ ଦେଖାଇ ଏହି ଜଟିଳ ସମସ୍ୟାର ସମାଧାନ ଖୋଜିଲେ । ବ୍ୟବସାୟୀ ମଞ୍ଚର ପ୍ରୟୋଜନରେ ଆଦର୍ଶ ଏବଂ ବାସ୍ତବ- ଏ ଉଭୟର ତୀବ୍ର ସଂଘର୍ଷରେ ଆଦର୍ଶକୁ ବିଜୟମୁକୁଟ ପିନ୍ଧାଇ ଦର୍ଶକ ପ୍ରତ୍ୟାଶାକୁ ଏଥିରେ ସମ୍ମାନ କରାଯାଇଛି । ଜଟିଳ ସମସ୍ୟାକୁ ଅଧିକ ଜଟିଳତା ଭିତରକୁ ନ ନେଇ ଏଥିପାଇଁ ଅବଶ୍ୟ ସରଳ କିନ୍ତୁ ବୌଦ୍ଧିକ ସମାଧାନର ସୂତ୍ରଟିଏ ବାହାର କରାଯାଇଛି । ଖଳନାୟକ ହାରମାନିଛି ଦୁଇ ପ୍ରଣୟୀଙ୍କ ଦୃଢ଼ ଆଦର୍ଶନିଷ୍ଠା ନିକଟରେ । କଳାକାର ଗୋଷ୍ଠୀର ସମସ୍ୟାପ୍ରତି ସାମାଜିକ ସଚେତନତା ସୃଷ୍ଟି ହିଁ ହେଉଛି ଏହାର ପ୍ରଧାନ ଲକ୍ଷ୍ୟ ।

ଏକ ଉଭରିତ ନାଟ୍ୟ ପ୍ରତିଭାର ସ୍ୱପ୍ନଭଙ୍ଗର ଯନ୍ତ୍ରଣାଜର୍ଜର ହାହାକାର ହିଁ ହେଉଛି ସ୍ୱାର୍ଥକୈନ୍ଦ୍ରିକ ରାଜନୀତିର ଭୟଙ୍କର ପରିଣାମଗର୍ଭିତ ନାଟକ 'ପରକଲମ' (୧୯୫୪) ବ୍ୟକ୍ତି ସ୍ୱାର୍ଥ ନିକଟରେ ଜୀବନ କିଭଳି ପୋକ ମାଛିଠାରୁ ହୀନ ହୋଇପଡ଼େ ଏବଂ

ହୀନରାଜନୀତି କିଭଳି ଶାନ୍ତକାନ୍ତ ଗ୍ରାମ ଉତ୍କଳର ସୌହାର୍ଦ୍ଦ୍ୟ ଏବଂ ସୁସମ୍ପର୍କରେ ନିଆଁ ଲଗାଇଦିଏ, ତାହା ଏଇ ନାଟକରେ ଦେଖାଇଦିଆଯାଇଛି । ଦୁଇଟି ସମସାମୟିକ ରାଜନୈତିକ ଘଟଣାର ସହାୟତା ଏଥିରେ ଗ୍ରହଣ କରାଯାଇଛି ବୋଲି ନାଟ୍ୟକାର ସ୍ୱୀକାର କରିଛନ୍ତି । ସ୍ୱାଧୀନ ଭାରତର ଏ ଦୁଇଟି ଅତ୍ୟନ୍ତ ଲଜ୍ଜାକର ଘଟଣାରୁ ସ୍ପଷ୍ଟ ଦେଖାଯାଉଛି ଭବିଷ୍ୟତ ରାଜନୈତିକ ଭାରତର ଏକ ଆତଙ୍କଜନକ ଚିତ୍ର । ଭାରତୀୟ ଲୋକଚରିତ୍ର ଯେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ନିମନ୍ତେ ସମ୍ପୂର୍ଣ୍ଣ ଅନୁପଯୁକ୍ତ ଏହା ସ୍ପଷ୍ଟ ଜଣାଯାଉଛି । ପ୍ରଥମଘଟଣା ଓଡ଼ିଶାର- ଯେଉଁଥିରେ ଆସନ୍ନ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓଡ଼ିଶା ସରକାରଙ୍କର ଜଣେ ମନ୍ତ୍ରୀ ପନ୍ଦରଲକ୍ଷ ଟଙ୍କା ବିନିମୟରେ ପଡ଼ୋଶୀ ପ୍ରଦେଶକୁ ଧାନଚାଉଳର ଫ୍ରିଟେଡ୍ ଲାଇସେନ୍ସ ଦେଇ ଦେବା ଫଳରେ ଉତ୍ତର ଓଡ଼ିଶାରେ ଏକ ମନୁଷ୍ୟକୃତ ଦୁର୍ଭିକ୍ଷ ସୃଷ୍ଟି ହୋଇ ମାତ୍ର ଅଳ୍ପ କେତେଦିନରେ ତିରିଶହଜାର ଅମୂଲ୍ୟ ଜୀବନ ଅକାଳରେ ଝରିଯାଇଥିଲା । ତରୁଣ ଛୋଟରାୟଙ୍କୁ ଏହା ଏଭଳି ଆଲୋଡ଼ିତ କରିଥିଲା ଯେ ସେ ଏହି ଘଟଣାକୁ ସାହିତ୍ୟର ଗର୍ଭୀଭୂତ କରି ଏହାକୁ ଏକ ଚିରନ୍ତନୀ ରୂପଦେଇ ଥିଲେ । ସେହିଭଳି ମନ୍ତ୍ରୀମଣ୍ଡଳର ଦୁର୍ନୀତି ସମାଧାନର ଏକ ନ୍ୟାୟୋଚିତ ସୂତ୍ର ସେ ଖୋଜି ପାଇଥିଲେ କାଶ୍ମୀର ରାଜ୍ୟରେ ଘଟିଥିବା ଅନ୍ୟ ଏକ ଲଜ୍ଜାଜନକ ଘଟଣାରୁ । ସେହି ରାଜ୍ୟର ମୁଖ୍ୟମନ୍ତ୍ରୀ ଗୁରୁତର ଦେଶଦ୍ରୋହର ଅଭିଯୋଗରେ ସଦରି-ରିୟାସତ୍‌ଙ୍କ ଦ୍ୱାରା ବହିଷ୍କୃତ ହୁଅନ୍ତି । ଏହି ଘଟଣାଟିକୁ ଛୋଟରାୟ ରାଜ୍ୟର ଦୁର୍ନୀତିଗ୍ରସ୍ତ ମନ୍ତ୍ରୀମଣ୍ଡଳର ବହିଷ୍କାର ପ୍ରସଙ୍ଗରେ ବ୍ୟବହାର କରିଛନ୍ତି । ଭୋଟ ପ୍ରଚାର ରାଜନୀତିରେ ଅସ୍ତବ୍ୟସ୍ତ 'ପରକଲମ' ନାଟକର ଏକ ପାର୍ଶ୍ୱଚରିତ୍ର ମୁକୁନ୍ଦ ପ୍ରଶ୍ନଟିଏ ନେତାଙ୍କୁ ପଚାରିଚି-ଶୋଷସିନା ପାଣି ନିକଟକୁ ଯାଏ, ହେଲେ ପାଣି କେମିତି ଶୋଷ ପାଖକୁ ଆସୁଚି ? କାହିଁକି ? ଗଣତନ୍ତ୍ରର ମୂଳଦୁଆ ଦୋହଲାଇ ଦେଲାଭଳି ଏଇ ପ୍ରଶ୍ନ ଆଜି ସ୍ୱାଧୀନତାର ପ୍ରାୟ ସତୁରୀ ବର୍ଷ ପରେ ମଧ ଅନୁତ୍ତରିତ ରହିଛି । 'ପରକଲମ' ଦୀର୍ଘ ବାଷଠି ବର୍ଷ ପୂର୍ବେ ପଙ୍କିଳ ରାଜନୀତିର ଘୂର୍ଣ୍ଣିରେ ଦେଶବାସୀଙ୍କର ମହାଦୁର୍ଦ୍ଦଶାର ଯେଉଁ ଭୟାବହ ଚିତ୍ର ଦେଖାଇଥିଲା, ଆଜି ତାହାର ସମଧିକ କରାଳ ରୂପ ଦ୍ରଷ୍ଟା ନାଟ୍ୟକାରଙ୍କର ଦୂରଦୃଷ୍ଟିକୁ ସ୍ପଷ୍ଟ କରିବା ସହିତ ଲୋକତନ୍ତ୍ରର ତଥାକଥିତ ସାମ୍ୟଦୃଷ୍ଟି ଯେ ଏ ଦେଶ ପାଇଁ ଉପଯୁକ୍ତ ନୁହେଁ, ତାହା ବିଶ୍ୱାସ କରିବା ପାଇଁ ଆମକୁ ବାଧ କରୁଛି । ମୋହଭଙ୍ଗର ବେଦନା ଜର୍ଜରିତ ନାଟ୍ୟକାର ସମ୍ଭବତଃ ସେଇଥିପାଇଁ ଉତ୍ତର ଜୀବନରେ 'ସ୍ୱାଗତଂ ରାଜତନ୍ତ୍ର' ନାମକ ନାଟକ ଲେଖିଥିଲେ, ଯାହା ଏବେ ଅପ୍ରକାଶିତ ରହିଛି । (ଏଇ ନାଟକର ପ୍ରକାଶିତ ରୂପ ଦେଖିବା ପାଇଁ ଆମ ଭଳି ବହୁ ଛୋଟରାୟ-ଅନୁରାଗୀ ଏବେ ମଧ ତୃଷିତ ନେତ୍ରରେ ଅପେକ୍ଷା କରିଛନ୍ତି ।) ପ୍ରସଙ୍ଗ କ୍ରମେ ଏଠାରେ ସୂଚନା ଦିଆଯାଇପାରେ ଯେ, ତାଙ୍କର ସମସାମୟିକ ନାଟ୍ୟକାର ରାମଚନ୍ଦ୍ର ମିଶ୍ର ମଧ ସମାନ କାରଣରୁ 'ମନ୍ତ୍ରୀଯୁଗ' ନାମକ ନାଟକ ଲେଖିଛନ୍ତି, ଯାହା ତାଙ୍କ ତିରୋଧାନ ପରେ ପ୍ରକାଶିତ ହୋଇଛି । ଲୋକପ୍ରିୟତା ଦୃଷ୍ଟିରୁ 'ପରକଲମ ହିନ୍ଦୀ ଭାଷାରେ ଅନୂଦିତ ହୋଇଛି ।

ନାଟ୍ୟକାରଙ୍କର ଆଉ ଦୁଇଟି ଉଲ୍ଲେଖଯୋଗ୍ୟ କୃତି ସମ୍ପର୍କରେ ମଧ୍ୟ ଏଠାରେ ସୂଚନା ଦିଆଯାଇପାରେ । ପ୍ରଥମଟି ହେଉଛି 'ବାତ୍ସଲ୍ୟ ମମତା'କୁ ନେଇ ତାଙ୍କର ଅନବଦ୍ୟ ଗୋଟିଏ ସେଟ୍‌ର ନାଟକ 'ଅର୍ଦ୍ଧାଙ୍ଗିନୀ' (୧୯୫୬) ଆଲୋଚକମାନେ 'ଆଗାମୀ' (୧୯୫୦), 'ଅର୍ଦ୍ଧାଙ୍ଗିନୀ'(୧୯୫୬) ଏବଂ 'ଅଶାନ୍ତ' (୧୯୫୮) ଇତ୍ୟାଦି ତିନୋଟି ନାଟକକୁ ଆଧୁନିକ ଓଡ଼ିଆ ନାଟକର ଦିଗବାରେଣୀ ବୋଲି କହିଥାନ୍ତି । 'ଅର୍ଦ୍ଧାଙ୍ଗିନୀ'ରେ ନାଟ୍ୟକାର ଦେଖାଇଛନ୍ତି, ହୃଦୟବୃତ୍ତିର ଚରମ ନିଷ୍ପୀଡ଼ନ ଏବଂ ତାହାର ପରିଣାମକୁ । ମମତାସିକ୍ତ ମାତୃହୃଦୟର ବ୍ୟାକୁଳ ହାହାକାର ବିଶ୍ୱମୟ ହୋଇ ସମଗ୍ର ସମାଜ ଆଗରେ ଏକ ବିରାଟ ପ୍ରଶ୍ନବାଚୀ ଠିଆ କରିଦେଇଛି । ବିକାଶ ଚୌଧୁରୀଙ୍କ ପରିତୃପ୍ତ ପରିବାରରେ ଅକସ୍ମାତ୍ ଅନାହୂତ ସମସ୍ୟାର ଘୂର୍ଣ୍ଣିଝଡ଼ ଉଠି ଏହାର ମୂଳଭିତ୍ତିକୁ ଦୋହଲାଇ ଦେଇଛି । ତାଙ୍କର ଏକମାତ୍ର ପୁତ୍ର ଟନ୍‌ସିଲାଇଟିସ୍‌ରେ ପୀଡ଼ିତ ହୋଇ ତା' ମାଆର ଇଚ୍ଛା ବିରୁଦ୍ଧରେ ଡାକ୍ତରଖାନାକୁ ନିଆଯାଉଛି । ମାଆ କିନ୍ତୁ ଅପରେସନ୍‌ର ଘୋର ବିରୋଧୀ । ତ୍ରୁଟିପୂର୍ଣ୍ଣ ଅପରେସନ୍ ଦ୍ୱାରା ତା'ର ଦ୍ୱିତୀୟବାର ଜନନୀ ହେବାର ସମ୍ଭାବନା ନଷ୍ଟ ହୋଇଯାଇଥିବାରୁ ତା'ର ଏଇ ବିରୋଧ । ସୁସ୍ଥ ହେବା ନିମନ୍ତେ ଅପରେସନ୍‌ର ଅନ୍ୟ ବିକଳ୍ପ ନଥିବାରୁ ପତ୍ନୀର ଅଗୋଚରରେ ବିକାଶ ପୁଅକୁ ଡାକ୍ତରଖାନାକୁ ପଠାଇଦିଅନ୍ତି । ଏହା ଜାଣି ମାୟା ଅପ୍ରକୃତିସ୍ଥ ତଥା ହିଂସ୍ର ହୋଇଉଠିଛି । ଗୋଟିଏ ପଟରେ ନିରୂପାୟ ସ୍ୱାମୀ ଏବଂ ଅନ୍ୟପଟରେ ଅପମାନିତ ସ୍ତ୍ରୀ-ଉଭୟଙ୍କ ମଧ୍ୟରେ ସଂଘର୍ଷର ସୂତ୍ରପାତ ପରିବାର ଭାଙ୍ଗିଯିବାର ଆଶଙ୍କା ଭିତରେ ସୁସ୍ଥ ଅଶୋକର ପ୍ରତ୍ୟାବର୍ତ୍ତନ । ସନ୍ଦେହ, ଅବିଶ୍ୱାସ ଏବଂ ଅସୁରକ୍ଷା ଭାବନା-ଯୁଦ୍ଧୋତ୍ତରକାଳର ଏ ତିନୋଟି ମହାବ୍ୟାଧି ଜୀବନକୁ କିଭଳି ବିପର୍ଯ୍ୟସ୍ତ କରିପକାଉଛି, ଜଣେ ନିପୁଣ ମନସ୍ତତ୍ୱବିତ୍ ଭଳି ନାଟ୍ୟକାର ସେସବୁର ବିଶ୍ଳେଷଣ କରିଛନ୍ତି । ସେ ପ୍ରମାଣ କରିଛନ୍ତି, ପରିବାର ଠିଆହୁଏ ପ୍ରତ୍ୟୟର ଦୃଢ଼ଭିତ୍ତି ଉପରେ । କୌଣସି କାରଣରୁ ତହିଁରେ ଫାଟ ଧରିଲେ ପରିବାର ଭାଙ୍ଗିଯାଏ । ଓଡ଼ିଆ ନାଟକରେ ଏ ଭଳି ଏକ ସମସ୍ୟାର ଏମିତି କଳାତ୍ମକ ବିଶ୍ଳେଷଣ ଇତି ପୂର୍ବରୁ କରାଯାଇନଥିଲା । ମାର୍ଜିତ ହାସ୍ୟରସର ସବୁଜପୁଟ ଦେଇ ନାଟ୍ୟକାର ଏଭଳି ଏକ ଜଟିଳ ସମସ୍ୟାର ରୁକ୍ଷରୂପକୁ ଚିରସବୁଜିମାରେ ମଣ୍ଡିତ କରିଦେଇଛନ୍ତି । ଯଦିଓ ନାଟକର ପ୍ଲଟ 'ମୁହେଁ ମୁହେଁ ମାତ୍ର କେଇ ପଦ କଥାରେ' ସେ ସମୟର ପରିଚିତ ନାଟ୍ୟ ଓ ଚଳଚ୍ଚିତ୍ର ନିର୍ଦ୍ଦେଶକ ନିତାଇ ପାଲିତ୍‌ଙ୍କଠାରୁ ପ୍ରାପ୍ତ ବୋଲି ନାଟ୍ୟକାର ସ୍ୱୀକାର କରିଛନ୍ତି । ତେବେ ଘଟଣା-ବିନ୍ୟାସର ଯେଉଁ କଳାତ୍ମକ କୌଶଳ ନାଟକଟିକୁ ଏକ ଚିରନ୍ତନ ସୃଷ୍ଟିରେ ପରିଣତ କରିଛି, ତାହା ନାଟ୍ୟକାରଙ୍କର ନିଜସ୍ୱ । 'ଅର୍ଦ୍ଧାଙ୍ଗିନୀ' ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟର ଏକ 'ଅନିର୍ବାଣ ଦୀପଶିଖା' ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏଥର 'ନଷ୍ଟଉର୍ବଶୀ' (୧୯୫୫) ପ୍ରସଙ୍ଗ । ଦେଶ ବିଭାଜନ ପରେ ଅକଳ୍ପନୀୟ ରକ୍ତପାତ ଭିତର ଦେବଶିଶୁ ମଣିଷର ନରକର ହାହାକାର ଶୁଣି ବ୍ୟଥିତ ହୃଦୟ ମହାତ୍ମାଗାନ୍ଧି କହିଥିଲେ, 'ନୂଆଖାଲି ଆଉ ପଞ୍ଜାବର ଶହଶହ ନାରୀ କଳଙ୍କିନୀ ନୁହନ୍ତି । ସେମାନଙ୍କର

ଧର୍ମ କିମ୍ବା ସତୀତ୍ୱ ନଷ୍ଟ ହୋଇ ପାରେନା'- ସୂଚିତ ନାଟକଟି ଏହି ସନାତନ ସତ୍ୟର ଭିତ୍ତି ଉପରେ ଦଣ୍ଡାୟମାନ । ପଲ୍ଲୀମାଳିନୀ ଉତ୍କଳର କେଉଁ ଏକ ଅନାମଧେୟ ଶରଣକୂଳ ଗାଆଁର ସମ୍ଭ୍ରାନ୍ତ ବଂଶୀୟା ଉର୍ବଶୀକୁ ନେଇ ନାଟ୍ୟକାର ଏଇ ତତ୍ତ୍ୱର ଏକ ପରୀକ୍ଷା କରିଛନ୍ତି । ଦେହର ପବିତ୍ରତାକୁ ପରିବାରର ସାମ୍ଭ୍ରାନ୍ତ୍ୟ ବଜାୟ ରଖିବାର ଏକ ମାପକାଠି ରୂପେ ଗ୍ରହଣ କରିବା ଉଚିତ କି ? ଯଦି 'ହଁ'- ତେବେ 'ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ ଏବଂ ମନ୍ଦୋଦରୀ ପ୍ରଭୃତି ଆମ ପୁରାଣର ପଞ୍ଚମହାସତୀଙ୍କୁ 'ସତୀ' କୁହାଯିବ କେଉଁ କାରଣରୁ ? ଏହିଭଳି ଏକ ଐତିହାସିକ ପ୍ରଶ୍ନର ଉତ୍ତର ଖୋଜାଯାଇଛି 'ଉର୍ବଶୀ' ମାଧ୍ୟମରେ । ଦେହଭୋଗକୁ ସର୍ବାଧିକ ଗୁରୁତ୍ୱ ଦେଉଥିବା ବର୍ତ୍ତମାନର ସମାଜରେ ଏଇ ପ୍ରଶ୍ନଟି ଅତ୍ୟନ୍ତ ପ୍ରାସଙ୍ଗିକ ହୋଇ ଉଠିଛି ।

ନାଟକର କାହାଣୀ ଭାଗ ଅତ୍ୟନ୍ତ ସଂକ୍ଷିପ୍ତ । ଗ୍ରାମୀଣ ଏକ ସମ୍ଭ୍ରାନ୍ତ ପରିବାରରେ ଗୋଟିଏ ରାତିର ଆକସ୍ମିକ ତରୁଣ ଅତିଥି ସହ ସେହି ପରିବାର ଅନୂଢ଼ା କନ୍ୟାର ସମ୍ପର୍କକୁ ନେଇ କଳଙ୍କ ରଟନା, ଠିକାଦାର ଦ୍ୱାରା ସେହି କନ୍ୟାର ଧର୍ଷଣ, ଉର୍ବଶୀ ନର୍ସ ଭାବେ ଜୀବନ ଆରମ୍ଭ କରୁଥିବା ବେଳେ ଅଚାନକ ପୂର୍ବର ସେଇ ଗୋଟିଏ ରାତିର ଅତିଥି ଡାକ୍ତରୀ ଛାତ୍ର ଜ୍ଞାନ ସହ ତା'ର ସାକ୍ଷାତ୍ ପ୍ରେମ ଏବଂ ବିବାହ, ଉର୍ବଶୀ ଦ୍ୱାରା ତାହାର ପୂର୍ବର କଳଙ୍କିତ ଜୀବନ ସମ୍ପର୍କରେ ଜ୍ଞାନ ନିକଟରେ ସ୍ୱୀକାରୋକ୍ତି, ବିଚଳିତ ଜ୍ଞାନର ଗୃହତ୍ୟାଗ, ପୁନର୍ବାର ସେଇ ଠିକାଦାରର ଆବିର୍ଭାବ, ଜ୍ଞାନର ମିଥ୍ୟା ମୃତ୍ୟୁ ସମ୍ବାଦ ପ୍ରଚାର କରି ଉର୍ବଶୀକୁ ବଳପୂର୍ବକ ବିବାହ କରିବା ନିମନ୍ତେ ଉଦ୍ୟମ, ଅନୁତପ୍ତ ଜ୍ଞାନର ପ୍ରତ୍ୟାବର୍ତ୍ତନ, ଦୁର୍ଘଟଣାରେ ଠିକାଦାରର ମୃତ୍ୟୁ ଏବଂ ଶେଷରେ ଦୁଇ ପ୍ରଣୟୀଙ୍କର ମଧୁର ମିଳନ- ପେସାଦାର ମଂଚର ଦାବିରେ ଏସବୁ ଦେଖାଇ ଦିଆଯାଇ ନାଟକକୁ 'ମଧୁରେଣ ସମାପୟେତ' କରାଯାଇଛି । ପ୍ରଫେସର ଶ୍ରୀରାମ ଦାଶ- ଏହାକୁ 'ପଲ୍ଲୀର ସରଳ ଜୀବନ ଏବଂ ସହରର ଜଟିଳ ମନୋବୃତ୍ତିର ଘାତପ୍ରତିଘାତ' ବୋଲି ମନ୍ତବ୍ୟ ଦେଇଛନ୍ତି । ନାଟକରେ ଯୁଦ୍ଧୋତ୍ତର ସମାଜର ରିରଂସା, ଅର୍ଥ ଲିପ୍ସା, ଅନୈତିକତା ପ୍ରଭୃତି ହେତୁବାଦୀ ମନୋବୃତ୍ତି ଜୀବନକୁ କିଭଳି ଜଟିଳ କରିଦେଉଛି, ତାହାହିଁ ବିଶ୍ଳେଷିତ ହୋଇଛି । ଦେଶୀ ଏବଂ ବିଦେଶୀ ସଂସ୍କୃତିର ଆଦର୍ଶ ତଥା ବାସ୍ତବବାଦ ମଧ୍ୟରେ ତୀବ୍ର ଦ୍ୱନ୍ଦ୍ୱ ଏବଂ ଶେଷରେ ଆଦର୍ଶର ବିଜୟ ପ୍ରତିଷ୍ଠା ତାଙ୍କର ଅନ୍ୟନାଟକ ଭଳି ଏହାର ମଧ୍ୟ ପ୍ରତିପାଦ୍ୟ ହୋଇଛି । ମାନବବାଦୀ ନାଟ୍ୟକାର ତଥାପି ବିଶ୍ୱାସ କରନ୍ତି ହେତୁବାଦୀ ସାମ୍ପ୍ରତିକ ସମାଜରେ ଆଦର୍ଶବାଦୀ, ସତ୍ୟନିଷ୍ଠ, ଆତ୍ମବିଶ୍ୱାସ ସମ୍ପନ୍ନ କିଛି ବ୍ୟକ୍ତିଙ୍କର ଉପସ୍ଥିତିକୁ ଯେଉଁମାନଙ୍କ କାନ୍ଧରେ ଭାର ଦେଇ ଆଜିର ସମାଜ କଚ୍ଛପ ଗତିରେ ଆଗେଇ ଚାଲିଛି । ସେମାନେ ହିଁ ଆଶାହତ ସମାଜର ମୁମୂର୍ଷୁ ପାଦପରେ ଜଳଦାନ କରି ଏହାକୁ ତଥାପି ସବୁଜଶ୍ରୀ ମଣ୍ଡିତ କରିବାର ଗୁରଦାୟିତ୍ୱ ନିଜ ଉପରକୁ ଉଠାଇ ନେଇଛନ୍ତି । ସେମାନେ ଅଳ୍ପ ସଂଖ୍ୟାରେ ହେଲେ ମଧ୍ୟ ଅଛନ୍ତି-ତେଣୁ ସମାଜ ତିଷ୍ଠି ରହିଚି । ଏମାନଙ୍କୁ ସନ୍ଧାନ କରି ଛୋଟରାୟ ମଧ୍ୟ ହୋଇଯାଇଛନ୍ତି 'ଚିରସବୁଜର ନାଟ୍ୟକାର ।'

ନାଟ୍ୟକାରଙ୍କର ବିଚିତ୍ର ଚରିତ୍ର ଚିତ୍ରଶାଳାରେ ସବୁଠାରୁ ଲକ୍ଷଣୀୟ ଚରିତ୍ର ରୂପରେ ଦେଖାଯାଆନ୍ତି, ତାଙ୍କର ଖଳନାୟକ ଗୋଷ୍ଠୀ । 'ଫେରିଆ'ର ପ୍ରଫେସର ଦାସ, 'ଭରସା'ର କୁମାର ସାହେବ, 'ନଷ୍ଟ ଉର୍ବଶୀ'ର ଠିକାଦାର ପ୍ରଭୃତି ଚରିତ୍ର କେଉଁଠି ମାନବିକତାର ପ୍ରଦର୍ଶନରେ ଦେବତାଙ୍କୁ ପଛରେ ଛାଡ଼ିଯାଇଛନ୍ତି ତ କେଉଁଠି ଅବା ନୃଶଂସତାରେ ଜହ୍ଲାଦକୁ ସୁଦ୍ଧା ଲଜ୍ଜିତ କରିଛନ୍ତି । ନାଟ୍ୟକାର ଜାଣନ୍ତି ପରିବର୍ତ୍ତନ ହେଉଛି ସୃଷ୍ଟିର ଧର୍ମ । ପରିବେଶର ପ୍ରଭାବରେ ମଣିଷର ଗୁଣସୂତ୍ର ମଧ୍ୟ ବଦଳିଯାଏ । କିଛି ପରିବର୍ତ୍ତିତ ହୁଅନ୍ତି । ଆଉ କିଛି ଅପରିବର୍ତ୍ତିତ ରହି ସ୍ୱଭାବାନୁସାରୀ ଫଳପାଆନ୍ତି । ନାଟ୍ୟକାରଙ୍କ ସୃଷ୍ଟିରେ ଏମାନେ ଅଛନ୍ତି । ଭୋଗବାଦୀ, ଶଠ, ପ୍ରବଞ୍ଚକ, ପରପୀଡ଼କ ଚରିତ୍ରଟି ମଧ୍ୟ କ୍ରମଶଃ ମାନବବାଦୀ, ଉଦାର ଏବଂ କରୁଣାମୟରେ ପରିଣତ ହୋଇଯିବାର ଦେଖାଯାଏ । ଆଶ୍ଚର୍ଯ୍ୟ ଲାଗେ ତାଙ୍କ ପରିଚୟର ବ୍ୟାପକ ପରିସରକୁ ଦେଖି । ଗୋଟିଏ ମାତ୍ର ଜୀବନ ଭିତରେ ନିଜର ସୃଷ୍ଟି କର୍ମର ଯବକାଚ ତଳେ କେତେ କ'ଣ ପର୍ଯ୍ୟବେକ୍ଷଣ କରୁ କରୁ ସେ ନିଜ ପାଇଁ ଘଟଣା ଓ ଚରିତ୍ର ସଂଗ୍ରହ କରିନିଅନ୍ତି । ତାଙ୍କ ସମ୍ପର୍କରେ କବି ରମାକାନ୍ତଙ୍କ ବକ୍ତବ୍ୟ ସ୍ମରଣୀୟ । ସେ ଲେଖୁଛନ୍ତି, "ସେ ମଧ୍ୟ ପ୍ରତିପାଦିତ କରିଛନ୍ତି ଯେ, ସମାଜ ଯେପରି ଚଳୁଛି ସେପରି ଚଳିବା ଅନିବାର୍ଯ୍ୟ ବୋଲି ଧରିନେଲେ, ଅତି ସାମାଜିକ ପ୍ରେରଣା ପ୍ରତି ଉନ୍ମୁକ୍ତ ନ ରହିଲେ, ମଣିଷର ବିକାଶ ସମ୍ଭବ ହେବ ନାହିଁ ।" 'ନଷ୍ଟ ଉର୍ବଶୀ'ର ଅନୁତପ୍ତ ନାୟକ ଜ୍ଞାନୀନ୍ଦ୍ରର ସଂଳାପରୁ ଏହା ପ୍ରମାଣିତ ହୋଇଛି । ସମାଜ ଆଖିରେ ନଷ୍ଟ ଚରିତ୍ରା ଉର୍ବଶୀକୁ ଗ୍ରହଣ କରିନେଇ ସେ ରୂଢ଼ିବାଦୀ ପରମ୍ପରା ଏବଂ ସନାତନ ପରମ୍ପରା- ଏ ଉଭୟ ପ୍ରତି ଯୁଗପତ୍ ଆଘାତ ହାଣିଛି । ସାମାଜିକ ନୀତିନିୟମର ଶୃଙ୍ଖଳାକୁ ସମ୍ମାନ ଜଣାଇ ସମାଜର ସ୍ଥାଣୁତ୍ୱକୁ ତୀବ୍ର ନିନ୍ଦା କରିବା ହେଉଛି ଛୋଟରାୟଙ୍କର ନାଟ୍ୟଦର୍ଶନ । ପରିବର୍ତ୍ତନକୁ ସେ ନିଜର ସାମାଜିକ ପ୍ରତିବଦ୍ଧତା ବୋଲି ସ୍ୱୀକାର କରନ୍ତି ।

ନାରୀ ହେଉଛି ତାଙ୍କ ସୃଷ୍ଟିକର୍ମର ଅନ୍ୟ ଏକ ବିସ୍ମୟ । ତହିଁରେ ଅଛନ୍ତି ଶାନ୍ତି, ନୀଳା, ଉର୍ବଶୀ, ମାୟା, ମାଧବୀ, ମଣି ଅପା, ସୁନାମା' ପ୍ରଭୃତି କେତେ ଅଲଗା ଅଲଗା ପରିବେଶର, ସ୍ୱତନ୍ତ୍ର ରୁଚିରିଓ୍ୱାଜ୍, ଚାହାଣି ଓ ଚଳଣିର କେତେ ଭିନ୍ନ ଭିନ୍ନ ପ୍ରକୃତିର ନାରୀ । ଜନନୀ ରୂପରେ ସେମାନେ ମାୟା, ଗୃହିଣୀ ରୂପରେ ସେମାନେ ସର୍ବଂସହା ବାଣୀ, ପ୍ରେମିକା ରୂପରେ ପ୍ରତ୍ୟୟର ପ୍ରତିମା ନୀଳା, ସେବିକା ରୂପରେ ଶାନ୍ତି ଏବଂ ଦୁର୍ଭାଗ୍ୟ ବିରୁଦ୍ଧରେ ଅଟଳ ହିମାଳୟ ସଦୃଶା ଉର୍ବଶୀ । ଏମାନେ ସ୍ୱାଭିମାନିନୀ, ଆତ୍ମମର୍ଯ୍ୟାଦା ସମ୍ପନ୍ନା ଏବଂ ପ୍ରଖର ବ୍ୟକ୍ତିତ୍ୱଶାଳିନୀ । ନାରୀର ଏହି ଭିନ୍ନ ଭିନ୍ନ ରୂପ ତାଙ୍କର ବିଭିନ୍ନ ରଚନାରେ ଦେଖିବାକୁ ମିଳେ । ସାଧାରଣତଃ ଛୋଟରାୟ ସୁଖୀ ପାରିବାରିକ ଜୀବନର ସ୍ୱପ୍ନବିଳାସୀ ନାଟ୍ୟକାର, ଯାହାର କେନ୍ଦ୍ରରେ ଥାଏ ନାରୀ । ସ୍ୱାମୀ-ସ୍ତ୍ରୀର ସମ୍ପର୍କ ଠିଆ ହୋଇଥାଏ ପ୍ରତ୍ୟୟର ଦୃଢ଼ଭିତ୍ତି ଉପରେ । ସନ୍ଦେହ କିମ୍ବା ଅବିଶ୍ୱାସର ଭୂକମ୍ପରେ ସେଇ ଭିତ୍ତି ଦୋହଲି ଗଲେ, ପାରିବାରିକ ଜୀବନ ବିଷମୟ ହୋଇଯାଏ । ପାରିବାରିକ ଜୀବନରେ ଛୋଟରାୟ ଥିଲେ ଜଣେ ଅତ୍ୟନ୍ତ

ସୁଖୀ ଏବଂ ପରିତୃପ୍ତ ଗୃହସ୍ଥ- ଏ ବିଷୟ ତାଙ୍କର ପରିଚିତ ସମସ୍ତେ ଜାଣନ୍ତି । ତେବେ ଗ୍ରନ୍ଥାବଳୀର 'ଅବତାରଣା' ପର୍ଯ୍ୟାୟରେ ନାଟ୍ୟକାରଙ୍କର ସୁପୁତ୍ର କବି ପ୍ରଶାସକ ଦେବଦାସ ଲେଖିଛନ୍ତି, 'ଏଥିରେ (ଶଙ୍ଖାସିନ୍ଦୂର) ବୋଧହୁଏ, ଯାହା ସଚରାଚର ହୋଇଥାଏ, ବାପା ବୋଉଙ୍କର ଆଦ୍ୟ ବୈବାହିକ ଜୀବନର କିଛି ସଂକଟର ଆଭାସ ଥିଲା ।' (ଗ୍ରନ୍ଥାବଳୀ- ୧ମଖଣ୍ଡ: ପୃ-୧୬)

ମଣିଷର ମନଭଳି ସ୍ୱାର୍ଥପର ଚିଜଟିଏ ବିଶ୍ୱ ସୃଷ୍ଟିରେ ବୋଧହୁଏ ଆଉ କିଛି ନାହିଁ । ସେ ସବୁବେଳେ ନିଜର ସ୍ୱାର୍ଥକୁ ନେଇ ଚିନ୍ତିତ ଥାଏ । କେବେ ବି ପ୍ରିୟଜନ ବିଚ୍ଛେଦ କଥା ଚିନ୍ତା କରିପାରେ ନାହିଁ । ଯେଉଁଟି ଯେତେପ୍ରିୟ ତା'ର ଆସନ୍ନ ବିଚ୍ଛେଦକୁ ନେଇ ତା'ର ସେତେ ଚିନ୍ତା, ସେତେ ବ୍ୟସ୍ତତା । ସ୍ୱାମୀ-ସ୍ତ୍ରୀର ପ୍ରତ୍ୟୟପୂର୍ଣ୍ଣ ସମ୍ପର୍କ ଭିତରେ ଏ ସବୁ ଛୋଟ ଛୋଟ ଘଟଣା ପ୍ରାୟ ଘଟୁଥାଏ । କିଛି ପ୍ରକାଶିତ ହୁଏ, ଅନେକ ଅକୁହା ହୋଇ ରହିଯାଏ । ଶଙ୍ଖାସିନ୍ଦୂରର ବାଣୀ କ'ଣ ସ୍ୱାମୀର ଅପରାଧକୁ ଭୁଲି ନିଜର ସାମାଜିକ ପରିଚୟ ଅପେକ୍ଷା ନିଜ ପାଖରେ ନିଜର ପରିଚୟକୁ ବେଶି ଗୁରୁତ୍ୱ ଦେଇନାହିଁ ? କହିବାର କଥା- ପତିପତ୍ନୀର ସମ୍ପର୍କ ମଧ୍ୟରେ 'ସଂଶୟ' ମଧ୍ୟ ହେଉଛି ଏକପ୍ରକାର 'ସୁଖ'- ଏକ ଗର୍ବ ଆଉ ଅହଙ୍କାର । 'ବାଣୀ' ଚରିତ୍ରରେ ଯଦି ଦେବଦାସ ନିଜ ଜନ୍ମଦାତ୍ରୀଙ୍କୁ କିମ୍ବା 'ରାସବିହାରୀ'ଙ୍କ ଭିତରେ ନିଜର ଅଜା ଯୁଧିଷ୍ଠିର ପଟ୍ଟନାୟକଙ୍କର ଆଭାସକୁ 'ବୈବାହିକ ଜୀବନର ସଂକଟ' ବୋଲି ମନେ କରୁଥାଆନ୍ତି, ତେବେ ଆମର ଅନୁରୋଧ ସେ ଅନୁଗ୍ରହ କରି ତାହା ତଳେ ତଳେ ସାହିତ୍ୟ ଜଗତରେ ଏହି ଦୁଇ ରକ୍ତମାଂସଧାରୀ ମଣିଷ ଚିରକାଳ ପାଇଁ ଅମରତ୍ୱ ଲାଭ କରିଥିବା ଜୀବନ ସତ୍ୟକୁ ଉପଲବ୍ଧି କରନ୍ତୁ । ଏହା ଯେ କେତେବଡ଼ ଆନନ୍ଦର କଥା, ତାହା କହିହେବ ନାହିଁ । ଦେବଦାସ ତ ନିଜେ ଲେଖିଛନ୍ତି, 'ଲେଖକର ଜୀବନ ତା' ରଚନାରେ ପ୍ରତିବିମ୍ବିତ ହେବା କିଛି ନୂଆ କଥା ନୁହେଁ ।' ବରଂ ସେ ଏକ ଐତିହାସିକ ସତ୍ୟର ଉଦ୍‌ଘାଟନ କରିଥିବାରୁ ନାଟ୍ୟକାରଙ୍କ ଅନୁରାଗୀମାନେ ଚିରକାଳ ତାଙ୍କ ପାଖରେ କୃତଜ୍ଞ ରହିବେ ଏବଂ ବ୍ୟକ୍ତି-ଛୋଟରାୟଙ୍କୁ ବିଶ୍ଳେଷଣ କରିବା ସମୟରେ ଗବେଷକମାନେ ମଧ୍ୟ ଏଇ ବ୍ୟକ୍ତିଗତ ତଥ୍ୟଟିକୁ ବ୍ୟବହାର କରିପାରିବେ ।

ନାଟ୍ୟକାର ଛୋଟରାୟ ଯେ ବ୍ୟକ୍ତିଗତ ଜୀବନରେ ଜଣେ ପ୍ରେମମୟ ସ୍ୱାମୀ, ସ୍ନେହଶୀଳ ପିତା ଏବଂ ଦାୟିତ୍ୱବାନ ଗୃହସ୍ଥ ଥିଲେ, ଏହା ତାଙ୍କର ପରିଚିତ ସମସ୍ତେ ଜାଣନ୍ତି । ମାନସିକ ସ୍ତରରେ ସଂତୃପ୍ତ ଏକ ଗୃହସ୍ଥର ପ୍ରତିଫଳନ ତାଙ୍କ ସୃଷ୍ଟିରେ ସର୍ବତ୍ର ଦେଖିବାକୁ ମିଳେ । ସଂସାରର ସମସ୍ତ ଜଟିଳତା, ସଂକୀର୍ଣ୍ଣତା ଏବଂ ସୀମାବଦ୍ଧତାର ଉର୍ଦ୍ଧ୍ୱରେ ଛୋଟରାୟ ତାଙ୍କ ସୃଷ୍ଟିର ଘଟଣା ଓ ଚରିତ୍ରକୁ ମୂଲ୍ୟବୋଧର ଏକ କଷ୍ଟକର କିନ୍ତୁ ତଥାପି ଆନନ୍ଦମୟ ଲୋକକୁ ନେଇଯିବା ପାଇଁ କିଭଳି ସତତ ଉନ୍ମୁଖ ଏକଥା ତାଙ୍କର ଦର୍ଶକ ଓ ପାଠକମାନେ ଜାଣନ୍ତି । ମୂଲ୍ୟବୋଧର ଅବକ୍ଷୟ ଭିତରେ ଶ୍ୱାସରୁଦ୍ଧ ସୃଷ୍ଟି ନିମନ୍ତେ ନାଟ୍ୟକାର ଏକ ଉଜ୍ଜ୍ୱଳ ଦୀପସ୍ତମ୍ଭ ବୋଲି କହିଲେ ତେଣୁ ଅତ୍ୟୁକ୍ତି ହେବନାହିଁ । ପ୍ରଚଳିତ ସମାଜର ଅବରୁଦ୍ଧ ଅବସ୍ଥା ଭିତରେ

ନାଟ୍ୟକାର ଆତ୍ମପ୍ରକାଶ କରନ୍ତି ଏକ ବିଦ୍ରୋହୀ-ସତ୍ତା ରୂପରେ । ଗାନ୍ଧିବାଦର ସତ୍ୟ ଆଉ ଅହିଂସାର ସବୁଜ ବଳୟ ଭିତରେ ରହି ସେ ପୁଣି ଦେଖନ୍ତି ସାମ୍ୟବାଦର ମଧୁର ସ୍ୱପ୍ନ ।

ଛୋଟରାୟ ହେଉଛନ୍ତି ମହାଭାରତର ସବ୍ୟସାଚୀ ତୁଲ୍ୟ, ଗୋଟିଏ ହାତରେ ଯିଏ ମଂଚ, ବେତାର ଏବଂ ଦୂରଦର୍ଶନ ଗଣମାଧମର ଏଇ ତିନୋଟି ବିଭାଗକୁ ସଫଳ ଭାବରେ ଆୟତ୍ତ କରିଥିଲେ । ତାଙ୍କର ନାଟ୍ୟକାର ଜୀବନ ଆରମ୍ଭ ହୁଏ ମଞ୍ଚରୁ । ମଞ୍ଚରେ ସ୍ଥାୟୀ ହୋଇ ରହିବାର କାରଣ ସମ୍ପର୍କରେ ସେ ସମୟର ଦୁଇଜଣ ସମ୍ମାନନୀୟ ନାଗରିକଙ୍କର ସଶ୍ରଦ୍ଧ ପ୍ରୋତ୍ସାହନକୁ ସ୍ୱୀକାର କରି ଛୋଟରାୟ କହନ୍ତି, 'ଆଜି ଅର୍ଦ୍ଧଶତାଧିକ ବର୍ଷ ପରେ ମୁଁ ଏହି କଥା ଉଲ୍ଲେଖ କରୁଚି ଯେ ଯଦି ସେତେବେଳେ ମୁଁ ସମ୍ମାନନୀୟ ବ୍ରଜସୁନ୍ଦର ଦାସ ଓ ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଦେବଙ୍କ ଠାରୁ ଏହିପରି ପ୍ରୋତ୍ସାହନ ପାଇ ନଥାନ୍ତି, ତେବେ ବୋଧହୁଏ ନାଟକ ଲେଖିବା କଥା କେବେ ହେଲେ ଚିନ୍ତା କରି ପାରିନଥା'ନ୍ତି ।" (ଗ୍ରନ୍ଥାବଳୀ:୧ମ:ପୃ:୨୯୩) ବିଶେଷ କରି ବ୍ରଜସୁନ୍ଦରଙ୍କ ପ୍ରେରଣା ତାଙ୍କୁ କିଭଳି ନାଟକ ରଚନା ନିମନ୍ତେ ଉଦ୍‌ବୁଦ୍ଧ କରିଥିଲା ତାହା ସେ ବିସ୍ତୃତ ଭାବରେ ନିଜର ଆତ୍ମଜୀବନୀ 'ପଥିକ'ରେ ବର୍ଣ୍ଣନା କରିଛନ୍ତି ।

ବହୁନାଟ୍ୟକାର ଅଭିନେତା ରୂପରେ ନାଟକ କ୍ଷେତ୍ରରେ ପାଦରଖି ପରେ ନାଟ୍ୟରଚନା ଆଡ଼କୁ ମନ ଦେଇଥିବାର ଦୃଷ୍ଟାନ୍ତ ରହିଛି । ସେକ୍ସପିୟରଙ୍କଠାରୁ ଆରମ୍ଭ କରି ଆମର ମନୋରଂଜନ ଦାସଙ୍କ ପର୍ଯ୍ୟନ୍ତ ପ୍ରଥମେ 'ନଟ' ରୂପରେ ହିଁ ପାଦପ୍ରଦୀପ ସମ୍ମୁଖରେ ଠିଆ ହୋଇଥିଲେ । ପରେ ସେମାନେ ନାଟକ ରଚନା କରି ତହିଁରେ ସଫଳତା ଲାଭ କରିଛନ୍ତି । ତେବେ ଘଟ ପରିବର୍ତ୍ତନର ଏଇ ସମ୍ବେଦନଶୀଳ ମୁହୂର୍ତ୍ତରେ ଦୁଇ ସତ୍ତା ମଧ୍ୟରେ ପ୍ରଚଣ୍ଡ ଦ୍ୱନ୍ଦ୍ୱ ଦେଖାଦିଏ । ଅଭିନୟ ଜଗତର ଉତ୍ତେଜନାପୂର୍ଣ୍ଣ ଆକର୍ଷଣ ଏଡ଼ାଇବା ଏତେ ସହଜ ହୁଏ ନାହିଁ । ପାଦପ୍ରଦୀପର ଉଜ୍ଜ୍ୱଳ ଆଲୋକରେ ମୁହଁରେ ରଙ୍ଗବୋଳି ଦର୍ଶକ ମଣ୍ଡଳିର ତାତ୍‌କ୍ଷଣିକ ପ୍ରତିକ୍ରିୟା ଜାଣିବାର ଯେଉଁ ଉତ୍କଣ୍ଠା ଏବଂ ଉତ୍ତେଜନା ତାହା ପର୍ଦ୍ଦାପଛ ଅନ୍ଧାରରେ ରଙ୍ଗହୀନ ଜୀବନ ବିତାଉଥିବା ନାଟ୍ୟକାର ଜୀବନରେ କାହିଁ ? 'ନଟ' ରୂପରେ ନାଟକ କ୍ଷେତ୍ରରେ ପାଦରଖି ନାଟ୍ୟରଚନା ଆଡ଼କୁ ଚାଲିଯାଇଥିବା ଛୋଟରାୟଙ୍କ ଜୀବନରେ କିନ୍ତୁ ଏଭଳି ସଙ୍କଟ ସୃଷ୍ଟି ହୋଇନାହିଁ । ସମ୍ଭବତଃ ପ୍ରଥମ ନାଟକ ଲେଖିବାବେଳୁ ସେ ଯେଉଁ ଅକୁଣ୍ଠିତ ସ୍ୱୀକୃତି ପାଇଯାଇଥିଲେ, ତାହାହିଁ ତାଙ୍କୁ ନାଟ୍ୟକାର ରୂପରେ ରହିଯିବାକୁ ପ୍ରେରିତ କରିଥିଲା । 'ନଟଗୋପାଳ' ଚିରକାଳ ପାଇଁ ବିସ୍ମୃତିର ଗର୍ଭରେ ହଜିଗଲେ । ବ୍ରଜସୁନ୍ଦର କହିଲା ପରି ଖଣ୍ଡା ତଲୱାର ଧରା ହାତରେ ଲେଖନୀ ରହିଗଲା ଆମୃତ୍ୟୁ । ପରମ୍ପରାର ତୋରଣ ଦ୍ୱାରରୁ ସେ ପ୍ରଗତିକୁ ସ୍ୱାଗତ ଜଣାଇ ପରମ୍ପରା ବଦଳାଇବାର ସ୍ୱପ୍ନ ଦେଖିଲେ ସମାଜକୁ ନୂଆ ରୂପ ଦେବା ପାଇଁ ।

ସମଗ୍ର ନାରୀ ସମାଜ ପ୍ରତି ନାଟ୍ୟକାର ଯେଉଁଭଳି ଶ୍ରଦ୍ଧା ଓ ସମ୍ମାନ ଜଣାଇଛନ୍ତି, ଆଦର୍ଶବାଦୀ, ସତ୍ୟନିଷ୍ଠ, ନ୍ୟାୟବାନ ତଥା ମୂଲ୍ୟବୋଧ ବିଶ୍ୱାସୀ ପୁରୁଷ ସମାଜ ପ୍ରତି ମଧ

ସେହିଭଳି ପକ୍ଷପାତି ହୋଇଛନ୍ତି । ଭଲ ଆଉ ମନ୍ଦକୁ ନେଇ ଆମର ସମାଜ । ରାବଣ ହିଁ ରାମ ଚରିତ୍ରର ବୈଶିଷ୍ଟ୍ୟକୁ ସମାଜ ଆଗରେ ପ୍ରମାଣ କରେ ଠିକ୍ ଅନ୍ଧାର ନିକଟରେ ଆଲୁଅ ନିଜର ଦୀପ୍ତି ପ୍ରକାଶ କଲା ଭଳି । ସେଥିପାଇଁ ଛୋଟରାୟ ସୁରେଶ ପାଖରେ ପ୍ରଫେସର ଦାସ, ମୋହନ ପାଖରେ କୁମାର ସାହେବ କିମ୍ବା ଶରତ ପାଖରେ ରାସବିହାରୀ ଭଳି ଚରିତ୍ର ଏବଂ ନୀଳା ପାଖରେ ଶ୍ରୀମତୀ ଦାସ, ବାଣୀ ପାଖରେ ଲଳିତା ଆଉ ଉର୍ବଶୀ ପାଖରେ ମଣି ଅପା ଭଳି ଚରିତ୍ର ସୃଷ୍ଟି କରି ଉଭୟ ବିପରୀତ ପ୍ରବୃତ୍ତିର ଚରିତ୍ରର ଶକ୍ତି କଳନା କରିଛନ୍ତି ।

ନାଟକ ଏକ ସାମାଜିକ ଆବଶ୍ୟକତା କି-ଏଇ ପ୍ରଶ୍ନର ଉତ୍ତର ଛୋଟରାୟଙ୍କ ସୃଷ୍ଟିରେ ଖୋଜିବା ପୂର୍ବରୁ ଆମେ ବଂଗୀୟ ମଂଚର ଜଣେ ପ୍ରସିଦ୍ଧ ଅଭିନେତା ନିର୍ଦ୍ଦେଶକ ତଥା ଗଣନାଟ୍ୟଧାରାର ଜଣେ ସକ୍ରିୟ ସଭ୍ୟଶମ୍ଭୁ ମିତ୍ରଙ୍କର ଏହି ଉକ୍ତିଟିକୁ ମନେ ପକାଉଛୁ । ତାଙ୍କ ମତରେ 'Theatre is a social art, perhaps all arts are... But more of them depends so much upon social encouragement.' (Cultural Heritage of India. Vol.iii-p-75) ସାମାଜିକ ସମର୍ଥନ ଏବଂ ପ୍ରୋତ୍ସାହନ ବ୍ୟତୀତ କଳାର ଏଇ ସୁକୁମାର ବିଭାଗଟି ଜଳବିନା ପାଦପର ମୁମୂର୍ଷୁ ଦଶା ଭଳି ଅଚିରେ ଶୁଷ୍କ ହୋଇଯିବା ନିଶ୍ଚିତ । ଓଡ଼ିଶାରେ ପ୍ରୟୋଗବାଦୀ ନାଟ୍ୟଧାରାର ବିକାଶ ଘଟିବା ପରେ ନାଟକ ପାଇଁ ବୌଦ୍ଧିକତା ନାମକ ବିଦେଶୀ ବସ୍ତୁର ଅପରିହାର୍ଯ୍ୟତା ସମ୍ପର୍କରେ ତର୍କ ଆରମ୍ଭ ହୋଇଯାଇଥିଲା । ତଥାକଥିତ 'Intellectual Drama'ର ପ୍ରବକ୍ତାମାନେ ଉନ୍ମୁକ୍ତ କୃପାଣ ହସ୍ତରେ ଯୁଦ୍ଧ କ୍ଷେତ୍ରକୁ ଡେଇଁ ପଡ଼ିଥିଲେ । ନାଟକ ହୃଦୟ କିମ୍ବା ମସ୍ତିଷ୍କ-କାହାପାଇଁ ଏ ପ୍ରଶ୍ନ ବାରମ୍ବାର ନାଟ୍ୟତତ୍ତ୍ୱବିତ୍‌ମାନଙ୍କୁ ଆଲୋଡ଼ିତ କରିଥିଲା । ଗୋଟିଏ ବାକ୍ୟରେ ଏହାର ଉତ୍ତର ଦିଆଯାଇପାରେ । ହୃଦୟ ସହିତ ମସ୍ତିଷ୍କ-ବିବାଦର ପ୍ରଶ୍ନ ସେତେବେଳେ ଉଠେ ଯେତେବେଳେ ସୃଷ୍ଟିରେ ବୌଦ୍ଧିକତା ନାମରେ ଅନାବଶ୍ୟକ ଏବଂ ଇଚ୍ଛାକୃତ ଦୁର୍ବୋଧ୍ୟତାକୁ ଏହାର ଅଳଙ୍କାରର ମର୍ଯ୍ୟାଦା ଦେଇ ଦିଆଯାଏ । ଅନ୍ୟଥା ଯାହା ବୁଦ୍ଧିଗ୍ରାହ୍ୟ ତାହା ହୃଦୟକୁ ମଧ୍ୟ ଗଭୀର ଭାବରେ ସ୍ପର୍ଶ କରେ । ପ୍ରାୟ ନିରକ୍ଷର ଲୋକ- କବିଟିର ରଚନାରେ ମଧ୍ୟ ଯୁକ୍ତିଗ୍ରାହ୍ୟ ବୌଦ୍ଧିକତାର ଅଭାବ ନଥାଏ । ବାସ୍ତବ ଜୀବନର ସଫଳ ରୂପାୟନ ହିଁ ମଞ୍ଚରୁ ଦର୍ଶକମାନଙ୍କର ଏକମାତ୍ର କାମ୍ୟ । ଏହା ସ୍ୱୀକାର କରନ୍ତି ବିଦେଶୀ ଆଲୋଚକ ଏମିଲ୍ ହାଟ୍ରିକ ଏବଂ ରବର୍ଟ ହାରବର । ସେମାନଙ୍କ ମତରେ- 'Events on stage are literal representation of reality'-( An Introduction to drama of criticism-1971-p.3) ଏହା କେଉଁ ପ୍ରକାରେ କରାଯିବ, ତାହା ନାଟ୍ୟକାର ଚିନ୍ତା କରିବେ । ତାଙ୍କ ପାଇଁ ଦର୍ଶକ ସମର୍ଥନ ଅତ୍ୟନ୍ତ ଜରୁରୀ । ସାମାଜିକ ପରିବର୍ତ୍ତନରେ ନାଟକର ଭୂମିକା ସମ୍ପର୍କରେ ଛୋଟରାୟ ମହାଶୟ ଅବହିତ ଥିଲେ । ଆବାଲ୍ୟରୁ ଓଡ଼ିଆ ଲୋକନାଟକ ସହିତ ତାଙ୍କର ଅନ୍ତରଙ୍ଗ ସମ୍ପର୍କ - ବିଶେଷକରି ବୈଷ୍ଣବ ପାଣି ଏବଂ ବାଳକୃଷ୍ଣ ମହାନ୍ତିଙ୍କର ଯାତ୍ରା ନାଟକଗୁଡ଼ିକର ସାମାଜିକ ପ୍ରତିକ୍ରିୟା ତାଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । କଳା ରୂପରେ ନାଟକର ଦାୟିତ୍ୱ

ହେଉଛି ସାମାଜିକ ପରିବର୍ତ୍ତନରେ ସକ୍ରିୟ ଭୂମିକା ଗ୍ରହଣ କରିବା- ଏହା ତାଙ୍କର ହୃଦ୍‌ବୋଧ ହୋଇଥିଲା । ଏହା ସେ ଉଲ୍ଲେଖ କରିଛନ୍ତି ତାଙ୍କର ଏକାଡ଼େମୀ ପୁରସ୍କାର ପ୍ରାପ୍ତି ସମ୍ବର୍ଦ୍ଧନାର ଉତ୍ତରରେ । ସେ କହିଛନ୍ତି, 'Technically, or otherwise I have thankfully accepted anything new that has come in my way, but never failed to have a nostalgic look at our past- "ନୂତନ ଏବଂ ପୁରାତନ- ଏ ଉଭୟ ମଧ୍ୟରେ ଏକ କଳାତ୍ମକ ସେତୁ ରଚନା କରି ଛୋଟରାୟ ମହାଶୟ ପ୍ରସ୍ତୁତ କରିଛନ୍ତି ନିଜର ନାଟ୍ୟିକ ଆଦର୍ଶ । ସମାଜର ଅଚଳାୟତନକୁ ଭାଙ୍ଗି ଏକ ପରିବର୍ତ୍ତିତ ସମାଜର ପ୍ରତିଷ୍ଠାର ଏଇ ପ୍ରୟାସରେ ସେ ଧନୀ ଦରିଦ୍ର, ଶିକ୍ଷିତ ଅଶିକ୍ଷିତ ସବୁବର୍ଗର ଦର୍ଶକଙ୍କୁ ସାଙ୍ଗରେ ନେବା ପାଇଁ ଉଦ୍ୟମ କରିଛନ୍ତି । ସେଥିପାଇଁ 'ରଙ୍ଗସଭା'ର ବେତାର ପ୍ରସାରଣରେ ଦେଶୀ ସାହେବ ପ୍ରାଣକୃଷ୍ଣ ପରିଜା ଯେଉଁଭଳି ଉଚ୍ଛ୍ୱସିତ ମନ୍ତବ୍ୟ ଦିଅନ୍ତି ମଫସଲର ଦିନ ମଜୁରିଆଟି ବି ସେମିତି ରୋମାଞ୍ଚିତ ହୋଇଯାଏ । ନାଟ୍ୟକାର ପ୍ରକୃତରେ ନାଟକ ରୂପରେ ଏକ ପାରିବାରିକ-ଶିଳ୍ପର ଦ୍ୱାର ଖୋଲି ଦେଇଥିଲେ ।

ସମାଜବାଦୀ ନାଟ୍ୟକାର ଜୀବନ ଉପରେ ପରିପୂର୍ଣ୍ଣ ଆସ୍ଥା ସ୍ଥାପନ କରିଥିବାରୁ ଏହାର ଟ୍ରାଜିକ୍ ଚେତନାକୁ ଗ୍ରହଣ ନକରି ଆଚାର୍ଯ୍ୟ ଭରତଙ୍କ ଚେଲା ବନିଯାଇଛନ୍ତି । ବିଷାଦବାଦ ଜୀବନକୁ ଜଟିଳ କରେ ବୋଲି ଭରତ 'ନାଟ୍ୟଶାସ୍ତ୍ର' ମାଧ୍ୟମରେ ଭାରତୀୟ ନାଟକରେ ଏହାର ପ୍ରଦର୍ଶନକୁ ନିଷେଧ କରିଛନ୍ତି । ଦୁଃଖଯନ୍ତ୍ରଣା ଜୀବନର ଏକ ଅଙ୍ଗ । ତେବେ ତାକୁ ଚରମ ସତ୍ୟ ବୋଲି ଗ୍ରହଣ କରିବାର କୌଣସି କାରଣ ନାହିଁ । ଛୋଟରାୟ ମହାଶୟ ଥିଲେ ଏଇ ତତ୍ତ୍ୱରେ ବିଶ୍ୱାସୀ/ ଭାରତୀୟ ଦର୍ଶନ ମଧ୍ୟ ଏହି ତତ୍ତ୍ୱର ପ୍ରଚାର କରେ । ନାଟ୍ୟକାର ଏହାର ପ୍ରଭାବରେ ସଯତାନର ତୀବ୍ର ପୀଡ଼ନରେ ଜୀବନ ବିଷାକ୍ତ ହୋଇ ପଡୁଥିବା ବେଳେ ତା'ର ଆଖିରୁ ଲୁହ ପୋଛି ଦେବା ପାଇଁ ସବୁବେଳେ ସମ୍ବେଦନଶୀଳ ହାତଟିଏ ଖୋଜି ବାହାର କରନ୍ତି । ଏହାହିଁ ହେଉଛି ତାଙ୍କର ନାଟ୍ୟାଦର୍ଶ ।

ଏହାପରେ ଆମେ ଛୋଟରାୟଙ୍କ ବହୁବର୍ଣ୍ଣୀ ସୃଷ୍ଟି ପ୍ରକ୍ରିୟାର ଅନ୍ୟ ଦୁଇଟି ଦିଗ ଉପରେ ସଂକ୍ଷିପ୍ତ ଆଲୋଚନା କରିବା । ଓଡ଼ିଶା ସାହିତ୍ୟର ବହୁ ପଠିତ, ବହୁଚର୍ଚ୍ଚିତ କିଛି ଲୋକପ୍ରିୟ ଉପନ୍ୟାସର ନାଟ୍ୟରୂପ ପ୍ରଦାନ କରି ତହିଁରେ ସଫଳ ହେବା ହେଉଛି ତାଙ୍କ ନାଟ୍ୟ ପ୍ରତିଭାର ଏକ ବିଶେଷ ଦିଗ । ଲୋକପ୍ରିୟତାର ସଂଜ୍ଞା ଓ ପରିସର ନିର୍ଦ୍ଧାରଣ କରି ସେ କହନ୍ତି, 'ଲୋକପ୍ରିୟତାର ଅର୍ଥ ଶସ୍ତା ବା ଅରୁଚିକର ନୁହେଁ । ରୁଚିଶୀଳ, ସମ୍ଭ୍ରାନ୍ତ ଓ ସମାଜର ପ୍ରତ୍ୟେକ ଶ୍ରେଣୀର ଦର୍ଶକ ବା ଶ୍ରୋତାଙ୍କୁ ଆକୃଷ୍ଟ କଲା ଭଳି ନାଟକ ହିଁ ଲୋକପ୍ରିୟ ନାଟକ ।' ତାଙ୍କର ଚାରୋଟି ଉପନ୍ୟାସର ମଞ୍ଚ ରୂପ ଏଇ ମାନଦଣ୍ଡରେ ଯେ ସଗୌରବେ ଉତ୍ତୀର୍ଣ୍ଣ ହୋଇଛି ଏହା ନକହିଲେ ମଧ୍ୟ ଚଳିବ ।

ଉପନ୍ୟାସର ନାଟ୍ୟ ରୂପରେ ସଫଳତା ଲାଭ କରିବା ଏକ ଅତ୍ୟନ୍ତ ବିରଳ ବିଷୟ । ଗୋବିନ୍ଦ ଶୂରଦେଓଙ୍କ ସମୟରୁ ଏ ଦିଗରେ ବହୁ ଉଦ୍ୟମ ହୋଇଆସିଛି । ମାତ୍ର ସଫଳତା

ପାଇବା ଖୁବ୍ କମ୍ କ୍ଷେତ୍ରରେ ଘଟିଛି । ଏହି କାର୍ଯ୍ୟ ପାଇଁ ନାଟ୍ୟକାରଙ୍କ ନାଟ୍ୟାବବୋଧ, ପରିମିତି ଜ୍ଞାନ, ସୂକ୍ଷ୍ମଆନୁପାତିକତା ପ୍ରଭୃତିର ପ୍ରୟୋଜନ ହୋଇଥାଏ । ବର୍ଣ୍ଣନାଧର୍ମୀ ଉପନ୍ୟାସର ମୂଳତତ୍ତ୍ୱକୁ ବଜାୟ ରଖି ଗ୍ରହଣ-ବର୍ଜନ ଓ ପଲ୍ଲବନ ଧାରାରେ ନାଟ୍ୟରୂପ ପ୍ରସ୍ତୁତ କରିବାକୁ ହୁଏ । ସଂଳାପ ଯୋଜନା ହୁଏ ଅନେକ କ୍ଷେତ୍ରରେ ନାଟ୍ୟକାରଙ୍କର ନିଜସ୍ୱ । ଏହି ଉପାୟରେ ନାଟ୍ୟକାର କେବେ କେବେ ନାଟ୍ୟରୂପକୁ ଏକ ମୌଳିକ ସୃଷ୍ଟିରେ ମଧ୍ୟ ପରିଣତ କରି ଦିଅନ୍ତି । ପ୍ରସଙ୍ଗକ୍ରମେ ଏଠାରେ ସୂଚାଇ ଦିଆଯାଇପାରେ ଯେ, ଛୋଟରାୟଙ୍କ ନାଟ୍ୟ ସମ୍ପତ୍ତି ପ୍ରଥମେ ଏକ ଉପନ୍ୟାସର ନାଟ୍ୟ ରୂପାନ୍ତରଣରୁ ହିଁ ଆରମ୍ଭ ହୋଇଥିଲା । ନାଟ୍ୟକାର କହନ୍ତି, "ପଢ଼ା ଶେଷକରି 'ନିଷ୍ପତ୍ତି' ଉପନ୍ୟାସର ଏକ ନାଟ୍ୟରୂପ ଦେବାପାଇଁ କେତୋଟି ଦୃଶ୍ୟ ସେଇ ସଙ୍ଗେ ସଙ୍ଗେ ଲେଖି ପକାଇଲି । ×× ସେଇ ଦୃଶ୍ୟ କେତୋଟି ହେଉଚି ମୋ ଲେଖକ ଜୀବନର ପ୍ରଥମ ନାଟ୍ୟ ରଚନା"- (ପଥିକ: ମୋ ନାଟ୍ୟ ଜଗତ-ଗ୍ରନ୍ଥାବଳୀ: ପୃ: ୨୯୦: ୧ମ ଖଣ୍ଡ) ।

ଏହାର ପ୍ରାୟ ଦୁଇଦଶନ୍ଧି ପରେ ନାଟ୍ୟକାର ସେଇ ଔପନ୍ୟାସିକଙ୍କର 'ଝଞ୍ଜା' ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତ କରନ୍ତି । ଉପନ୍ୟାସର ବହୁ ଅପ୍ରଧାନ ଘଟଣା ତଥା ଗୌଣ ଚରିତ୍ରକୁ ବାଦ୍ ଦେଇ ମୂଳ ଘଟଣାର ଏକ ରସଘନ ରୂପ ପ୍ରସ୍ତୁତ ହୋଇଛି ନାଟ୍ୟ ରୂପରେ । ନାଟକର ତିନୋଟି ଅଙ୍କ ଏବଂ ସତରଟି ଦୃଶ୍ୟରେ ନାଟ୍ୟକାର ନାୟିକା କ୍ଷଣପ୍ରଭାର ଏକ ସଂଗ୍ରାମୀ ତଥା ମାନବବାଦୀ ରୂପ ତିଆରି କରିଛନ୍ତି । କାହ୍ନୁଚରଣଙ୍କ ସାଂଳାପିକ ବିଭବ ସହିତ ଏଥିରେ ଯୁକ୍ତ ହୋଇଛି ନାଟ୍ୟକାରଙ୍କ ସ୍ୱତନ୍ତ୍ର ସୃଷ୍ଟି କୌଶଳ ।.ଔପନ୍ୟାସିକ ସୁଦୂର କୋରାପୁଟରେ ଥାଇ ବନ୍ଧୁମାନଙ୍କଠାରୁ 'ଝଞ୍ଜା'ର ନାଟ୍ୟସଫଳତା ଶୁଣି ନାଟ୍ୟକାରଙ୍କୁ ବଧାଇ ଜଣାଇବା ହେଉଛି ଏହାର ମଞ୍ଚ କୃତିତ୍ୱର ଏକ ଉଲ୍ଲେଖଯୋଗ୍ୟ ଦିଗ ।

'ଅମଡ଼ାବାଟ' ଉପନ୍ୟାସର ନାଟ୍ୟିକ ସଫଳତା ସମ୍ପର୍କରେ ମଧ୍ୟ ଏହା କୁହାଯାଇପାରିବ । ଉପନ୍ୟାସର ନାଟ୍ୟ-ଆବେଦନ ଏତେ ବଳିଷ୍ଠ ଯେ କେବଳ କେତେକ ଗୌଣ ଚରିତ୍ର ଏବଂ ଘଟଣାକୁ ବାଦ୍ ଦେଲେ ଏହା ଏକ ଚମତ୍କାର ନାଟକ ହୋଇଯିବ । ନାଟ୍ୟକାର ତାହା କରିଛନ୍ତି । ପ୍ରାଚୀନ ତଥା ନବୀନର ସଂଘର୍ଷ ସହିତ ଏଥିରେ ରହିଛି ଆଦର୍ଶ ଓ ବାସ୍ତବତାର ତୀବ୍ର ଦ୍ୱନ୍ଦ୍ୱର ବିବରଣୀ । ଯୁଦ୍ଧୋତ୍ତର କାଳର ବ୍ୟକ୍ତିକୈନ୍ଦ୍ରିକତା ଏବଂ ସ୍ୱାର୍ଥପରତା ସନାତନ ହିନ୍ଦୁ ଯୌଥ ପରିବାରର ମେରୁମୂଳକୁ ଯେଉଁଭଳି ଭାବରେ ଦୋହଲାଇ ଦେଇଛି, ଏ କାଳର ଦୁଇନାରୀ ମାୟା ଏବଂ କାବେରୀ ମଧ୍ୟରେ ଦ୍ୱନ୍ଦ୍ୱସୃଷ୍ଟି କରି ତାହାର ବିଶ୍ଳେଷଣ କରାଯାଇଛି । ଔପନ୍ୟାସିକା ପ୍ରମାଣ କରିଛନ୍ତି, ଯାହା ଆଖିକୁ ଦେଖାଯାଏ ତାହା ସବୁବେଳେ ସତ୍ୟ ହୋଇନପାରେ । ଉପନ୍ୟାସର ପ୍ରଥମ ନାରୀ ମାୟା- ଅଗ୍ନିଗର୍ଭା ଆଗ୍ନେୟଗିରି ତୁଳ୍ୟ ସଦା ଅଶାନ୍ତ, ବିସ୍ଫୋରଣ ନିମନ୍ତେ ପ୍ରତିନିୟତ ଉଦ୍ୟତ ଏବଂ ଦ୍ୱିତୀୟ ନାରୀ କାବେରୀ ନିଷ୍କମ୍ପ ଦୀପଶିଖା ଭଳି ଶାନ୍ତ, କାନ୍ତ ଏବଂ ପବିତ୍ର ମନେ ହୋଇଛି । କିନ୍ତୁ ପରିଣାମରେ ଦେଖାଯାଉଛି ଶାନ୍ତ ଦୀପଶିଖାରୁ ହିଁ ସୃଷ୍ଟି ହୋଇଛି ପ୍ରଳୟକାଳୀନ ଅଗ୍ନି-ଯାହା ଏକ ଶାନ୍ତ ତଥା ନିରୁପଦ୍ରବ

ପରିବାରକୁ ଜାଳିପୋଡ଼ି ଛାରଖାର କରିଦେଉଛି । ଆଗ୍ନେୟଗିରିରୁ କିନ୍ତୁ ଉତପ୍ତ ଲାଭା ବଦଳରେ ବାହାରି ଆସିଛି ସ୍ନିଗ୍ଧ ଶୀତଳ, ମନ୍ଦାକିନୀର ସ୍ୱଚ୍ଛ ଧାରା ଯାହା ଶଶିଭୂଷଣଙ୍କ ଚିର ସମସ୍ୟାଗ୍ରସ୍ତ ପରିବାରରେ ପ୍ରତ୍ୟୟର ଏକ ଅପୂର୍ବ ସମ୍ଭାବନା ସୃଷ୍ଟି କରିଛି । ନାଟକର ପରିଣତିରେ ନାଟ୍ୟକାର ଦେଖାଇଛନ୍ତି ଏକ ଅପୂର୍ବ କଳାକାରିତା, ପୀଡ଼ିତ ପିତାଙ୍କର ଆକୁଳ ଆହ୍ୱାନକୁ ଏଡ଼ାଇ ମାୟା ନିଜର ରୁଗ୍‌ଣା ଶାଶୂଙ୍କର ସେବାପାଇଁ ରହିଯିବାର ନିଷ୍ପତ୍ତି ନେବା ଦ୍ୱାରା । ଔପନ୍ୟାସିକା ଏ ଦାୟିତ୍ୱ ଛାଡ଼ିଥିଲେ ପାଠକମାନଙ୍କ ଉପରେ । ମାତ୍ର ପରମ୍ପରା ଓ ମୂଲ୍ୟବୋଧର ମୁଗ୍ଧ ଶିଷ୍ୟ ନାଟ୍ୟକାର ଦର୍ଶକ ପ୍ରତ୍ୟାଶାକୁ ଆଖିରେ ରଖି ଏଭଳି ଏକ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । ଏହାଦ୍ୱାରା ନାଟକର ମର୍ଯ୍ୟାଦା ବହୁଗୁଣିତ ହୋଇଛି ବୋଲି ଆମର ମତ ।

ଉପେନ୍ଦ୍ର କିଶୋର ଦାସଙ୍କର 'ମଲାଜହ୍ନ' ଉପନ୍ୟାସର ନାଟ୍ୟରୂପାନ୍ତର ହେଉଛି ଏ ଦିଗରେ ନାଟ୍ୟକାରଙ୍କର ତୃତୀୟ ପ୍ରଚେଷ୍ଟା । ମୂଳ ଉପନ୍ୟାସରେ ଘୃଣ୍ୟ ଜାତିପ୍ରଥା କୁସଂସ୍କାର, ଭୋଗବାଦୀ ଅଭିଜାତ- ସମାଜର ସ୍ଖଳନ ପ୍ରଭୃତି ଯୁଦ୍ଧଜନିତ ଅବକ୍ଷୟୀ ସମାଜ ଜୀବନର ଚିତ୍ର ସହିତ ଦୁଇଟି ତରୁଣ ଜୀବନ କିଭଳି ବିପର୍ଯ୍ୟସ୍ତ ଏବଂ ବ୍ୟର୍ଥ ହୋଇଯାଇଥିଲା, ତାହାର ବାସ୍ତବଧର୍ମୀ ଚିତ୍ର ପ୍ରଦାନ କରାଯାଇଛି । ନାଟ୍ୟକାର ଏହାକୁ ଅନୁସରଣ କରିଛନ୍ତି । ନାୟିକା ସତୀର ଆତ୍ମହତ୍ୟା ଉପନ୍ୟାସରେ ସୂଚନାତ୍ମକ ହୋଇଥିବା ବେଳେ ନାଟକରେ ଏହାକୁ ସ୍ୱାଭାବିକ କାରଣରୁ ନିର୍ଣ୍ଣୟାତ୍ମକ ରୂପ ଦିଆଯାଇଛି । ଦେହାତୀତ ପ୍ରେମର ବ୍ୟର୍ଥ ଏବଂ କରୁଣ ଚିତ୍ର ପ୍ରଦାନ କରି ଔପନ୍ୟାସିକ ସମାଜକୁ ଯେଉଁ ବାର୍ତ୍ତା ଦେବାକୁ ଚାହିଁଥିଲେ ନାଟ୍ୟକାରଙ୍କ ନାଟ୍ୟାଦର୍ଶ ସହିତ ତାହା ସମ୍ପୂର୍ଣ୍ଣ ଖାପ ଖାଇଯାଇଥିବାରୁ ଉପନ୍ୟାସ ସହିତ ତାଙ୍କର ଏକ ଆତ୍ମିକ ସମ୍ପର୍କ ସ୍ଥାପିତ ହୋଇଛି, ଯାହା ନାଟକକୁ ପ୍ରାଣବନ୍ତ କରିଛି । 'ମଲାଜହ୍ନ' ପରିବେଷଣରେ ପରିଚ୍ଛନ୍ନ ଏବଂ ପ୍ରକୃତିରେ କରୁଣ ଗ୍ରାମ ଉତ୍କଳର ଖଣ୍ଡିଏ ଉତ୍କୃଷ୍ଟ ଚିତ୍ର । ଆମ ଜାଣିବାରେ ଏହା ନାଟ୍ୟକାରଙ୍କର ଏକମାତ୍ର ଟ୍ରାଜିକ୍-ଧର୍ମୀ ନାଟକ ।

ମଞ୍ଚ ପାଇଁ ନାଟ୍ୟକାରଙ୍କର ଉପନ୍ୟାସର ଶେଷ ନାଟ୍ୟରୂପ ହେଉଛି ହରେକୃଷ୍ଣ ମହତାବଙ୍କର ରାଜନୈତିକ ଉପନ୍ୟାସ 'ପ୍ରତିଭା' । ଉପନ୍ୟାସର ଘଟଣା ବୈଚିତ୍ର୍ୟ, ଚରିତ୍ର ବାହୁଲ୍ୟ ଇତ୍ୟାଦି ଭିତରେ ଏହାର ନାଟ୍ୟରୂପର ବୈଶିଷ୍ଟ୍ୟ ପ୍ରତିଷ୍ଠା ନାଟ୍ୟକାରଙ୍କର ପାଇଁ ଥିଲା ଏକ ଆହ୍ୱାନ । ନିଜସ୍ୱ ଶୈଳୀରେ ନାଟ୍ୟକାର ଏହି ଉପନ୍ୟାସର ଏକ ସଫଳ ନାଟ୍ୟରୂପଦେଇ ନିଜର ଶକ୍ତିମତ୍ତାର ପ୍ରମାଣ ରଖିଛନ୍ତି । ପୁଣି ଉପନ୍ୟାସରେ ସଂଳାପର ପରିମାଣ ଅପେକ୍ଷାକୃତ କମ୍ ହୋଇଥିବାରୁ ନାଟ୍ୟରୂପର ସାଂଳାପିକ କୃତିତ୍ୱ ହେଉଛି ଏକାନ୍ତ ଭାବରେ ନାଟ୍ୟକାରଙ୍କର । ସ୍ୱଳ୍ପ ହେଲେ ମଧ୍ୟ ଏଥିରେ ଯେଉଁ ପାରିବେଶିକ ହାସ୍ୟରସର ବ୍ୟଞ୍ଜନା ସୃଷ୍ଟି କରାଯାଇଛି, ତାହା ଦ୍ୱାରା ଉପନ୍ୟାସର ଶୁଷ୍କତା ବହୁ ପରିମାଣରେ ଦୂର ହୋଇ ନାଟକ ଉପଭୋଗ୍ୟ ହୋଇଛି ।

ସଫଳନାଟ୍ୟ ରୂପ ପ୍ରଦାନରେ ଛୋଟରାୟ ମହାଶୟ ଅଦ୍ୟାବଧି ଯେ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ରହିଛନ୍ତି ଏହା ନ କହିଲେ ମଧ୍ୟ ଚଳିବ । ଏହାଛଡ଼ା ସେ 'ଶ୍ରୀଜଗନ୍ନାଥ',

'ଅମଡ଼ାବାଟ, 'ନୂଆବୋଉ', 'ବଧୂନିରୂପମା', 'ମାଟିର ମଣିଷ', 'ଅଦିନ ମେଘ' ଏବଂ 'ଅଭିନେତ୍ରୀ' ପ୍ରଭୃତି ଚଳଚ୍ଚିତ୍ରର ଚିତ୍ରନାଟ୍ୟ ତଥା ସଂଳାପ ରଚନା କରି ତହିଁରେ ସଫଳ ହୋଇଥିବା ତାଙ୍କର ନାଟ୍ୟପ୍ରତିଭାର ଅନ୍ୟଏକ ଉଜ୍ଜ୍ୱଳଦିଗ । ପୁଣି ବେତାର ମାଧ୍ୟମରେ ପ୍ରାୟ ବିସ୍ମୃତ ଏବଂ ଅବଲୁପ୍ତ କଳାସମୃଦ୍ଧ ଯାତ୍ରାଯୁଗର ବୈଷ୍ଣବପାଣି, ବାଳକୃଷ୍ଣ ମହାନ୍ତି ପ୍ରଭୃତି ଯାତ୍ରାକାରମାନଙ୍କର କୃତି ସମୂହର ପୁନରୁଦ୍ଧାର ଏବଂ ପ୍ରତିଷ୍ଠା ହେଉଛି ଯାତ୍ରାପ୍ରେମୀ ଛୋଟରାୟଙ୍କର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଉଦ୍ୟମ । ବେତାର କର୍ତ୍ତୃପକ୍ଷରଙ୍କର ଆହ୍ୱାନକ୍ରମେ ସେ ପ୍ରଥମେ ବୈଷ୍ଣବ ପାଣିଙ୍କର 'ରଙ୍ଗସଭା' ଗୀତିନାଟ୍ୟର ବେତାର ରୂପ ପ୍ରଦାନ କରି ଏହାର ପ୍ରସାରଣ ଘଟାଇଲେ ୧୯୬୦ ମସିହା ନଭେମ୍ବର ୧୬ତାରିଖରେ । ଏହାର ଅଭୂତପୂର୍ବ ଲୋକପ୍ରିୟତା ତାଙ୍କୁ ପାଣି ଏବଂ ମହାନ୍ତିଙ୍କର ଅନ୍ୟ କେତେକ ଗୀତିନାଟ୍ୟର ବେତାର ରୂପ ପ୍ରସ୍ତୁତ କରିବା ନିମନ୍ତେ ପ୍ରେରିତ କରିଥିଲା । ଏହା ସହିତ ସେ ପ୍ରାୟ ୧୭ଟି ମୌଳିକ ଗୀତିନାଟ୍ୟ ରଚନା କରି ଏ କ୍ଷେତ୍ରରେ ଏକ ପରମ୍ପରା ସୃଷ୍ଟି କରିଥିଲେ । ପ୍ରସଙ୍ଗକ୍ରମେ ଏଠାରେ ସୂଚାଇ ଦିଆଯାଇପାରେ ଏହି ସମୟରେ ପ୍ରୟୋଗ ଧର୍ମୀ ନାଟକର ମଞ୍ଚାୟନ ଏବଂ ତଜ୍ଜନିତ ଦର୍ଶକ ଅସହଯୋଗ ଫଳରେ ଭାରତୀୟ ମଞ୍ଚକଳାର ଯଥାର୍ଥ ଦୁର୍ଦ୍ଦିନ ଆରମ୍ଭ ହୋଇଯାଇଥିବାରୁ ଏହାର ଏକ ବିକଳ୍ପର ସନ୍ଧାନ କରାଯାଉଥିଲା । ତାହାର ଏକ ଯଥାର୍ଥ ପ୍ରତିଦ୍ୱନ୍ଦ୍ୱୀ ରୂପରେ ଗୀତିନାଟ୍ୟ ବେତାରରୁ ଯାଇ ମଞ୍ଚମଣ୍ଡନ କରିବା ଏବଂ ଏହି ସମୟରେ ବହୁ ଗୀତି ନାଟ୍ୟକାର ସୃଷ୍ଟି ହେବା ଓଡ଼ିଆ ନାଟକ ପାଇଁ ଏକ ସ୍ମରଣୀୟ ଘଟଣା । ସେତେବେଳେ ବର୍ଷୀୟାନ ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ମଧ୍ୟ କେତେ ଖଣ୍ଡ ଗୀତିନାଟ୍ୟ ରଚନା କରିଥିବାର ଆମର ମନେଅଛି । ପ୍ରାୟ ଗୋଟିଏ ଦଶନ୍ଧି ଧରି ଓଡ଼ିଆ ଗୀତିନାଟ୍ୟର ଏହି ନୂତନ ପରମ୍ପରା ସକ୍ରିୟ ରହିଥିଲା । ଏହି ସମୟରେ ହିଁ ଛୋଟରାୟ ଫକୀରମୋହନଙ୍କ କାଳଜୟୀ ଗଳ୍ପ 'ପେଟେଣ୍ଟ ମେଡ଼ିସିନ୍'ର ବେତାର 'ସଂଗୀତ ନାଟ୍ୟ' (Musical Play) ରୂପ 'ଶ୍ରୀମତୀ ସମାର୍ଜ୍ଜନୀ' ନାମରେ ପ୍ରସ୍ତୁତ କରି ସମଗ୍ର ରାଜ୍ୟରେ ଏକ ହଇଚଇ ସୃଷ୍ଟି କରିଦେଇଥିଲେ । ଏହା ସମ୍ଭବତଃ ୧୯୭୪ ମସିହାର ସର୍ବଭାରତୀୟ ବେତାର ନାଟକ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ମଧ୍ୟ ଅଧିକାର କରିଥିଲା ।

ପାରମ୍ପରିକ ଭାବାନୁସାରୀ ସଂଗୀତରେ ପ୍ରଚୁର ଜ୍ଞାନ, ଉପଯୁକ୍ତ ଶବ୍ଦ ଯୋଜନା କୌଶଳ ଏବଂ ଉପଯୁକ୍ତ ବିଷୟ ପ୍ରବେଶ- ଏହି ତିନୋଟି ଉପାଦାନର କଳାତ୍ମକ ସମନ୍ୱୟରେ ଗୀତିନାଟ୍ୟର ପ୍ରାଣ ପ୍ରତିଷ୍ଠା ହୁଏ । ଛୋଟରାୟ ମହାଶୟଙ୍କର ଆବାଲ୍ୟରୁ ଏହା ସହିତ ନାଡ଼ିର ସମ୍ପର୍କ ରହି ଥିଲା ଯାହା ତାଙ୍କୁ ଜଣେ ସଫଳ ଗୀତିନାଟ୍ୟକାର ଭାବରେ ପ୍ରତିଷ୍ଠା ଦେଇଥିଲା । ମଞ୍ଚନାଟକର ଘୋର ଦୁର୍ଦ୍ଦିନରେ ତଥାକଥିତ ପରୀକ୍ଷାଧର୍ମୀ ନାଟକର ଯଥାର୍ଥ ପ୍ରତିଦ୍ୱନ୍ଦ୍ୱୀ ରୂପରେ ଗୀତିନାଟ୍ୟ ପରମ୍ପରାର ସୃଷ୍ଟି କରି ଛୋଟରାୟ ପ୍ରକୃତରେ ସେ ଦିନର ମଞ୍ଚକୁ ମହାସଙ୍କଟରୁ ରକ୍ଷା କରିଥିଲେ ।

ନାଟ୍ୟକାର ୧୯୫୬ ମସିହାରେ ବେତାର କେନ୍ଦ୍ରରେ ଯୋଗଦେଇଥିଲେ ହେଁ ଏହା

ସହିତ ସମ୍ପୃକ୍ତ ଥିଲେ ଏହାର ପ୍ରତିଷ୍ଠା କାଳରୁ ଜଣେ ନାଟ୍ୟକାର ଭାବରେ । ମନୋରଂଜନ ଦାସ ଏବଂ ଗୋପାଳ ଛୋଟରାୟ । ଏ ଉଭୟ ନାଟ୍ୟକାରଙ୍କ ପ୍ରତିଭା ବିକାଶରେ କଟକ ବେତାରର ଅବଦାନକୁ କସ୍ମିନ୍‌କାଳେ ଭୁଲି ହେବନାହିଁ । ଅବଶ୍ୟ ଉଭୟେ ବେତାରରେ ପ୍ରବେଶ କରିବା ପୂର୍ବରୁ ନାଟ୍ୟକାର ରୂପରେ ପ୍ରତିଷ୍ଠା ଲାଭ କରିସାରିଥିଲେ । ତେବେ ଉଭୟଙ୍କର ସର୍ଜନା-ଶକ୍ତିର ବିକାଶ ଏବଂ ପରୀକ୍ଷା ନିମନ୍ତେ ବେତାର ହିଁ ସୁଯୋଗ ସୃଷ୍ଟି କରିଥିଲା । ବେତାରକୁ ଛୋଟରାୟ ଏକ ସ୍ୱତନ୍ତ୍ର ପରିଚୟ ଦେଇଛନ୍ତି ଏବଂ ବେତାର ମଧ୍ୟ ତାଙ୍କୁ ସ୍ୱପରିଚୟର ଏକ ଅବିଚ୍ଛିନ୍ନ ଅଂଗ ରୂପରେ ଗ୍ରହଣ କରିଛି । ତାଙ୍କର ପ୍ରଥମ ବେତାର ନାଟକ 'ସମ୍ରାଟ ନନ୍ଦିନୀ ଜାହାନାରା' କଟକ ବେତାରରୁ ପ୍ରସାରିତ ହୋଇଥିଲା ୧୯୪୯ ଜୁନ୍ ପନ୍ଦର ତାରିଖରେ । ବେତାର ପାଇଁ ସେ ପ୍ରାୟ ଚାରିଶହରୁ (କାହା କାହା ମତରେ ପାଞ୍ଚଶହ) ଊର୍ଦ୍ଧ୍ୱନାଟକ ଫିଚର ସଂଗୀତନାଟ୍ୟ ରଚନା କରିଛନ୍ତି । ସମ୍ପୂର୍ଣ୍ଣ ରଚନାର ପାଣ୍ଡୁଲିପି ଉଦ୍ଧାର କରାଯାଇ ପାରିନାହିଁ ।

ବେତାର ପାଇଁ ତାଙ୍କର ଅନ୍ୟତମ ସ୍ମରଣୀୟ ଅବଦାନ ହେଉଛି ଧାରାବାହିକ ନାଟକ । ଯଦିଓ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଏସବୁ ପୂର୍ବରୁ ସୃଷ୍ଟି ହୋଇସାରିଥିଲା, ଓଡ଼ିଶାରେ ଛୋଟରାୟ ହିଁ ଏହାର ପ୍ରଥମ ସ୍ରଷ୍ଟା ହେଲେ । ସେ 'ଶୁକ ଉବାଚ' (୬ଟି ଚିତ୍ର), ପୂରାପୁରି ପାରିବାରିକ (୩୩ଟି ଚିତ୍ର) ବିଭ୍ରାଟ (୧୦ଟି ଚିତ୍ର), ଗାଁ ପରିମଳ (୯ଟି ଚିତ୍ର), ଡାକ୍ତରବାବୁ (୧୨ଟି ଚିତ୍ର) ଶ୍ରୀହରିଙ୍କ ସଂସାର (୧୮ଟି ଚିତ୍ର), ଅବସର ଗ୍ରହଣ ପରେ (୧୨ଟି ଚିତ୍ର), ବହୁରୂପୀ (୬ଟି ଚିତ୍ର), ଦୃଷ୍ଟିପାତ (୬ଟି ଚିତ୍ର) ଏମିତି ହୁଏ ନାହିଁ (୮ଟି ଚିତ୍ର) ପ୍ରଭୃତି ଧାରାବାହିକ ରଚନା କରି ଏହାର ଏକ ପରମ୍ପରା ସୃଷ୍ଟି କରିଥିଲେ । ଗୋଟିଏ ଗୋଟିଏ ଧାରାବାହିକର ପ୍ରସାରଣ ଶେଷ ହେବା ପରେ ଏହାକୁ ଚଳାଇ ରଖିବା ପାଇଁ ଶ୍ରୋତା ମହଲର ଦାବିକୁ ତାଙ୍କର ଲୋକପ୍ରିୟତାର ପ୍ରମାଣ ରୂପରେ ଉପସ୍ଥାପନ କରାଯାଇପାରେ । ଏଥି ମଧ୍ୟରୁ 'ପୂରାପୁରି ପାରିବାରିକର'ର ଦଶଟି ଚିତ୍ର 'ମାୟାର ସଂସାର' ନାମରେ ଅନୂଦିତ ହୋଇ ବଂଗଦୂରଦର୍ଶନ କେନ୍ଦ୍ର ଦ୍ୱାରା ପ୍ରସାରିତ ହୋଇଛି । ନିଜର ବହୁବର୍ଣ୍ଣୀ ବେତାର ସୃଷ୍ଟି ସମ୍ପର୍କରେ ମନ୍ତବ୍ୟ ଦେଇ ସ୍ୱୟଂ ନାଟ୍ୟକାର କହନ୍ତି, "ଶ୍ରୁତି ମାଧ୍ୟମରେ ଏଇ କାର୍ଯ୍ୟକ୍ରମ ପ୍ରତି ଶ୍ରୋତାଙ୍କୁ ଆକୃଷ୍ଟ କରି ରଖିବା ପାଇଁ ଯେଉଁ ନାଟକୀୟ ଭାଷାର ସଂଳାପ ପ୍ରୟୋଜନ ସେଗୁଡ଼ିକ ପ୍ରତି ମୁଁ ସବୁବେଳେ ଦୃଷ୍ଟି ଦେଇ ଆସିଛି ।"

ସଂଳାପ ହେଉଛି ଛୋଟରାୟଙ୍କର ନାଟ୍ୟିକ- ସଫଳତାର ଏକ ବିଶେଷ ଦିଗ । ଏହାର ସରଳ, ସ୍ୱଚ୍ଛନ୍ଦ ଏବଂ ସୁବୋଧ ଶବ୍ଦ ପ୍ରୟୋଗ କୌଶଳ ସହଜରେ ସବୁ ଶ୍ରେଣୀର ଶ୍ରୋତା/ ଦର୍ଶକଙ୍କୁ ପ୍ରଭାବିତ କରେ । ନିଜ ନିଜ ସ୍ତରରୁ ହିଁ ସେମାନେ ନାଟ୍ୟକାରଙ୍କ ସହ ଯୋଗାଯୋଗ କରିପାରନ୍ତି । ସବୁଠାରୁ ବଡ଼ କଥା ସଂଳାପ କଳ୍ପନାରେ କୃତ୍ରିମତାର ଲେଶ ମାତ୍ର ନଥାଏ । ପୂର୍ବସଂଳାପରୁ ପର ସଂଳାପର ପ୍ରକାଶ ହୁଏ ସ୍ୱତଃସ୍ଫୂର୍ତ୍ତ । ସଂଳାପରେ ହିଁ ନିହିତ ଥାଏ ନାଟକର ପ୍ରାଣ (A play is its dialogue) – ଏ ବିଷୟ କହନ୍ତି ଆଲୋଚିକା

ମାର୍ଜୋରି ବୋଲ୍‌ଟନ (Marjoire Boulton) ନାଟ୍ୟକାର ଏହା ଭଲ ଭାବରେ ଜାଣିଥିବାରୁ ନିଜ ସୃଷ୍ଟି ନିମନ୍ତେ ଶ୍ରୁତିସୁଭଗ, ସୁବୋଧ, ସାବଲୀଳ କାବ୍ୟିକ ତଥା କୃଚିତ କ୍ଷେତ୍ରରେ ଅନୁଭବସିଦ୍ଧ- ଦାର୍ଶନିକ ସଂଳାପର ପରିକଳ୍ପନା କରିଛନ୍ତି । ସେଥିପାଇଁ ତାଙ୍କୁ କୁହାଯାଇପାରେ 'ମଧୁସ୍ରାବୀ ସଂଳାପକାର' ।

ନାଟକ ରଚନା ବ୍ୟତୀତ ଛୋଟରାୟ ଜୀବନର ଉତ୍ତରାର୍ଦ୍ଧରେ ଗଳ୍ପ ରଚନା ଆରମ୍ଭ କରି ତହିଁରେ ସଫଳ ହୋଇଛନ୍ତି । ଅବଶ୍ୟ ଔପନ୍ୟାସିକ ବିଭୂତି ପଟ୍ଟନାୟକଙ୍କ ସୂଚନା ଅନୁସାରେ ସେ ଜୀବନର ପୂର୍ବାର୍ଦ୍ଧରେ ମଧ ଗଳ୍ପ ଲେଖିଛନ୍ତି । ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ଗଳ୍ପସମୂହ ସଂକଳିତ ହୋଇଛି (କ) 'ସେଇଫୁଲ (୧୯୮୯) ଏବଂ (ଖ) 'ଚନ୍ଦ୍ରମୁଖୀ (୧୯୯୩) ନାମକ ଦୁଇଟି ଗଳ୍ପ ସଂଗ୍ରହରେ । ଗାଳ୍ପିକ ଛୋଟରାୟଙ୍କ ପ୍ରଚଣ୍ଡ ନାଟ୍ୟସତ୍ତା ତାଙ୍କର କଥାକାର ଭାବମୂର୍ତ୍ତିକୁ ମ୍ଳାନ କରିଦେଇଥିଲେ ହେଁ, ଏହା ସ୍ୱତନ୍ତ୍ର ଆଲୋଚନାର ଦାବି ରଖେ ।

ଏହା ଛଡ଼ା ରହିଛି ତାଙ୍କର ଆତ୍ମଜୀବନୀ ମୂଳକ ଗ୍ରନ୍ଥ 'ପଥିକ'(୧୯୯୫) । ଜୀବନର ଯାତ୍ରାରେ ଜଣେ ପଥିକ ଭାବରେ ଯାଉ ଯାଉ ଯେଉଁ ଘଟଣା ବା ଚରିତ୍ର ତାଙ୍କୁ ପ୍ରଭାବିତ କରିଛି କେବଳ ସେହି ବିଷୟହିଁ ସ୍ଥାନିତ ହୋଇଛି ଏହି ଗ୍ରନ୍ଥରେ । ଜୀବନ ଓ ଜଗତ୍ ପ୍ରତି ଏହା ହେଉଛି ଜଣେ ବିମୁଗ୍ଧ ପଥିକର ଆବେଗାପ୍ଳୁତ ଶ୍ରଦ୍ଧାଞ୍ଜଳି ଯହିଁରୁ ଜଣେ ସଦାଶୟ, ସଚ୍ଚୋଟ ନିର୍ଭୀକ ଏବଂ ମାନବପ୍ରେମୀ ପୂର୍ଣ୍ଣାଙ୍ଗ ମଣିଷର ପରିଚୟ ମିଳେ ।

ଏକ ପ୍ରତ୍ୟୟପୂର୍ଣ୍ଣ ଆଶାବାଦ ଏବଂ ସକାରାତ୍ମକ ଦୃଷ୍ଟିକୋଣ ନେଇ ନାଟ୍ୟକାର ନିଜର ଜୀବନ ଜିଇଁଛନ୍ତି । ସେ ଲକ୍ଷ୍ୟ କରିଛନ୍ତି, ଜୀବନ ଯଦି ହୁଏ ଏକ ଯୁଦ୍ଧକ୍ଷେତ୍ର ସେଠାରେ 'ମୁଁ'କାରର ପ୍ରତିଷ୍ଠା ପାଇଁ ଅହରହ ସଂଗ୍ରାମ ଚାଲିଛି । କେବଳ ଅନ୍ୟକୁ ଭଲପାଇ ଶିଖିଲେ ଏବଂ ଅନ୍ୟ ଉପରେ ମମତାମୟ ପ୍ରତ୍ୟୟପୂର୍ଣ୍ଣ ହାତଟିଏ ରଖିଦେଲେ ସ୍ୱାର୍ଥପରତାର ନାରକୀୟ ଅନୁଭବ ଭିତରୁ ସୃଷ୍ଟି ଦେଖାଯିବ ମଙ୍ଗଳମୟ ଏବଂ ସୁନ୍ଦର । ନିଜ ସୃଷ୍ଟିରେ ସେ ଏଇ ସୁନ୍ଦରର ଆବାହନ ହିଁ କରିଯାଇଛନ୍ତି । ପ୍ରତ୍ୟୟର ଫୁତ୍କାରରେ ଉଡ଼ାଇ ଦେଇଛନ୍ତି ଯେତେକ ସନ୍ଦେହ ଆଉ ସଂକୀର୍ଣ୍ଣତାର କୁହେଳିକାକୁ । ହାଡ଼ଥରା ଶୀତ ଆନନ୍ଦ ଉଲ୍ଲାସମୟ ବସନ୍ତକୁ ଆମନ୍ତ୍ରଣ ଜଣାଇଲା ପରି ତାଙ୍କର ଚିର ଅଭିନବ ସୃଷ୍ଟିରେ ସେ ଦୁଃଖର ମହାସମୁଦ୍ରରେ ପଥହରା ଜୀବନ-ପୋତ ନିମନ୍ତେ ସମ୍ଭାବନାମୟ ବତୀଘରଟିଏ ଖୋଜି ଆଣିଛନ୍ତି । ମଣିଷ ଉପରେ ତାଙ୍କର ପ୍ରତ୍ୟୟର ସ୍ୱର କିଭଳି ମେଘମନ୍ଦ୍ର, ତାହା ସେ ପ୍ରକାଶ କରିଛନ୍ତି ମାତ୍ର ଗୋଟିଏ ବାକ୍ୟରେ । ତାହା ହେଲା- "ସ୍ୱର୍ଗରେ ହେଉ କି ନର୍କରେ ହେଉ, ଦୁଇଟି ମୁକ୍ତାକୁ ଯୁଗଯୁଗଧରି ଏକାଠି ରଖିଲେ ବି ସେମାନଙ୍କ ଦେହରେ ଏତେ ଟିକେ ବି କଳଙ୍କ ଲାଗିବ ନାହିଁ । ସେମାନେ ନିଷ୍କଳଙ୍କ"- (ଝଞ୍ଜା-ଗ୍ରନ୍ଥାବଳୀ-୨ୟ-ପୃ: ୩୮) ଜୀବନ କ୍ଷେତ୍ରରୁ ସଂଗ୍ରହ କରିଥିବା ଏହିଭଳି ଅନୁଭବରେ ସୃଷ୍ଟି ଯେ ଚିର ଅମୃତମୟ ହୋଇ ଝଲକି ଉଠିବ, ଏଥିରେ ସନ୍ଦେହ କ'ଣ ?

ଛୋଟରାୟଙ୍କ ସୃଷ୍ଟିରେ 'ପ୍ରେମ' ସମ୍ପର୍କରେ କେବଳ ଏତିକିମାତ୍ର କୁହାଯାଇପାରିବ ଯେ, ଦେହଜ ଏବଂ ଉଚ୍ଛୃଙ୍ଖଳ ନୀତି ନୈତିକତାହୀନ କାମନା ବଦଳରେ ସେ ଦେହାତୀତ, ସଂଯତ ଏବଂ ଶାଶ୍ୱତ ପ୍ରେମ ଉପରେ ଗୁରୁତ୍ୱ ଦେଇଛନ୍ତି । ପାରମ୍ପରିକ ଅଭିଜାତ ପରିବାରରୁ ସେ ଏହି ଶିକ୍ଷା ପାଇଥିଲେ । ଜୀବନ ପାଇଁ ପ୍ରେମର ପ୍ରୟୋଜନ ପ୍ରଶ୍ନାତୀତ । ଯୁଦ୍ଧୋତ୍ତର କାଳୀନ ଭୋଗବାଦୀ ସଂସ୍କୃତିରେ ଦେହ ସର୍ବସ୍ୱ ପ୍ରେମର ଉତ୍ତାଳ ତରଙ୍ଗ ସନାତନ ଭାରତୀୟ ସଂସ୍କୃତିକୁ ଗ୍ରାସ କରିବାକୁ ମାଡ଼ିଆସୁଥିବା ବେଳେ ନାଟ୍ୟକାର ଏହା ବିରୁଦ୍ଧରେ ସ୍ୱର ଉଠାଇଛନ୍ତି । ତୁଳସୀଚଉରା ମୂଳରେ ସାୟନ୍ତନୀ ପ୍ରଦୀପର ନିଷ୍କମ୍ପ ଶିଖା ଭଳି ନାଟ୍ୟକାରଙ୍କର ପ୍ରେମ ଶାନ୍ତ, ନିଥର କିନ୍ତୁ ଉଜ୍ଜ୍ୱଳ ଆଲୋକ ଶିଖା ଦ୍ୱାରା ପରିବେଶକୁ ପବିତ୍ର କରେ । ଦୂରାଗତ ବେଦମନ୍ତ୍ରର ଧ୍ୱନିଭଳି ତନୁମନକୁ ଅପୂର୍ବ ପ୍ରଶାନ୍ତିରେ ଭରିଦିଏ । 'ଫେରିଆ' ନାଟକର ଶାନ୍ତି, 'ଭରସାର ନୀଳା', ଏବଂ 'ଶଙ୍ଖାସିନ୍ଦୂର'ର ମାଧବୀ ପ୍ରଭୃତି ଚରିତ୍ର ସାହାଯ୍ୟରେ ନାଟ୍ୟକାର ପ୍ରେମର ଏହି ଗୈରିକ ରୂପର ବର୍ଣ୍ଣନା କରିଛନ୍ତି । ଅନ୍ୟପାଇଁ ନିଜକୁ ସମ୍ପୂର୍ଣ୍ଣ ଭାବରେ ଉଜାଡ଼ି ଦେବାରେ ପ୍ରେମର ଯେଉଁ ଚିରନ୍ତନ-ରୂପ ଫୁଟି ଉଠେ- ଛୋଟରାୟ ତାହାର ସମର୍ଥକ । ତାଙ୍କ ସୃଷ୍ଟିରେ ପ୍ରେମ ତେଣୁ ଶାରଦୀୟ ନଦୀତୁଲ୍ୟ ନିସ୍ତରଙ୍ଗ, ଗଙ୍ଗାଜଳ ଭଳି ପବିତ୍ର ତଥା ପୂର୍ଣ୍ଣିମା ଜହ୍ନ ଭଳି ଉଜ୍ଜ୍ୱଳ ।

ସାମାଜିକ ପରିବର୍ତ୍ତନର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଛୋଟରାୟଙ୍କର ଜନ୍ମ । ଦୁଇଦୁଇଟା ବିଶ୍ୱଯୁଦ୍ଧ ଦେଶୀୟ ପରମ୍ପରାକୁ ସମ୍ପୂର୍ଣ୍ଣ ଦୋହଲାଇ ଦେଇ ହେତୁବାଦୀ ବିଦେଶୀ ସଂସ୍କୃତିର ପ୍ରଚଣ୍ଡ ଆକ୍ରମଣରେ ମଣିଷ ମୁହୂର୍ତ୍ତଜୀବୀ ହୋଇ ଉଠୁଛି । ଅସୁରକ୍ଷା ଭାବନାରେ ପ୍ରତିନିୟତ ପୀଡ଼ିତ ଅଧ୍ୟାତ୍ମବାଦୀ ଭାରତୀୟ ଆତ୍ମାରୁ ରକ୍ତ କ୍ଷରିତ ହେଉଛି । ରୁଚି ପରିବର୍ତ୍ତନର ତୀବ୍ରସ୍ରୋତଠାରୁ ନିଜକୁ ସାବଧାନତାର ସହିତ ଦୂରରେ ରଖି ଛୋଟରାୟ ନିଜର ପରମ୍ପରା ଏବଂ ଐତିହ୍ୟକୁ ନେଇ ସନ୍ତୁଷ୍ଟ ରହିଛନ୍ତି । ନୂତନ ସଂସ୍କୃତିର ପ୍ରବାହରେ ନିଜକୁ ଭସାଇ ଦେଇନାହାନ୍ତି- ଏହାହିଁ ହେଉଛି ତାଙ୍କର ବୈଶିଷ୍ଟ୍ୟ ।

ନାଟ୍ୟକାରଙ୍କ ସୃଷ୍ଟିର ନାରୀ ପ୍ରେମମୟୀ, କଲ୍ୟାଣୀ ଏବଂ ମମତାର ସାକାର ପ୍ରତିମା-ପରମ୍ପରାର ଏକ ପ୍ରସାରିତ ରୂପ । ପ୍ରୟୋଜନ ବୋଧରେ ସେ ଅମାପ ଶକ୍ତିଧାରିଣୀ, ବ୍ୟକ୍ତିତ୍ୱମୟୀ ଏବଂ ବିଦ୍ରୋହିଣୀ । ମମତାମୟୀ ରୂପରେ ଆମେ ସେମାନଙ୍କୁ ଭେଟୁ ମାୟା, ତୁଳସୀ ଏବଂ ଉର୍ବଶୀ ରୂପରେ । ଭୋଗିନୀ ଏବଂ ମନ୍ଥରା ରୂପେ ଆମେ ସେମାନଙ୍କର ସାକ୍ଷାତ ପାଉ ଶ୍ରୀମତୀ ଦାସ, ମଣି ଅପା ଏବଂ ଲଳିତା ଭାବରେ । କ୍ଷଣପ୍ରଭା ହେଉଛି ନାରୀର ବିଦ୍ରୋହିଣୀ ରୂପ । ଏହିଭଳି ନାଟ୍ୟକାର ନାରୀର ବର୍ଣ୍ଣିଳ ବ୍ୟକ୍ତିତ୍ୱର ବିଶ୍ଳେଷଣ କରିଥିବା ବେଳେ ପରମ୍ପରାଠାରୁ କେବେ ବି ଦୂରେଇ ଯାଇନାହାନ୍ତି । ନାଟ୍ୟକାରଙ୍କ ପାଇଁ ଆଲୋକ ହିଁ ସତ୍ୟ- ଏହାର ଅନୁପସ୍ଥିତିକୁ କୁହାଯାଏ ଅନ୍ଧକାର । ଆଲୋକ ଭଳି ନାରୀର ମମତାମୟୀ ରୂପ ହିଁ ସତ୍ୟ ଭୋଗିନୀ ରୂପରେ ସେମାନେ ଅନ୍ଧକାର । ମିଥ୍ୟା ଏବଂ ଶୂନ୍ୟ । ତେଣୁ ଉପେକ୍ଷା ହିଁ ହେଉଛି ସେମାନଙ୍କର ପ୍ରାପ୍ୟ ।

ହାସ୍ୟରସ ହେଉଛି ଛୋଟରାୟ ସୃଷ୍ଟିର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଦିଗ । ମୁଖ୍ୟତଃ ପାରିବେଶିକ ଅସଂଗତିକୁ ନେଇ ସୃଷ୍ଟ ଏହି ରସଦ୍ୱାରା ଛୋଟରାୟଙ୍କ ସୃଷ୍ଟି ଅଧିକ ସମୁଜ୍ଜ୍ୱଳ ହୋଇଛି । ସମ୍ପୂର୍ଣ୍ଣ ହାସ୍ୟରସକୁ ନେଇ ରଚିତ 'ଘଟକ' (୧୯୬୧) ନାଟକର ମଂଚ ସଫଳତା ପ୍ରମାଣ କରିଛି, ଏହି ରସ ପରିକଳ୍ପନାରେ ତାଙ୍କର ଯାଦୁକରୀ ସୃଷ୍ଟି ଧର୍ମର ବଳିଷ୍ଠତାକୁ । 'ପେଟେ ହସିବେ, ବୁହେ କାନ୍ଦିବେ' ଗୋଟିଏ ସମୟରେ ଏହାହିଁ ଥିଲା ନାଟକଠାରୁ ଦର୍ଶକମାନଙ୍କର ଏକମାତ୍ର କାମନା । ଲୋକନାଟ୍ୟ ପ୍ରିୟ ଛୋଟରାୟ ସମ୍ଭବତଃ, ଏଇ ତତ୍ତ୍ୱଟିକୁ ସେହିଠାରୁ ହିଁ ସଂଗ୍ରହ କରିଛନ୍ତି । ଏଇଥିପାଇଁ ହାସ୍ୟରସ ତାଙ୍କର ଅଧିକାଂଶ ନାଟକରେ ଗୁରୁତ୍ୱ ପାଇଛି । ଜୀବନକ୍ଷେତ୍ରରୁ ଅତି ଅନୁଲ୍ଲେଖ୍ୟ କ୍ଷୁଦ୍ରାତିକ୍ଷୁଦ୍ର ଘଟଣାକୁ ସେ ଏଥିପାଇଁ ବ୍ୟବହାର କରିଛନ୍ତି । ବୁଦ୍ଧିଦୀପ୍ତ, ସ୍ୱଚ୍ଛନ୍ଦ, ସ୍ୱତଃସ୍ଫୂର୍ତ୍ତ ଏବଂ ଶାଳୀନ ଶବ୍ଦଯୋଜନା ଦ୍ୱାରା ସେ ହାସ୍ୟରସ ସୃଷ୍ଟି କରନ୍ତି । 'ପରକଲମ'ର ମନ୍ଦର ମହାନ୍ତି, ରାଧୁ ପାଣି, ମୁକୁନ୍ଦ, 'ନଷ୍ଟ ଉର୍ବଶୀ'ର ଭାସ୍କର, ପଙ୍କଜ ଏଭଳିକି ମଣିଅପା, 'ଭରସା'ର ଆନନ୍ଦ ରାଏ, ଶଙ୍କର ଏବଂ ତାଙ୍କ ରଚିତ ଧାରାବାହିକର ବହୁ ଚରିତ୍ରକୁ ଏଥିପାଇଁ ସେ ବ୍ୟବହାର କରିଛନ୍ତି । ଉପଯୁକ୍ତ ପରିବେଶ ଏବଂ ସହାୟକ ସଂଳାପ ଏ ଉଭୟ ହୁଅନ୍ତି ତାଙ୍କର ହାସ୍ୟରସ ସୃଷ୍ଟିର ଦୁଇ ଆୟୁଧ-ପଛକୁ ଥାଏ ଘଟଣା- ଏସବୁ ଜୀବନ କ୍ଷେତ୍ରରୁ ସଂଗ୍ରହ କରାଯାଏ । କାଠଗଡ଼ା ସାହି ଗଳିରାସ୍ତାରେ ରୋଡ଼୍-ରୋମିଓଙ୍କ ଗୋଳି ମାଡ଼ରେ ଆହତ ଆନନ୍ଦ ରାଏ ଯେତେବେଳେ ନିଜର ସୁଟ୍ ପ୍ରସଙ୍ଗ ମନେପକାନ୍ତି, କିମ୍ବା ପୂରାପୂରି ପାରିବାରିକର ଲୋଭୀ ମହାଜନ ଯେବେ ପରମାର୍ଥ ଚିନ୍ତାରେ ଅର୍ଥଚିନ୍ତାକୁ ମିଶାଇ 'ଦେବୀସ୍ତୋତ୍ର'ର ପଦଟିଏ ମାତ୍ର ପୂର୍ଣ୍ଣ କରିପାରନ୍ତି ନାହିଁ, ସେତେବେଳେ ବର୍ଣ୍ଣାଢ଼୍ୟ ଜୀବନର ଏକ ସପ୍ତରଙ୍ଗୀ ରୂପ ଆମ ଆଗରେ ଝଲସି ଉଠେ । ଜୀବନ ସହିତ ହାସ୍ୟରସ ବାନ୍ଧି ହୋଇଯାଏ ଏକ ଅଚ୍ଛେଦ୍ୟ ସମ୍ପର୍କରେ । ସେଥିପାଇଁ ନାଟ୍ୟକାର ବନିଯାଆନ୍ତି, 'ହାସ୍ୟରସ ସୃଷ୍ଟିର ଅଦ୍‌ଭୂତ ଯାଦୁକର ।

ଦୀର୍ଘ ଛଅ ଦଶନ୍ଧି ଧରି ଏଠାର ନାଟ୍ୟପ୍ରେମୀମାନଙ୍କର ହୃଦୟରେ ଅସପତ୍ନ ରାଜତ୍ୱ କରି ଛୋଟରାୟ ସେଦିନ ବିଦାୟ ନେବା ଦିନରୁ ତାଙ୍କର ସ୍ଥାନ ଅଦ୍ୟାବଧି ଅପୂର୍ଣ୍ଣ ରହିଛି । ଏକଦା ଆମ ଭାଷାର ସ୍ମରଣୀୟ କଥାକାର ସୁରେନ୍ଦ୍ର ମହାନ୍ତି 'ସମ୍ବାଦ' ପୃଷ୍ଠାର 'ଶେଷସ୍ତମ୍ଭ'ରେ ଲେଖିଥିଲେ, "ସବୁକଳା ଓ ସାହିତ୍ୟର ଜନ୍ମ 'ସରପ୍ଲସ୍ ଭ୍ୟାଲୁ'(Surplus value) ଭିତରୁ । କାଉପରି ଯଦି ସାରା ଜୀବନ ଆହାର ଖୋଜି ଖୋଜି ବିତିଯାଏ ତାହାହେଲେ ସେ ଜୀବନରେ କଳା ବା ସାହିତ୍ୟ ପରି ସୌକୁମାର୍ଯ୍ୟ ଆସିବ କୁଆଡୁ ?" (କାଉକୋଇଲି-୨୧/୧୨/ ୨୦୧୬) ଛୋଟରାୟ ନିଜ ଜୀବନରେ ଏହିଭଳି ମନ୍ତବ୍ୟର ଅସାରତା ପ୍ରତିପାଦନ କରି କଦାପି ତଥାକଥିତ 'Surplus value' ର ଅନୁଗତନ ହୋଇ ମଧ ନିଜ ସୃଷ୍ଟିରେ ସୌକୁମାର୍ଯ୍ୟର ଧାରାପ୍ରବାହ ଛୁଟାଇଛନ୍ତି । ଛୋଟରାୟଙ୍କ ଜୀବନର ଏହି ସତ୍ୟ ଅନେକ ସାହିତ୍ୟିକଙ୍କ ପାଇଁ ମଧ ସତ୍ୟ ପ୍ରମାଣିତ ହୋଇଛି । ଜୀବନ ବ୍ୟାପି ସାଧନା ବଳରେ ଛୋଟରାୟ ଓଡ଼ିଆ ସାହିତ୍ୟକୁ ବହୁ ଭାବରେ ସମୃଦ୍ଧ କରି ଆମକୁ ଋଣୀ କରିଯାଇଛନ୍ତି ।

ବର୍ତ୍ତମାନ ଏହି ଋଣ ପରିଶୋଧର ଦାୟିତ୍ୱ ହେଉଛି ତାଙ୍କର ଉତ୍ତର ପୁରୁଷମାନଙ୍କର ।

କିଛି ଗବେଷଣା ତାଙ୍କ ସମ୍ପର୍କରେ ହୋଇଛି । ତଥାପି ଅନେକ କିଛି କରିବାକୁ ବାକି ଅଛି । ମଂଚ ନାଟକର ଚରମ ଦୁର୍ଦ୍ଦିନରେ ଲୁପ୍ତପ୍ରାୟ ଗୀତିନାଟ୍ୟର ଉଦ୍ଧାର କରି ସେ ଏହାର ଏକ ସମୃଦ୍ଧ ପରମ୍ପରା ସୃଷ୍ଟି କରିଥିଲେ । ପୁଣି ତାଙ୍କର ବିଂଶାଧିକ ଚଳଚ୍ଚିତ୍ର ସମ୍ପର୍କର ବହୁ ତଥ୍ୟ ଏବେ ଆମ ପାଖରେ ପହଁଚି ନାହିଁ । ସେହିଭଳି ଗାଳ୍ପିକ ଛୋଟରାୟ ଓଡ଼ିଆ ପାଠକମାନଙ୍କ ନିକଟରେ ଏବେବି ପ୍ରାୟ ଅପରିଚିତ ରହିଛନ୍ତି । ସର୍ବୋପରି ତାଙ୍କର ନିଆରା ଜୀବନ ଦୃଷ୍ଟିର ମୂଳସୂତ୍ର ଖୋଜି ବାହାର କରିବା ଯେ କୌଣସି ଗବେଷକଙ୍କ ପାଇଁ ଏକ ଆହ୍ୱାନ । ଏଠାରେ ସେସବୁ ସମ୍ପର୍କରେ କେବଳ ସୂଚନା ଦିଆଗଲା ମାତ୍ର ।

ତାଙ୍କର ଜନ୍ମ ଶତବାର୍ଷିକୀରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତାଙ୍କ ରଚନାର ଏକ ଭବ୍ୟ ସଂକଳନ ପ୍ରସ୍ତୁତ କରିବାର ନିଷ୍ପତ୍ତି ଗ୍ରହଣ କରି ଏହାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରିଥିବାରୁ ମୁଁ ପ୍ରଥମେ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ସେଇ ୧୯୫୬ରେ କଟକ ବେତାରର ଜଣେ ଶିଳ୍ପୀ ରୂପରେ ଛାତ୍ରାବସ୍ଥାରୁ ତାଙ୍କ ସହିତ ଯେଉଁ ପରିଚୟ ଆରମ୍ଭ ହୋଇଥିଲା, ପରବର୍ତ୍ତୀ ଜୀବନରେ ନାଟକ ଲେଖିବା ଅବସରରେ, ନାଟକ ସମ୍ପର୍କୀୟ ଆଲୋଚନା ମାଧ୍ୟମରେ ଏହି ସମ୍ପର୍କ ଅଧିକ ଦୃଢ଼ ଏବଂ ଅନ୍ତରଙ୍ଗ ହୋଇଥିଲା । ସୁଖରେ ଏବଂ ଦୁଃଖରେ ସର୍ବଦା ଜଣେ ଆତ୍ମୀୟଙ୍କ ଭଳି ତାଙ୍କର ଉପସ୍ଥିତି ମୋ ଜୀବନ ପାଇଁ ଏକ ଅଭୁଲା ଅଧ୍ୟାୟ । ଏହି ଲେଖାଟିକୁ ପ୍ରସ୍ତୁତ କଲାବେଳେ ତାଙ୍କର ଉଦାର ଉପସ୍ଥିତିର ଉପଲବ୍ଧି ବାରମ୍ବାର ଚକ୍ଷୁକୁ ଅଶ୍ରୁସିକ୍ତ କରିଛି ।

ପ୍ରଥମେ ତାଙ୍କର ବିଭିନ୍ନ ବିଭାଗର ରଚନା ଦ୍ୱାରା ସଂକଳନଟିକୁ ପୂର୍ଣ୍ଣାଙ୍ଗ ରୂପ ଦେବାପାଇଁ ଚିନ୍ତା କରିଥିଲି । ନାଟକ, ଗୀତିନାଟ୍ୟ, ବେତାର ନାଟକ, ନାଟ୍ୟରୂପ ଏବଂ ଗଳ୍ପ ପ୍ରଭୃତିରୁ କିଛି କିଛିନେଇ ତାହା ହୋଇଥାଆନ୍ତା ଛୋଟରାୟ ସୃଷ୍ଟିର ଏକ ମିଶ୍ର ରୂପ । ତେବେ ମୌଳିକ ନାଟକ ସୃଷ୍ଟିରେ ସେ ଯେଉଁ ବହୁ-ଆୟାମୀ (Multi-Dimensional) ସ୍ରଷ୍ଟା ରୂପର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି, ତାହା ପାଠକମାନେ ଜାଣିପାରିନଥାନ୍ତେ । ପୁଣି ଭବିଷ୍ୟତରେ କେବେ ଯଦି ଏକାଡ଼େମୀ ଏହି ସଂକଳନକୁ ଅନ୍ୟ ଭାଷାରେ ଅନୁବାଦ କରିବାର ସିଦ୍ଧାନ୍ତ ଗ୍ରହଣ କରନ୍ତି, ତେବେ ଅଣଓଡ଼ିଆ ପାଠକମାନେ ନାଟ୍ୟକାର ଛୋଟରାୟ-ପ୍ରତିଭାର ଏକ ପୂର୍ଣ୍ଣାଙ୍ଗ ପରିଚୟ ଏଥିରୁ ପାଇପାରିବେ । ଏହିଭଳି ଏକ ନିଷ୍ପତ୍ତି ଗ୍ରହଣ କଲାପରେ ସଂକଳନ ପାଇଁ ତାଙ୍କର ବହୁଚର୍ଚ୍ଚିତ ଚାରୋଟି ନାଟକକୁ ଏଥିପାଇଁ ନିର୍ବାଚିତ କରିଛି । ଆଶା କରୁଛି ଏହା ଛୋଟରାୟ- ଅନୁରାଗୀ ପାଠକ/ଗବେଷକମାନଙ୍କ ଦ୍ୱାରା ଆଦରର ସହିତ ଗୃହୀତ ହେବ ।

ହେମନ୍ତ କୁମାର ଦାସ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ବିଂଶ ଶତାବ୍ଦୀର ଚତୁର୍ଥ ଦଶକ । ଦ୍ୱିତୀୟ ମହାଯୁଦ୍ଧ ପରବର୍ତ୍ତୀ ଓ ସ୍ୱାଧୀନତା ପୂର୍ବବର୍ତ୍ତୀ ଦେଶର ସାମାଜିକ ଅବସ୍ଥାର ପୃଷ୍ଠଭୂମିରେ ଏଇ ଘଟଣାର ସୂତ୍ରପାତ ।

ପଲ୍ଲୀ ଅଞ୍ଚଳ । ଏଇ ନାଟକର ନାୟକ ସୁରେଶର ବାସଗୃହର ଏକ ସାଧାରଣ କୋଠରି । ଗୋଟିଏ କାଠର ଟେବୁଲ୍ ଓ ଦୁଇଟି ସାଧାରଣ ଚଉକି ଓ କେତେକ ବହିପତ୍ର ବ୍ୟତୀତ କୋଠରିଟିରେ ଆଉ ପ୍ରାୟ କିଛିନାହିଁ ।

ଦୃଶ୍ୟ ଆରମ୍ଭରେ ଆସିଲେ ମଧ୍ୟବିତ୍ତ ପରିବାରର ଦୁଇଟି ସମବୟସୀ ଅବିବାହିତା ତରୁଣୀ – ଶାନ୍ତି ଓ କନକ । କନକ ହଉଚି ସୁରେଶର ସାନଭଉଣୀ ଓ ଶାନ୍ତି ସୁରେଶର ବାଗ୍‌ଦତ୍ତା । କନକ ହାତରେ ଗୋଟିଏ ଦିଆସିଲି ଓ ଖଣ୍ଡେ ସିଗ୍ରେଟ୍ ।)

କନକ- ଏଇ ଘରେ ବେଶ୍ ହବ, କେହିନାହାନ୍ତି ଏଠି ।

ଶାନ୍ତି- ସୁରଭାଇ ଆସିବେନାହିଁ ତ ?

କନକ- ନାଁ ମ! ସେ ଏ'କ୍ଷଣି କୋଉଠି ଯାଇ ବନ୍‌ଶୀ ପକାଉଥିବେ । ନେ ଧର, ତୁ ନଗା, ମୁଁ ଦିଆସିଲି ମାରୁଚି ।

ଶାନ୍ତି- ନାଇଁଲୋ ମା'......ମୁଁ ପାରିବିନି ।

କନକ- ମଲାରେ ଛଟକ...... ଏଇଥିପାଇଁ ପରା କଟକରେ ପଢ଼ାହେଉଥିଲା!

ଶାନ୍ତି- ପାଠ ସିନା ପଢୁଥିଲି – କ'ଣ ସିଗ୍ରେଟ୍ ଖାଉଥିଲି ?

କନକ- ଓଃ, ନେ ନା ଧର, କିଛି ହବନାହିଁ କହୁଚି ।

ଶାନ୍ତି- ଆଚ୍ଛା, ଦେ । (ସିଗାରେଟ୍ ଧରି) କିମିତିକା ଲାଗିବ ?

କନକ - ଆରେ, ତୁ ଚୋବାଇ କରି ଖାଇବୁ ନା କ'ଣ ? ଧୂଆଁ ଗୁରା ତ ଭାରି ବାସିବ । ଭାଇ ଖାଇବାର ମୁଁ ଦେଖିଛି ।

(ଦିଆସିଲି ଜଳାଇ) ଏଥର ଟାଣ୍ ।

(ଶାନ୍ତି ଅନଭ୍ୟସ୍ତ ହସ୍ତରେ ସିଗାରେଟ୍ ଧରି ଥରେ ଦୁଇଥର ଟାଣି ମୁଖ ବିକୃତ କରି କହିଲା –)

ଶାନ୍ତି - କିମିତିକା କିମିତିକା ଲାଗୁଛି, ନାଇଁ - ବାସୁନାଇଁ ତ ?

କନକ - ବାସୁନାଇଁ ? ମତେ ତ ବେଶ୍ ବାସୁଚି । ଦେଲୁ ଦେଙ୍କୁ ୨୧୬୮ ମଁ ଟାଣେ । (ଶାନ୍ତିଠୁ ସିଗାରେଟ୍ ନେଇ ଟାଣି) ସତେ ଶାନ୍ତି, ତୁ ଟାଣିଲାବେଳେ ବାସୁଥିଲା, ମୁଁ ଟାଣିଲାରୁ ତ କାଇଁ ବାସୁନାଇଁ ?

(ଏତିକିବେଳେ ଏମାନଙ୍କ ଅଲକ୍ଷ୍ୟରେ ସୁର (ସୁରେଶ) ଆସିଲା । ସେ ଚତୁର୍ଥ-ବାର୍ଷିକ ଶ୍ରେଣୀର କଲେଜ ଛାତ୍ର । ପରିଧାନ ଧୋତି ଓ ସାର୍ଟ୍ । ସୁର ନିଃଶବ୍ଦରେ ଏ ଦୃଶ୍ୟ ଉପଭୋଗ କରୁଥାଏ ।)

କନକ- ମଲାରେ

ଶାନ୍ତି - (ଧୂଆଁର ଗନ୍ଧ ବାରି) ହେ କନ, ଏଇକ୍ଷଣି ମତେ ବାସୁଚି - ଭାରି ସୁନ୍ଦର ! ଦେ'-ମୁଁ ଟାଣେ ଯେ ତୋତେ ବାସିବ ।

(କନକଠୁ ସିଗ୍ରେଟ୍ ନେଇ ଟାଣିଲା)

କନକ - ଶାନ୍ତି, ନାକବାଟେ ସବୁ କେମିତି ଧୂଆଁ ବାହାର କରନ୍ତି ଜାଣୁ ?

ଶାନ୍ତି - ନାକବାଟେ ?

କନକ - ହଁ ମ, ନାକବାଟେ ।

ଶାନ୍ତି - ହଁ ଲୋ ହଁ, ମୁଁ ଦେଖିଛି, ରାଧିମା' ବାଉରାଣୀ ବାହାର କରେ । ରହ, ମୁଁ କରୁଛି ।

(ଶାନ୍ତି ଧୂଆଁ ଢୋକି ନାକବାଟେ ବାହାର କରିବାର ଚେଷ୍ଟାକଲା । ଧୂଆଁ ଝଣ୍ଟିରେ ଅଟକିଯିବାରୁ ବିରକ୍ତିରେ ସିଗ୍ରେଟ୍‌ଟା ଫୋପାଡ଼ିଦେଇ ଖୁଁ ଖୁଁ ହୋଇ କାଶି ତଳେ ବସିପଡ଼ିଲା)

କନକ - (ଶାନ୍ତିର ପିଠି ଆଉଁସି ଦେଇ) କ'ଣ ହେଲା ଶାନ୍ତି, କ'ଣ ହେଲା ? ଆଲୋ ଏମିତି କାହିଁକି ହଉଛୁ ଶାନ୍ତି..... ?

ଶାନ୍ତି - ବାବ୍-ବା-ରେ..... ମୋ ଆଖିରୁ ଜୁଳୁଜୁଳିଆ ପୋକ ବାହାରିଗଲା ।

କନକ - ପାଣି ଆଣିବି.... ପିଇବୁ ?

ଶାନ୍ତି - ନାଇଁ, ତୁ ମତେ ଧର, ମୁଁ ଉଠେ । (କନକ ଶାନ୍ତିକୁ ଉଠାଇ ଠିଆକରାଇଲା) କେଉଁଠୁ କଥା କାଢ଼ିଲା- ଶାନ୍ତି ନାକବାଟେ ଧୂଆଁ ବାହାର କରିବୁ ? ମଣିଷକୁ ମାରିଦବୁ ତୁ ।

(ଅଧାପୋଡ଼ା ସିଗ୍ରେଟ୍‌ଟା ତଳୁ ଉଠାଇଆଣି ଟାଣିବାକୁ ଗଲାବେଳେ -)

ଶାନ୍ତି - ନାଇଁଲୋ, ହେ, ଥାଉ, ଅକାରଣେ ମରିଯିବୁ ।

ସୁର - (ଆଗେଇଆସି) ନା, ନା, ଟାଣ ଟାଣ - ଭଲକରି ଧୂଆଁ ବାହାର କର ନାକବାଟେ - ଆଖିବାଟେ - କାନବାଟେ । ତା' ଆଖିରୁ ଜୁଳୁଜୁଳିଆ ପୋକ ବାହାରୁଛି, ତୋ ଆଖିରୁ ଏବେ ଟର୍ଚ୍ଚଲାଇଟ୍ ବାହାରୁ । କଲେଜପଢ଼ା ଝିଅଙ୍କୁ ତ ମୁଁ ସିଗ୍ରେଟ୍ ଖାଇବା ଦେଖିନି - ଅଥଚ ତମେ ଏଇ ମଫସଲିଆ ଝିଅ ଦୁଇଟା - ତମେ ଏଠି ସିଗ୍ରେଟ୍ ଖାଇବା ଆରମ୍ଭ କରିଦେଲଣି !

ଶାନ୍ତ - ତମର କିନ୍ତୁ ଏ ଭାରି ଅନ୍ୟାୟ ସୁରଭାଇ !

ସୁର - ହୁଁ, ନିହାତି ଅନ୍ୟାୟ, ଆଚ୍ଛା, ତମେ ଆସ ଏଣିକି ।

(ଫେରିଯାଇ ଟେବୁଲ୍ ଉପରେ ବସିଲା)

ଶାନ୍ତି - କାହିଁକି ?

ସୁର - ଅନ୍ୟାୟ ହେଇଥିଲା ନା - ବର୍ତ୍ତମାନ ନ୍ୟାୟ ବିଚାର ହେବ ।

ଶାନ୍ତି - ବାବାରେ - ବିଚାର ହେବ ?

କନକ - (ନୀଚ ଗଳାରେ) ଶାନ୍ତି, ଚାଲ ଏଠୁ ଯିବା ବାହାରି ।

ସୁର - ଏ କନ, ଏଠିକି ଆ କହୁଚି ।

ଶାନ୍ତି - ନା, ସେ ଯିବନାହିଁ ।

ସୁର - ଶାନ୍ତି !

ଶାନ୍ତି - କ'ଣ ?

ସୁର - ଦେଖିବୁ ଏକ୍ଷଣି ?

ଶାନ୍ତି - କ'ଣ ଦେଖିବି ?

ସୁର - ଫାଜିଲାମି ବଢ଼ିଯାଉଚି ନା ?

ଶାନ୍ତି - ଗାଳିଫାଳି ଦିଅ ନାହିଁ ସୁରଭାଇ । ସିଗ୍ରେଟ ଖଣ୍ଡେ ତ ଟାଣି ଦେଉଛୁ... କ'ଣ କରୁଛୁ ଏବେ କର ।

ସୁର - ସିଗ୍ରେଟ୍ ଖଣ୍ଡେ ଟାଣିଦେଇଛ, ନା ? ଆଚ୍ଛା, ସେ ସିଗ୍ରେଟ୍ ଖଣ୍ଡକ କିଏ ଆଣିଲା ଆଉ କୋଉଠୁ ଆଣିଲା ?

ଶାନ୍ତି - ସତ କହିବି ?

ସୁର - ହୁଁ...

ଶାନ୍ତି - କାହିଁକି ସତ କହିବି ?

ସୁର - ଆଉ ତୁ ମିଛ କହନ୍ତୁ ନା କ'ଣ ?

ଶାନ୍ତି - ନାଇଁ, ସତ କହିଲେ ତମେ ଆମକୁ ଛାଡ଼ିଦେବ, ଏଇଥିପାଇଁ ତ ?

ସୁର - (ହସିପକାଇ) ଆଚ୍ଛା, ସେଇଆ ହେଲା, ଏବେ କହ ।

ଶାନ୍ତି - ତା'ହେଲେ ବାବୁ, ତମେଇ ଧରାପଡ଼ିବ !

ସୁର - ମାନେ ?

ଶାନ୍ତି - କହୁଛି ଶୁଣ । ମୋ ଜନ୍ମଦିନ ଫିଷ୍ଟ୍‌ରେ ବାପା ଦୁଇ ଟିଣ ସିଗ୍ରେଟ୍ ଆଣିଥିଲେ.....ଆଣିଥିଲେ ନା ?

ସୁର - ହଁ.... ।

ଶାନ୍ତି - ସେ ଦି'ଟିଣରୁ ଅଧଟିଣ ବଳିଥିଲା । କ'ଣ ବଳିଥିଲା ନା ?

ସୁର - ହଁ.... ।

ଶାନ୍ତି - ଆଉ ସେଇ ବଳକା ସିଗ୍ରେଟ୍‌ତକ ତମେ ଫିଷ୍ଟ୍ ଶେଷରେ ପକେଟ୍‌ରେ ପକାଇ ଘରକୁ ଆସିଲ । କ'ଣ ହଁ କି ନା କୁହ...... ସତ କୁହ ।

ସୁର - (ଟିକିଏ ଥତମତ ଖାଇ) ଆରେ ସେ ତ ଅନେକ ଦିନ ତଳର କଥା ।

କନ - ହଁ ଭାଇ, ସେଇଥିରୁ ମୁଁ ଦି'ଟା ଆଣି ଲୁଚେଇ ଦେଇଥିଲି । ଆଜି ଶାନ୍ତି କହିଲାରୁ ସେଇଥିରୁ ଗୋଟାଏ ଆଣି ଟାଣୁଥିଲୁ ।

ସୁର - ହୁଁ, ଆଉ ଗୋଟାଏ କ'ଣ ହେଲା ?

କନ - ଅଛି, ଆଣିବି ?

ସୁର - କୋଉଠି ରଖିଛୁ ?

କନ - ବଗିଚା ଘରେ.....ଆଣିବି ?

ସୁର - ହଁ ଯା ଆଣ । (କନକ ପଳାଇଲା) ହୁଁ ତା'ର ପର - ଶ୍ରୀମତୀ ଶାନ୍ତିଲତା ଦେବୀ, ଆପଣ କହିବାକୁ ଚାହାନ୍ତି ଯେ, ମୁଁ ସିଗ୍ରେଟ୍ ଚୋରିକରିଛି ?

ଶାନ୍ତି - ଆଜ୍ଞା ନା, ମୁଁ କହିବାକୁ ଚାହୁଁନି; ମୁଁ ଖୁବ୍ ଆଗରୁ ତା' କହିସାରିଛି ।

ସୁର - ଓ, ଯୁକ୍ତିର ମାତ୍ରାଟା ଆଜିକାଲି ଟିକିଏ ବଢ଼ିଯାଇଛି ପରା ? (ଗୋଟିଏ ଚୌକିରେ ଯାଇ ବସିଲା)

ଶାନ୍ତି - ମୁରବୀ ସାଜି ଶାସନ କରିବାର ଇଚ୍ଛାଟା ଯେତେବେଳେ ତମର ଏତେ ବେଶି, ସେତେବେଳେ.....ଆଚ୍ଛା ସୁରଭାଇ, ତମର ଏଇ ଅଭ୍ୟାସଟା - ମାନେ ଏଇ ବଦଅଭ୍ୟାସଟା କେବେ ଛାଡ଼ିବ ? ଏଇ କଥାକଥାକେ ଆମକୁ ଶାସନ କରିବା......

(ସୁର ଚୁପ୍ ହୋଇ ବସି କ'ଣ ଗୋଟିଏ ଛବି ଆଙ୍କିଲା ।)

କ'ଣ ମୋ କଥାର ଜବାବ୍ ଦେବନାହିଁ ?

ସୁର - (ନିରୁତ୍ତର)

ଶାନ୍ତି - (ସୁର ପାଖକୁ ଯାଇ) ଓ , ବାବୁଙ୍କର ରାଗ ହେଇଚି ପରା ?

ସୁର - (ଚୌକି ବୁଲାଇ ବସିଲା)

ଶାନ୍ତି - କିନ୍ତୁ ଏଇଟା ଜାଣିରଖିବା ଉଚିତ୍ ଯେ ଜଣେ ରାଗିଲେ ଆଉଜଣକୁ ବି ରାଗିଆସେ । (ଆଉ ଗୋଟେ ଚୌକିରେ ବସିଲା)

ସୁର - ରୋଜ ସକାଳୁ ଉଠି ଯିଏ କଂସାଏ ପଖାଳ ସାଥିରେ ଗଣ୍ଡାଏ ପିଆଜ, ଦି'ଗଣ୍ଡା କଞ୍ଚା ମରିଚ, ଆଉ ପୁଳାଏ ତେନ୍ତୁଳି ଖାଏ, ସିଏ ରାଗିବ ନାଇଁ ତ ରାଗିବ କିଏ ?

ଶାନ୍ତି - ତମେ ଦେଖିଛ ମୁଁ ସକାଳୁଉଠି ପଖାଳ ଖାଏ ? ତା' ସାଥିରେ ପିଆଜ, ଲଙ୍କାମରିଚ ଆଉ ତେନ୍ତୁଳି ବି ? ମା'ଲୋ......କି ମିଛ କଥା !! ଦେଖ ସୁରଭାଇ, ତମେ ଯଦି ଏଣିକି ମୋ ନାଁରେ ଏମିତି ମିଛ କଥା କହିବ.....

ସୁର - ମୁଁ ଏଠି କାହାରିକୁ କଥା କହୁନି । ଉପରେ ପଡ଼ି ମୋ' ସାଥିରେ ଯିଏ କଥା କହିବ, ସିଏ.......

ଶାନ୍ତି - କ'ଣ ସିଏ ? କହୁନ କ'ଣ ସିଏ ?

ସୁର - ସିଏ ହଉଚି..... ଇୟେ......

(ଆଙ୍କୁଥିବା ଛବିଟା ଶାନ୍ତି ହାତକୁ ବଢ଼ାଇଦେଲା)

ଶାନ୍ତି - କାହାର ଛବି ଏଇଟା ? ମୁଣ୍ଡରେ ଝାମ୍ପୁରା ବାଳ, ଏଡ଼େ ଏଡ଼େ ଆଖି ଦି'ଟା, ଡେଣା ଦି'ଟା ବି ଅଛି....... ଇଲୋ ମା ! ତଳେ ତ ମୋରି ନାଁ ଲେଖା ହୋଇଛି ! ଏ କ'ଣ ସବୁ ହେଉଛି ସୁରଭାଇ......

(ଚିଡ଼ିଯାଇ ଛବିଟା ଚିରିପକାଇଲା - ଆଉ ଟେବୁଲ୍ ଉପରୁ ବହିପତ୍ର ପୋପଡ଼ାପୋପଡ଼ି କରିବାକୁ ଲାଗିଲା ।)

ସୁର - ଆରେ ଆରେ, ଏ କ'ଣ କରୁଛୁ ଶାନ୍ତି !

ଶାନ୍ତି - ତମେ ମତେ ରଖେଇଦବନାହିଁ ଏଠି । ମୁଁ ଯାଉଛି !

(ଯିବାକୁ ଉଦ୍ୟତ ହେଲା)

ସୁର - (ଶାନ୍ତିକୁ ଧରିଲା)

ଶାନ୍ତି - ନା, ଛାଡ଼ - ମୁଁ ଯାଏ !

ସୁର - ଏଇ ଦେଖ, କି ସୁନ୍ଦର ଗୋଟିଏ ଜିନିଷ ମୁଁ ତୋ ପାଇଁ ରଖିଛି ।

(ଡ୍ର ଭିତରୁ ଖଣ୍ଡେ ଛବି ବାହାର କରି ଦେଖାଇଲା ।)

ଶାନ୍ତି - ସେ ପୁଣି କାହା ଛବି ?

ସୁର - ଆରେ ଦେଖ୍ ।

ଶାନ୍ତି - ନା, ମୁଁ ମୋଟେ ଦେଖିବି ନାଇଁ ।

ସୁର - ଆଃ ଦେଖ୍ନା । (ଛବିଟି ଦେଲା)

ଶାନ୍ତି - ନିବିଷ୍ଟ ମନରେ ଦେଖିବାକୁ ଲାଗିଲା, ତା'ପରେ ମୁଗ୍ଧ ଦୃଷ୍ଟିରେ ସୁରଆଡ଼େ ଚାହିଁ) ୟା'କୁ ତମେ ଆଙ୍କିଛ ?

ସୁର - ହଁ ।

ଶାନ୍ତି - କିନ୍ତୁ, ଏତେ ସୁନ୍ଦର ତ ମୁଁ ନୁହେଁ ସୁରଭାଇ !

ସୁର - ତା'ଠୁ ବରଂ କହ, ଏତେ ସୁନ୍ଦର ଛବି ତ ତୁମେ କେବେ ଆଙ୍କିପାରନା ସୁରଭାଇ.....

ଶାନ୍ତି - ନାଇଁ ନାଇଁ, ମୁଁ ଜାଣେ ଯେ, ଭଲ ଆଙ୍କିପାର ବୋଲି ତ ମୋ ଛବିକୁ ତମେ ଏତେ ସୁନ୍ଦର କରିପାରିଛ, ନହେଲେ.....

ସୁର - ନହେଲେ ତ ସୁନ୍ଦର କି ଅସୁନ୍ଦର, ସେ କଥା ବିଚାର କରିବାକୁ ଏ ଦୁନିଆରେ ମୋ ଛଡ଼ା ଆଉ ଦ୍ୱିତୀୟ ଲୋକ କେହିନାହିଁ ।

ଶାନ୍ତି - ସତେ ?

ସୁର - ଜରୁର, ଆଚ୍ଛା ଦେଖି - (ଶାନ୍ତିକୁ ନିଜ ସାମ୍ନାରେ ଛିଡ଼ା କରେଇ ତା'ର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦେଖି) ....ହୁଁ.....

ଶାନ୍ତି - ହୁଁ ?

ସୁର - ମୁହଁରେ ଚନ୍ଦ୍ର, ଆଖିରେ ବିଦ୍ୟୁତ୍, ଓଠରେ ପ୍ରଭାତର ପ୍ରଥମ ସୂର୍ଯ୍ୟୋଦୟ- ସବୁ ସୁନ୍ଦର, ସବୁ ସରସ ।

ଶାନ୍ତି - ଭୁଲ୍, ଭୁଲ୍, ଭୁଲ୍ କହିଲ ଶିକ୍ଷୀ.... ସବୁ ଶୁଷ୍କ - ସବୁ ନୀରସ । ଚନ୍ଦ୍ର, ବିଦ୍ୟୁତ୍ ସୂର୍ଯ୍ୟ - ଏସବୁ ଯେ ନିରାଟ ଶୁଷ୍କ ପଦାର୍ଥ ଶିକ୍ଷୀ, ଏଥିରେ ସରସତା ପାଇଲ କେଉଁଠୁ ?

ସୁର - କିନ୍ତୁ ଏସବୁ ଯେ କବିମାନଙ୍କର କଥା.....ଭୁଲ୍ ତେବେ ସେଇମାନଙ୍କର ।

ଶାନ୍ତି - ନା ନା, ଭୁଲ୍ ସେମାନଙ୍କର ନୁହେଁ, ଭୁଲ୍ ତମରି । ସେମାନେ ନାରୀ-ଅଙ୍ଗରେ ଚନ୍ଦ୍ର-ସୂର୍ଯ୍ୟର ସୃଷ୍ଟି କରିଥିଲେ, କିନ୍ତୁ ରସ ଗ୍ରହଣ କରିବା ପାଇଁ ନାରୀକୁ ଛାଡ଼ି ଚନ୍ଦ୍ରକୁ ହାତ ବଢ଼ାଇବାକୁ କହିନଥିଲେ ।

ସୁର - ଫାଜିଲ୍ !

ଶାନ୍ତି - ହୁଁ...... (ଦୁହେଁ ହସି ଉଠିଲେ) ତା' ପରେ ?

ସୁର - ଯାହା ହେଇଥାଏ । ଇତିହାସର ପୁନରାବୃତ୍ତି - କଳିକଜିଆ - ଯୁକ୍ତିତର୍କ - ହାରଜିତ୍ - ଏସବୁ ପରେ.....

ଶାନ୍ତି - ଶାନ୍ତି, ଗୋଟିଏ ଗୀତ ଗା..... ଏଇଆ ତ ?

ସୁର - କିନ୍ତୁ ତୁ କ'ଣ ମୋ କଥା ରଖିବୁ ? ବାର ପେଖନା କାଢ଼ି......

ଶାନ୍ତି - ନାଇଁ ସୁରଭାଇ, ମୁଁ ଗାଇବି, ନିଶ୍ଚୟ ଗାଇବି । ତମେ ଆଜି ଏତେ ହାରିଯାଇଚ, ମୁଁ ଗୀତ ଗାଇବି ନାଇଁ ? କନ ଆସିଯାଉ....

ସୁର - ଓ, ଏକୁଟିଆ ମୋ ଆଗରେ ଗୀତ ଗାଇବାକୁ ତତେ ଭାରି ଲାଜ ଲାଗେ ନା ?

ଶାନ୍ତି - ନା, ନା, ଲାଜ ନୁହେଁ - ଏଇଠି ତମ ଘରେ, ତମ ସାମ୍ନାରେ ଠିଆହେଇ ଗୀତ ଗାଇବାକୁ.....ମାନେ ମୁଁ ଠିକ୍ କହିପାରୁନି ସୁରଭାଇ, ମତେ କ'ଣ ଲାଗେ......

ସୁର - କିନ୍ତୁ ଶାନ୍ତି.....

ଶାନ୍ତି - କ'ଣ ?

ସୁର - ମୁଁ କ'ଣ ଭାବେ ଜାଣୁ ?

ଶାନ୍ତି - ନା....ତ.....

ସୁର - (ଅଭିନୟ ଭଙ୍ଗୀରେ) ମୁଁ ଭାବେ ଶାନ୍ତି, ଏଇ କାନ୍ଥବାଡ଼ଘେରା ନିର୍ଜ୍ଜନତା - ବାହାରେ ଯାହାର ଶତ ଶତ ଚକ୍ଷୁକର୍ଣ୍ଣ ଆମ ଅପେକ୍ଷାରେ ସଜାଗ ହୋଇ ରହିଛନ୍ତି, ଏ ଆମ ପକ୍ଷରେ ଯଥେଷ୍ଟ ନୁହେଁ ।

ଶାନ୍ତି - ହୁଁ, ଆମେ ତେବେ କ'ଣ କରିବା ?

ସୁର - ଆମେ ? ଆମେ ଚାଲିଯିବା ସୁଦୂରର କେଉଁ ଜନହୀନ ପ୍ରାନ୍ତରକୁ, ହୁଏତ ଆରବ କିମ୍ୱା ସାହାରାର.......

ଶାନ୍ତି - ମା'ଲୋ ! ଏକାବେଳକେ ସାହାରା, ସେଠାକୁ କିନ୍ତୁ ଯିବା କିପରି ? କିନ୍ତୁ ଓଟଫୋଟ ସଜିଲ କରିଛ ?

ସୁର - ଆଃ, ସ୍ୱପ୍ନଟା ମୋର ଭାଙ୍ଗି ଦେ'ନା ଶାନ୍ତି ! ଶୁଣ, ସେଇ ମରୁଭୂମି - ଚାରିଆଡ଼େ କେବଳ ବାଲି ଧୂ-ଧୂ ବାଲି - ସେଠି ଓୟେସିସ୍ ବକ୍ଷରେ ଝରଣାପରି ଅବିରଳ ତୋ

କଣ୍ଠରୁ ଝରୁଥିବ ସଙ୍ଗୀତର ଝରଣା - ଆଉ ମୁଁ ପଥହରା ତୃଷାର୍ତ୍ତ ପଥିକ ସମ....
ଶାନ୍ତି - ଥାଉ, ଥାଉ, ସାହାରା ଯିବାକୁ ପଡ଼ିବନାହିଁ, ଏଇଠି ମୁଁ ଗୀତଟା ଗାଇ ତମର ତୃଷା ହରଣ କରୁଛି ।
(ଦୁହେଁ ହସିଉଠିଲେ - ହସ ପରେ ଶାନ୍ତି ଗୀତ ଧରିଲା:)

(ଗୀତ)

(ଯେବେ) ଆସିଲା ଜୀବନେ ଚଇତି ରାତି
ନୂଆ ନୂଆ ଲାଗିଲା ନିଶା,
ଅଜଣା ଜଣକର ବଇଁଶୀ ସାଥେ ମୁଁ ଯେ
ବାନ୍ଧିଲି ମୋ ବୀଣାର ଦିଶା ।୦ ।
କି ହେଲା ମୋର ଅନ୍ତର ସାରା - ଲୁଚି ଲୁଚି ମୁଁ ହେଲି ବିଧୁରା
ଚାହିଁ ତା ପଥ ଗାଇଲି ଗୀତ ପହିଲି ମନ ମିଶା ।୧ ।
କି କଥା ଫୁଟିଲା ନୀରବେ ନୟନେ,
ମରମେ ଲୋଟିଲା କି ବ୍ୟଥା ଗୋପନେ
ଛାତି ଦକଦକ ନପଡ଼େ ପଲକ ବଢ଼ିଲା ଅତୁଟ ପିଆସା ।୨ ।
ଉଡ଼ିଲା ମନ କେଉଁ ସାଗର ପାରି,
ନିଖିଳ ଆଖି ଯା'ର ଛୁଏଁନା ଶିରୀ -
ନିତି ଆଗମନେ ସୁନେଲି ସପନେ ଭାସିଲା ଉଛୁଳା ଆଶା । ୩ ।

ଶାନ୍ତି - (ଗୀତ ପରେ ଆବିଷ୍ଟ ସୁରକୁ ଠେଲିଦେଇ) ଏ ପୁଣି କ'ଣ ? କ'ଣ ଭାବୁଚ, କୁହନା..... ଗୀତଟା କେମିତି ଲାଗିଲା ?
ସୁର - ସେଇ ତ ମୁସ୍କିଲ୍ । ତୁ ତ ଗୀତଟା ଗାଇଦେଇ ଖଲାସ । କିନ୍ତୁ ମୁଁ ଯେ ଏଣେ ମାନେ, ତୋ ଗୀତର ଭାବ, ଭାଷା ଆଉ ରାଗିଣୀ, ଏସବୁ ସ୍ଥାନ, କାଳ, ପାତ୍ର ସହିତ ଠିକ୍ ଖାଉଚି କି ନା..... ଆଚ୍ଛା ରହ, ମୁଁ ଟିକେ ଭାବେ! (ଆଖି ବୁଜି ଭାବିବାର ଛଳନା କଲା ।)
ଶାନ୍ତି - ଏସବୁ କି ପାଗଳାମି ସୁରଭାଇ, ଫେର୍ ଯଦି କେବେହେଲେ ମୁଁ ତୁମ ସାମ୍ନାରେ ଗୀତ ଗାଇଚି.....

(ଏଇ ସମୟରେ ଆସିଲା କନକ - ତା' ହାତରେ ଖଣ୍ଡେ ସିଗ୍ରେଟ୍ । ସେ ସୁରକୁ ଏପରି ଅବସ୍ଥାରେ ଦେଖି ଆଶ୍ଚର୍ଯ୍ୟ ହେଲା । ଶାନ୍ତି କନକକୁ ଚୁପ୍ ରହିବାର ଇଙ୍ଗିତ କରି ତା'ଠାରୁ ସିଗ୍ରେଟ୍ ଖଣ୍ଡକ ନେଇ ସୁର ଆଡ଼କୁ ଆଗେଇ ଯିବାବେଳେ-)

ସୁର - (ଆଖି ବୁଜିଛି ପୂର୍ବପରି) ତୁ ବଡ଼ ମୁସ୍କିଲ୍‌ରେ ପକେଇଲୁ ଶାନ୍ତି, ଆମର ତ ସାହାରା ଯିବା କଥା ଥିଲା - ତୁ କିନ୍ତୁ ସାଗରପାରିକୁ ଯିବାକୁ ଚାହୁଁଚୁ......

(କନକ ହସି ଚୁପ୍ କରି ସେଠୁ ଚାଲିଗଲା ।)

ଶାନ୍ତି - ଆଃ, ଚୁପ୍ କରନା: ସୁରଭାଇ, କ'ଣ ଏସବୁ କହି ଯାଉଚ ?

ସୁର - (ଆଖି ମେଲି) କ'ଣ ହେଲା ?

ଶାନ୍ତି - କନ ସବୁ ଶୁଣିକରି ଗଲାଣି ?

ସୁର - କନ ଆସିଥିଲା ନା କ'ଣ ?

ଶାନ୍ତି - ହଁ, ଏଇ ନିଅ ତୁମ ସିଗ୍ରେଟ୍!

(ବିରକ୍ତିରେ ସିଗ୍ରେଟ୍‌ଟା ଟେବୁଲ୍ ଉପରକୁ ଫିଙ୍ଗିଦେଇ ଚାଲି ଯାଉ ଯାଉ ପୁଣି ଫେରିଆସି ।)

ଏଇ ଲୋ ମା', ବଡ଼ ମା' ଆଉ ବ୍ରଜଭାଇ ଏଣିକି ଆସୁଚନ୍ତି - ମୁଁ କ'ଣ କରିବି ସୁରଭାଇ, କୁଆଡ଼େ ଯିବି ?

ସୁର - ଆଉ କ'ଣ ଏମିତି ହୋଇଗଲା - ଆଚ୍ଛା, ତୁ ବସ ଏ ଚୌକିଟାରେ । (ଶାନ୍ତି ବସିଲା) ନେ, ଏ ବହିଟା ଧର । (ଶାନ୍ତି ହାତରେ ଖଣ୍ଡେ ବହି ଧରାଇଦେଲା ଓ ତାକୁ ପଢ଼ାଇବାକୁ ଛଳନା କଲା) ହୁଁ, ଆଉ ପଢ଼ିବୁ ନାଇଁ, ନା ? କାହିଁକି ପଢ଼ିବୁନାହିଁ ? କନ ନ ପଢ଼ିଲା ତ ତୋର'ର କ'ଣ ଗଲା ? ସିଏ ତ ଆଉ ମାସକ ପରେ ବାହା ହୋଇଯିବ ।

(ଶାନ୍ତି ଏସବୁ କିଛି ବୁଝିପାରୁନଥାଏ । ଟିକିଏ ପରେ ଆସିଲେ ସୁରର ବିଧବା ବୋଉ ପାର୍ବତୀ ଓ ସୁରର ପ୍ରାୟ ସମବୟସୀ ବନ୍ଧୁ ବ୍ରଜ । ବ୍ରଜ ହଉଚି ଏ ଗାଁର ନିକଟବର୍ତ୍ତୀ ଅନ୍ୟ ଏକ ଗାଁର ଅଧିବାସୀ । ପରିଧାନ ଖଦଡ଼ ଲୁଗା ଓ ପଞ୍ଜାବୀ । କନକ ସହିତ ତା'ର ବିବାହ ସ୍ଥିର ହୋଇଯାଇଛି ।)

ପାର୍ବତୀ - କ'ଣ ହେଉଚି ସୁର ?

ସୁର - ଏଇ ଶାନ୍ତି କହୁଚି ଆଉ ପଢ଼ିବ ନାହିଁ । ଅଥଚ ମଧୁଦାଦା.....

ପାର୍ବତୀ – ଥାଉ ଥାଉ । ତୁ ଯେମିତି, ତୋ ମଧୁଦାଦା ସେମିତି । ଭାସିଗଲା ସେ ଆଉ ପାଠ ନପଢ଼ିଲା ।...... ଇତିହାସ ଭୂଗୋଳ ପଢ଼ି ସେ କ'ଣ କରିବ ଶୁଣେ ?

ସୁର – ନାଇଁ ବୋଉ ମେ କ'ଣ ଇତିହାସ ଭୂଗୋଳ ପଢୁଚି ?

ପାର୍ବତୀ – ଆଉ କେଉଁ କ'ଣ ପଢୁଚି – ଶାନ୍ତି, କି ବହି ସେଇଟା ?

(ଏ ପର୍ଯ୍ୟନ୍ତ ଶାନ୍ତି ବହିକୁ ଦେଖିନଥିଲା – ଚାହିଁ ଦେଖିଲା ସେଇଟା ଗୋଟାଏ ବିଜ୍ଞାନର ବହି – ତା'ର ଅବୋଧ । ଅସହାୟ ଦୃଷ୍ଟିରୁ ସେ ସୁର ଆଡ଼େ ଚାହିଁ ରହିଲା ।)

ବ୍ରଜ – (ଶାନ୍ତି ହାତରୁ ବହିଟା ନେଇ) Statics and Dynamics, ହୁଁ ଶାନ୍ତି ତା'ହେଲେ ପଢ଼ାରେ ଖୁବ୍ ଆଗେଇ ଚାଲିଛି । (ବ୍ରଜ ମନେମନେ ହସୁଥାଏ)

ପାର୍ବତୀ - କି ବହି ସେଇଟା ବ୍ରଜ ?

ସୁର - ସେଇଟା ଇଂଲିଶ ବହି ବୋଉ - ତା'ର ଓଡ଼ିଆ ମାନେ ହେବ - ଏଇ ଗୃହସ୍ଥଳୀ.... ମାନେ ଘରସଂସାର...:. ଘରକରଣା ।

ପାର୍ବତୀ - ସତେ ? ଝିଅର ତେବେ ମୋର ଘରକରଣା ବୁଦ୍ଧି ହେଲାଣି; କିନ୍ତୁ ଶାନ୍ତି କ'ଣ ଏଡ଼େ ଏଡ଼େ ଇଂରେଜୀ ବହି ସବୁ ବୁଝିପାରୁଚି ?

ସୁର - ସେଇଆ ତ ମୁଁ କହୁଥିଲି, ଦିନକୁ ଘଣ୍ଟାଏ -ଅଧେ ପରିଶ୍ରମ କରିଥିଲେ ବହିଟା ସାରା ମୁଁ ତାକୁ ଏତେଦିନ ବୁଝାଇ ଦେଇସାରନ୍ତିଣି ।

ପାର୍ବତୀ - ହୁଁ । ଆଚ୍ଛା ଶାନ୍ତି, କ'ଣ କେତେ ପଢ଼ିଲୁଣି ମତେ ଟିକିଏ ବୁଝେଇଦେଲୁ! ପଚିଶ ବର୍ଷ ତ ଘରକରଣା କରିଆସିଲି, ଆଜି ତୋର ଏ ଘରକରଣା ବହିରେ କ'ଣ ଲେଖାହୋଇଚି ଟିକିଏ ଶୁଣେ ?

ବ୍ରଜ - ସୁର, ତୁ କହନା - ଘରକରଣା ବିଷୟରେ ଏ ବହିଟା କ'ଣ ଲେଖିଛି ।

ସୁର - ମୁଁ କହିବି.....କାହିଁକି ? ଏଇ ଶାନ୍ତି କହୁନାଇଁ..... ହୁଁ, କହ ଶାନ୍ତି, କହ - ଘରସଂସାର କରୁ କରୁ ଯଦି ଅପ୍ରତ୍ୟାଶିତ ଭାବରେ କୌଣସି ବାଧାବିଘ୍ନ ଆସି ପହଞ୍ଚିବ......

ବ୍ରଜ - ତେବେ କ'ଣ କରିବ ?

ସୁର - କହନା ଶାନ୍ତି, କ'ଣ କରିବାକୁ ହେବ.....

ଶାନ୍ତି - ତେବେ.... ତେବେ....

ବ୍ରଜ - ତେବେ ସେଇସବୁ ବାଧାବିଘ୍ନ ତଳେ ଡିନାମାଇଟ୍ ଖଞ୍ଜିଦେବି.....

ପାର୍ବତୀ - କ'ଣ ଖଞ୍ଜି ଦେବରେ ବ୍ରଜ ?

ଶାନ୍ତି - ( ଟିକିଏ ଉଚ୍ଛ୍ୱସିତ ଭାବରେ) ମିଛ, ମିଛ ବଡ଼ମା', ସବୁ ମିଛ । ମୁଁ ଏ ବହି ମୋଟେ ପଢ଼ିନାହିଁ - ମୁଁ ଏସବୁ କିଛି ଜାଣେନା ।

(ଟେବୁଲ୍ ଉପରେ ହାତଛନ୍ଦି ମୁହଁ ଲୁଚାଇଲା ।)

ପାର୍ବତୀ - (ଶାନ୍ତିର ପିଠି ମୁଣ୍ଡରେ ହାତ ବୁଲାଉ ବୁଲାଉ) ମୁଁ ଜାଣେ ମା, ଏସବୁ ମିଛ - ଆଉ ଯା'ବି ଜାଣେ ତୁ କେବେ ମୋ ପାଖରେ ମିଛ କହିପାରିବୁ ନାହିଁ । ତୁ ଏ ପାଗଳଟା କଥାରେ ପଡୁ କାହିଁକି କହିଲୁ ? - ହଁ, ତୁ ଯା' ମା', କନ କ'ଣ ଏମାନଙ୍କ ପାଇଁ ଜଳଖିଆ ତିଆରି କରୁଛି, ତୁ ଯା' ଟିକିଏ ଦେଖିବୁ । (ଶାନ୍ତି ଚାଲିଗଲା, ପାର୍ବତୀ ସେଇଆଡ଼ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ । ବ୍ରଜ ହସୁଥାଏ ।

ବ୍ରଜ - ତୁ କାଲି କଟକ ଯାଉଚୁ ସୁର ?

ସୁର - ହଁ ।

ବ୍ରଜ - କଲେଜ୍ କେବେ ଖୋଲୁଚି ?

ସୁର - ଖୁବ୍ ଚଞ୍ଚଳ.....କାହିଁକି ?

ବ୍ରଜ - ନାଇଁ, ମାଉସୀ ଏଇନେ ତୋ କଟକ ଯିବା କହୁଥିଲେ ।

ପାର୍ବତୀ - ହଁ, ତୁ ଟିକିଏ ବସ ବା ବ୍ରଜ, ତୋ'ରି ଆଗରେ କଥାଟା ପଡୁ । (ବ୍ରଜ ବସିଲା - ସୁର ଯେପରି ଟିକିଏ ବିସ୍ମିତ ହେଲା) ତିନିଦିନ ହେଲା ଶାନ୍ତିବୋଉ ଡକେଇଲାଣି - ଆଜି ଯାଇଥିଲି । ଶାନ୍ତିର ବାହା ଗହଣା.... ସବୁ ଦେଖାଇଲା ଦି' ସାର ଗହଣା ମଧ୍ୟ ତିଆରି କରିଛନ୍ତି, ସାରେ ଇଟା ସୁନାର- ସାରେ ଗିନି ସୁନାର ।

ବ୍ରଜ - ଶାନ୍ତିର ବାହାଘର କଥା କ'ଣ ପଡ଼ିଲା ।

ପାର୍ବତୀ - ସେ କଥା ଆଉ ପଡ଼ିବାର କ'ଣ ଅଛି ? ମୋ ଇଚ୍ଛା ଯାହା, ତାଙ୍କର ଇଚ୍ଛା ବି ସେଇଆ । ସୁର ଏ ବର୍ଷ ପାଶ୍ କରିସାରିଲେ ବାହାଘର ହେବ । କଥା ପଡ଼ିଥିଲା ସୁରର ପଢ଼ା ନେଇ । ଶାନ୍ତିବୋଉ କହିଲା ଦେଖ ଅପା, କୋଉ କଥା କାହାକୁ ଅଛପା । ଏଣିକି ମାସିକୁ ତିରିଶ ଚାଳିଶ ଟଙ୍କା ଦେଇ ସୁରକୁ ପଢ଼ାଇବାକୁ ତମକୁ ବାଧିବ - ତମେ କିଛି ମନେକରନା, ଏ ବର୍ଷର ଖର୍ଚ୍ଚଟା ଆମେ ଚଳାଉଛୁଁ ।

(ଏ କଥା ଶୁଣି ସୁର ବିବ୍ରତ ହୋଇପଡ଼ିଲା ।)

ସୁର - ହୁଁ, ତୁ କ'ଣ କହିଲୁ ?

ପାର୍ବତୀ - ଦେଖିବୁଟିରେ ବ୍ରଜ - ମୁଁ କ'ଣ ପିଲାହେଇଚି - ତତେ ନପଚାରି ମୁଁ ତାଙ୍କୁ କାହିଁକି କ'ଣ କହନ୍ତି ?

ବ୍ରଜ - ଟଙ୍କାଟା ସେମାନେ କେମିତି ଭାବରେ ଦବାକୁ ଚାହାନ୍ତି ?

ପାର୍ବତୀ - କିମିତି ଆଉ କ'ଣ ? ସେମାନେ କହନ୍ତି ଯେ ତାଙ୍କର ଯାହା କିଛି ଅଛି, ସେ ସବୁର ମାଲିକ ତ ଦିନେ ସୁର ହବ; ତେବେ ବର୍ତ୍ତମାନ କାହିଁକି ସେ ହଇରାଣ ହବ ? ..... ମୁଁ ତାଙ୍କୁ କହିଦେଇଆସିଚି ସୁରକୁ ଡାକି ତୁମେ ଏ କଥା ପଚାର, ମୁଁ କିଛି କହିପାରିବି ନାହିଁ ।

ସୁର - ନା ବୋଉ, ମୁଁ କହିବା ଦରକାର ନାଇଁ - ତୁ ତାଙ୍କୁ କହିଦେ ଯେ ଏ କଥା ହୋଇପାରିବ ନାଇଁ । ଟଙ୍କା ମୁଁ ତାଙ୍କଠୁ କେବେ ନେବିନାହିଁ ।

ବ୍ରଜ - ଆଚ୍ଛା ସୁର, ମୁଁ ଗୋଟିଏ କଥା କହେ ।

ସୁର - କ'ଣ ?

ବ୍ରଜ - ଟଙ୍କାଟା ଯେତେବେଳେ ସେ ରାସ୍ତାଖର୍ଚ୍ଚ କିମ୍ବା ଯୌତୁକ ଭାବରେ ଦଉନାହାନ୍ତି, ସେତେବେଳେ ତୋ ନବାରେ ଆପତ୍ତି କ'ଣ ?

ସୁର - ତେବେ ସେ କିପରି ଭାବରେ ଦବାକୁ ଚାହାନ୍ତି ?

ବ୍ରଜ - ସେଇ କଥା ତ ମାଉସୀ କହୁଥିଲେ ସୁର ଓ ସେମାନେ କହିବାକୁ ଚାହାନ୍ତି ଯେ ତାଙ୍କର ବିଷୟ ସମ୍ପତ୍ତିର ମାଲିକ ମୁଁ । କିନ୍ତୁ ସେ ସୌଭାଗ୍ୟ ତ ମୋର ଏପର୍ଯ୍ୟନ୍ତ ହୋଇନାହିଁ । ତା' ଛଡ଼ା ଶାନ୍ତିକୁ ବିବାହ କଲେ ଯେ ତାଙ୍କ ସମ୍ପତ୍ତିର ଅଧିକାରୀ ମୁଁ ହେବି ଯାର କିଛି ମାନେ ଅଛି କି ?

ବ୍ରଜ - ନା, ତା' ନାହିଁ - ଆଉ ନରହିବା ବି ଉଚିତ୍ । କିନ୍ତୁ ସେ ହୁଏତ ଭାବନ୍ତି, ଏପରି

ଟଙ୍କା ଦବାରେ ତୋ ଉପରେ ତାଙ୍କର ଅଧିକାର ରହିଛି ।

ସୁର - ଭୁଲ୍ ବୁଝିଲୁ ବ୍ରଜ ! ଏପରି ଭାବରେ ଟଙ୍କା ଦେଇ ସେମାନେ ଅଧିକାରକୁ ସାବ୍ୟସ୍ତ କରିନେବାକୁ ଚାହାନ୍ତି । କିନ୍ତୁ ମୁଁ ବୁଝିପାରୁନି ଯେ ସେମାନେ ଏପରି ଦୁର୍ବଳମନା ହୋଇପଡୁଛନ୍ତି କାହିଁକି ? ବିବାହ ତ ମୁଁ ପ୍ରତ୍ୟାଖ୍ୟାନ କରୁନି ।

ପାର୍ବତୀ - ଛି ସୁର, ଏପରି କୁହନ୍ତି ? ପୁଅନାହିଁ ତାଙ୍କର - ଗୋଟିଏ ବୋଲି ଝିଅ, ସେମାନେ ତତେ ତାଙ୍କ ନିଜ ପୁଅ ପରି ସ୍ନେହ କରନ୍ତି ।

ସୁର - ତା' ତ ମୁଁ ଅସ୍ୱୀକାର କରୁନି ବୋଉ ! ତାଙ୍କର ଏଇ ସ୍ନେହ ମୋ ଜୀବନରେ ଅକ୍ଷୟ ହୋଇରହୁ - ଏହା ମୁଁ ଚାହେଁ । କିନ୍ତୁ ମୁଁ ଚାହେଁନା ଯେ ଏଇ ପବିତ୍ର ସ୍ନେହର ଧାରା ଟଙ୍କା-ପଇସା ସଂସ୍ପର୍ଶରେ ଆସି କଳୁଷିତ ହେଇଯାଉ । ସ୍ନେହର ଶକ୍ତି ଆଉ ଟଙ୍କାର ମୋହ, ଦୁଇଟା ଦୂରେ ଦୂରେ ରହିବା ଭଲ ।

ବ୍ରଜ - ହଁ, ଏ ବର୍ଷ ତୋର ପଢ଼ାର ଖର୍ଚ୍ଚ - ତା'ର ତୁ କି ବନ୍ଦୋବସ୍ତ କରୁଛୁ ।

ସୁର - ହଷ୍ଟେଲ୍ ଛାଡ଼ି ମେସ୍‌ରେ ରହିବି - ବେଶି ଖର୍ଚ୍ଚ ପଡ଼ିବ ନାହିଁ । ରାଜା ଶିବନାରାୟଣ ସ୍କଲାରସିପ୍ ତ ଦଶ ଟଙ୍କା ଅଛି - ବାକି ଗୋଟିଏ ଅଧେ ଟିଉସନ୍ ଯୋଗାଡ଼ କରିନେଲେ ହେଲା ।

ପାର୍ବତୀ - ଶୁଣ ବ୍ରଜ, ପର ଘରେ ଟିଉସନ୍ କରି ଏ ପାଠ ପଢ଼ିବ, ଆଉ ଯା' ମୁଁ ଦେଖିବି !

ସୁର - ତେବେ ବୋଉ, ତୁ କ'ଣ କହିବାକୁ ଚାହୁଁ ଯେ ସେମାନେ ଦୟାକରି ମୋତେ ଯୋଉ ଟଙ୍କା ଦେବେ ସେଇ ଟଙ୍କାରେ ମୁଁ ମଣିଷ ହେବି ?

ବ୍ରଜ - ଦୟାକରି ଟଙ୍କା ଦବା କଥା କହନା ସୁର, ତା'ଦ୍ୱାରା ସେମାନଙ୍କ ପ୍ରତି ଅବିଚାର କରାହେଉଚି ।

ପାର୍ବତୀ - ସେମାନଙ୍କ କଥା ଥାଉ, ତୋ ବାପା ତତେ ଅରକ୍ଷ କରି ଛାଡ଼ିଯାଇନି । ଯାହା କିଛି ଜମିବାଡ଼ି ସେ ତୋ ପାଇଁ ରଖିଯାଇଛନ୍ତି, ତାକୁଇ ତୁ ବିକି ଭାଙ୍ଗି ମଣିଷ ହ' ।

ସୁର - ମଣିଷ ହବାକୁ ଯାଇ ଏତେଟା ଅମଣିଷ ମୁଁ ହୋଇପାରିବି ନାଇଁ ବୋଉ ! ବାପା ତାଙ୍କର ମୁଣ୍ଡର ଝାଳ ତୁଣ୍ଡରେ ମାରି ଯାହା କିଛି କରିଯାଇଛନ୍ତି, ତାକୁ ମୁଁ ଉଡ଼ାଇଦେବି କୋଉ ଅଧିକାରରେ ? ସେଥିରେ ତାଙ୍କର ମୃତ ଆତ୍ମା ସନ୍ତୁଷ୍ଟ ହେବ ତ ? ତୋ'ଠିଁ ତ ମୁଁ ବରାବର ଶୁଣୁଛି ଯେ ବାପାଙ୍କର ପୈତୃକ ସମ୍ପତ୍ତି ଭିତରେ ଥିଲା ଏଇ ଘରଡିହ ଖଣ୍ଡିକ । ଅନାହାରରେ ରହି ସୁଦ୍ଧା ତାକୁ ସେ ବିକ୍ରି ନକରି ନିଜ ଚେଷ୍ଟାରେ ନିଜେ ମଣିଷ ହୋଇଥିଲେ । ତାଙ୍କରି ପୁଅ ତ ମୁଁ, ମୁଁ କାହିଁକି ସେପରି ହୋଇପାରିବିନି ? ଆଜି ସେଇ ପରୀକ୍ଷାର ବେଳ ଆସିଚି ବୋଉ, ତୁ ମତେ ବାଧା ଦେ'ନା ।

ପାର୍ବତୀ - (ଲୁହଭରା ଆଖିରେ) ନାରେ ନା - ମୁଁ ତତେ ବାଧା ଦେବିନାଇଁ । ଉପରେ ଥାଇ ସେ ଦେଖନ୍ତୁ ତାଙ୍କ ପରି ତାଙ୍କ ପୁଅ ମଧ୍ୟ କାହା ପାଖରେ ମୁଣ୍ଡ ନୁଆଇଁ ଶିଖିନି ।

କନକ - (ଭିତରୁ) ବୋଉ !

ପାର୍ବତୀ - ଯାଉଚି । ତୁ ଚାଲିଯିବୁ ନାହିଁ ବ୍ରଜ - ଜଳଖିଆ ଟିକେ ଖାଇକରି ଯିବୁ ।
(ଚାଲିଗଲେ)

ବ୍ରଜ - ତୁ କ'ଣ ଟିକେ ବେଶି ମାତ୍ରାରେ ସେଣ୍ଟିମେଣ୍ଟାଲ୍ ହୋଇ ପଡୁନୁ ସୁର ?

ସୁର - ଜୀବନରେ କ'ଣ ବେଳେବେଳେ ତା'ର ଦରକାର ହୁଏନା ?

ବ୍ରଜ - ଆଚ୍ଛା ସୁର, ମୁଁ ଗୋଟାଏ କଥା କୁହେ -

ସୁର - କହ ।

ବ୍ରଜ - ବ୍ୟାଙ୍କ୍‌ରେ ତୋର ଯେଉଁ ହଜାରେ ଟଙ୍କା ଅଛି.....

ସୁର - ସେତକ ବର୍ତ୍ତମାନ ମୋ ପଢ଼ାଖର୍ଚ୍ଚରେ ଲାଗିପାରନ୍ତା ।

ବ୍ରଜ - ହଁ, ଏତେ ଅସୁବିଧା ଭିତରଦେଇ ଯିବାକୁ ପଡ଼ନ୍ତାନାହିଁ ତତେ -

ସୁର - ଏକାବେଳକେ କିଛି ନଜାଣିଲାପରି କଥାଟା କହୁଛୁ ଯେ ? ବୋଉ ଅଳଙ୍କାରତକ ଆଉ ଏ ଟଙ୍କା, ଏଥିରେ ତ ମୋର କିଛି ଅଧିକାରନାହିଁ - ସେତକ କନର ।

ବ୍ରଜ - ଆଚ୍ଛା, କନ ଯଦି ସେଥିରେ ଆପତ୍ତି ନକରେ ?

ସୁର - ଏଇଟା କନର କଥା - ନା ତା'ପକ୍ଷ ନେଇ ତୁ କହୁଚୁ ?

ବ୍ରଜ - ଧର ସେଇଆ ହେଲା, ସେଥିରେ ତୋର ଆପତ୍ତି କ'ଣ ?

ସୁର - ଆପତ୍ତି ଅନେକ କିଛି, ମୋ ଅପେକ୍ଷା ଆପତ୍ତି କନର ବେଶି ଆଉ ସବୁଠୁଁ ବେଶି ଆପତ୍ତି ତୋର - ମାନେ ହେବା ଉଚିତ୍ ।

ବ୍ରଜ - ମୋ କଥାଟା ତୁ ଏପରି ବାଏଁ ବାଏଁ ଉଡ଼େଇଦବାକୁ ଚାହୁଁନା ?

ସୁର - ଛାଡ଼ ସେସବୁ ପାଗଳାମି - ଏବେ କହ, କଟକ ଯାଇଥିଲୁ, ସରକାରୀ ମହଲରୁ କି ଆଶା ପାଇଲୁ ?

ବ୍ରଜ - ଆଶା ଅପେକ୍ଷା ଉପଦେଶଟାହିଁ ବେଶି ପାଇଲି । ସେମାନେ କହନ୍ତି ସ୍ୱାସ୍ଥ୍ୟ, ଶିଳ୍ପ ଆଉ ସ୍ତ୍ରୀ-ଶିକ୍ଷା-ପ୍ରଥମେ ଏଇ ତିନିଟା ନେଇ କେନ୍ଦ୍ର କାମ ଆରମ୍ଭ କରିବାକୁ । ଯଦି ଆଶାଜନକ କାମ ଦେଖନ୍ତି, ତେବେ ଗ୍ରାଣ୍ଟ୍ ଦେବାପାଇଁ ସେମାନେ ବିଚାର କରିବେ ।

ସୁର - ତୋର ତେବେ ପୋଗ୍ରାମ୍ କ'ଣ ?

ବ୍ରଜ - ସରକାରୀ ସାହାଯ୍ୟକୁ ଅପେକ୍ଷା ନରଖି ଖୁବ୍ ଶୀଘ୍ର କାମ ଆରମ୍ଭ କରିବି । ଗ୍ରାଣ୍ଟ୍ ମୁଁ ପାଇବି ନିଶ୍ଚୟ, ସେଥିଲାଗି ମୋର ବି ଚିନ୍ତାନାହିଁ । କଥା ହଉଚି, ଯାହାକୁ ଭରସା ରଖି ମୁଁ ଏ କାମରେ ହାତ ଦେଉଚି, ଶେଷକୁ ଯଦି ତାକୁ ହରାଏ.....

ସୁର - ବୁଝିଛି, କିନ୍ତୁ ମୁଁ ଯେ ତୋର ବିଶ୍ୱାସ ହରାଇବି, ଏ ଧାରଣା ତୋ ମନରେ ଆସୁଚି କାହିଁକି ? ମୁଁ ତ ତତେ ବରାବର କହିଆସୁଚି ଏଇ ବର୍ଷଟା ପରେ ମୁଁ ଗୁରୁଦେବଙ୍କ ପଦାନୁସରଣ କରିବି ।

ବ୍ରଜ - କିଏ ଜାଣେ ବାବା, ଖାମ୍‌ଖେୟାଲି ଲୋକ ତ !

ସୁର - ଛାଡ଼ ସେ କଥା, ମୁଁ ଗୋଟିଏ କଥା ପଚାରେ, ବୋଉର ଇଚ୍ଛା ଯେ, ଆସନ୍ତା

ମାସରେ କନକୁ ତୁ ତୋ ଘରକୁ ନେ । ତୋର ଇଚ୍ଛା କ'ଣ ?

ବ୍ରଜ - ମୋର ଇଚ୍ଛା ? ମୁଁ ଚାହେଁ ଯେ ଏକାଦିନକେ ଦୁଇଟା ବେଦୀ ବନ୍ଧାହେବ - ଗୋଟିଏ ମଧୁଦାଦାଙ୍କ ଦୁଆରେ - ଆଉ ଗୋଟାଏ ଏଠି ।

ସୁର - ଏମିତି କଥା ! ବେଶ୍ ସେଇ କଥଟା ବୋଉକୁ ଜଣେଇଦେ ।

ବ୍ରଜ - ସେଇ ଭାରଟା ତୋ ଉପରେ.....(ଯିବାକୁ ଲାଗିଲା)

ସୁର - ଚାଲିଯାଉଛୁ ଯେ, ଜଳଖିଆ କରି ଯିବୁ ପରା ?

ବ୍ରଜ - ତା'ର ତ ଡେରିଅଛି । ପନ୍ଦର ଦିନ ପରେ ତମ ଗାଁକୁ ଆସିଛି, ଏଣେତେଣେ ଟିକେ ମୁହଁମାରି ଆସେ ।

(ବ୍ରଜ ଚାଲିଗଲା - ସୁର ସେଇଆଡ଼େ ଚାହିଁ ଠିଆହୋଇ ରହିଲା । ସୁରର ଅଜାଣତରେ ଆସିଲା ଶାନ୍ତି ।)

ଶାନ୍ତି - ସୁରଭାଇ !

ସୁର - କ'ଣ ଶାନ୍ତି ?

ଶାନ୍ତି - (ଟିକିଏ ରହି) ନା....କିଛିନାହିଁ, ଏମିତି ଡାକିଦେଲି ।

ସୁର - ଏମିତି ତ ତୁ କେବେ ଏପରିଭାବରେ ଡାକୁନା ! ନିଶ୍ଚୟ ତୁ କିଛି ଜାଣିବାକୁ ଚାହୁଁ ।

ଶାନ୍ତି - ବ୍ରଜଭାଇ ଚାଲିଗଲେଣି ?

ସୁର - ଏଇଥର ତୁ ଠିକ୍ ଧରାପଡ଼ିଲୁ । ବ୍ରଜ ଚାଲିଯାଇଛି ଜାଣି ତ ତୁ ଏଠିକି ଆସିଚୁ । ପୁଣି ସେଇକଥା ପଚାରିବାମାନେ ତୁ ସତକଥାଟା ଲୁଚାଇବାକୁ ଚାହୁଁଚୁ । କ'ଣ....ମୁଁ ଠିକ୍ କହୁଚି ତ ?

ଶାନ୍ତି - (ଟିକିଏ ଆହତ ସ୍ୱରରେ) ବାପା ଆଉ ବୋଉଙ୍କୁ ତମେ ଏତେ ପରବୋଲି ଭାବ କାହିଁକି ?

ସୁର - ଏତେ ଚଞ୍ଚଳ ନିଜର ବୋଲି ଭାବିଲେ ଲୋକେ କ'ଣ କହିବେ ? ଅନ୍ତତଃ ଆଉ ବର୍ଷେ ଗୋଟାଏ ଡେରି ଅଛି ତ ?

ଶାନ୍ତି - ଓ, ତମେ ଥଟ୍ଟା କରୁଚ, ନା ? (ଯିବାକୁ ଲାଗିଲା)

ସୁର - ଶୁଣ ଶାନ୍ତି, ତୁ ବି କ'ଣ ମତେ ଭୁଲ୍ ବୁଝୁଚୁ ? ଯେଉଁମାନେ ମତେ ଏତେ ନିଜର ବୋଲି ଭାବନ୍ତି, ସେମାନଙ୍କଠୁ ଟଙ୍କା ନନେଲେ ଯେ ତାଙ୍କୁ ପର ବୋଲି ଭାବିଲି ଏ ଧାରଣା ତୋ ମନରେ ଆସୁଚି କାଇଁକି ? ବାପା ଯାହା କିଛି ଟଙ୍କାପଇସା ରଖିଯାଇଥିଲେ, ସେ ସବୁ ମୋ' ପିଛାରେ ଶେଷ ହୋଇଯାଇଚି, ଅଥଚ ସେଇ ପଇସାରେ ମୁଁ ପ୍ରକୃତ ମଣିଷ ହେଇଛି କି ପଶୁ ହେଇ ଗଢ଼ାହେଇଚି, ତା' ପରୀକ୍ଷା କରିବାର ଏତେ ସାମାନ୍ୟ ସୁଯୋଗ କ'ଣ ତମେମାନେ ମତେ ଦବନାହିଁ ?

ଶାନ୍ତି - କିନ୍ତୁ ପଢ଼ାଟା କ'ଣ ଏଇଠୁ ଛାଡ଼ିଦେଲେ ହୁଅନ୍ତା ନାଇଁ ?

ସୁର - ଓ, ତୁ ଦୁଇପକ୍ଷ ବଞ୍ଚାଇ କଥା କହୁଚୁ । କିନ୍ତୁ କାହିଁକି ଶାନ୍ତି, ଆଉ ଗୋଟାଏ ବର୍ଷ

ତ....

ଶାନ୍ତି - ଗୋଟାଏ ବର୍ଷର କଥା ମୁଁ ଭାବୁନି ସୁରଭାଇ ! ଭାବୁଛି, କେତେ ଦୁଃଖ କଷ୍ଟହୁଏତ ତୁମେ ଏ ବର୍ଷକ ଭିତରେ ପାଇବ ।

ସୁର - ଏ ଯେ ଅତି ପୁରୁଣା କଥା ଶାନ୍ତି ! ଦୁଃଖ କଷ୍ଟ ଭୋଗିବା ମଣିଷର ନିତିଦିନିଆ କାମ ।

ଶାନ୍ତି - ଜଣକର ଦୁଃଖ ଦେଖି ଆଉ ଜଣକର ହୃଦୟ ଭାଙ୍ଗିପଡ଼ିଯିବା ଯେ ଅତି ପୁରୁଣା କଥା, ଯା ମଧ୍ଯ ତୁମେ କହିପାରିବ ।

ସୁର - ଛି ଶାନ୍ତି - ଏମିତି ପିଲାଙ୍କପରି ହଉଛୁ !

ଶାନ୍ତି - ସେ ଶିକ୍ଷା ମୋର ନାହିଁ ସୁରଭାଇ ! ଗୋଟାଏ କଥା ମୁଁ ଜାଣିବାକୁ ଚାହେଁ - ଏ ଦୁଃଖ କଷ୍ଟର ପରିବର୍ତ୍ତେ ତୁମେ ପାଇବ କ'ଣ ?

ସୁର - ମୁଁ ଜାଣେ ଶାନ୍ତି, ଇଉନିଭରସିଟ୍‌ର ଉପାଧି କିମ୍ବା ସାର୍ଟିଫିକେଟ୍ ମୋ ନିକଟରେ ନିହାତି ବେଦରକାରୀ ଜିନିଷ; କିନ୍ତୁ ମୋ ନିଜ ଚେଷ୍ଟାରେ ପଢ଼ି ମୁଁ ପାସ୍ କରିବି - ଭଲଭାବେ ପାସ୍ ପାସ୍ କରିବି - ସେତିକିରେ ହିଁ ମୋର ସାନ୍ତ୍ୱନା - ତାହା ହିଁ ମୋର ଜୟମାଲ୍ୟ । ଯା କ'ଣ ତୁ ଚାହୁଁନା ଶାନ୍ତି ? (ଶାନ୍ତି ମୁଗ୍‌ଧ ନୟନରେ ସୁରକୁ ଚାହିଁ ରହିଲା)

ଶାନ୍ତି - ମୁଁ ! ହଁ ସୁରଭାଇ ! ମୁଁ ସେଇଆ ଚାହେଁ - ତମେ ଯାଅ - ନିଜ ଚେଷ୍ଟାରେ ମଣିଷ ହୁଅ । ମୋର ବାପା ବୋଉଙ୍କ ଟଙ୍କାରେ ମଣିଷ ହେଲେ ହୁଏତ ଗର୍ବ କରିବେ ସେମାନେ - କିନ୍ତୁ ତମ ନିଜ ଚେଷ୍ଟାରେ ତମେ ଯେଉଁ ଯଶ ଓ ଖ୍ୟାତି ଅର୍ଜନ କରିବ, ସେଥିରେ ଗର୍ବ କରିବାର, ଆନନ୍ଦ କରିବାର ଅଧିକାର ସବୁଠୁଁ ବେଶି ରହିବ ମୋର ।

ସୁର - (ଧୀରେ ଶାନ୍ତିର ପାପୁଲିକୁ ନିଜ ହାତମୁଠାରେ ଧରି ଡାକିଲା) ଶାନ୍ତି.....

ଶାନ୍ତି - ହଁ, ତମେ କାଲି କଟକ ଯାଉଚ ତ ?

ସୁର - ହଁ ।

ଶାନ୍ତି - ଏଇଟା ନିଅ ତମ ପାଖରେ ରଖିବ । (ସୁର ଦେଇଥିବା ଛବିଟା ଦେଲା)

ସୁର - କାହିଁକି ? ମୁଁ କାହିଁକି ରଖିବି ?

ଶାନ୍ତି - ବାଃ, ତୁମେ ଏଇଟା ନିଜ ହାତରେ ତିଆରି କରିଛ, ତମେ ରଖିବନାଇଁ ?

ସୁର - ବୁଝିଛି; କିନ୍ତୁ ଯା'ଦ୍ୱାରା ଯେ ମନସ୍ତତ୍ତ୍ୱ ପ୍ରତି ଅବିଚାର କରାହେବ ।

ଶାନ୍ତି - ଥାଉ ତମର ମନସ୍ତତ୍ତ୍ୱ - ଏ ଛବିଟା ତମ ପାଖେ ପାଖେ ରହିବ ।

ସୁର - ଆଚ୍ଛା, ରହୁ ।

କନକ - (ଭିତରୁ) ଶାନ୍ତି.....

ଶାନ୍ତି - ଏଇଲୋ ମା' କନ ଡାକିଲାଣି । ତମେ ଯାଅ ବ୍ରଜଭାଇଙ୍କୁ ଡାକିଆଣିବ ।

ସୁର - କନ ତ ଡାକିଲା ତତେ, ମୁଁ କାହିଁକି ବ୍ରଜଭାଇଙ୍କୁ ଡାକିବାକୁ ଯିବି ?

ଶାନ୍ତି - ଯାଅନା ଚଞ୍ଚଳ । ନଇଲେ କନ ମୋ ଉପରେ ଚିଡ଼ିଚିଡ଼ି ହେବ ।
ସୁର - ଭଗବାନ୍.....କନର ତା'ହେଲେ ଡାକିବାର ଅର୍ଥଟା ରହିଚି ଏଠି । ସତେ ତମେ ଝିଅ ଦି'ଟା ହଉଚ କ'ଣ ?
ଶାନ୍ତି - ଯାଃ....(ସୁର ହସି ହସି ଚାଲିଗଲା, ପରେ ପରେ ଆସିଲା କନକ)
କନକ - **ଭାଇ** କୁଆଡ଼େ ଗଲେ ଶାନ୍ତି ?
ଶାନ୍ତି - (ଗମ୍ଭୀର ହୋଇ ) କୋଉ ଭାଇ ?
କନକ - ଆଲୋ କୋଉ ଭାଇ କ'ଣ ? କେଇଟା ଭାଇ ମୋର ଅଛନ୍ତି ?
ଶାନ୍ତି - ନାଇଁ, ମୁଁ ପଚାରୁଥିଲି ସୁରଭାଇ ନା ବ୍ରଜଭାଇ ? ତୁ ଏବେ ତେବେ ସୁରଭାଇଙ୍କ କଥା ପଚାରୁଚୁ ?
କନକ - ତୁ ଜମା ବୁଝିପାରୁଚୁ କି ?
ଶାନ୍ତି - ବୁଝିବି ଆଉ କେମିତି କହ ? ଖାଇବାର କଥା ଦି'ଜଣଙ୍କର, ତୁ ଆସି ପଚାରିଲୁ ଜଣକ କଥା, ସେଥିପାଇଁ ମୁଁ ଭାବିଲି....
କନକ - ସତେ, ଏମିତି ଭାବି ଆସିଲାଣି ତତେ ?
ଶାନ୍ତି - ମାଲୋ, ବ୍ରଜଭାଇଙ୍କ କଥା ଭାବିଲି ବୋଲି ଏମିତି ଦୋଷ ହୋଇଗଲା ?
କନକ - ମତେ ଚିଡ଼ାନା ଶାନ୍ତି, କହିଦଉଚି । ବୋଉଠୁ ଯାବତ ଗାଳିଖାଇ ଆସିଲିଣି ।
ଶାନ୍ତି - କାଇଁକି ? ତାଙ୍କୁ ବି କ'ଣ ପଚାରିଲୁ କିଏ କୁଆଡ଼େ ଗଲେ ବୋଲି ?
କନକ - ଧେତ୍, ଭୁଲ୍‌ରେ ଲୁଣ ବୋଲି ମାଛ ଭଜାରେ ଚିନି ପକାଇ ଦେଇଚି ।
ଶାନ୍ତି - ଭୁଲ୍‌ରେ କାଇଁକି ପକେଇବୁ - ବ୍ରଜଭାଇ ଯେ ବେଶି ମିଠା ଖା'ନ୍ତି, ଯା'କ'ଣ ମୁଁ ଜାଣେନା ?
କନକ - ଚୁପ୍ । (ଚାଲିଗଲା)
ଶାନ୍ତି - କନ, ଶୁଣ ମ.....(ଅନୁସରଣ କଲା) ।

## ଦ୍ୱିତୀୟ ଦୃଶ୍ୟ

(କଟକ ସହରର ଗୋଟିଏ ଗଳି ରାସ୍ତା - ସେଇ ଗଳିରେ ପ୍ରବେଶ କଲେ ରଙ୍ଗାଧର ଓ କାଳୀଚରଣ । ଦୁହେଁ ଶିକ୍ଷିତ ଯୁବକ ଓ ସାମ୍ୟବାଦୀ ଦଳର କର୍ମୀ ।)

ରଙ୍ଗା - ବମ୍ବେରୁ ଟଙ୍କା ଆସିବା ବନ୍ଦ ହୋଇଗଲା । ବୁଝିପାରୁଛୁ କାଳୀ, ଯା'ଦ୍ୱାରା ଆମ ଅବସ୍ଥା କ'ଣ ହେବ ?
କାଳୀ - ଅବସ୍ଥା ହେବାକୁ ଆଉ କ'ଣ ବାକି ଅଛି ? ଆଜି ତ ଏପର୍ଯ୍ୟନ୍ତ ସିଗ୍ରେଟ୍ ଖଣ୍ଡେ ଯୋଗାଡ଼ ହୋଇପାରିଲା ନାହିଁ ।

କ୍ରମେଡ୍ - ଏ ସିଗ୍ରେଟ୍ ବିରହ ମୁଁ ସହିପାରିବି ନାହିଁ ।

ରଙ୍ଗା - ଏମିତି ଗଳି ଭିତରେ ଠିଆହୋଇ ସ୍ତ୍ରୀଲୋକଙ୍କ ପରି କାନ୍ଦିଲେ ତୋ ପାଟିକି ସିଗ୍ରେଟ୍ ଆସିବନାହିଁ କି ପକେଟ୍‌କୁ ଟଙ୍କା ଆସିବ ନାହିଁ ।

କାଳୀ - କିନ୍ତୁ କାମ ବି ତ କରୁଛି ।

ରଙ୍ଗା - ଖୁବ୍ କରୁଛୁ, ଘଣ୍ଟାଏ କାଳ ତେଣେ ବସି ବସି ଆସିଲୁ - ଅଥଚ ଏ ପର୍ଯ୍ୟନ୍ତ ବିଶୁର ଦେଖାନାହିଁ ।

କାଳୀ - କ'ଣ ଆଉ କରିବି କହ ? ଆଖିରେ ତ ଇସାରା ଦେଇ ଆସିଲି ।

ରଙ୍ଗା - ତାକୁ ପରିଷ୍କାର ଭାବେ କଥାଟା ଟିକେ ଜଣାଇ ଦେଇ ଆସିପାରିଲୁ ନାହିଁ ? ଇସାରାଟା ଯଦି ଫେଲ୍ କରେ ?

କାଳୀ - କେବେ ଫେଲ୍ କରିବ ନାହିଁ କମ୍ରେଡ୍ - ଆଖି ଆଖିର କାରବାର ମତେ ବେଶ୍ ଜଣାଅଛି ।

ରଙ୍ଗା - କିନ୍ତୁ ସେ କାହିଁ । କେତେବେଳଯାଏଁ ମଣିଷ ଏ ଗଳିଟାରେ ଠିଆ ହୋଇ ରହିବ ? .....ଆଚ୍ଛା କାଳୀ, ଯା'ପରେ ରାୟବାହାଦୂର ପି.ଏନ୍. ମହାନ୍ତିଙ୍କୁ ଆଟେମ୍ପ୍ଟ କଲେ କେମିତି ହୁଅନ୍ତା ?

କାଳୀ - ହେ, ତୁ ମରିଯିବା କଥା କହୁଚୁନା କ'ଣ ?

ରଙ୍ଗା - ତୁ ଚୁପ୍‌କର । ଯା'ପରେ ମୋର ପ୍ରୋଗ୍ରାମ୍ ହେଉଚି ରାୟବାହାଦୂର ପି.ଏନ୍. ମହାନ୍ତି । ବେଶ୍ ଭୋଳାନାଥ ଟାଇପ୍‌ର ଲୋକ । କିନ୍ତୁ ସେଇ ଇଡ଼ିଏଟ୍ ପ୍ରଫେସର୍ ଦାସଟା ଚବିଶ ଘଣ୍ଟା ସେଠି ଆସି ଆଡ୍ଡା ଜମଉଚି ।

କାଳୀ - ଏତେଦିନ ବୁଡ଼ି ବୁଡ଼ି ପାଣି ପିଉଥିଲୁ; କିନ୍ତୁ ଯୋଉ ବାଟ ଧରିଲୁଣି କମ୍ରେଡ୍, ଏଣିକି ଲୋକେ ଆମକୁ କ'ଣ କହିବେ ଜାଣୁ ?.....

(ଠିକ୍ ଏତିକିବେଳେ ସେଠାରେ ଏକରକମ ଦୌଡ଼ିକରି ପହଞ୍ଚିଲା ବିଶୁ, ୧୨-୧୩ ବର୍ଷର ଗୋଟିଏ ପିଲା । ସେ ଗୋଟାଏ ଚା'ଦୋକାନର ବୟ ।)

ବିଶୁ - ଶଳା ଜୁଆଚୋର - (ରଙ୍ଗା ଓ କାଳୀ ଚମକି ପଡ଼ିଲେ) ପହିଲା ନମ୍ବର ହାରାମଜାଦା - ଏଇ ପାଜି ପତରା ସିଂ । ପୁଣି ମତେ ମାରିବ ବୋଲି ଚଢ଼ିଚି - ଶଳା ତୁ ନା ତୋ ବୋପା !

କାଳୀ - ବାଃ, ବାଃ ଶଳାରେ ଆରମ୍ଭ । ବୋପାରେ ଶେଷ - ଠିକ୍ ଅଛି ବନ୍ଧୁ -

ରଙ୍ଗା - କ'ଣ ହେଲା ବିଶୁ ?

ବିଶୁ - ଦୋକାନ ଆଗରେ କାଳୀବାବୁଙ୍କୁ ଦେଖି ରାଗରେ ନିଶ ଦି'ଟାକୁ ସିଂହ ପରି ଫୁଲାଇଦେଇଥାଏ । ମୁଁ ତାକୁ କହିଲି - ଦେଖ ସିଂହେ, ତମେ ରଙ୍ଗାବାବୁ ଆଉ କାଳୀବାବୁଙ୍କୁ ଚା' ସିଗ୍ରେଟ୍ ବନ୍ଦ କରନାହିଁ; ସେମାନେ ତମକୁ ହଇରାଣ କରିଦେବେ । ବାସ୍, ଏତିକିରେ ଶଳା ମତେ ମାରିବାକୁ ତିଆର । ତୁ ରହ ବେଟା - ମୁଁ ତତେ

ଦେଖୁଚି ।
କାଳୀ - ଧୀରେ କମ୍ରେଡ୍ ଧୀରେ....
ରଙ୍ଗା - ତା ଦୋକାନରେ କେତେଟା ପିଲା ଅଛନ୍ତି ?
ବିଶୁ - ମତେ ମିଶାଇ ପାଞ୍ଚଟା ।
ରଙ୍ଗା - ଷ୍ଟ୍ରାଇକ୍‌ରେ ତୁ କେତେଟାଯାଏ ଖସେଇ ଆଣିପାରିବୁ ?
ବିଶୁ - ତମେ ଧରନା ବାବୁ ଲାଲ ଝଣ୍ଡି - ସେ କଥା ଦେଖାଯିବ ।
କାଳୀ - ବିଶୁ, ତୋ ଚାନ୍ଦାଟା ଆଣିଚୁ ତ ?
ବିଶୁ - ହଁ ବାବୁ, ନିଅ - ପଇସା ତ ପାଇଲି ନାହିଁ - ଗରାକକୁ ବିକିଲାବେଳେ ଏଇ ସିଗ୍ରେଟ୍ ଦି'ଖଣ୍ଡ ମାରିଆଣିଚି ।

(ସିଗ୍ରେଟ୍ ଦେଲା)

କାଳୀ - (ସିଗ୍ରେଟ୍ ଧରି) ଓଃ.....ବିଶୁ ସେଭଡ୍ ଅସ୍ (Bisu saved us) - ବିଶୁ ଆଜି ଆମକୁ ରକ୍ଷାକରିଦେଲା ।
ରଙ୍ଗା - ଟେମ୍ପରେଚର୍ କେତେ ଡିଗ୍ରୀ ତଳକୁ ଖସୁଚି ଦେଖୁଚୁ କମ୍ରେଡ୍!
କାଳୀ - ଡୋଣ୍ଟ୍ ମାଇଣ୍ଡ୍ - ଉଇଲ୍‌ସ ଖଣ୍ଡେ ଟାଣିଦେ, ପୁଣି ଉପରକୁ ଉଠିଯିବ ।
ବିଶୁ - ମୁଁ କହୁଚି ବାବୁ, ସାଲିସ୍ କରିବା ପାଇଁ - ଶଳା ପଚାଶ ଟଙ୍କାରୁ କମ୍ ଦେବନାହିଁ । ମୁଁ ବେଶି ମାଗୁନାଇଁ ବାବୁ, ପାଞ୍ଚଟା ଟଙ୍କା - ଏ କାର୍ଣ୍ଣିଭାଲଟାକୁ ଦେଖି ମନ ଯା' ହଉଚି ବାବୁ!
ରଙ୍ଗା - ଆଶା କିପରି ଦେଖୁଚୁ କମ୍ରେଡ୍ ?
କାଳୀ - (ଦୀର୍ଘନିଃଶ୍ୱାସ ପକାଇ) ହୋପ୍‌ଲେସ୍ ।

## ତୃତୀୟ ଦୃଶ୍ୟ

(କଟକ ସହର । ରାୟବାହାଦୁର ପି.ଏନ୍. ମହାନ୍ତିଙ୍କ ଗୃହର ଗୋଟିଏ କକ୍ଷ । ସକାଳୁ କାଉଚ୍ ଉପରେ ବସି ରାୟବାହାଦୁର ଖବରକାଗଜ ପଢୁଥିଲେ । ଘରର ଗୋଟିଏ କୋଣରେ ତାଙ୍କ କିରାଣି ଅବିନାଶ ନିବିଷ୍ଟ ମନରେ କାମ କରୁଥିଲେ । ରାୟବାହାଦୁର ବୃଦ୍ଧ- ତଥାପି ସ୍ମାର୍ଟ୍ - ଖୁବ୍ ଆଧୁନିକ ଭାବାପନ୍ନ । ଆଉ ତାଙ୍କ କିରାଣି, ବୟସ ୪୦ ଉପରେ- ତାଙ୍କଠାରେ ମରହଟି ଓ ଆଧୁନିକତା ଏ ଦୁଇଟାରେ ଗୋଟିଏ ବିଚିତ୍ର ସମାବେଶ । କକ୍ଷଟି ଧନୀ ରାୟବାହାଦୁରଙ୍କ ଘରୋଇ ଅଫିସ୍ କହିଲେ ଚଳେ ।

ରାୟବାହାଦୁର - (ଖବରକାଗଜ ପଢୁ ପଢୁ) Hopeless.
ଅବିନାଶ - Yes Sir, Hopeless.

ରାୟବାହାଦୁର - ମାନେ ?

ଅବିନାଶ - ଆଜିକାର ଏଇ ଡାକଟା ସାର୍ - ମାଷ୍ଟର ପାଇଁ ଦରଖାସ୍ତ ଦେବାର ତାରିଖ ଗଲାଣି କେବେଠୁଁ, ଅଥଚ ଆଜି ଡାକରେ ଆସିଚି ଏଇ ଦୁଇଖଣ୍ଡ ଦରଖାସ୍ତ । ତା'ପରେ ଏଇ ନ'ଖଣ୍ଡ ଚିଠି - ସମସ୍ତେ ଜାଣିବାକୁ ଚାହାନ୍ତି ରାୟବାହାଦୁର କେବେ ତାଙ୍କ ଝିଅକୁ ବାହାଦଉଛନ୍ତି - ଯୌତୁକର ପରିମାଣଟା କେତେ ? ପୁଣି ଦେଖନ୍ତୁ....

ରାୟବାହାଦୁର - Hopeless.

ଅବିନାଶ - ମୁଁ ତ ସାର୍ ସେଇଆ କହୁଚି - ଏମାନଙ୍କ ଜ୍ୱାଳାରେ....

ରାୟବାହାଦୁର - ଆରେ ନା, ନା, ନା, ମୁଁ ତା' କହୁନାଇଁ । ଖବରଟା ଶୁଣିଚ ?

ଅବିନାଶ - ଆଜ୍ଞା, ନା ସାର୍ !

ରାୟବାହାଦୁର - ଶୁଣିବାକୁ ଚାହଁ ?

ଅବିନାଶ - ଆଜ୍ଞା, ହଁ ସାର୍ -

ରାୟବାହାଦୁର - ଶୁଣ, ବିଲାତରେ ଗୋଟିଏ ଖେଳରେ ଇଂରେଜମାନେ ହାରିଯାଇଛନ୍ତି ।

ଅବିନାଶ - କିଏ ଜିତିବ ସାର୍ ?

ରାୟବାହାଦୁର - ସେଇକଥା ତ କହୁଚି - ଆମେରିକାର ନିଗ୍ରୋମାନେ ଜିତିଛନ୍ତି ।

ଅବିନାଶ - ତେବେ ତ ସାର୍ ଏଥିରେ ଦୁଃଖ କରିବାର କିଛି ନାଇଁ ।

ରାୟବାହାଦୁର - ମାନେ ?

ଅବିନାଶ - ଆଜ୍ଞା, ଯେତେହେଲେ ସେମାନେ ଆମେରିକାର ନିଗ୍ରୋ ତ, ଆମେରିକାର ବସବାସ କରି ରହିଲେଣି । 'ଉଧାରିପଟା' ବିଲ୍‌ଟା ଯେତେବେଳେ ପାସ୍ ହୋଇଯାଇଚି, ସେତେବେଳେ ଆମେରିକାର କୁକୁର ବିଲେଇ ବି ଖେଳିଲେ ଜିତିଯିବେ ।

ରାୟବାହାଦୁର - ଆଃ, କୁକୁର ବିଲେଇ ଜିତନ୍ତୁ ବା ନିଗ୍ରୋ ଆଫ୍ରିଦ୍ ଜିତନ୍ତୁ, ସେଥିରେ ମୋର ଆପତ୍ତି ନାଇଁ - କିନ୍ତୁ ଇଂରେଜମାନେ ଯେ ହାରିଗଲେ - ସେମାନେ ଯେ ହାରିବାର ନୁହଁନ୍ତି ।

ଅବିନାଶ - କିନ୍ତୁ ସାର୍, ହାରିଲେ ତ.....

ରାୟବାହାଦୁର - ହୁଁ.....ତୁମେ ଯାଅ - କାମ କର....

(ରାୟବାହାଦୁର ପଢ଼ାରେ ମନଦେଲେ - ଅବିନାଶ ଯାଇ କାମ କଲା । ଟିକିଏ ପରେ ରାୟବାହାଦୁର ଡାକିଲେ) ଅବିନାଶ !

ଅବିନାଶ - Yes Sir.

ରାୟବାହାଦୁର - ତୁମର ଚିଠିପତ୍ର ସବୁ ଏଠିକି ଆଣ ତ !

(ଅବିନାଶ ଚିଠିପତ୍ର ସବୁ ନେଇଦେଲା । ରାୟବାହାଦୁର ଦେଖିଲେ । ତାଙ୍କର ୯/୧୦ ବର୍ଷର ଝିଅ ମିନି ଆସିଲା ।)

ମିନି - (ଦୌଡ଼ି ଦୌଡ଼ି ଆସି) ବାବା, ବାବା, ମୋର ଏଇ ଦରଖାସ୍ତଟା....

ରାୟବାହାଦୁର - ଦରଖାସ୍ତ..... Hopeless - ଦେଖ ମିନି, ତମକୁ ବରାବର କୁହାଯାଇଚି ଯେ ଆଠଟା ପରେ ତମେ କୌଣସି ଦରଖାସ୍ତ ଦେଇପାରିବ ନାହିଁ । ବର୍ତ୍ତମାନ ଦେଖ ୮ଟା ବାଜି ୧୭ ମିନିଟ୍.....

ମିନି - କିନ୍ତୁ ବାବା, ଏଇଟା ତ ମୋର ନିହାତି....

ରାୟବାହାଦୁର - ଆଃ, ସେ ଯାହାହେଉ ନା - ତମେ ଆଇନ୍ ବାହାରେ କାମ କରିବ କାହିଁକି ?

ମିନି - ତମେ ଜାଣନା ବାବା - ସେଇ ଯେ ମିସ୍ ତାଲୁକ୍‌ଦାର - ଆମ ମାଷ୍ଟରାଣୀ - ସେ ତମର ଏଇ ଆଇନ୍ ଫାଇନ୍ କିଛି ମାନିବେ ନାହିଁ । ସେ ଠିକ୍ ମୋର ଏଇ ଫ୍ରକ୍ ପିଠିରେ ସଟାକ୍ ସଟାକ୍ ପାଞ୍ଚ ବେତ ବସାଇଦେବେ । ଆଉ ସେ ଯୋଉ ପାହାର ବାବା.... ତମେ ଯଦି ସେଠି ଥିବ ତମ ଆଖିରୁ ବି ଲୁହ ବୋହିପଡ଼ିବ ।

ରାୟବାହାଦୁର - ହୁଁ, ପଢ଼ ତମର ଦରଖାସ୍ତ....

ମିନି - (ପଢ଼ିଲା) ବାବା, ମୋର ଆର ସପ୍ତାହରୁ ବେଶପୋଷାକ ଖାତାଟା ଶେଷ ହୋଇଯାଇଚି....

ରାୟବାହାଦୁର - ବେଶ-ପୋଷାକ ଖାତା !

ମିନି - ହଁ ବାବା, ବେଶ-ପୋଷାକ ଖାତା । କିମିତି ଭାବରେ ମୁଣ୍ଡ କୁଣ୍ଡାଇବାକୁ ହୁଏ - କିମିତି ଭାବରେ ଲୁଗାପଟା ପିନ୍ଧିବାକୁ ହୁଏ - ସେସବୁ ତମେ ବୁଝିବ ନାଇଁ ବାବା- ତମେ ଶୁଣ ମୋର ଦରଖାସ୍ତଟା - (ପଢ଼ିଲା) ସେଥିପାଇଁ ମୁଁ ମିସ୍ ତାଲୁକ୍‌ଦାରଙ୍କଠାରୁ ଥରେ ଧମକ ଖାଇସାରିଲିଣି । ଆଜି ଯଦି ମୁଁ ଖାତା ନ ନିଏ, ତେବେ ସେ କହିଛନ୍ତି ମୋର ଗୋଟାଏ ଆଖି ଫୁଟାଇଦେବେ । ଏଇନେ ରାଧୁଆ ଅବିନାଶବାବୁଙ୍କଠାରୁ ପଇସା ନେଇ ବଜାରରୁ ଖାତା କିଣିଆଣୁ - ଖୁବ୍ ଚଞ୍ଚଳ - ଇତି..... ଏଇରେ ଯାଃ.... ଦସ୍ତଖତ କରିବାକୁ ଭୁଲିଯାଇଛି....

(ଦୌଡ଼ିଯାଇ ଅବିନାଶବାବୁଙ୍କ ଲେଖୁଥିବା କଲମଟା ଛଡ଼ାଇ ଆଣି ଦସ୍ତଖତ କଲା) ଏଇ ନିଅ ବାବା !

ରାୟବାହାଦୁର - Hopeless; ଅବିନାଶ, ଏଇଟା ନିଅ - ଆଉ ମଦନାକୁ ପଇସା ଦେଇ ବଜାରକୁ ପଠାଅ ।

ମିନି - ନା, ବାବା, ରାଧୁଆ ଯାଉ - ମଦନା ଗଲେ ତେଣେ ବସି ବସି ଚିନାବାଦାମ ଖାଇବ - ଆଉ ଆସିବାକୁ ଡେରି କରିବ ।

ରାୟବାହାଦୁର - ଆଃ, ତମେ ଯାଅ - ତମର ପଢ଼ାପଢ଼ି କର - ଅବିନାଶ ସେ ସବୁକଥା ବୁଝିବ ।

(ମିନି ଚାଲିଗଲା - ଅବିନାଶ ନିଜ କାମରେ ମନଦେଲା - ରାୟବାହାଦୁର ପୁଣି ଚିଠିପତ୍ର ଦେଖିଲେ) ଅବିନାଶ !

ଅବିନାଶ - Yes Sir.

ରାୟବାହାଦୁର - ଏଇ ତମର ଚିଠିପତ୍ର ସବୁ ନିଅ, ଆଉ ଦେଖ

- ଏ ଦୁଇଟା ଚିଠିର ଜବାବ୍ ଯେମିତି ଆଜି ଯାଏ ।

(ଏଇ ସମୟରେ ଭିତରୁ ଆସିଲା ରେଖା, ରାୟବାହାଦୁରଙ୍କ ସତର ଅଠର ବର୍ଷର ଝିଅ - ତା'ହାତରେ ଖଣ୍ଡେ ଦରଖାସ୍ତ ।)

ରେଖା - ବାବା !

ରାୟବାହାଦୁର - ତମର ପୁଣି କ'ଣ ?

ରେଖା - ଭୁଲିଯାଇଥିଲି ବାବା - ମୋର ଏଇ ଦରଖାସ୍ତଟା - ଏଇ ଶୁଣ ମୁଁ ପଢୁଛି - (ପଢ଼ିଲା) ବାବା ! ଆସନ୍ତା ରବିବାର ଦିନ ନରାଜଠାରେ ଆମ କଲେଜ୍ କ୍ଲାସ୍ ପିଲାମାନଙ୍କର ଗୋଟାଏ ପିକ୍‌ନିକ୍ ହେଉଚି । ଅର୍ଗାନାଇଜ୍ କରୁଚନ୍ତି ମେରୀ ହକ୍ ।

ରାୟବାହାଦୁର - What ?

ରେଖା - ମେରୀ ହକ୍ ! ସର୍ବନାଶ - ମେରୀ ସୁଖଲତା ହକ୍‌ଙ୍କ କଥା ଶୁଣିନା ବାବା - କଲିକତାରୁ ଆସିଚନ୍ତି - ଏମ୍.ଏ. - କି ଚମତ୍କାର ଲେଖା ଲେଖନ୍ତି.....

ରାୟବାହାଦୁର - Hopeless! You read on.....ପଢ଼-ପଢ଼ !

ରେଖା- ପଢୁଚି.... (ପଢ଼ିଲା) ଅର୍ଗାନାଇଜ୍ କରୁଚନ୍ତି ମିସ୍ ହକ୍ । ମୋ ଉପରେ ଦଶ ଟଙ୍କା ଚାନ୍ଦା ହେଇଚି । ଆଜି ଚାନ୍ଦା ଦେବାର ଶେଷ ତାରିଖ । ଏଣୁ ପ୍ରାର୍ଥନା କରେ କି ମତେ ଦଶଟଙ୍କା ଦିଆଯିବାପାଇଁ ଅବିନାଶବାବୁଙ୍କୁ ହୁକୁମ ହେଉ ।

ଇତି....ରେଖା - I mean, କୁମାରୀ ରେଖା ମହାନ୍ତି ।

ରାୟବାହାଦୁର - ନା, ନା, ଯା' ହୋଇପାରେନା । ଗୋଟାଏ ପିକ୍‌ନିକ୍ ସକାଶେ ଦଶ ଟଙ୍କା ଚାନ୍ଦା ଦିଆଯାଇପାରେନା ।

ରେଖା - ଚାନ୍ଦା କମାଇବା ସକାଶେ ମୁଁ କ'ଣ କମ୍ ଆପତ୍ତି କରିଚି ବାବା ! କିନ୍ତୁ ମିସ୍ ହକ୍ କ'ଣ କହିଲେ ଜାଣ ? କହିଲେ ରାୟବାହାଦୁର ପି.ଏନ୍. ମହାନ୍ତିଙ୍କ ଝିଅଠାରୁ ଦଶଟଙ୍କାରୁ କମ୍ ଚାନ୍ଦା ନିଆଯାଇପାରେନା.....

ରାୟବାହାଦୁର - ତମ ମିସ୍ ହକ୍ ଗୋଟିଏ ଇଏ.... ମାନେ ତାଙ୍କର ଇକନମିକ୍‌ସ ଜ୍ଞାନ ଆଦୌ ନାହିଁ ।

ରେଖା - ନାହିଁ ତ.... କାରଣ ସେ ଇଂଲିଶ୍‌ରେ ଏମ୍.ଏ. କି ନା ?

ରାୟବାହାଦୁର - ହୁଁ.....ତମ ଦରଖାସ୍ତ ଦେଇଯାଅ - କ୍ଲାସ୍‌କୁ ଗଲାବେଳେ ଅବିନାଶଠୁଁ ଟଙ୍କା ନେଇଯିବ ।

(ରେଖା ଚାଲିଗଲା, ଟିକିଏ ପରେ ଭିତରୁ ଆସିଲା ୮/୯ ବର୍ଷ ବୟସର ଝିଅ ରାନୁ ।)

ରାନୁ - ବାବା !

ରାୟବାହାଦୁର - ତମର ପୁଣି କ'ଣ ?

ରାନୁ - ମୋର ଆଜି ଦରଖାସ୍ତ ଦବାର କିଛିନାହିଁ ।

ରାୟବାହାଦୁର - ବେଶ୍ ତ, ତେବେ ପଢ଼ାପଢ଼ି ଛାଡ଼ି ଏଠିକି ଆସିଲ କାହିଁକି ?

ରାନୁ - ଭାବିଲି କାଳେ ତମେ ମୋ ଦରଖାସ୍ତ ପାଇଁ ଅପେକ୍ଷା କରି ବସିଥିବ ।

ରାୟବାହାଦୁର - Hopeless ! ତମେମାନେ ସବୁ ବଡ଼ ଏଇ ....

ହେଇଉଠୁଛ -ଯାଅ-ଯାଅ- ପଢ଼ାପଢ଼ି କର ।

ରାନୁ ଚାଲିଗଲା । ରାୟ ବାହାଦୁର ଅନ୍ୟମନସ୍କ ଭାବରେ ବୁଲାଚଲା କଲେ ।

ରାୟବାହାଦୁର - ଆଚ୍ଛା ଅବିନାଶ, ତମେ କ'ଣ ଭାବୁଚ....

ଅବିନାଶ - ମୁଁ ତ କିଛି ଭାବୁନାହିଁ ସାର୍ !

ରାୟବାହାଦୁର - ଆଃ, କଥାଟା ଆଗେ ଶୁଣିସାର, ତମର କ'ଣ ଧାରଣା ଯେ ମୁଁ ପିଲାମାନଙ୍କୁ ଠିକ୍ ଶାସନ କରିପାରୁନି ?

ଅବିନାଶ - ଆଜ୍ଞା ନା - ଏ ଠିକ୍ ଶାସନ ଚାଲିଚି - ଆଉ ଟିକିଏ କଡ଼ା ହୋଇଗଲେ ଏକାବେଳକେ ୯୩ ଧାରା ଶାସନ ହୋଇଯିବ ।

ରାୟବାହାଦୁର - ତମେ ଏ କ'ଣ କହୁଚ ଅବିନାଶ ?

ଅବିନାଶ - ହଁ ଆଜ୍ଞା, ସେମାନଙ୍କର ମା' ମରିଯାଇଚନ୍ତି......

ରାୟବାହାଦୁର - ଓ, ତୁମେ ଠିକ୍ କହିଚ ଅବିନାଶ - ମାଆ ନାହିଁ ତାଙ୍କର । ତାଙ୍କୁ ଆଉ ବେଶି ଶାସନ କରାଯାଇପାରେନା; ବରଂ ଶାସନଟା ଆଉ ଟିକିଏ କୋହଳ କରିଦେବା ଉଚିତ୍.....କ'ଣ କହୁଚ ? ଆଚ୍ଛା ମୁଁ ଟିକିଏ ଦେଖିଆସେ ସେମାନେ କ'ଣ ପଢୁଛନ୍ତି । (ଚାଲିଗଲେ) (ରାୟବାହାଦୁର ଚାଲିଗଲେ । ଅବିନାଶ ନିଜ କାମରେ ମନଦେଲା, ଟିକିଏ ପରେ ସେ ଘରେ ନିଃଶବ୍ଦରେ ପ୍ରବେଶ କଲେ ପ୍ରଫେସର୍ ଦାସ । ବିଲାତଫେରନ୍ତା ତରୁଣ ପ୍ରଫେସର୍ - ସେ କିଛି ସମୟ ଅବିନାଶ ଆଡ଼େ ଚାହିଁଲେ - ତା'ପରେ ଖବରକାଗଜଟା ଉପରେ ଟିକିଏ ଆଖି ବୁଲାଇ ନେଇ କଲିଂ ବେଲର ସୁଇଚ୍ ଟିପିଲେ ।)

ଅବିନାଶ - (ଚମକିଉଠି) Yes Sir ! ଓ -ଆପଣ-ନମସ୍ତେ I am sorry - Good Morning.....

ଦାସ - ମର୍ଣ୍ଣିଂ - ମର୍ଣ୍ଣିଂ- Well ମି. ଅବିନାଶ, ଖୁବ୍ ଜୋର୍ କାମ୍‌ଦାମ୍ ଚାଲିଚି ନା !

ଅବିନାଶ - ଏ ଆଉ ନୂଆ କଥା କ'ଣ ସାର୍, ଚାଲିଚି ଯେମିତି ଚାଲିବାର କଥା - "ସେଇ You ଅବିନାଶ - Yes Sir" ଖାଲି ଆପଣ ଆସିଲେ - ଟଂ....

ଦାସ - ଆଚ୍ଛା, ରାୟବାହାଦୁରଙ୍କ ଆଜିକାର ପ୍ରୋଗ୍ରାମ୍‌ଟା ଦିଅ ତ ! (ଅବିନାଶ ପ୍ରୋଗ୍ରାମ୍ ଦେଲା - ଦାସ ଦେଖିଲେ) ଓ, ରାୟବାହାଦୁର ତା'ହେଲେ ବର୍ତ୍ତମାନ ପୋଖରୀ କୂଳରେ ଥିବେ ?

ଅବିନାଶ - ପୋଖରୀ କୂଳରେ ଥିବେ ?

ଦାସ - ନିଶ୍ଚୟ ! ଏଇ ତ ପ୍ରୋଗ୍ରାମ୍‌ରେ ଲେଖାଅଛି ଆଠଟାରୁ ନ'ଟା ଫିସିଙ୍ଗ୍ । ବର୍ତ୍ତମାନ ତ ସେ ନିଶ୍ଚୟ ମାଛ ଧରୁଥିବେ ।

ଅବିନାଶ - କିନ୍ତୁ ସାର୍, ବର୍ତ୍ତମାନ ତ ସେ ନିଶ୍ଚୟ ମାଛ ଧରୁନାହାନ୍ତି ।

ଦାସ - ତେବେ ?

ଅବିନାଶ - ସେ ବର୍ତ୍ତମାନ ଯାହା କରୁଛନ୍ତି, ତାକୁ ମାଛ ଖେଳାଉଛନ୍ତି କହିଲେ ଚଳିବ ।

ଦାସ - ମାଛ ଖେଳାଉଛନ୍ତି ମାନେ ?

ଅବିନାଶ - ମାଛ ଖେଳାଉଛନ୍ତି....ମାନେ....ମାନେ ଆଉ କ'ଣ...ମାନେ ସେଇଆ...ସେଇ...

ଦାସ - ମୁଁ କିଛି ବୁଝିପାରୁନାହିଁ ।

ଅବିନାଶ - ଆଜ୍ଞା ସେ ବର୍ତ୍ତମାନ ପିଲାମାନଙ୍କର ପଢ଼ାପଢ଼ି ଦେଖୁଛନ୍ତି ।

ଦାସ - କି ଏ ଅନ୍ୟାୟ- ନିହାତି ଅନ୍ୟାୟ ।

ଅବିନାଶ - ଅନ୍ୟାୟ । ପିଲାମାନଙ୍କର ପଢ଼ାପଢ଼ି ଦେଖିବାଟା ଅନ୍ୟାୟ !! ନିହାତି-

ଦାସ - ନିଶ୍ଚୟ । ପ୍ରୋଗ୍ରାମ୍‌ରେ ରହିଲା ବନ୍‌ଶୀ ପକାଇବା - ଅଥଚ ସେ ଦେଖିବେ ପିଲାମାନଙ୍କର ପଢ଼ାପଢ଼ି । ହଜାର ବାର କହିଲି ଯେ ପିଲାମାନଙ୍କ ସକାଶେ ଗୋଟାଏ ମିଷ୍ଟ୍ରେସ୍ ବା ଗଭର୍ଣ୍ଣେସ୍ ରଖାଯାଉ । କିନ୍ତୁ ତା' ହେଲାନାହିଁ, ଅଥଚ ନିଜେ ଅସମୟରେ ଯାଇ ପିଲାମାନଙ୍କୁ ପଢ଼ାଇବେ । ବାସ୍ତବିକ୍ ରାୟବାହାଦୁରଙ୍କ ପରି ଲୋକଙ୍କ ପକ୍ଷରେ ଏସବୁ କଥା....

ଅବିନାଶ - ସେସବୁ କଥା ଆଉ କାହିଁକି ପଚାରୁଛନ୍ତି ସାର୍ - ଯେତେହେଲେ ତ ଆପଣଙ୍କ ପରି ବିଲାତରେ ପାଦ ପକେଇ ଆସିନାହାନ୍ତି ।

ଦାସ - ଆଚ୍ଛା, ମୁଁ ତେବେ ଆସେ ଭିତର ଆଡୁ । (ରେଖା ଆସିଲା)
ଏଇ ଯେ ମିସ୍ ମହାନ୍ତି !

ରେଖା - ନମସ୍କାର ! ଆପଣ ସାର୍ କେତେବେଳୁ ?

ଦାସ - ଏଇ ପାଞ୍ଚ ମିନିଟ୍ । ରାୟବାହାଦୁର କ'ଣ ଭିତରେ ଅଛନ୍ତି ?

ରେଖା - ହଁ, ସେ ବର୍ତ୍ତମାନସୁଦ୍ଧା ରୋଷାଇଘରେ ।

ଦାସ - ରୋଷାଇଘରେ !

ରେଖା - ହଁ, ରାନୁପାଇଁ ନିଜ ହାତରେ ପୁଡ଼ିଂ ତିଆରି କରୁଛନ୍ତି ।

ଅବିନାଶ - ଏଇଟା ତ ମା' ପ୍ରୋଗ୍ରାମ୍‌ରେ ନାହିଁ !

ରେଖା - ତା'ର କୈଫିୟତ୍ ଦେବେ ମି. ଦାସ -ବାବାଙ୍କର ମୋସନ୍ ମାଷ୍ଟର୍ । ହଁ, ମତେ ଦଶଟା ଟଙ୍କା ଦେବେ ନା ଅବିନାଶବାବୁ !

ଅବିନାଶ - ହଁ ମା, ଏଇ ନିଅ । (ଟଙ୍କା ଦେଲେ)

ରେଖା - ଆପଣ ତା'ହେଲେ ଟିକେ ଅପେକ୍ଷାକରନ୍ତୁ ସାର୍ !
ମୁଁ ବାପାଙ୍କୁ ଡାକିଦଉଚି ।

ଦାସ - ନା, ନା, ତା'ର ଦରକାର ନାହିଁ । ତା ଅପେକ୍ଷା ଚାଲ ତମର ପଢ଼ାଟା ଦେଖିନିଏ ।
ରେଖା - ପଢ଼ା....ପଢ଼ା ତ ମୋର ସେମିତି କିଛି ଆଜି ନାହିଁ ସାର୍!
ଦାସ - ନାହିଁ ?.....ତେବେ....
ରେଖା - ଆପଣ ବାବାଙ୍କୁ ଖୋଜୁଥିଲେ ନା ?
ଦାସ - ଖୋଜୁଥିଲି.....ମାନେ....ଏଇ....
ରେଖା - କୁହନ୍ତୁ କ'ଣ - ମାନେ -ଏଇ.....
ଦାସ - ଏଇ.....

(ଯେମିତି ଟିକିଏ ମୁସ୍କିଲ୍‌ରେ ପଡ଼ିଲେ - ଅବସ୍ଥା ଦେଖି ଅବିନାଶ ଚାଲିଗଲା ।)

ରେଖା - ବୁଝିଲି, ଆପଣ ମୋ ସହିତ ଗଳ୍ପ କରିବାକୁ ଚାହାନ୍ତି ତ ?
ଦାସ - Exactly.
ରେଖା - ତେବେ ଡରିଯାଉଛନ୍ତି କାହିଁକି ? କୁହନ୍ତୁ ।
ଦାସ - ଡ୍ରଇଂରୁମ୍‌କୁ ଯିବାକୁ କିଛି ଆପତ୍ତି ଅଛି ?
ରେଖା - ଏଇଠି କୁହନ୍ତୁ ନା, ଅବିନାଶବାବୁ ଚାଲିଗଲେଣି ।
ଦାସ - ଓ, ମୁଁ ଆମର ସେଇ ଆସୋସିଏସନ୍‌ର କଥା କହୁଥିଲି ।
ରେଖା - ହଁ, ଆପଣଙ୍କର ସେ ଆସୋସିଏସନ୍‌ର ନାଁଟା କ'ଣ ଟି ?
ଦାସ - E.W.I.A.C.C.S.U. - ଅର୍ଥାତ୍ East West International Association of Culture, Civilisation and Social Upliftment.
ରେଖା - ବାବ୍‌ବା, ଏ ଯେ ଗୋଟାଏ ଜଗନ୍ନାଥ ସଡ଼କ । ଏତେ ବଡ଼ ଲମ୍ବା ନାଁଟା ଟିକେ ଛୋଟ କରିଦେଲେ ହୁଅନ୍ତା ନାଇଁ ?
ଦାସ - ଛୋଟ, ଆଚ୍ଛା ମୁଁ ଚେଷ୍ଟାକରି ଦେଖିବି । ଆମର ଏ ଆସୋସିଏସନ୍‌ର ପ୍ରକୃତ ଉଦ୍ଦେଶ୍ୟ କ'ଣ, ତା' ଏପର୍ଯ୍ୟନ୍ତ ତୁମକୁ ଭଲଭାବରେ ବୁଝାଇବାର ସୁଯୋଗ ମୁଁ ପାଇନାହିଁ ।
ରେଖା - ସେଥିରେ ମୋର ଆଉ ଦୋଷ କ'ଣ!....ଆଚ୍ଛା, ବର୍ତ୍ତମାନ ଆପଣ ଏ ସୁଯୋଗ ହରାନ୍ତୁ ନାହିଁ ।
ଦାସ - ତା'ପୂର୍ବରୁ ଗୋଟାଏ କଥା ମୁଁ ତୁମକୁ ପଚାରେ ମିସ୍ ମହାନ୍ତି - ତମେ ଉମେନ୍‌ସ କଲେଜ୍ ଛାଡ଼ି ଆମ କଲେଜ୍‌କୁ ଆସିବାକୁ ରାଜିନୁହଁ କାହିଁକି ?
ରେଖା - ଆପଣଙ୍କ କଲେଜ୍‌କୁ ଯାଇ ଲାଭ ? ଭଲ ପଢ଼ାପଢ଼ି ହେବ, ଏଇଆ ତ ?
ଦାସ - ତମ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମୋର ଆଜି ମନେପଡ଼ିଯାଉଚି ଯେ ବିଲାତର ଗୋଟିଏ ଘଟଣା । ମୁଁ ସେତେବେଳେ ଅକ୍‌ସଫୋର୍ଡ଼ର ଛାତ୍ର । ଆମ ସାଙ୍ଗରେ ପଢୁଥାଏ ଗରିବ କୃଷକ ଘରର ଝିଅ ଅସାମାନ୍ୟ ସୁନ୍ଦରୀ ବାଳିକା - ନାଁ ତା'ର ବେଲା - ଇସାବେଲା - ବେଲାଇ ତାକୁ ଡାକନ୍ତି । ବାସ୍ତବିକ ବେଲା ପରି ସୁନ୍ଦରୀ ବାଳିକା ଏ

ଦେଶରେ.... (ହଠାତ୍ ତାଙ୍କର ଖିଆଲ ଆସିଲା ଯେ ପାଖରେ ବସିଚି ରେଖା । ନିଜକୁ ସଂଯତ କରି ଓ ପ୍ରକାରାନ୍ତରେ ରେଖାକୁ ଉଦ୍ଦେଶ୍ୟ କରି) ମାନେ ଜଣେ ଅଧେଙ୍କୁ ଛାଡ଼ିଦେଲେ ଆଉ କାହାରିକୁ ଦେଖିନାହିଁ ।

ରେଖା - ହଁ, ତା'ପରେ କ'ଣ ହେଲା ?

ଦାସ - ବେଲାର ସହପାଠୀ ବିଲାତର ଜଣେ ଧନୀ ସମ୍ରାଟଙ୍କର ପୁଅ, ଜୋସେଫ୍ ଲଭ୍ଲକୁ । ବେଲା ତା'ରି ପ୍ରେମରେ ପଡ଼ିଲା । କିନ୍ତୁ ଲଭ୍ଲକ ଚାହେଁ ଯେ ବେଲା କଂପିଟ୍ କରୁ । ମାତ୍ର ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟରେ କଂପିଟ୍ କରିବାଭଳି ଦୁଃସାହସ ବେଲାର ନଥିଲା ।

ରେଖା - ତେବେ ସେ କ'ଣ କଲା ?

ଦାସ - ଲଭ୍ଲକ୍‌ର ଉତ୍ସାହ ବଳରେ ସବୁ କିଛି ଭୁଲି ବେଲା ଅଗାଧ ପରିଶ୍ରମ କଲା । ଆଉ ଜାଣ ମିସ୍ ମହାନ୍ତି, ଶେଷକୁ ବେଲା କଂପିଟ୍ କଲା ।

ରେଖା - କଂପିଟ୍ କଲା....! ବାବ୍‌ବାରେ, କି ସାଙ୍ଘାତିକ ଗାର୍ଲ୍!

ଦାସ - ହଁ, ସାରା ଦେଶରେ ତା'ର ସୁନାମର ସୀମା ରହିଲା ନାହିଁ । କିନ୍ତୁ ଏତେ ହାଡ଼ଭଙ୍ଗା ପରିଶ୍ରମ ବିଚାରୀ ସହିପାରିଲାନାହିଁ । ଅଳ୍ପଦିନ ଭିତରେ ହୃଦ୍‌ରୋଗରେ ତା'ର ମୃତ୍ୟୁହେଲା ।

ରେଖା - କ'ଣ କହୁଚନ୍ତି ସାର୍, ବେଲା ମରିଗଲା - ମରିଗଲା କେବଳ କଂପିଟ୍ କରି ?

ଦାସ - ହଁ, ମରିଗଲା । କିନ୍ତୁ ଯେଉଁ କୀର୍ତ୍ତିର ସ୍ତମ୍ଭ ସେ ରଖିଯାଇଚି, ତା ଏକା ବିଲାତ କାହିଁକି, ସମସ୍ତ ସଭ୍ୟ ଦେଶରେ ମଧ ଚିରପୂଜ୍ୟ ହୋଇରହିବ । କିଶୋରୀ ବାଳିକା ବେଲା - ସେଇ ମାତ୍ର ଯୌବନର ସବୁଜ ନିଶା ତାକୁ ସ୍ପର୍ଶ କରିଥିଲା - ଉପଭୋଗ କରିବାପାଇଁ ତା'ର ସମସ୍ତ ଜୀବନଟା ପଡ଼ିରହିଥିଲା । କିନ୍ତୁ ସବୁକିଛିର ମାୟା ତୁଟାଇଦେଲା ସେ ଚିରଦିନପାଇଁ । (ଶେଷ ଆଡ଼କୁ ଗଳାଟା ତାଙ୍କର ଭାରି ହୋଇଆସିଲା ।)

ରେଖା - ବାସ୍ତବିକ୍ ସାର୍ ଖୁବ୍ ଦୁଃଖର କାହାଣୀ । ଆଚ୍ଛା, ଆପଣ ଟିକିଏ ଅପେକ୍ଷା କରନ୍ତୁ, ମୁଁ ବାବାଙ୍କୁ ଡାକିଦଉଚି । (ରେଖା ଯିବାକୁ ଆରମ୍ଭ କଲା ।)

ଦାସ - ନା, ନା, ଏ ମିସ୍ ମହାନ୍ତି - ଶୁଣ! ମୋର କଥା ଯେ ଶେଷ ହୋଇନାହିଁ ।

ରେଖା - ଆଉରି ଅଛି ? ତେବେ କହନ୍ତୁ ।

ଦାସ - ମାନେ କାହିଁକି ଏ ଉଦାହରଣଟା ମୁଁ ଦେଲି ।

ରେଖା - ମୁଁ ବୁଝିଲି....ଯେ କିନ୍ତୁ ଗୋଟାଏ କଥା, ମୋର ବଡ଼ ଭୟ ହଉଚି ।

ଦାସ - ଭୟ, What ଭୟ ?

ରେଖା - ଏଇ ଧରନ୍ତୁ, ଆପଣଙ୍କ କଲେଜ୍‌ରେ କେହି ଜଣେ ବେଲା ପରି ସୁନ୍ଦରୀ ଗରିବ ଘରର ଝିଅ ତା'ର ସହପାଠୀ କୌଣସି ଜମିଦାର ପୁଅର ପ୍ରେମରେ ପଡ଼ି କମିଟ୍ କରି

ମଳା । ବିଲାତ ପରି ଦେଶରେ ସିନା ବେଲାପରି ଝିଅର ଅଭାବ ନାହିଁ; କିନ୍ତୁ ଆମ ଦେଶରେ ତ - ଏଇ ଆପଣ ବର୍ତ୍ତମାନ କହିଲେ ସେମିତି ଝିଅ ଜଣେ ଅଧେ ମିଳିବା ମୁସ୍କିଲ୍ । ସେଇ ଜଣେଅଧେର ଯଦି ଏମିତି ଅସାଧାରଣ ମୃତ୍ୟୁ ଘଟେ, ତେବେ କୁହନ୍ତୁ ତ, ସେତେବେଳେ ଆପଣଙ୍କ କୋ-ଏଜୁକେସନ୍‌ର ଦଶା କ'ଣ ହବ ? ଆପଣା କଥାଟା ଟିକେ ସିରିୟସ୍‌ଲି ଭାବନ୍ତୁ ସାର୍!

ଦାସ - ଯେ.....ତମେ ନିଶ୍ଚୟ ଥଟ୍ଟା କରୁଚ, ମିସ୍ ମହାନ୍ତି !

ରେଖା - ନା, ନା ମୁଁ ଥଟ୍ଟା କରୁନାହିଁ - ଆପଣ ବର୍ତ୍ତମାନ ଆସୋସିଏସନ୍‌ର କଥାଇ କୁହନ୍ତୁ ।

ଦାସ - ଆସୋସିଏସନ୍!! ହଁ, ଆମର ଆସୋସିଏସନ୍ ଆଣିବାକୁ ଚାହେଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ - ଅର୍ଥାତ୍ ବିଲାତ ଓ ଭାରତର ଗୋଟାଏ ଅପୂର୍ବ ମିଳନ ।

ରେଖା - ମାନେ ?

ଦାସ - ମାନେ ସେ ଦେଶ ଓ ଏ ଦେଶର ଏପରି ଏକ ମିଳନ, ଯାହାଦ୍ୱାରା କି ଆମର Social, ଆମର Economical, Cultural, Educational - ସବୁକିଛି ଅବସ୍ଥାରେ ହେବ ଆଶାତୀତ ଉନ୍ନତି । .... ଠିକ୍ ବୁଝିପାରୁଛନ୍ତି ତ ମୋ କଥାଟା ?

ରେଖା - (ଟିକିଏ ରହି) ହଁ.....

ଦାସ - ମୁଁ ଜାଣେ, ତମେ ନିଶ୍ଚୟ ବୁଝିବ । କିନ୍ତୁ ଖାଲି ବୁଝିଲେ ତ ଚଳିବନାହିଁ ମିସ୍ ମହାନ୍ତି ! ତମକୁ Personally ଯା' ଭିତରକୁ ଆଗେଇଆସିବାକୁ ହେବ -

ରେଖା - ରହନ୍ତୁ ତ । ଆପଣ କହିବାକୁ ଚାହାନ୍ତି ଯେ ଆମର ଆର୍ଥିକ ଓ ସାମାଜିକ ଇତ୍ୟାଦି ସମସ୍ତ କ୍ଷେତ୍ରରେ ହେବ ସେ ଦେଶ ଓ ଏ ଦେଶର ସହଯୋଗ ବା ମିଳନ ।

ଦାସ - Exactly.

ରେଖା - ବର୍ତ୍ତମାନ ଠିକ୍ ବୁଝିଲି ।

ଦାସ - କ'ଣ କୁହ ତ ?

ରେଖା - ଅବିନାଶବାବୁ !

ଦାସ - ଅବିନାଶବାବୁ !!

ରେଖା - ଅବନାଶବାବୁ ! (ଜୋର୍ ଗଳାରେ ଡାକିଲା । ଅବିନାଶବାବୁ ! (ଗୋଟିଏ ପାଇପ୍ ଟାଣି ଆଣି ଅବିନାଶ ବ୍ୟସ୍ତ ହୋଇ ଆସି ପହଞ୍ଚିଲେ ।)

ଅବି - କ'ଣ ମା' ?

ରେଖା - ଏଇ ଦେଖନ୍ତୁ ସାର୍ ! ଆପଣ ପ୍ରାଚ୍ୟ ଆଉ ପାଶ୍ଚାତ୍ୟ ଅର୍ଥାତ୍ ବିଲାତ ଆଉ ଭାରତର କଳ୍ପିତ ମିଳନର ଜ୍ୱଳନ୍ତ ଛବି ଆପଣଙ୍କ ସମ୍ମୁଖରେ ସଶରୀରେ ଦଣ୍ଡାୟମାନ ।

(ଦାସ ଆଉ ଅବିନାଶ କିଛି ବୁଝିନପାରି ଯେପରି ମୁସ୍କିଲ୍‌ରେ ପଡ଼ିଲେ)

ବୁଝିପାରୁନାହାନ୍ତି ବୋଧହୁଏ। ଆଚ୍ଛା ମୁଁ ବୁଝେଇ ଦଉଚି । ଏଇ ଦେଖନ୍ତୁ,

ଅବିନାଶବାବୁ ଗୋଡ଼ରେ ପିନ୍ଧିଛନ୍ତି ଖାଣ୍ଟି ବିଲାତି ଜୋତା - ଅଥଚ ତା' ଉପରେ ଝୁଲୁଚି ବଡ଼ବାଗର ତନ୍ତବୁଣା ପଖାଳକରା ଧୋତିର କୁଞ୍ଚ । ତା ପରେ ଦେଖନ୍ତୁ ଚୁଡ଼ିଦାର ପଞ୍ଜାବି ଉପରେ Openbreast Coat, ଆଉ କୋଟ୍ ଉପରେ ଚଉଭାଙ୍ଗ ହୋଇ ପଡ଼ିଚି କୁମ୍ଭପକା ଦକ୍ଷିଣୀ ଚାଦର । ବେକରେ ତୁଳସୀ ମାଳି - ପାଟିରେ ପାଇପ୍ - ନାକତଳେ ଅବଧାନିଆ ନିଶ - ଆଖିରେ ଦେଖନ୍ତୁ ଇଂଲିଶ୍ ଫ୍ରେମ୍ ଚଷମା - ନାକ ଉପରେ ରାମାନନ୍ଦୀ ଚିତା - ଚିତା ଉପରେ ଦେଖନ୍ତୁ ଅକ୍ସଫୋର୍ଡ୍ ଟେରୀ - ଆଉ ଟେରୀ ଉପରେ ଶୋଭାପାଉଚି ଖାଣ୍ଟି ହିନ୍ଦୁସ୍ଥାନୀ ଟୋପି ।)

ଅବି - ଠିକ୍ କହିଚ ମା' - ମୁଁ ହେଉଚି ପ୍ରଫେସର୍ ଦାସଙ୍କ ଆସୋସିଏସନ୍‌ର ଗୋଟିଏ ଚଳନ୍ତା ଚିଡ଼ିଆଖାନା । ସେଥିଲାଗି ମୁଁ ଶତକରା ପଚାଶ ବିଲାତି ଓ ଶତକରା ପଚାଶ ଦେଶି ଢଙ୍ଗରେ ଥାଏ ।

(ଅବିନାଶ ଚାଲିଗଲେ । ମି. ଦାସ କେବଳ ଶୁଷ୍କ ହସ ହସୁଥିଲେ ।)

ରେଖା - କହନ୍ତୁ ସାର୍, ଆପଣଙ୍କ ଆସୋସିଏସନ୍‌ର ଅର୍ଥ ମୁଁ ଠିକ୍ ବୁଝିପାରିଚି କି ନା ?

ଦାସ - ତମେ ଭାରି ଦୁଷ୍ଟ ମିସ୍ ମହାନ୍ତି ! କ'ଣ ଯେ ତମକୁ କହିବି....

ରେଖା - କହନ୍ତୁ ନା କ'ଣ କହିବେ ? - ଏଇ ଦେଖନ୍ତୁ ଅବିନାଶବାବୁ ପୁଣି ଚାଲିଗଲେଣି ।

(ଠିକ୍ ଏଇ ସମୟରେ ସେ ଘରେ ହଠାତ୍ ପ୍ରବେଶ କଲେ ରଙ୍ଗାଧର ଓ କାଳୀଚରଣ । ଅଦ୍ଭୁତ ବେଶପୋଷାକ ସେମାନଙ୍କର । ଦୁଇଜଣଙ୍କ ହାତରେ ଦୁଇଟା ଲାଲ ରଙ୍ଗର ଝଣ୍ଡା । ଦୁହେଁ 'ଲାଲ୍ ଝଣ୍ଡା କି ଜୟ' କହି ମିଲିଟାରୀ କାଇଦାରେ ସାଲ୍ୟୁଟ କଲେ ।)

ରଙ୍ଗା - ଆମେ କିନ୍ତୁ ଚାଲିଯାଉନ୍ତୁ, ମିସ୍ ମହାନ୍ତି !

କାଳୀ - ମାନେ, ଯାଇପାରିଲୁ ନାହିଁ ।

ରଙ୍ଗା - ଆଉ କିପରି ବା ଯାଆନ୍ତୁ ? ସେଇ ଯେ ମି. ଦାସ ଏ ଘରକୁ ଆସିଛନ୍ତି - ସେତିକିବେଳୁ ଆମେ ଆସି ସଦର ଦରଜା ସାମ୍‌ନାରେ ଟ୍ରେଜେରୀ ଗାର୍ଡ୍ ପରି ଏପଟରୁ ସେପଟ ମାର୍ଚ୍ଚିଂ କରୁଚୁ ।

କାଳୀ - ଆଉ ଏତେ ସମୟ ମାର୍ଚ୍ଚିଂ କରି ଫେରିଯିବାମାନେ - ସମୟର ଯେ ଗୋଟାଏ ମୂଲ୍ୟ ଅଛି, ତାକୁ ନିର୍ଘାତ୍ ଅସ୍ୱୀକାର କରିବା ।

ରଙ୍ଗା - ସେଥିଲାଗି ଆମେ ବାଧ ହୋଇ ପ୍ରବେଶ କଲୁ । ଆଉ ଏଇ ବାଧହୋଇ ପ୍ରବେଶ କରିବା ଯୋଗୁଁ ଯେଉଁ ଅପରାଧ କରିଛୁ, ତାହାପାଇଁ ଆମେ.....

ଉଭୟେ - ଆପଣଙ୍କଠାରେ କ୍ଷମା ଚାହୁଁଚୁ ମିସ୍ ମହାନ୍ତି ! ଲାଲ୍‌ଝଣ୍ଡାକି ଜୟ !

ଦାସ - କିନ୍ତୁ ଏ ଘରକୁ ଆସିବାକୁ ତମକୁ ଅଧିକାର ଦେଲା କିଏ ?

ରଙ୍ଗା - ଅଧିକାର -ଦେଲା - କିଏ । ସେ କଥା ବୁଝିପାରିଲେ ନାହିଁ କମ୍ରେଡ୍ ?

ଦାସ - Shut Up - କମ୍ରେଡ୍! What do you mean by କମ୍ରେଡ୍ ?

ରଙ୍ଗା - ନହେଲା ଏବେ, କମ୍ରେଡ୍ ନହେଲା - ସାର୍! କିନ୍ତୁ ସାର୍ ଅଧିକାର ଦିଅନ୍ତା କିଏ ? ଅଧିକାର ପାଇଲୁନାହିଁ ବୋଲି ତ ଅନଧିକାର ଚର୍ଚ୍ଚା କରିଆସିଲୁ । ଏତେ ଯେ ଗୌରଚନ୍ଦ୍ରିକା କଲି, ସେଥିରୁ ଆପଣ ଆଉ ବୁଝିଲେ କ'ଣ ?

(ମି. ଦାସ, କ'ଣ କହିବାକୁ ଯାଉଥିଲେ; କିନ୍ତୁ ରେଖା ସେଥିରେ ବାଧାଦେଲା । ସେ ଯେପରି ଏମାନଙ୍କୁ ଦେଖି ବେଶ୍ ଆମୋଦ ଅନୁଭବ କରୁଥିଲା ।)

ରେଖା - ସତେ, ଆପଣମାନେ ଆସିଚନ୍ତି - କିଛି ଭୁଲ୍ କରିନାହାନ୍ତି । ଏବେ ଦୟାକରି କୁହନ୍ତୁ ତ ଆପଣମାନେ କିଏ ଓ କାହିଁକି ଆସିଛନ୍ତି ?

ରଙ୍ଗା - ଆମେ କିଏ । ଇଏସ୍ - ଆମେ କିଏ....

କାଳୀ - କିନ୍ତୁ ଆମେ କିଏ , ସେ କଥା କ'ଣ ଆପଣ ବୁଝିପାରିଲେ ନାହିଁ ?

ରେଖା - ନକହିଲେ କେମିତି ବୁଝିବି କୁହନ୍ତୁ ?

ଦାସ - ମିସ୍ ମହାନ୍ତି....

ରେଖା - ଆପଣ ଟିକେ ରୁହନ୍ତୁ ସାର୍!

ରଙ୍ଗା - କିଛି ବୁଝିପାରିଲେ ନାହିଁ ? ଆମର ଚେହେରା, ଆମର ବେଶପୋଷାକ, ହାବଭାବ, ଚାଲିଚଳନ, କଥାବାର୍ତ୍ତା.....

କାଳୀ - ଆଉ ସର୍ବୋପରି ଏଇ ଲାଲ୍‌ଝଣ୍ଡା....

ଦାସ - କୀର୍ତ୍ତନିଆ ନୁହଁ ତ ?

ରଙ୍ଗା - ମାଫ୍ କରନ୍ତୁ ସାର୍ !

ରେଖା - ସାମ୍ୟବାଦୀ - ସାମ୍ୟବାଦୀମାନଙ୍କର ଏଇପରି ଲାଲ୍ ପତାକା ଥାଏ । ମୋର ମନେହେଉଚି ଆପଣମାନେ ସାମ୍ୟବାଦୀ ।

ଦାସ - କିନ୍ତୁ ଦେଖିଲେ ତ ମନେହୁଏ ଆପଣମାନେ ହାଡ଼େ ହାଡ଼େ....

ରେଖା -ଆପଣ ଟିକେ ରୁହନ୍ତୁ ସାର୍! ସତେ, ଆପଣମାନେ ପରିଚୟ ନଦେଲେ ତ ଆପଣମାନଙ୍କୁ ସାମ୍ୟବାଦୀ ବୋଲି ଜାଣିବାର କୌଣସି ଉପାୟ ନାହିଁ ।

ରଙ୍ଗା - ତା'ର କାରଣ ଆପଣଙ୍କର ଦୂରଦୃଷ୍ଟିର ଅଭାବ । ଆଚ୍ଛା, ଆମେ ଯେ ସାମ୍ୟବାଦୀ ତା'ର ପରିଚୟ ଆମେଇ ଦଉଚୁ । ଏଇ ଦେଖନ୍ତୁ, ମୋର ନାମ କମ୍ରେଡ୍ ରଙ୍ଗାଧର ମିଶ୍ର, ଆଉ ତାଙ୍କ ନାମ କମ୍ରେଡ୍ କାଳୀ ଚରଣ ରାୟ ।

କାଳୀ - ମୁଁ କରଣ - ସେ ବ୍ରାହ୍ମଣ ।

ରଙ୍ଗା - ମୁଁ ଗୋରା - ସେ କାଳିଆ ।

କାଳୀ - ମୁଁ ଡେଙ୍ଗା - ସେ ଗେଡ଼ା ।

ରଙ୍ଗା - ମୁଁ ଢିଲା ପାଇଜାମା ପିନ୍ଧିଚି - ସେ ସୁଟ୍ ପିନ୍ଧିଚନ୍ତି ।

କାଳୀ - ମୁଁ ଟୋପି ଦେଇଚି - ସେ ଟୋପି ଦେଉନାହାନ୍ତି ।

ରଙ୍ଗା - ମୁଁ ନିଶ ରଖିଚି - ସେ ନିଶ ରଖିନାହାନ୍ତି ।

କାଳୀ - ମୋଟ୍ ଉପରେ ମୁଁ ଯାହା, ସେ ତାହା ନୁହଁନ୍ତି; କି ସେ ଯାହା, ମୁଁ ତା' ନୁହେଁ ।

ରଙ୍ଗା - ଅଥଚ - ମାନେ ଏତେ ଅମେଳ ସତ୍ତ୍ୱେ ଆମେ ଦୁହେଁ ମିଶିଚୁ - ମିଶିଲା ପରି ମିଶିଚୁ ।

କାଳୀ - ଆଉ ଏ ମିଳନ - କଳା ଗୋରାର ମିଳନ - ବ୍ରାହ୍ମଣ କରଣର ମିଳନ - ଡେଙ୍ଗା ଗେଡ଼ାର ମିଳନ- 'ହଁ' 'ନାହିଁ'ର ମିଳନ । ସର୍ବବ୍ୟାପୀ ଏଇ ମିଳନ । ଆମେ ଦୁହେଁ ସମାନ - ସାମ୍ୟବାଦୀ -

ଦାସ - Nonsense.

ରଙ୍ଗା - ଡରିଯିବେ ନାହିଁ - ଡରିଯିବେ ନାହିଁ ସାର୍! ଏ ଆପଣଙ୍କ ସାମ୍ରାଜ୍ୟବାଦର ଶତ୍ରୁ ଋଷିଆର ସାମ୍ୟବାଦ ନୁହେଁ । ଏ ହେଉଚି ଗଣେଶ ମାର୍କା ସୋରିଷ ତେଲ ପରି ଖାଣ୍ଟି ଭାରତୀୟ ସାମ୍ୟବାଦ - ଏଇ ଦେଶରେ ଜନ୍ମିଚି.....

କାଳୀ - ଏଇ ଦେଶରେ ବଢ଼ିଚି.....

ଅବିନାଶ - (ପ୍ରବେଶ କରି) ଆଉ ଏଇ ଦେଶରେ ହିଁ ମରିବ ।

ରଙ୍ଗା - ଏଁ ଏଁ, What a wonderful animal!! କି ଆଶ୍ଚର୍ଯ୍ୟ ଜୀବ ଆପଣ!

କାଳୀ - ଆପଣ ଆମ ସାମ୍ୟବାଦର ମୃତ୍ୟୁକାମନା କରି ଦେଲେ ?

ରଙ୍ଗା - ହୁଁ, ତା କରିବାର କଥା । ତା' ତାଙ୍କର ବେଶପୋଷାକରୁ ମନେହେଉଚି ।

ରେଖା - ଶୁଣନ୍ତୁ ରଙ୍ଗାଧରବାବୁ!

ରଙ୍ଗା - ରଙ୍ଗାଧରବାବୁ ନୁହେଁ - କମ୍ରେଡ୍ ରଙ୍ଗାଧର ।

ରେଖା - ଆଚ୍ଛା, ସେଇୟା ହେଲା । ଆପଣ ମୋ ସହିତ କଥାବାର୍ତ୍ତା କରନ୍ତୁ - କହନ୍ତୁ ଆପଣମାନେ କାହିଁକି ଆସିଚନ୍ତି ?

ରଙ୍ଗା - ଶୁଣିବାକୁ ପାଇଲୁ ଯେ ଆପଣଙ୍କର ଟିଉସନ୍ ମାଷ୍ଟର ଦରକାର ।

ଦାସ - What ?

ଅବି - ତୁମେ ଟିଉସନ୍ କରିବ ?

ରେଖା - ସତ କହୁଚନ୍ତି, ଆପଣମାନେ ଟିଉସନ୍ କରିବାକୁ ଆସିଚନ୍ତି ?

ରଙ୍ଗା - କିନ୍ତୁ ଆପଣମାନେ ଅବିଶ୍ୱାସ କରୁଚନ୍ତି କାହିଁକି ?

କାଳୀ - ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଅବି - ନାଃ, ଆଶ୍ଚର୍ଯ୍ୟ ହବାର କିଛି ନାଇଁ । ଟିଉଟର୍ ହେବା ଭଳି ଅବସ୍ଥା ନେଇ ଏକା ତମେ ଆସିଚ ।

କାଳୀ - ଆଶ୍ଚର୍ଯ୍ୟ! ଟିଉସନ୍ ସହିତ ଅବସ୍ଥାର ସମ୍ବନ୍ଧ କ'ଣ ?

ରେଖା - ଆପଣ ଟିଉସନ୍ କରିବେ, କାହିଁ ଏକଥା ତ ଏପର୍ଯ୍ୟନ୍ତ କହିନଥିଲେ ?

ରଙ୍ଗା - କହନ୍ତୁ ଆଉ କେତେବେଳେ ? ଆସିଲାବେଳୁ ତ କଳିକଳିଆରେ ବ୍ୟସ୍ତ ରହିଛୁ ।

ଅବି - ଆଚ୍ଛା, ପାଠଶାଠ କ'ଣ ପଢ଼ିଛ ଟିକିଏ ଶୁଣେ -

ରଙ୍ଗା - ସେଇକଥା ପଚାରନ୍ତୁ ସାର୍, ସେଇକଥା ପଚାରନ୍ତୁ । ଆପଣ କ'ଣ ଚାହାନ୍ତି - ମାନେ କେଉଁ କେଉଁ ବିଦ୍ୟା ଆପଣଙ୍କର ଦରକାର ?

ଅବି - ବଡ଼ ଅଦ୍ଭୁତ ପ୍ରଶ୍ନ ତ !

ରଙ୍ଗା - ଆଚ୍ଛା, ଆମେଇ କହୁଚୁ - ଇଂଲିଶ୍, ରାଷିୟାନ୍, ଫ୍ରେଞ୍ଚ ।

କାଳୀ - ଓଡ଼ିଆ, ବଙ୍ଗଳା, ହିନ୍ଦୀ ।

ରଙ୍ଗା - ମେଟାର୍ଲଜି, ଜିଓଲଜି, ବାଇଓଲଜି.....

କାଳୀ - ଫିଜିକ୍ସ, ଫିଜିଓଲଜି.....

ରଙ୍ଗା - ଫିଲସଫି, ସାଇକୋଲୋଜି....

କାଳୀ - ଲ, କର୍ମସ୍.....

ରଙ୍ଗା - ରାଜନୀତି, ଅର୍ଥନୀତି.....

ଅବି - ପାଗଳ ହେଇଯିବେ, ପାଗଳ ହେଇଯିବେ - ତମକୁ ମାଷ୍ଟର୍ କରି ରଖିଲେ ଛୁଆ ଦି'ଟା ପାଗଳ ହେଇଯିବେ ।

କାଳୀ - ରହନ୍ତୁ ସାର୍, ଆଉ କିଛି....

ଅବି - ଆଉ ଦରକାରନାହିଁ ବାବା - ତମେ ଯାଅ, ଗଲ -

ଦାସ - କହୁଚ ତ ସାମ୍ୟବାଦୀ - ଏ ଜମିଦାର ପୁଞ୍ଜିପତିଙ୍କ ଘରେ ଚାକିରି କରିବ କିମିତି ?

ରଙ୍ଗାଟା - ଧନଟା ଆମ ହାତକୁ ଚାଲିଆସିଲେ ସେ ତ ଆଉ ପୁଞ୍ଜିପତିଙ୍କ ଧନ ହେଇରହିଲା ନାହିଁ - ସେ ହେଲା ସାମ୍ୟବାଦୀଙ୍କ ଧନ । କାରଣ ଏଠୁ ଯାହା ନେବୁ, ସବୁ ସେଇ ସର୍ବହରା ସାମ୍ୟବାଦୀଙ୍କ ମୁହଁରେ ପଡ଼ିବ । କିନ୍ତୁ ଚାକିରି ହେଉଚି କୋଉଠି - ମିସ୍ ମହାନ୍ତି -

ରେଖା - ଦେଖନ୍ତୁ, ଆପଣଙ୍କୁ ଟିଉଟର୍ କରି ରଖିବାରେ କୌଣସି ଆପତ୍ତି ନଥିଲା । ବାବା ବୋଧହୁଏ ଟିଉଟର୍ ବନ୍ଦୋବସ୍ତ କରିସାରିଚନ୍ତି ।

ରଙ୍ଗା - ସେଇ କଥାଟା ଦୟାକରି ଟିକେ ଆଗରୁ କହିଥିଲେ ହୋଇନ'ଥାନ୍ତା ?

କାଳୀ - ଅକାରଣେ ଏତେଗୁଡ଼ା ଫଏର୍ ଫାଙ୍କା ହୋଇଗଲା !

ଅବି - ଆଉ ଦୁଃଖକରି ଲାଭ କ'ଣ ବାବା, ଗଲ ଏଠୁ ।

ରଙ୍ଗା - କାମରେ ଆସିଲୁନାଇଁ, ତଡ଼ିଦଉଚନ୍ତି - ଏ ଆଉ ନୂଆ କଥାଟାଏ କ'ଣ କରୁଚନ୍ତି - ମହାଭାରତ ଅମଳରୁ ଏକଥା ଗଢ଼ିଆସୁଚି !

କାଳୀ - (ଏକାନ୍ତରେ ଅବିନାଶ ପ୍ରତି) ଆଚ୍ଛା ବନ୍ଧୁ, ତମକୁ ଦିନେ ଲାଲ୍‌ଝଣ୍ଡୀ ନଧରେଇ ଛାଡ଼ିବୁନାହିଁ ।

ରଙ୍ଗା - ଆମେ ତେବେ ଆସୁଚୁ ମିସ୍ ମହାନ୍ତି !

ରେଖା - ସିଗ୍ରେଟ୍ ଖା'ନ୍ତି ଆପଣମାନେ ?

କାଳୀ - ନଖାଇବୁ କାହିଁକି ?

(ସିଗ୍ରେଟ୍ ଆଣି ଦେଲା)

ଟିକେ ବସନ୍ତୁ.... ଚା'ଖାଇ ଯିବେ ।

ରଙ୍ଗା - ନା, ନା, ଏଇ ଯଥେଷ୍ଟ - ଧନ୍ୟବାଦ ।

ଦୁହେଁ ଯାକ - ଲାଲ୍‌ଝଣ୍ଡା କି ଜୟ । (ପୂର୍ବପରି ସାଲ୍ୟୁଟ୍ କରି ଚାଲିଗଲେ । ରେଖା ସେଇଆଡ଼େ ଚାହିଁ ରହିଥାଏ ।)

ଦାସ - କ'ଣ ଦେଖୁଚ ମିସ୍ ମହାନ୍ତି - ବେକାର ହେଲେ ଲୋକେ ଯାହା ହୁଅନ୍ତି ।

ରେଖା - ମୋର କିନ୍ତୁ ଗୋଟିଏ କଥା ମନେହେଉଚି; ଏମାନଙ୍କର ତ୍ୟାଗ ଅଛି - କିନ୍ତୁ ନୀତି ନାହିଁ, କି ପନ୍ଥା ନାହିଁ - କୌଣସି ଡେଫିନାଇଟ୍ ପ୍ରୋଗ୍ରାମ ବି ନାହିଁ ।

ଅବି - କିନ୍ତୁ ଆଜି ରାୟବାହାଦୁରଙ୍କର ସବୁ ପ୍ରୋଗ୍ରାମ୍ ଯେ ଗୋଳିମାଳିଆ ହୋଇଯାଇଚି । ଏ କ'ଣ ବାବା.... ଭିତରୁ ଯେ ଗୀତ ଶୁଭିଲାଣି ।

(ମଝିରେ ରାୟବାହାଦୁର - ଦୁଇ ପାଖରେ ମିନି ଆଉ ରାନୁ । ସେ ଦୁହେଁ ଗୀତ ଗାଉଚନ୍ତି । ରାୟବାହାଦୁର ଗୀତ ସ୍ରୋତରେ ନିଜକୁ ଯେମିତି ହରାଇ ଦେଇଚନ୍ତି - ଏଇପରି ଭାବରେ ସେମାନେ ଆସି ରଙ୍ଗମଞ୍ଚରେ ଦେଖାଦେଲେ । ରାୟବାହାଦୁର ଆସି ଗୋଟିଏ ଚୌକିରେ ବସିଲେ । ମି. ଦାସଙ୍କ ଉପରେ ତାଙ୍କ ଆଖି ପଡ଼ିନାଇଁ - ମିନି, ରାନୁ ନାଚି ନାଚି ଗୀତ ଗାଇବାକୁ ଲାଗିଲେ ।)

(ଗୀତ)

ନୀଳ ଲହରୀରେ ନୀଳ ଲହରୀ
ନାଚି ନାଚି ଯାଉ ଦରିଆ ପାରି । ।
ଆମ ରାଇଜର ହାତୀ ବୋଇତ
ଦେଖିଲୁ କି ନାହିଁ କହିବୁ ସତ
ଧୋବଫରଫର ଉଡ଼େ ତା ପାଲ
ବଗ ବଗୁଲି ଡେଣା ପରି ।୧ ।
ସାଧବପୁଅ ସେ ବୋଇତବାଲା
ବଣିଜକୁ କେବେ ତୋ କୋଳେ ଗଲା
ଅତଳ ଦରିଆ ବାନ୍ଧିରଖେ ତା'ର
ମନ ଅଚଳ କରି ।୨ ।

ମିନି ଓ ରାନୁ - ଦିଅ ବାବା ଆମ ବକ୍‌ସିସ୍, ତମ ବରାଦ ଅନୁସାରେ ଆମେ ଗୀତ ଗାଇଚୁ ।

ରାୟବାହାଦୁର - ଜରୁର୍ - ଜରୁର୍ ! ତମକୁ ବକ୍‌ସିସ୍ ଦିଆଯିବ; ତମେ ବର୍ତ୍ତମାନ ଯାଅ, ଖିଆପିଆ କର ।

ଦାସ - (ଟିକିଏ ଆଗେଇ ଆସି) Good Morning ରାୟବାହାଦୁର !

ରାୟବାହାଦୁର - ଏ, Hopeless - ଆରେ ପ୍ରଫେସର୍ ଦାସ !

Good Morning, Good Morning । ଦେଖିଲେ ତ ପ୍ରଫେସର୍, ରାନୁ ଆଉ ମିନୁ କିପରି ଚମତ୍କାର ଗୀତ ଗାଇଲେ । ଆରେ ତମେ କେତେବେଳେ ଆସିଲ ପ୍ରଫେସର୍ ? ଏ ରେଖା.....

ରେଖା - ଅନେକବେଳୁ ଆସିଲେଣି ବାବା ।

ରାୟବାହାଦୁର - ଅନେକବେଳୁ ଆସିଲେଣି ତ ମୋ ପାଖକୁ ନ ଯାଇ ଏଠି ବସି କରୁଥିଲେ କ'ଣ ?

ଦାସ - ଦୁଇଜଣ ସାମ୍ୟବାଦୀଙ୍କ ପାଲରେ ପଡ଼ିଥିଲି ।

ରାୟବାହାଦୁର - ସାମ୍ୟବାଦୀ ! ! (ଡରିଗଲେ)

ରେଖା - ନା, ବାବା, ସେ କିଛି ନୁହେଁ - ପ୍ରଫେସର୍ ଦାସ ସେତିକିବେଳୁ ଆସି ମୋ ସହିତ ଗଳ୍ପ କରୁଥିଲେ । ଆସୋସିଏସନ୍‌ର ଗଳ୍ପ - ବିଲାତର ଗଳ୍ପ.....

ରାୟବାହାଦୁର - That's nice ! ବିଲାତର ଗଳ୍ପ - ଆହା..... ହା, କି ସୁନ୍ଦର.....କ'ଣ ଅବିନାଶ !

ଅବିନାଶ - ହଁ, ସାର୍, ମୁଁ ଜାଣେ ।

ରାୟବାହାଦୁର - କ'ଣ ଜାଣ ?

ଅବିନାଶ - ଏଇ ଯେ... ଏଇ ବିଲାତର ଗଳ୍ପ... ।

ରାୟବାହାଦୁର - Hopeless ! ଆରେ ତୁମେ କହୁଚ କ'ଣ ଅବିନାଶ ! ଶୁଣୁଚ ଶୁଣୁଚ ପ୍ରଫେସର୍ - ଅବିନାଶ ବିଲାତର ଗଳ୍ପ ଜାଣେ ! ଆରେ ବାବୁ ତମେ ଯଦି ବିଲାତର ଗଳ୍ପ ଜାଣିବ ତେବେ ଏ ନଈ ସେପାରି ଢେଙ୍କାନାଳ କଥା କିଏ କହିବ ? ଏଁ - ଅବିନାଶ !

ଅବିନାଶ - Yes Sir.

ରାୟବାହାଦୁର - ଆରେ No Sir, ତୁମେ ବିଲାତର ଗଳ୍ପ ମୋଟେ ଜାଣନାହିଁ ।

ଅବିନାଶ - ଆଜ୍ଞା, ହଁ ସାର୍, ମୁଁ ଜାଣେ - ଅନେକ ଥର ମୁଁ ଶୁଣିଚି ପ୍ରଫେସର୍ ଦାସଙ୍କ ମୁହଁରୁ - ଚମତ୍କାର ବିଲାତର ଗଳ୍ପସବୁ । ଶୁଣନ୍ତୁ ନା ମୁଁ କହୁଛି । ଏଇ ଅନେକ ଦିନ ଧରି ଅନ୍ତରୀଣ ବନ୍ଦୀ ଭାବରେ ଅଟକ ରହିବା ପରେ ଲଣ୍ଡନ ସହରର ସେଇ ବିରାଟ ମେଘମୁକ୍ତ ନୀଳ ଆକାଶରେ ଯେଉଁଦିନ ଦେଖାଦିଅନ୍ତି ଦିନମଣି ସୂର୍ଯ୍ୟ - ଆଉ ତାଙ୍କର ସେଇ ସ୍ୱର୍ଣ୍ଣାଭା କିରଣମାଳାରେ ଲଣ୍ଡନ ଟାୱାର, ଟେମ୍‌ସ ନଦୀ, ସେଣ୍ଟ୍‌ପଲ ଗୀର୍ଜା, ପାଇନ୍‌କୁଞ୍ଜ, ଭାରତ ମନ୍ତ୍ରୀଙ୍କ ଅଫିସ୍, ଆଉ - ଆଉ ସହରର ସମସ୍ତ କୋଠାବାଡ଼ି ଓ ଟ୍ରାମ୍ ବସ୍ ପର୍ଯ୍ୟନ୍ତ ହୋଇଉଠେ ସୁନେଲୀ ରଙ୍ଗରେ.... ସୁନେଲୀ ରଙ୍ଗର.... ସୁନେଲୀ ରଙ୍ଗରେ.... ରଙ୍ଗିତ ।

ରେଖା - ରଙ୍ଗିତ ନୁହେଁ ଅବିନାଶବାବୁ, ରଞ୍ଜିତ ।

ଅବି - Thank you ମା' - ସୁନେଲୀ ରଙ୍ଗରେ ରଞ୍ଜିତ । ସେଦିନ ସମସ୍ତ ଲଣ୍ଡନ ସହର ରକ୍ତରେ ବୁଡ଼ିଯାଏ - ଖାଲି ରକ୍ତ - ଆଉ ରକ୍ତ - ଲୋକେ ମରନ୍ତି - ମଟର ତଳେ ଚାପା ପଡ଼ି ମରନ୍ତି - ଟ୍ରାମ୍‌ରୁ ଖସିପଡ଼ି ମରନ୍ତି - ହତ୍ୟା- ଖୁନ୍ - ମର୍ଡ୍ରର୍ ।

ରାୟବାହାଦୁର - ଅବିନାଶ ! ଆରେ ହତ୍ୟା-ଖୁନ୍ - ମର୍ଡ୍ରର-ଆରେ ଏସବୁ କାହିଁକି ?

ଅବି - ତା'ର କାରଣ ସାର୍, ସବୁ ବାଧାବନ୍ଧନ - ସବୁ ଆଇନ୍‌କାନୁନ୍‌କୁ ଭାଙ୍ଗି - ଦଳ ଦଳ ହୋଇ - ହଜାର ହଜାର ହେଇ - ଲକ୍ଷ ଲକ୍ଷ ହୋଇ - ସ୍ତ୍ରୀ-ପୁରୁଷ-ଯୁବକ-ଯୁବତୀ, ବାଳ-ବୃଦ୍ଧା ସମସ୍ତେ ଏକମୁହାଁ ହୋଇ ଚାଲନ୍ତି ଟେମ୍‌ସ ନଦୀର ନୀଳ ଜଳରେ ସୂର୍ଯ୍ୟସ୍ନାନ କରିବାକୁ ।

(ରେଖା ଓ ରାୟବାହାଦୁର ହସିଉଠିଲେ । ଅବିନାଶ ମଧ୍ୟ ସେଇ ହସରେ ଯୋଗଦେଲେ - ମି. ଦାସ ବିବ୍ରତ ହୋଇପଡ଼ିଲେ ।)

ରାୟବାହାଦୁର - ଟେମ୍‌ସ ନଦୀର ନୀଳ ଜଳରେ ସୂର୍ଯ୍ୟସ୍ନାନ କ'ଣ ହେ ?

ଅବି - କାହିଁକି ସାର୍, ମି. ଦାସ କହିଥିଲେ - ଏଇ Sun-bath ଓଡ଼ିଆରେ ଅନୁବାଦ କରିଦିଅନ୍ତୁ, ମାନେ ହେଉଚି ସୂର୍ଯ୍ୟସ୍ନାନ - ଠିକ୍ ଯେମିତି ଆମର ଚନ୍ଦ୍ରଭାଗାରେ ମାଘ ସପ୍ତମୀ ଦିନ.....

ଦାସ - ଚୁପ୍‌କର ତୁମେ, ଇଡ଼ିୟଟ୍ କେଉଁଠିକାର । ଏଇସବୁ କଥା ମୁଁ ତୁମକୁ କହିଥିଲି ନା ? (ରା.ବା.ଙ୍କୁ) ମୁଁ ଆଜି ଆମ ଆସୋସିଏସନ୍‌ର ତରଫରୁ ଆପଣଙ୍କ ନିକଟକୁ ଆସିଚି । ଦୁଇ ମାସ ପରେ ଆସୋସିଏସନ୍‌ର ପ୍ରଥମ ବାର୍ଷିକ ଅଧିବେଶନ । ରିସେପସନ୍ କମିଟିର ଚେୟାର୍‌ମ୍ୟାନ୍ ହେବା ପାଇଁ ଆମ ସମସ୍ତଙ୍କର ଆପଣଙ୍କୁ ଅନୁରୋଧ -

ରାୟବାହାଦୁର - I see ! ଆସୋସିଏସନ୍‌ର ଅଧିବେଶନ - ତମେମାନେ ତା'ହେଲେ ଖୁବ୍ ଆଗେଇ ଚାଲିଚ । ଆଚ୍ଛା, ସଭାପତି ହଉଚି କିଏ ?

ଦାସ - ଆପାତତଃ ଚୀନ୍‌ର ପ୍ରଗତିପନ୍ଥୀ ଲେଖକ 'ଯାତ୍‌ସୁଁ' ଙ୍କୁ ଡାକିବାର ଅନେକଙ୍କର ଇଚ୍ଛା । ଆସୋସିଏସନ୍‌ରେ ଯୋଗଦେବାପାଇଁ ଓଡ଼ିଶା ବାହାରୁ ମଧ୍ୟ ଅନେକ ଲୋକ ଆସୁଚନ୍ତି ।

ରେଖା - କିଏ କିଏ ଆସୁଚନ୍ତି ?

ଦାସ - ଆସିବେ ତ ଅନେକ । ତେବେ ମାନ୍ଦ୍ରାଜ ପାଏନିଓର କ୍ଳବ୍‌ରୁ ଓ କଲିକତା ତାଜ୍‌ମହଲ କ୍ଳବ୍‌ରୁ କେତେ ମେମ୍ବର ଆସିବେ ଆଉ ସି.ପି.ର S.P.C.W. ରୁ ଆସିବେ ମିସ୍ ଚିତ୍ରାଙ୍ଗଦା ରାୟ ।

ରାୟବାହାଦୁର - S.P.C.W........ମାନେ ?

ଦାସ - Society for Prevention from Cruelty to Women.

ରାୟବାହାଦୁର - Hopeless..... Cruelty to women ! ଅର୍ଥାତ୍ ନାରୀ-ନିର୍ଯାତନା-ନିବାରିଣୀ-ସଙ୍ଘ !

ରେଖା - ଠିକଣାଟା ଦିଅନ୍ତୁ ସାର୍ । ମୁଁ ମେମ୍ବର ହେବି ।

ଦାସ - Central Province କୁ ଯିବା ଦରକାର ନାହିଁ, ଖୁବ୍ ଶୀଘ୍ର S.P.C.W. ର ଗୋଟିଏ ଶାଖା ଏଠି ଆମେ ଖୋଲିବାର ବନ୍ଦୋବସ୍ତ କରୁଛୁ ।

ଅବିନାଶ - ମୁଁ ଦେଖୁଛି ଆପଣମାନେ ଗୋଟିଏ ବହୁରୂପୀ କଂଗ୍ରେସ୍‌ର ଯୋଗାଡ଼ରେ ଅଛନ୍ତି ।

ଦାସ - ସେଇ ତ ଆମର ଗର୍ବ । ଏ ପର୍ଯ୍ୟନ୍ତ ଭାରତର କୌଣସି ପ୍ରଦେଶ ଯାହା କରିପାରିନଥିଲା, ଆଜି ଓଡ଼ିଶା ତା' କରିବ । ହଁ, ରାୟବାହାଦୁର ମୋର ଆଉ ଗୋଟିଏ ଅନୁରୋଧ, ମିସ୍ ମହାନ୍ତିଙ୍କୁ ଏଥିରେ ଯୋଗଦେବା ପାଇଁ ଆପଣ ଅନୁମତି ଦିଅନ୍ତୁ ।

ରାୟବାହାଦୁର - ନିଶ୍ଚୟ, ନିଶ୍ଚୟ ! ଏତେବଡ଼ କାମରେ ସେ ଯୋଗ ନ ଦେଇ ରହିପାରେ ନା ।

ରେଖା - କାହିଁକି ବାବା ! ଚୀନ୍‌ର ଜଣେ ଲେଖାହୀନ ଲେଖକଙ୍କ ନାଁ ଶୁଣି, ନା' ଭାରତର କେତେକ ଅସ୍ତିତ୍ୱବିହୀନ କ୍ଲବ୍‌ର ନାଁ ଶୁଣି ?

ଦାସ - ଏ କିନ୍ତୁ ତମର ଭାରି ଅନ୍ୟାୟ ମିସ୍ ମହାନ୍ତି ! କୌଣସି କଥା ନ ଜାଣି, ନଶୁଣି.....

ରେଖା - ଏଥିରେ ଶୁଣିବାର ଅନେକ ଅଛି, ମାତ୍ର ଜାଣିବାର କିଛିନାଇଁ । କିନ୍ତୁ ରାୟବାହାଦୁର ପି.ଏନ୍. ମହାନ୍ତିଙ୍କ ଝିଅ ଯେତେବେଳେ, ମୁଁ ସେତେବେଳେ ଏଥିରେ ଯୋଗ ନଦେବାଟା ମୋର ନିଶ୍ଚୟ ଅନ୍ୟାୟ ।

ଦାସ - ଯେକୌଣସି କାରଣରୁ ହେଉ, ତମକୁ ଏଥିରେ ଯୋଗଦେବାକୁ ହେବ । ତା'ପରେ ତମେ ଦେଖିବ ଆମର ଆସୋସିଏସନ୍ ସର୍ବମୁଖୀ । ସବୁ ଦିଗରୁ ଏହି ଜାତି ଓ ଦେଶର କଲ୍ୟାଣ କରିବ ।

ରେଖା - (ହସି) ହଁ, ତୁତୁମା ଓଡ଼ିଶାରେ ମିଶିଯିବ - ହିନ୍ଦୁ ମୁସଲମାନ ଏକ ହୋଇଯିବେ । ଓଡ଼ିଶା ପ୍ରଦେଶ ସହିତ ଓଡ଼ିଶା ଗଡ଼ଜାତର ହେବ ମିଳନ- ଆଉ ଏସବୁ ମିଳନ ପରେ ଆପଣମାନେ ଭୂମଧ୍ୟ ସାଗରଟାକୁ ଜୋର୍ କରି ଟାଣିଆଣି ଭାରତ ମହାସାଗର ସହିତ ମିଳାଇଦେବେ । କିନ୍ତୁ ସାର୍, ତା'ର ଫଳ କ'ଣ ହେବ ଜାଣନ୍ତି ? ସେଇ ଲୁଣିଆ, କେବେହେଲେ ମଧୁର ହେବନାହିଁ । (ଚାଲିଗଲା)

ରାୟବାହାଦୁର - କଥାଟା ରେଖା ନିହାତି ମନ୍ଦ କହିନାହିଁ, ପ୍ରଫେସର୍ !

ଦାସ - ଆପଣ ଭୁଲ୍ ବୁଝିଚନ୍ତି ରାୟବାହାଦୁର ! ଭଲ-ମନ୍ଦର ସେ ବୁଝେ କ'ଣ ? ଏକେ ପିଲା, ତହିଁରେ ପୁଣି ଅତିମାତ୍ରାରେ ଆଣ୍ଟାଗୋନିଷ୍ଟ । ଆପଣ ଏ ସବୁର କିଛି ଭାବନା କରନ୍ତୁ ନାଇଁ ।

ରାୟବାହାଦୁର - ଭାବନା ନ କରିପାରେ; କିନ୍ତୁ ଦୁର୍ଭାବନା ଯେ କରିବାକୁ ପଡୁଚି । ଆପଣ କହନ୍ତୁ ଆପଣଙ୍କର କଥା । ନା ପ୍ରଫେସର, ତମର ପ୍ରତ୍ୟେକ କଥାରେ ଯଦି ସେ

ତମକୁ ଏପରି ଏଡ଼ାଥ ଚାଲେ, ତେବେ...

ଦାସ - ମୁଁ କହୁଚି ଆପଣଙ୍କୁ, ଆପଣ ଏ ସବୁ କଥା ଆଦୌ ଚିନ୍ତା କରନ୍ତୁ ନାହିଁ । ଆପଣ କୁହନ୍ତୁ ଆପଣଙ୍କ କଥା, ଚେୟାର୍‌ମ୍ୟାନ ହେବାରେ ଆପଣଙ୍କର କୌଣସି ଆପତ୍ତି ନାହିଁ ତ ?

ରାୟବାହାଦୁର - ମୋର ଆଉ ଆପତ୍ତି ରହିଲା କେଉଁଠି ? ମୋର ଆପତ୍ତି ରହିଲେ ଯେ ସବୁ ଗୋଳମାଳ - ମୁଁ ସଂପୂର୍ଣ୍ଣ ରାଜିଅଛି ।

ଦାସ - Many thanks. ତା'ହେଲେ ମୁଁ ଆସେ । Goodbye. (ଚାଲିଗଲେ, ପରେ ପରେ ରେଖା ପ୍ରବେଶକଲା ।)

ରେଖା - ବାବା !

ରାୟବାହାଦୁର - କ'ଣ ମା ?

ରେଖା - ବିଲାତର ନିଶା ଛାଡ଼ିଲାଣି ?

ରାୟବାହାଦୁର - ହେଁ.....ହେଁ, ମା'- ଜୀବନଟା ସାରା ଅପ୍‌ଟିମିଷ୍ଟ ହିଁ ରହିଗଲି । ତା'ଛଡ଼ା ବୁଢ଼ା ହେଲଚି - ଦୂରଦୃଷ୍ଟିର ଅଭାବ - ଭାସିଯିବାକୁ ଆଉ କେତେବେଳ ଲାଗିବ ମା' କହ ତ ?

ରେଖା - (ଯେପରି ଟିକିଏ ଆହତ ହୋଇ) ମତେ ଭୁଲ୍ ବୁଝ ନାଇଁ ବାବା ! କୌଣସି ଉଦ୍ଦେଶ୍ୟ ନରଖି ମୁଁ କଥାଟା କହିଥିଲି ।

ରାୟବାହାଦୁର - Hopeless ! ତୋତେ ମୁଁ ଭୁଲ୍ ବୁଝିବି କ'ଣରେ ? ତୁ ନ ଥିଲେ ଏତେବେଳକୁ ମୁଁ ଯାଇ ବଙ୍ଗୋପସାଗର ହାଜର ହୋଇ ସାରନ୍ତିଣି ।

ରେଖା - ନାଇ ବାବା, ମୁଁ ସତ କହୁଚି - ପ୍ରଫେସର୍ ଦାସ ମନ୍ଦଲୋକ ନୁହଁନ୍ତି ।

ଅବିନାଶ - ହୁସିଆର ମା' - ଦାସ ସାହେବ ଯେପରି ଏକଥା ନଜାଣନ୍ତି ।

ରେଖା - ଜାଣିଲେ କ'ଣ ହେବ ?

ଅବିନାଶ - ଏ ଦେଶରେ ବର୍ଣ୍ଣସଙ୍କରଙ୍କ ସଂଖ୍ୟା ହୁ-ହୁ ହୋଇ ବଢ଼ିଉଠିବ ।

ରେଖା - ମାନେ ?

ଅବିନାଶ - ଏ କଥା ସାହେବ ଜାଣିଲାମାତ୍ରେ ସେ ନିଜେ ନାଚି ଉଠିବେ - ତାଙ୍କ ଆସୋସିଏସନ୍ ନାଚି ଉଠିବ । ଆଉ ଫଳରେ ହେବ ବର୍ଣ୍ଣସଙ୍କରଙ୍କ ବଂଶବୃଦ୍ଧି ।

ରାୟବାହାଦୁର - ହାଃ, ହାଃ, ହାଃ - ଅବିନାଶ ! ତମେ ଗୋଟିଏ......

ରେଖା - ମୂର୍ତ୍ତିମାନ୍ Hopeless (ହସି ହସି ଚାଲିଗଲା)

ରାୟବାହାଦୁର - ଅବିନାଶ !

ଅବିନାଶ - Yes Sir.

ରାୟବାହାଦୁର - ଦେଖିଲ ତ ?

ଅବିନାଶ - ଆଜ୍ଞା, ହଁ ।

ରାୟବାହାଦୁର - ବୁଝିଲ ତ ?
ଅବିନାଶ - (ଟିକିଏ କ'ଣ ଭାବି) ଆଜ୍ଞା ହଁ.....
ରାୟବାହାଦୁର - କ'ଣ ବୁଝିଲ ?
ଅବି - ଏଇ ରେଖା ମା' ଯାହା କହିଗଲେ....
ରାୟବାହାଦୁର - (ଖୁସି ହୋଇ) କୁହ ତ ସେ କ'ଣ କହିଲା ?
ଅବି - ଏଇ, ମୁଁ ହଉଚି ଗୋଟାଏ ମୂର୍ତ୍ତିମାନ୍.....
ରାୟବାହାଦୁର - Hopeless ! ଆରେ ରେଖା ସକାଶେ ପ୍ରଫେସର୍ ଦାସ ଯେ ମୋର ମନୋନୀତ ପାତ୍ର, ଏକଥା ସେ ନିଶ୍ଚୟ ଭଲଭାବେ ବୁଝିପାରିଚି - ଆଉ ସେ ନିଜେ ଯେ ପ୍ରଫେସର୍ ଦାସଙ୍କୁ ପସନ୍ଦ କରେ ଏ କଥା ମଧ୍ୟ ସେ କହିଗଲା, କଥାଟାକୁ ଟିକିଏ ଏପାଖ ସେପାଖ କରି....
ଅବି - ମୋର କିନ୍ତୁ ମନେହୁଏ....
ରାୟବାହାଦୁର - ଏଁ, ତମର ପୁଣି ମନେହୁଏ ?
ଅବି - ଆପଣ ଯେପରି କଥାଟାକୁ ଏପାଖ ସେପାଖ କରିଦେଉଚନ୍ତି -
ରାୟବାହାଦୁର - ବାସ୍, ବାସ୍ - ନାରୀ ଚରିତ୍ରର ଅର୍ଥ ତୁମେ ବୁଝ କ'ଣ କୁହ ତ ?
ଅବି - ସେଥିପାଇଁ ତ ସାର୍ ବିବାହ କରିନାଇଁ ।
ରାୟବାହାଦୁର - ଭାରି ବାହାଦୂରୀ କାମଟାଏ କରିଚ । ଅବିବାହିତ ହୋଇ ଆସିଚ ବିବାହ ସମ୍ବନ୍ଧରେ ଆଲୋଚନା କରିବାକୁ -ଆଶ୍ଚର୍ଯ୍ୟ ! (ଟିକିଏ ପଦଚାରଣ କରି)
ଏ ଅବିନାଶ !
ଅବି - Yes Sir.
ରାୟବାହାଦୁର - ମୋର ଆଜିକାର ପ୍ରୋଗ୍ରାମ୍‌ରେ ବନ୍‌ଶୀ ପକାଇବାର ଥିଲା ନା ?
ଅବି - ଆଜ୍ଞା ହଁ । ଏଇ ଆଠଟାରୁ ନ'ଟା.... କିନ୍ତୁ ସମୟ ତ ପାରହୋଇଗଲାଣି ।
ରାୟବାହାଦୁର - ଆରେ ଘଣ୍ଟାକଣ୍ଟାଟା ଫେରାଇ ଦିଅ - ନହେଲେ ପ୍ରୋଗ୍ରାମ୍‌ଟା ଏପାଖ ସେପାଖ କରିଦିଅ - ବନ୍‌ଶୀ ପକାଇଲେ ଯେ ପ୍ରଫେସର୍ ଦାସଙ୍କୁ ପୁଣି କୈଫିୟତ୍ ଦବାକୁ ପଡ଼ିବ । ଆଚ୍ଛା ମୁଁ ଯାଏ - ତୁମେ ମଦନା ହାତରେ ପୋଖରୀକୂଳକୁ ବନ୍‌ଶୀଟା ପଠାଇଦିଅ ।
(ଏଇ ସମୟରେ ବାହାରୁ ଆସିଲା ମଦନା)
ମଦନା - ଆସନ୍ତୁ ବାବୁ !
(ପଛେ ପଛେ ଆସିଲା ସୁରେଶ- ସେ ରାୟବାହାଦୁରଙ୍କୁ ନମସ୍କାର କଲା । ମଦନା ଘର ଭିତରକୁ ଚାଲିଗଲା ।)
ରାୟବାହାଦୁର - And you are Mr..........
ସୁରେଶ - ସୁରେଶ ରାୟ....ଟିଉସନ୍ ସକାଶେ ଚିଠି ପାଇ ଆସିଚି ।
ରାୟବାହାଦୁର - ତମେ ବର୍ତ୍ତମାନ B.SC.ର ଛାତ୍ର ନା ?

ସୁର - ଆଜ୍ଞା ହଁ ।
ରାୟବାହାଦୁର- ପ୍ରଫେସର୍ ଦାସ ତୁମକୁ ଜାଣନ୍ତି ?
ସୁର - କହିପାରିବି ନାହିଁ । ସେ ଇତିହାସର ପ୍ରଫେସର୍ - ଆଉ ମୁଁ ସାଇନ୍‌ସର ଛାତ୍ର ।
ରାୟବାହାଦୁର - ହୁଁ, ପ୍ରଫେସର୍ ମହାନ୍ତି ତମ ସମ୍ବନ୍ଧରେ ମତେ ସବୁକଥା ଜଣାଇଛନ୍ତି । ଆଚ୍ଛା, ଦିନକୁ ତମେ କେତେ ଘଣ୍ଟା କରି ଏଠାକୁ ଆସିପାରିବ ?
ସୁର - ଅନ୍ତତଃ ତିନିଘଣ୍ଟା ।
ରାୟବାହାଦୁର - ତିନିଘଣ୍ଟା । ବେଶ୍ - ତିନି ଘଣ୍ଟା ହିଁ ଯଥେଷ୍ଟ ।
-ଆଚ୍ଛା, ତମେ ପାରିଶ୍ରମିକ କ'ଣ ଚାହଁ ?
ସୁର - ସାଧାରଣତଃ ଯାହା ମିଳିଥାଏ ।
ରାୟବାହାଦୁର - You Young man - ଏଇଦିନୁ ନିଜକୁ ଏତେ ଛୋଟ କରିଦିଅନାହିଁ । ତମକୁ ଦେଖିଲେ ମନେହୁଏ, ତମେ ସାଧାରଣଙ୍କର ଅନେକ ଉପରେ । ଆଚ୍ଛା, ତା'ର ବ୍ୟବସ୍ଥା ମୁଁ କରିବି । ଅବିନାଶ, ୟା'ଙ୍କୁ ନେଇ ପିଲାମାନଙ୍କର ପଢ଼ାଘରଟା ଦେଖାଇଦିଅ - ମୁଁ ଆସେ । (ଚାଲିଗଲେ)
ଅବିନାଶ - ଖୁବ୍ ସୁରୁଖୁରୁରେ ଆପଣ ପାରହୋଇଗଲେ ବାବୁ!
ସୁର - ସୁରୁଖୁରୁରେ.....ମାନେ ?
ଅବିନାଶ - କେତେ ରକମ୍ କୋଶ୍ଚିନ୍ ପଚରା ହୋଇଥା'ନ୍ତା - ପହଁରା ଜାଣିଚ କି ନାଇଁ, ବନ୍‌ଶୀ ପକାଇ ଜାଣ କି ନାଇଁ, ହକି ମ୍ୟାଚ୍‌ରେ ଇଂରେଜମାନେ କାହିଁକି ହାରିଗଲେ.... ଆପଣ ପ୍ରାଣାନ୍ତକ ହେଇଯାଇଥାନ୍ତେ । ଆଚ୍ଛା, ଆସନ୍ତୁ ମୋ ସାଥିରେ......
(ଏତିକିବେଳେ କଲେଜ୍ ଓ ସ୍କୁଲ୍‌କୁ ଯିବାକୁ ପ୍ରସ୍ତୁତ ହେଇ ରେଖା, ମିନି ଓ ରାନୁ ସେଠାରେ ଦେଖାଦେଲେ ।)
ଅବି - ଏଇ ତ ମା'ମାନେ - ଏ ହେଉଚନ୍ତି ନୂଆ ମାଷ୍ଟରବାବୁ ।
(ପ୍ରାୟ ଏକା ସମୟରେ ରେଖା, ମିନି, ରାନୁ ଓ ସୁର ମଧ୍ୟରେ ନମସ୍କାର ଆଦାନ-ପ୍ରଦାନ ହୋଇଗଲା ।)
ରେଖା - (ଟିକିଏ ରହି) ଆପଣ କେବେଠାରୁ ଆସିବେ ?
ସୁର - (ବିସ୍ମିତ ହୋଇ) କିନ୍ତୁ ଆପଣଙ୍କୁ ତ....
ରେଖା - (ହସି) ନା, ନା, ମତେ ପଢ଼ାଇବାକୁ ହେବନାହିଁ ।
ପଢ଼ାଇବେ ଏମାନଙ୍କୁ ।
ସୁର - ଓ, ମୁଁ ଆଜି ସନ୍ଧ୍ୟାରୁ ହିଁ ଆସିବି ।
ରେଖା - ଦୟାକରି ଯେତେ ଶୀଘ୍ର ପାରନ୍ତି ମତେ ରିଲିଭ୍ କରନ୍ତୁ ।
ସୁର - ମୁଁ ଆପଣଙ୍କୁ ରିଲିଭ୍ କରିବି....ମାନେ ?
ଅବି - Hopeless - ରିଲିଭ୍ ମାନେ ଜାଣନ୍ତି ନାଇଁ ଆଉ ଆସିଚନ୍ତି..... (ଡିକ୍‌ସନାରୀ ଖୋଜିବାକୁ ଲାଗିଲେ ।)

ରେଖା - ଏଇ Hopeless ରୋଗଟା ଆପଣଙ୍କୁ ବି କେବେଠୁଁ ଧରିଲାଣି ଅବିନାଶ ବାବୁ ? ଏ କ'ଣ, ଏପରି ବ୍ୟସ୍ତ ହୋଇ କ'ଣ ଖୋଜୁଛନ୍ତି ?

ଅବି - ଡିକ୍‌ସନାରୀଟା ।

ରେଖା - କାଇଁକି ?

ଅବି - ଏଇ ରିଲିଭ୍ ମାନେ ଦେଖିବି ବୋଲି ।

(ରେଖା ଓ ସୁର ହସିଉଠିଲେ ।)

ସୁର - ନା, ନା, ଆପଣ ବ୍ୟସ୍ତ ହୁଅନ୍ତୁ ନାଇଁ । ରିଲିଭ୍ ମାନେ ମୁଁ ଜାଣେ ଯେ - କିନ୍ତୁ ଯା'ଙ୍କୁ ରିଲିଭ୍ କରିବି ?

ଅବି - ଓ, କଥା କ'ଣ କି - ଆପଣଙ୍କ ଅଭାବରେ ଏ ପର୍ଯ୍ୟନ୍ତ ପିଲାମାନଙ୍କର ପଢ଼ାପଢ଼ି ରେଖା ମା ଦେଖୁଥିଲେ - ଏଣିକି....

ସୁର - ବୁଝିଲି । (ରେଖାକୁ) ମୁଁ ଠିକ୍ ଆଜି ସନ୍ଧ୍ୟାରୁ ହିଁ ଏମାନଙ୍କର ଭାର ନେବି ।

ରେଖା - ବହୁ ଧନ୍ୟବାଦ୍! ଏମାନଙ୍କ ଜ୍ୱାଳାରେ ମୁଁ ଅସ୍ଥିର ହୋଇଗଲିଣି ।

ରାନୁ - ସାର୍, ଆପଣଙ୍କ ନାଁ ?

ରେଖା - ଅଭଦ୍ରାମି କରନା ରାନୁ! ଦେଖୁଛନ୍ତି, କି ଦୁଷ୍ଟ ପିଲା ?

(ସୁର କିଛି ନ କହି ଦେଖୁଥିଲା - ରେଖା ପ୍ରଭୃତି ଆଗେଇଗଲେ ।)

## ଚତୁର୍ଥ ଦୃଶ୍ୟ

(ସୁରେଶର ଗାଁ ଦାଣ୍ଡ । ସେଦିନ ଅଗଷ୍ଟ ନ' ତାରିଖ - ଆଉ ସେଇଦିନ ହିଁ ଏଇ ଗାଁର ନବପ୍ରତିଷ୍ଠିତ ଗ୍ରାମୋନ୍ନତି ସଂଘର ଶୁଭ ଉଦ୍‌ଘାଟନ ପର୍ବ ସମାହିତ ହେଉଚି । ସମୟ-ପ୍ରଭାତ । ଦଳଦଳ ହୋଇ ଗାଁର ସ୍ତ୍ରୀ-ପୁରୁଷ ଜାତୀୟ ସଂଗୀତ ଗାଇ ଗାଇ ଆସି ସଂଘର ସମ୍ମୁଖସ୍ଥ ଏକ ଉନ୍ମୁକ୍ତ ସ୍ଥାନରେ ପହଞ୍ଚିଲେ - ସେମାନଙ୍କ ଭିତରେ ଥିଲେ ବ୍ରଜ, କନକ ଓ ଶାନ୍ତି ।)

(ଗୀତ)

ପରାଧୀନତାର ଅଶୁଭ ସ୍ୱପ୍ନ ଭାଙ୍ଗିଲା ଏହି ଦିନ,
ଏହି ଦିନ, ଏହି ଦିନ ।
ଇତିହାସର ସ୍ୱର୍ଣ୍ଣଲିପିରେ ଚିରଉଜ୍ଜ୍ୱଳ ସେ
ଆମେ ଜୀବନ ଢାଳି ଦେବୁରେ ଆଜି ସମ୍ମାନ,
ତାରେ ସମ୍ମାନ ।୦ ।
ଆମେ ବନ୍ଧନ ଭୟ କରିଛୁ ତୁଚ୍ଛ - କାରା କରିଛୁ ତୀର୍ଥ
ଲକ୍ଷ ପ୍ରାଣୀର ବଳି-ବେଦୀରେ ଆହୁତି ଦେଇଛୁ ସ୍ୱାର୍ଥ ।

ଆମେ ଦୁର୍ମଦ ଆଜି ରଖିବୁ ତା'ର ମାନ
ମାନିବୁ ନାହିଁ ଗୋଳାଗର୍ଜ୍ଜନ - କୋଟି ସଙ୍ଗୀନ ମୁନ ।୧ ।
ଚାଳିଶ କୋଟିର ବଜ୍ର ମୁଷ୍ଟି; ତୋଳରେ ଉର୍ଦ୍ଧ୍ୱେ ଶିହରୁ ସୃଷ୍ଟି
ଜାତିର ମୁକ୍ତିକେତନ ସାଜି କର ତାରେ ଅଭିନନ୍ଦନ ।୨ ।
କିଏ ଦେବରେ ସ୍ୱାଧୀନତା, ଆମେ ଆମର ପରିତ୍ରାତା
ଆମେ ଜାଗିଲେ କାହାର ଶକ୍ତି ଦଳିବ ଆମର ଉନ୍ନତ ମଥା -
ଗାଇ ଜନନୀ ଜୟ ଗୀତି - ବନ୍ଦେ ମାତରଂ - ବନ୍ଦେ ମାତରଂ-
ଆମେ ରଚିବୁ ଅଭିଯାନ ।୩ ।

(ଗୀତ ଶେଷରେ ବ୍ରଜ ଜନତାକୁ ଉଦ୍ଦେଶ୍ୟ କରି କହିଲା ।)

ବ୍ରଜ - ଭାଇ ଓ ଭଉଣୀମାନେ - ଆଜି ଅଗଷ୍ଟ ନ' ତାରିଖ । ପ୍ରାଣରେ ବିଦ୍ରୋହର ନିଆଁ ଜଳି ଉଠିଥିଲା । ଆଜି ଭାରତର ଚାରିଆଡ଼େ ଏଇ ଦିନଟି ଗୋଟିଏ ଉତ୍ସବ-ଦିବସ ରୂପେ ପାଳିତ ହେଉଚି । ଏଇ ଶୁଭଦିନରେ ଆଜି ଆମର ଏହି ଗ୍ରାମୋନ୍ନତି ସଂଘର କାର୍ଯ୍ୟର ଆରମ୍ଭ । ସହରର ଶିକ୍ଷା ଓ ସଭ୍ୟତାର ଦୂରରେ ରହି ଆମେ, ଏଇ ଗାଁ-ଗହଳର ସ୍ତ୍ରୀ-ପୁରୁଷମାନେ କିମିତି ନିଜ ଗୋଡ଼ରେ ଠିଆହୋଇପାରିବା - ଆଉ ଦେଶର ସ୍ୱାଧୀନତା ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ନିଜକୁ ଗଢ଼ିପାରିବା, ଏହା ହିଁ ହେଲା ଏଇ ସଂଘର ଉଦ୍ଦେଶ୍ୟ ! ଦୀର୍ଘ ଦୁଇଶହ ବର୍ଷର ପରାଧୀନତାର ବନ୍ଧନ ପରେ ଭାରତ ଆଜି ସ୍ୱାଧୀନ ହେବାକୁ ଯାଉଚି । ଦେଶର ଏଇ ସନ୍ଧିକ୍ଷଣରେ ଆମର ଏଇ ଗାଁ-ଗହଳିଗୁଡ଼ିକୁ ସଂଗଠନ କରିବା ଆମର ଏକାନ୍ତ ପ୍ରୟୋଜନ । ଆମରି ସମ୍ମୁଖରେ ଫରଫର ହୋଇ ଉଡୁଚି ତ୍ରିରଙ୍ଗା ପତାକା । ଆମ ଦେଶର ପତାକା- ଆସ, ତାକୁଇ ଚାହିଁ ଆଜି ଆମେ ପ୍ରତିଜ୍ଞା କରିବା ଯେପରି ଆମର ଏଇ ଗ୍ରାମୋନ୍ନତି ସଂଘକୁ ସଫଳ କରିବା ପାଇଁ ଆମେ ଆମର ସବୁ କିଛି ତ୍ୟାଗ କରିପାରିବା ।

(ସମସ୍ତେ ପତାକା ଆଡ଼କୁ ଉଦ୍ଦେଶ୍ୟ କରି କେତେକ ମୁହୂର୍ତ୍ତ ସକାଶେ ମୁଣ୍ଡନୁଆଁଇ ନୀରବ ରହିଲେ - ତା'ପରେ ସମସ୍ତେ ଏକସ୍ୱରରେ କହିଉଠିଲେ : "ବନ୍ଦେ ମାତରଂ" - "ଇନ୍‌କିଲାବ ଜିନ୍ଦାବାଦ ।" ଜାତୀୟ ସଂଗୀତର ଶେଷ ଆଡ଼କୁ ସେଠାକୁ ଆସିଥିଲେ ଦି'ଜଣ ବୟସ୍କ ଲୋକ - ପଶୁପତି ବଳୀୟାର ସିଂ ଓ ଉଦ୍ଧବ ସାମନ୍ତରାୟ । ପ୍ରଭାତଫେରି ଦଳ ଏମାନଙ୍କୁ କୌଣସି ଭ୍ରୂକ୍ଷେପ ନକରି ଚାଲିଗଲେ - ଭୂତ-ଗ୍ରାସିଲା ପରି ଏ ଦୁହେଁ ସେଇଆଡ଼କୁ ଚାହିଁ ରହିଲେ ।)

ଉଦ୍ଧବ - ଦେଖିଲଟି ?

ପଶୁପତି - ହୁଁ.....

ଉଦ୍ଧବ - କ'ଣ ଦେଖିଲ, ପଶୁପି'ସା - କ'ଣ ଦେଖିଲ ?

ପଶୁ - ଆହେ ଦେଖ ହେ.... ଏ ପୁଣି ମତେ ପଚାରୁଚି କ'ଣ ଦେଖିଲ ! ଆରେ ଦେଖିବାଭଳିଆ ଆଖି ଦି'ଟା ଯଦି ଏ ଗାଁରେ କାହାର ଥାଏ ତେବେ ସେ ଏକା ପଶୁପତି ବଳୀୟାର ସିଂର । ବୁଝିଲୁ ଉଦ୍ଧବ, ସେ ଯାହାକୁ ଦେଖିବ, ତା'ତାଳୁରୁ ତଳିପାଯାଏ - ଭିତରରୁ ବାହାରଯାଏ । ଏଠି ଯାହା ଦେଖିବାର କଥା ମୁଁ ଦେଖିଲିଣି - ତୁ ଆ'.....

ଉଦ୍ଧବ -ପଶୁପି'ସା - ଏଇ ଦେଖ - ଦେଖ....

ପଶୁ - ଆରେ ତୁ ପୁଣି ମତେ କହିଲୁ ଦେଖ ବୋଲି । ଯାହା ଦେଖିବାର କଥା ମୁଁ ଦେଖିସାରିଚି - ତୁ ଆ' ।

ଉଦ୍ଧବ - ଏଇ ଦେଖ, ସେ ନୂଆଘର ଭିତରେ ସମସ୍ତେ ପଶିଲେ । ହେଇ ଦେଖ- ଝରକା ବାଟେ ଦୁ'ଚି - ଶାନ୍ତି ବେକରେ ବରଜୁଆ ଫୁଲମାଳ ଦେଲେ ।

ପଶୁ - ହଁ - ଏଇଠି ଥାଇ ମୁଁ ଦେଖୁଚି - ଫୁଲମାଳ ଦେଇଥିବ - ଦେଇଥିବ ଫୁଲମାଳ -
(ଏତିକିବେଳେ ଗ୍ରାମୋନ୍ନତି ସଂଘର କର୍ମୀମାନେ ଏକସ୍ୱରରେ କହିଉଠିଲେ - "ବିଷ୍ଣୁପୁର ଗ୍ରାମୋନ୍ନତି ସଂଘର ସମ୍ପାଦିକା ଶ୍ରୀମତୀ ଶାନ୍ତିଲତା ଦେବୀଙ୍କର ଜୟ ।")

ଉଦ୍ଧବ - ମୋ ବୋପାଲୋ ! ଇଏ ଯେ ଜୟ-ଜୟ-ଖାଲି ଛତୁଫୁଟିଯାଉଚି । ଆଚ୍ଛା, ପଶୁପି'ସା - ଏ ସମ୍ପାଦିକାମାନେ କ'ଣ ?

ପଶୁ - ଆହେ ଦେଖ ହେ - ଏ ପୁଣି ମତେ ସମ୍ପାଦିକାମାନେ ପଚାରୁଚି । ଆରେ ସମ୍ପାଦି-କା; 'କା' ଜାଗାରେ 'ଖା' ଯୋଡ଼ିଦେ - କ'ଣ ହେଲା ? ସମ୍ପାଦି -ଖା-ଆରେ ସମ୍ପାଦି ସମ୍ପାଦି ଖା - ବୁଝିଲୁ ? ଆଜି ଦେଖିଲୁ ଫୁଲମାଳ - କାଲି ଦେଖିବୁ ଚନ୍ଦନ - ତା' ଆରଦିନ ପାଟଶାଢ଼ିରେ ଉଦ୍ଧବ, ତୁ ଆ' -

(ଦୁହେଁ ଚାଲିଗଲେ)

## ପଞ୍ଚମ ଦୃଶ୍ୟ

(କଟକ ସହରର ଏକ ଅଞ୍ଚଳ । ଘରଟିର ସାଜସଜ୍ଜା ଏକାନ୍ତ ସାଧାରଣ ରକମର । ବ୍ୟବହାର ଉପଯୋଗୀ କେତେଖଣ୍ଡି ଆସବାବପତ୍ର ଛଡ଼ା ଆଉ ସେଠି କିଛିନାହିଁ । କାନ୍ଥରେ କେତେଖଣ୍ଡି ଶସ୍ତା ସଂସ୍କରଣର ସିନେମା ଅଭିନେତ୍ରୀଙ୍କ ଛବି ଝୁଲୁଚି - ଆଉ ଷ୍ଟାଲିନ୍, ଲେନିନ୍ ଓ ଜବାହରଲାଲ୍‌ଙ୍କ ଫଟୋ ମଧ ରହିଚି । କାନ୍ଥସବୁ ପୁରୁଣା - ଝରକା କବାଟର ଅବସ୍ଥା ମଧ ସେହିପରି । ଗୋଟାଏ ଝରକାର ମଧଦେଇ ବାହାରର ବାରଣ୍ଡା ଓ ରାସ୍ତାର ଦୃଶ୍ୟ ବେଶ୍ ଦେଖାଯାଏ ।

କକ୍ଷଟି କୁମାରୀ ମୀରା ଦେବୀଙ୍କର ନିଜର ବୈଠକଖାନା । ମୀରା କଲେଜ୍‌ରେ

୪ର୍ଥ ବାର୍ଷିକ ଶ୍ରେଣୀର ଛାତ୍ରୀ - ପ୍ରଫେସର୍ ଦାସଙ୍କ ପ୍ରଣୟିନୀ ଓ ଲୁଚାଚୋରା ଭାବରେ ସାମ୍ୟବାଦୀ ଦଳର ଜଣେ କମ୍ରେଡ୍ ।

ମଞ୍ଚରେ ଆଲୋକ ଜଳିଉଠିଲା ପରେ ଦେଖାଗଲା - କକ୍ଷରେ ପ୍ରବେଶ କଲେ ରଙ୍ଗାଧର ଓ କାଳୀଚରଣ । ହଠାତ୍ ସେମାନଙ୍କ ଆଖିପଡ଼ିଲା ଟେବୁଲ୍ ଉପରେ ଥୁଆ ହୋଇଥିବା ଗୋଟାଏ ଫେଲ୍ଟ ହ୍ୟାଟ୍ ଉପରେ । ଟୋପିଟିକୁ ଦେଖି ଦୁହେଁ ମହାମୁସ୍କିଲ୍‌ରେ ପଡ଼ିଲେ । କାହାରି ମୁହଁରେ କଥାନାହିଁ । ଟୋପିଟା ସମ୍ବନ୍ଧରେ ଆଲୋଚନା ଦୁହିଁଙ୍କ ଆଖି ଓ ମୁହଁର ଭାବଭଙ୍ଗୀରେ ଚାଲିଲା । ଏଇ ସମୟରେ ଘର ଭିତରୁ ଖୁବ୍ ଉଚ୍ଚ ହସର ସ୍ୱର ଶୁଭିଲା - ପୁରୁଷ ଓ ସ୍ତ୍ରୀର ସମ୍ମିଳିତ ହସ । କ୍ରମେ ହସର ସ୍ୱର ନିକଟରୁ ନିକଟତର ହେଲା । ରଙ୍ଗା ଓ କାଳୀ କ'ଣ କରିବେ କିଛି ବୁଝିନପାରି ହଠାତ୍ ସେଇ କକ୍ଷ ସଂଲଗ୍ନ ଗୋଟିଏ କୋଠରି ଭିତରେ ପଶିଗଲେ ।.....ଟିକିଏ ପରେ ସେଠାକୁ ଆସିଲେ ପ୍ର.ଦାସ ଓ ମୀରା -ପୂର୍ବର ସେଇ ହସ ଲାଗିରହିଚି ।)

ଦାସ - ମୁଁ କହୁଚି - କହୁଚି ମୀରା, ମୋ କଥା ତମେ ବିଶ୍ୱାସ କର । ରାୟବାହାଦୁରଙ୍କର ଅଛି ଟଙ୍କା - ଆଉ ମୋର ଅଛି ଆସୋସିଏସନ୍ । ବାସ୍, ଏତିକିରେ ମୋର ସେମାନଙ୍କ ସହିତ ସବୁ ସମ୍ବନ୍ଧ ଶେଷ ।

ମୀରା - ରେଖା କିନ୍ତୁ ଏଇ 'ସେମାନଙ୍କର' ବାହାରେ ।

(ପ୍ରଫେସର୍ ଜୋର୍‌ରେ ହସିଉଠିଲେ - ମୀରା ସେଇ ହସରେ ବିବ୍ରତ ହୋଇପଡ଼ିଲା ।)

ଦାସ - ତମେ ଏ କଥା କହିପାରୁଚ ମୀରା.... ଯେ, ମୁଁ ପ୍ରଫେସର୍ ବିଶ୍ୱମୋହନ ଦାସ - ଧାଇଁଚି ରେଖା ମହାନ୍ତି ପଛରେ !

ମୀରା - କାହିଁକି ? ରେଖାର ନାହିଁ କ'ଣ ? ଧନ, ଯୌବନ, ସୌନ୍ଦର୍ଯ୍ୟ, ଶିକ୍ଷା, ସଭ୍ୟତା.....

ଦାସ -ନାଃ - ତମ ପାଖରେ ନିହାତି ପ୍ରଫେସରଗିରି ନ କଲେ ଚଳିବ ନାହିଁ ଦେଖୁଚି । ଆଚ୍ଛା ମୀରା, ପୂର୍ଣ୍ଣିମାର ଚାନ୍ଦ - ଏଇ ଆଶ୍ୱିନ ପୂର୍ଣ୍ଣିମାର ଚାନ୍ଦ - କେମିତି ଲାଗେ କୁହ ତ ?

ମୀରା - ସ୍ନିଗ୍ଧ -ମଧୁର-ମନୋହର ।

ଦାସ - ଆଉ ସେଇ ଚାନ୍ଦକୁ ଆକାଶରୁ ତୋଳିଆଣି ଯଦି ସର୍ବତ କରି ପିଆଯାଏ - ତେବେ - ତେବେ ସେ କେମିତି ଲାଗିବ ଜାଣ ? ସ୍ନିଗ୍ଧ ନୁହେଁ କି ମଧୁର ନୁହେଁ - ଶୀତଳ - ଅତିମାତ୍ରାରେ ଶୀତଳ - ଏକାବେଳକେ ଉତ୍ତର-ମେରୁର ବରଫ ପରି ଥଣ୍ଡା । ଏତେ ଟିକେ ବି ଉଷ୍ଣତା ସେଠି ନାହିଁ । ରେଖା ହେଉଚି ସେଇ କାଚ୍‌ର ଝିଅ । ଗୋଟାଏ ଚେତନାହୀନ ଜଡ଼ପିଣ୍ଡ । ଆଖିର ତୃଷା ସେ ମେଣ୍ଟାଇପାରେ - କିନ୍ତୁ ପ୍ରାଣର ପିପାସା ମେଣ୍ଟାଇବାର ଉପାଦାନ ତା'ଠାରେ ନାହିଁ ।

ମୀରା - ହୁଁ, କବିତ୍ୱଟା ତା'ହେଲେ ଉତ୍ତର - ମେରୁରେ ଶେଷ ପାଉନାହିଁ ଦେଖୁଚି - ମତେ ମଧ୍ୟ ଘାରିବାର ଉପକ୍ରମ କରୁଚି ।

ଦାସ - (ମୀରାକୁ ଆଲିଙ୍ଗନରେ ଆଣି) ହଁ ମୀରା, ମୋର କବିତ୍ୱ ତମକୁ କି ସ୍ଥାନଦେଇଛି ଜାଣ ? ତମେ ହେଉଚ ପାରସ୍ୟର ଗୋଲାପ - ବୋସରାର ବୁଲ୍‌ବୁଲ୍ - ଓମାରଖେୟାମଙ୍କ ସିରାଜୀ - ସୁନ୍ଦର ଗୋଟିଏ ଶଙ୍ଖମଳମଳ ଟେବୁଲ୍ ଉପରେ a lovely peg to Italian cock-tail. ଦେଖିଲେ ପାଗଳ - ଛୁଇଁଲେ ମାତାଲ - ନଖାଇ ଫେରିବାର ଉପାୟ ନ ଥାଏ ।

(ଏମାନଙ୍କର ଅଜ୍ଞାତରେ ବାହାର ବାରଣ୍ଡାରୁ ଝରକା ବାଟେ କାଳୀ ଓ ରଙ୍ଗା ଏ ଦୃଶ୍ୟସବୁ ଦେଖୁଥିଲେ ।)

ମୀରା - ଛି, ଛି, ତମେ ଭାରି ଅଭଦ୍ର ହୋଇଗଲଣି ।

ଦାସ - ବଲିହାରି, ବଲିହାରି, ମୀରା; କ୍ଲାସ୍‌ରେ ସାର୍, ଆପଣ, ଆଜ୍ଞା - ଆଉ ଏଠି ଛି, ଛି, ତମେ, ଅଭଦ୍ର - ଏଇଟା ହିଁ ଭାରି ଭଲଲାଗେ ।

ମୀରା - ତମେ ବସ ତ ଚୁପ୍‌ହୋଇ ।

ଦାସ - ଉହୁଁ, ଏ ପରିସ୍ଥିତିରେ ତ ମଣିଷ କେବେ ଚୁପ୍‌ହୋଇ ବସିପାରେନା -

ମୀରା - ତା'ହେଲେ ବସି ବସି ଚିତ୍କାର କର ।

ଦାସ - ସେ କାମ ମୋର ନୁହେଁ - ତମର -

(ହସି ହସି ମୀରା ଗୀତ ଧରିଲା ।)

(ଗୀତ)

ଯେବେ ଗଗନ-ବୁକୁରେ ଫୁଟିବ ଚାନ୍ଦ -
ପାଶେ ଥିବ ପ୍ରିୟ
ମୋର ଉଚ୍ଛୁଡ଼ା ବୁକୁରେ ବାଜିଲେ ଧାସ,
ତଥାପି ଶୀତଳ ସେନେହ ।୦ ।
ଯେବେ ଜାଗିବ ମଧୁର ମଧୁଛନ୍ଦା
ସ୍ନିଗ୍ଧ-ବାସନା - ରଜନୀଗନ୍ଧା
ତା'ର ବେଦନା-ମଳିନ ଉଦାସ ଚାହାଣି ଚାହିଁ
ମଉଳିଯିବ ହୃଦୟ ।୧ ।
ହେନାର ମହକ ଘେରି - ଜୋଛନା ନାଚିବ ଦୂରେ -
ତନ୍ଦ୍ରାହରା ମୋର ଗହନ ମନ ତଳେ
ଜାଗିବ ତବ ବିରହ ।୨ ।
ସାଥୀହରା ପକ୍ଷୀ ପିଟି ପିଟି ଡେଣା ପବନେ -
ଭଲପାଇବାର ଦୁଃଖ କହିଯିବ କାନେ କାନେ
ଏହି ଉତଳା ଲଗନର ସନ୍ଧିକ୍ଷଣେ -
ତବ କୋଳେ ରଖିବି ମୁହଁ ।୩ ।

(ଗୀତ ଶେଷରେ ପ୍ରଫେସର୍ ଉଠି ଠିଆହେଲେ । ରଙ୍ଗା ଓ କାଳୀ ଝରକା ସେପାଖରୁ ସବୁ ଲକ୍ଷ୍ୟ କରୁଥିଲେ । ପ୍ରଫେସର୍ ମୀରା ଆଡ଼କୁ ଆଗେଇଗଲେ । ରଙ୍ଗା କ'ଣ ଭାବି ସେଠୁ ଚାଲିଯାଇ ପରମୁହୂର୍ତ୍ତରେ ଗୋଟିଏ କ୍ୟାମେରା ଆଣି ପହଞ୍ଚିଲା ।)

ଦାସ - ତମେ ଆଜି ମତେ ଧନ୍ୟ କରିଚ ମୀରା ! ଶିରାଜୀର ନିଶା- ଗୋଲାପର ଗନ୍ଧ - ଆଉ ବୁଲ୍‌ବୁଲ୍‌ର ଗାନ......ପ୍ରାଣର ପୂର୍ଣ୍ଣତା ନେଇ ମୁଁ ଏଠୁ ଫେରୁଚି ।

(ମୀରାର ଦୁଇ କାନ୍ଧକୁ ଚାପି ଧରିଲେ । ମୀରା ଲାଜରେ ଝାଉଁଳିପଡ଼ିଲା ପ୍ରଫେସରଙ୍କ ଛାତି ଉପରେ - ଏଇ ସମୟରେ ରଙ୍ଗା ଫଟୋନେଲା ।)

ମୀରା - ତମେ ଏମିତି ଭାବରେ ଅପଦସ୍ତ କଲେ ମୁଁ କାଲି ତମକୁ କ୍ଲାସ୍‌ରେ ମୁହଁଟେକି ଚାହିଁପାରିବିନାହିଁ......

ଦାସ - ଇତିହାସର ପ୍ରଫେସର ମୁଁ - ଇତିହାସରେ ବି ରୋମାନ୍‌ସ ଅଛି ମୀରା ? ହେନେରୀ ଏଇଟ୍‌ଥ (Henery Eighth)ଙ୍କ ପ୍ରେମକାହାଣୀଠାରୁ ମୋ'କଥା କ'ଣ ବେଶି ଉତ୍କଟ ? ଆଚ୍ଛା, କାଲିକା କଥା ଥାଉ, ଏତେବେଳଯାଏ ତମ ମା' କାହିଁଗଲେ କୁହ ତ ? ଗୀତା ଭାଗବତର ନିଶା କ'ଣ ଏପର୍ଯ୍ୟନ୍ତ ଛାଡ଼ିନାହିଁ ?

ମୀରା - ଏ ଆଉ ନୂଆ କଥା କ'ଣ ?

ଦାସ - (ମୀରା ପିନ୍ଧିଥିବା ହାରଟିକୁ ହାତରେ ଟେକିଧରି) - ହାରଟା ତମ ମା'ଙ୍କ ସାମ୍‌ନାରେ ଦେଇଯିବାକୁ ଆଣିଥିଲି । ମୁଁ ତ ଆଉ ରହିପାରୁନାହିଁ - ସେ ଆସିଲେ କିଛି ଭାବିବେ ନାହିଁ ତ ?

ମୀରା - ନା, ମା'ର ମୋ ଉପରେ ଯଥେଷ୍ଟ ବିଶ୍ୱାସ ।

ଦାସ - That's good; କିନ୍ତୁ ମୁଣ୍ଡର ଏ ବାଳଗୁଡ଼ାକ ହେଇଚି କ'ଣ ? ପ୍ରଣୟ ଅଭିସାରର ଏଇ ଚିହ୍ନ ନେଇ ମା'ଙ୍କ ପାଖରେ ଠିଆହବ କେମିତି ? ଏଗୁରାକ ଟିକିଏ ବାଗେଇନିଅ । ଆଚ୍ଛା, ମୁଁ ତା'ହେଲେ ଆସେ -Cheer you!

ପ୍ରଫେସର୍ ଚାଲିଗଲେ - ମୀରା ଠିଆ ହୋଇଥାଏ । ଲଜ୍ଜା ଓ ଆନନ୍ଦର ଭାବ ତା' ମୁହଁରେ ଫୁଟି ଉଠୁଥାଏ । ତା'ହାତର ଆଙ୍ଗୁଳିଗୁଡ଼ିକ ଛାଏଁ ଛାଏଁ ଯେପରି ଯାଇ ତା' ମୁଣ୍ଡର ବାଳକୁ ସ୍ପର୍ଶ କଲା । ତା'ପରେ ସେ ଆଇନା ସାମ୍‌ନାରେ ଯାଇ ଠିଆହେଲା । ପାନିଆ ସାହାଯ୍ୟରେ ତା'ର ଅବିନ୍ୟସ୍ତ କେଶରାଶିକୁ ସଜାଡ଼ିନେଲା । ତା'ପରେ ପିନ୍ଧିବା ଶାଢ଼ିଟାକୁ ଟିକିଏ ବାଗେଇନେଇ ଘର ଭିତରକୁ ଫେରିଯିବା ବେଳେ ତା' ସାମ୍‌ନାରେ ଆସି ଠିଆ ହେଲେ ରଙ୍ଗା ଓ କାଳୀ । ରଙ୍ଗା ହାତରେ କାମେରଟା ରହିଚି । ସାମ୍‌ନାରେ ଗୋଟାଏ ରକ୍ତଲୋଲୁପୀ ବାଘ ଦେଖିଥିଲେ ଏମିତି ଭାବରେ ବୋଧହୁଏ ମୀରା ଚମକି ଉଠିନଥା'ନ୍ତା - ଯେପରି ସେ ଚମକିଉଠିଲା - ରଙ୍ଗା ଓ କାଳୀକୁ ଦେଖି । ମୀରାର ଏ ଅବସ୍ଥା ଦେଖି ରଙ୍ଗା ହସିଉଠିଲା ।)

ମୀରା - ଆ-ପ-ଣ ! !

ରଙ୍ଗା - ହଁ ଆମେ । କିନ୍ତୁ ଯବନିକା ପତନ ପରେ ଆମେ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇଛୁ ମୀରା ଦେବୀ -

ମୀରା - କ'ଣ ଆପଣ କହୁଛନ୍ତି ?

ରଙ୍ଗା - ଫାଙ୍କିଦେବାପାଇଁ ଆପଣଙ୍କୁ ଯଥେଷ୍ଟ ସୁବିଧା ଦିଆହୋଇଚି - ପ୍ରଫେସର୍ ଦାସ ପ୍ରସ୍ଥାନ କଲା ପରେ ଆମେ ପ୍ରବେଶ କରିଛୁ ।

ମୀରା - ପ୍ରଫେସର୍ ଦାସ ! ହଁ - ପ୍ରଫେସର୍ ଦାସ ଆମର ପ୍ରଫେସର୍ - ସେ ମତେ ପଢ଼ାଇବାକୁ ଏଠାକୁ ସମୟେ ସମୟେ ଆସନ୍ତି । ସେଥିରେ ଆପଣଙ୍କର କ'ଣ ଅଛି ?

କାଳୀ - କିନ୍ତୁ ସେଇ ଝରକାର ଫାଙ୍କେ ଫାଙ୍କେ ମୋର ଏଇ କଳା ଆଖି ଦୁଇଟି ପ୍ରଫେସର୍ ଦାସ ଓ ମୀରା ଦେବୀଙ୍କୁ ଦେଖୁଥିଲା ପ୍ରଣୟୀଯୁଗଳ ଚଣ୍ଡୀଦାସ ଓ ରାମୀ ରୂପରେ - ଫୁଟିଉଠୁଥିଲା ପାରସ୍ୟର ଗୋଲାପ - ଗାଉଥିଲା ବସୋରାର ବୁଲ୍‌ବୁଲ୍-

ମୀରା - ବାସ୍, ବାସ୍; କିଏ ନୀଚ କିଏ ଉଚ୍ଚ ସେ କଥା ଏଠି ଆଲୋଚନା କରି ଲାଭନାହିଁ ମୀରାଦେବୀ ! ତମର ଟଙ୍କାର ଅଭାବ - କିନ୍ତୁ ମନ ତମର ବିଳାସପ୍ରିୟ । ସଂସାରରେ ବିଧବା ମା'ଟି ଛଡ଼ା ତ ଆଉ କେହି ନାହିଁ । ଏଇ ସୁଯୋଗ ନେଇ ସେ ରାସ୍କେଲ୍ ପ୍ରଫେସର୍ ତୁମକୁ ଲୁଟ୍ କରିବାରେ ଲାଗିଛି ।

ମୀରା - ଆପଣ ଚାଲିଯା'ନ୍ତୁ - ଏଇ ମୁହୂର୍ତ୍ତରେ ଏଠୁ ଚାଲିଯା'ନ୍ତୁ ।

ରଙ୍ଗା - ସେ ଲାଲ୍‌ଆଖି ଦେଖାଅନାହିଁ ମୀରା ! ଆମେ ଏଠିକି କାହିଁକି ଆସିବୁ, ତା'ତମେ ଜାଣ ?

ମୀରା - ଜାଣେ; କିନ୍ତୁ ମୁଁ ତ ଆଗରୁ ଆପଣଙ୍କୁ କହିସାରିଛି ଯେ ପାର୍ଟିରେ ଯୋଗଦେବା ମୋ ପକ୍ଷରେ ଆଉ ସମ୍ଭବ ହେବନାହିଁ ।

ରଙ୍ଗା - କାହିଁକି ସମ୍ଭବ ହେବନାହିଁ, ଟିକିଏ ଶୁଣେ ?

ମୀରା - ମୋ' ବ୍ୟକ୍ତିଗତ ଜୀବନର କୌଣସି କଥା ଜାଣିବାକୁ ଆପଣ ହକ୍‌ଦାର ନୁହଁନ୍ତି ।

ରଙ୍ଗା - ଏଇ ପାଞ୍ଚ ମିନିଟ୍ ଭିତରେ ଜୀବନର ଅନେକ ବ୍ୟକ୍ତିଗତ କଥା ତ ମୁଁ ଜାଣିସାରିଚୁ- ଆଉ ଟିକିଏ ଜାଣିଲେ କ୍ଷତି କ'ଣ ? କହିଦିଅନା ମୁହଁ ଫିଟାଇ ଯେ ପାର୍ଟିରେ ଯୋଗଦେବା ତମ ପକ୍ଷରେ ଆଉ ସମ୍ଭବ ହେବ ନାହିଁ - ଯେହେତୁ ତମେ ବର୍ତ୍ତମାନ ପ୍ର. ଦାସଙ୍କ ପ୍ରଣୟିନୀ ।

ମୀରା - (ଜୋର୍ ଗଳାରେ) ରଙ୍ଗାଧରବାବୁ....

ରଙ୍ଗା - ଚିତ୍କାର କର ନାହିଁ ମୀରା - ରାସ୍ତାର ଲୋକେ ହୁଏତ ଏଠି ଆସି ଜମା ହୋଇଯାଇପାରନ୍ତି ।

ମୀରା - କିନ୍ତୁ କାହିଁକି ଆପଣ ଏଠି ଆସି ମୋ' ଉପରେ ଅତ୍ୟାଚାର ଆରମ୍ଭ କରିଚନ୍ତି ?

ରଙ୍ଗା - ବେଶ୍, ଆମର ହିସାବନିକାଶ କରିଦିଅ - ଆମେ ଏଠୁ ଚାଲିଯିବୁ ।

ମୀରା - କୁହନ୍ତୁ, ଆପଣ କି ହିସାବନିକାଶ କରିବାକୁ ଚାହାନ୍ତି !

ରଙ୍ଗା - ଟଙ୍କାଟା ଫେରାଇଦିଅ ।

ମୀରା - ଟଙ୍କା ! !

ରଙ୍ଗା - ହଁ-ହଁ, ଟଙ୍କା, ତମକୁ ତିନିବର୍ଷ କଲେଜ୍‌ରେ ପଢ଼ାଇବା ଖର୍ଚ୍ଚ ।

ମୀରା - କିନ୍ତୁ ସେ ଟଙ୍କା ତ ଓଡ଼ିଶା ସାମ୍ୟବାଦୀ ଦଳ ମୋ ପାଇଁ ଖର୍ଚ୍ଚ କରିଚି ।

ରଙ୍ଗା - ସାମ୍ୟବାଦୀ ଦଳ ନୁହେଁ କି - ସଦାନନ୍ଦ ସେଠ୍ ନୁହେଁ - ସେ ଟଙ୍କା ତମକୁ ବମ୍ବେ ସେଣ୍ଟର ଯୋଗାଉଥିଲା ।

ମୀରା - ବେଶ୍, ବମ୍ବେ ସେଣ୍ଟର୍ ମତେ ଟଙ୍କା ଦେଇଚି - ବମ୍ବେ ସେଣ୍ଟର୍ ସେ କଥା ବୁଝିବ - ଆପଣ ସେଥିରେ କାହିଁକି ଇଣ୍ଟରଫିୟର୍ କରୁଚନ୍ତି ?

ରଙ୍ଗା - ଅକୃତଜ୍ଞ ହୁଅନାହିଁ ମୀରା !......କାହା ଚେଷ୍ଟାରେ ବମ୍ବେ ସେଣ୍ଟର୍ ତମକୁ ଟଙ୍କା ଯୋଗାଉଥିଲା - କୁହ, କାହା ଚେଷ୍ଟାରେ ?

ମୀରା - ମାନୁଚି, ଆପଣଙ୍କ ଚେଷ୍ଟାରେ ।

ରଙ୍ଗା - ତମର ଏଇ ରକ୍ତମାଂସର ଦେହ ଉପରେ ଲୋଭ ରଖି ମୁଁ ତମକୁ ସାହାଯ୍ୟ କରିନଥିଲି । ମୁଁ ସାହାଯ୍ୟ କରିଥିଲି ଏଇ ଆଶାରେ ଯେ ତମେ ବି.ଏ. ପାସ୍ କରିସାରିଲା ପରେ ଆମ ପାର୍ଟିରେ ଆସି ଯୋଗଦେବ - କିନ୍ତୁ ମୋର ସେ ଆଶା....

ମୀରା - ଆପଣଙ୍କର କୌଣସି ଆଶା ସଫଳ ହବନାହିଁ ରଙ୍ଗାଧରବାବୁ - ମୁଁ ପାର୍ଟିରେ ଯୋଗଦେବି ନାହିଁ କି ଟଙ୍କା ଫେରାଇବି ନାହିଁ ।

(ମୀରା କଥା ଶେଷ କରି ଚାଲିଯାଉଥିଲା ବେଳେ ରଙ୍ଗାଧର ତା'ସାମ୍ନାରେ କାମେରାଟା ଟେକି ଧରିଲା ।)

ଏ କ'ଣ! ଏ କାମେରା ଆପଣ ପାଇଲେ କେଉଁଠୁ ? ଏଇଟା ଯେ ମୋ କାମେରା ।

ରଙ୍ଗା - ହଁ-ହଁ, ତମରି କାମେରା - ଆଉ ଏଥିରେ ତମରି ଫଟୋ ବି ରହିଚି ।

ମୀରା - ମୋ ଫଟୋ ! !

ରଙ୍ଗା - ଏକା ତମେ ନୁହଁ - ପ୍ରଫେସର୍ ଦାସ ମଧ ଅଛନ୍ତି ।

କାଳୀ - ପ୍ରଣୟୀ-ଯୁଗଳ-ପାରସ୍ପର ଗୋଲାପ - ବସୋରାର ବୁଲ୍‌ବୁଲ୍ ।

ମୀରା - ଛି-ଛି-ରଙ୍ଗାଧରବାବୁ - ଆପଣ କାହିଁକି ମୋର ଏ ସର୍ବନାଶ କରିବାକୁ ଯାଉଚନ୍ତି ?

ରଙ୍ଗା - ସର୍ବନାଶ ମୁଁ କାହାରି କରୁନାହିଁ ମୀରା - ମୁଁ ଚାହେଁ ଟଙ୍କା ।

ମୀରା - କିନ୍ତୁ ଆପଣ କ'ଣ ମୋ ଅବସ୍ଥା ଜାଣନ୍ତି ନାହିଁ ? ଟଙ୍କା ମୁଁ ପାଇବି କେଉଁଠୁ ?

ରଙ୍ଗା - ବେଶ୍, ମୁଁ ମଧ ଟଙ୍କା ପାଇଁ ଜୋର୍ କରୁନାଇଁ । ଆ' କାଳୀ ଯିବା....

ମୀରା - କିନ୍ତୁ ଏ ଫଟୋନେଇ ଆପଣ କରିବେ କ'ଣ ?

ରଙ୍ଗା - ବହୁତ କିଛି । ଟଙ୍କା ତ ମୋର ଦରକାର । ଖବର କାଗଜରେ ବିଜ୍ଞାପନ ଦେଲେ

 

ଟଙ୍କାର ଅଭାବ ରହିବନାହିଁ । ଉପରେ ଏ ଫଟୋ ରହିବ - ତା'ତଳେ ଲେଖାହେବ - ଆସନ୍ତୁ, ଦେଖନ୍ତୁ - ଆମର ଏ ବିଶୁଦ୍ଧ ଦାନ୍ତଘଷା ଗୁଡ଼ାଖୁ ଘଷି ଏ ଯୁବକ-ଯୁବତୀ ଦୁଇଟିଙ୍କର ଜୀବନ କିପରି ପ୍ରେମମୟ ହୋଇଉଠିଚି । ଗୁଡ଼ାଖୁ କମ୍ପାନୀ ଖୁବ୍ ଟଙ୍କା ଦେବ ।

ମୀରା - (କାନ୍ଦିପକାଇ) ରଙ୍ଗାଧରବାବୁ !

ରଙ୍ଗା - ଆଚ୍ଛା, ଟଙ୍କା ବଦଳରେ ତମ ବେକର ସେ ହାରଟାକୁ ଦେଇପାରିବ ?

ମୀରା - ଏଇ ହାର !

ରଙ୍ଗା - ହଁ, ସେଇ ହାର । ପ୍ର. ଦାସ ଆଜି ତମକୁ ଉପହାର ଦେଇଚନ୍ତି - ଆଉରି ଦେବେ । ତମର ଅଛି ଯୌବନ - ତାଙ୍କର ଅଛି ଟଙ୍କା ।

ମୀରା - ସେଇଆ କରନ୍ତୁ ରଙ୍ଗାଧରବାବୁ - ଆପଣ ଏ ହାରଟା ନେଇ କାମେରାଟା ଫେରାଇ ଦେଇଯା'ନ୍ତୁ ।

ରଙ୍ଗା - ଛି-ଛି-ଛି ମୀରା ! ଏଇ ଦୁର୍ବଳ ହୃଦୟ ନେଇ ତମେ ପ୍ରଫେସର୍‌କୁ ପ୍ରେମରେ ଜିତିପାରିବ ? ବାସ୍ତବିକ୍ ତମକୁ ଦେଖିଲେ ମୋର ଦୟାଆସେ ମୀରା ! ଆଚ୍ଛା, ତମ ହାରଟା ମୁଁ ମାଗୁନାହିଁ - ଟଙ୍କା ବି ମୁଁ ଚାହେଁନା - କିନ୍ତୁ ତମର କଥା ମୁଁ ରଖିପାରିବିନାହିଁ ।

ମୀରା - ମୁଁ ଆପଣଙ୍କୁ ଅନୁନୟ କରୁଚି ରଙ୍ଗାଧରବାବୁ - କାମେରାଟା ଆପଣ ଫେରାଇଦିଅନ୍ତୁ ।

ରଙ୍ଗା - କାମେରାଟା ଫେରାଇଦେଲେ ଗୋଟାଏ ଅତି ଚମତ୍କାର ଖେଳ ଖେଳିବାର ସୁଯୋଗ କ'ଣ ସହଜରେ ଆଉ ମିଳିବ ? ? ?

(ରଙ୍ଗା ଓ କାଳୀ ଚାଲିଗଲେ - ମୀରା କିଂକର୍ତ୍ତବ୍ୟବିମୂଢ଼ା ହୋଇ ସେଠି ଠିଆ ହୋଇ ରହିଲା ।)

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(କଟକ ସହରସ୍ଥିତ ବଲ୍‌ସେଭିକ୍ ମେସ୍‌ର ଗୋଟିଏ କୋଠରି । କୋଠରିଟିରେ ଦୁଇଟି ସିଟ୍, ଗୋଟିକରେ ରହେ ସୁରେଶ, ଅନ୍ୟଟିରେ ମେସ୍‌ର ପୁରାତନ ମେମ୍ବର୍ ବିଶ୍ୱନାଥ । ବିଶ୍ୱନାଥର ବୟସ ୪୦ ପାଖାପାଖି । ସେ କୌଣସି ଖବରକାଗଜର ରିପୋର୍ଟ୍‌ର (Reporter)..... ବିଶ୍ୱନାଥ ସୁରେଶର ସିଟ୍ (Seat) ଉପରେ ବସିଛି । ତା'ର ଗୋଟିଏ ହାତରେ ଦା' ଓ ଅନ୍ୟ ହାତରେ ହାତୁଡ଼ି । ବିଶ୍ୱନାଥର ଅଲକ୍ଷ୍ୟରେ ସୁରେଶ ଆସି ପହଞ୍ଚିଲା ।)

ବିଶ୍ୱନାଥ - (ଆଖିବୁଲାଇ ମନକୁ ମନ) ହେ ବଲ୍‌ସେଭିକ୍ ରାଜ୍ୟର ବରେଣ୍ୟ ବିରାଟ ଶକ୍ତିଦ୍ୱୟ, ହେ ବିଶ୍ୱବିପ୍ଳବର ସୂତ୍ରଧର; ତୁମେ ଏହି ବିଦ୍ରୋହୀ ବିଶ୍ୱନାଥର ବନ୍ଦନୀୟ ! (ଦା' ହାତୁଡ଼ିକି ମୁଣ୍ଡରେ ଲଗାଇଲା ଓ ସୁରେଶ ଏ ଦୃଶ୍ୟ ଦେଖି ଆନନ୍ଦ ଅନୁଭବ କରୁଥାଏ ।)

ସୁର - ବିଶ୍ୱନାଥବାବୁ !

ବିଶ୍ୱ - (ଆଦୌ ବିଚଳିତ ନହୋଇ) Yes Comrade.

ସୁର - ମୁଁ ଆପଣଙ୍କୁ କାଲି ମନାକରିଥିଲି ନା ! ଆପଣ ମୋ ସିଟ୍ ଉପରେ ବସି....

ବିଶ୍ୱ - (ବାଧାଦେଇ) Stop please. କ'ଣ କହିଲ ତୁମେ ? ତୁମର ସିଟ୍ ! ଏ ମେସ୍‌ରେ ତୁମେ କେତେଦିନ ହେଲା ରହିଲଣି ?

ସୁର - ପ୍ରାୟ ଦୁଇ ସପ୍ତାହ ।

ବିଶ୍ୱ - ଏଇଟା ଯେ ପ୍ରୋଲିଟାରିୟାନ୍ ମେସ୍ (Proletarian mess) ଯା'ତୁମେ ନିଷ୍ଚୟ ଜାଣ ।

ସୁର - ଜାଣେ ।

ବିଶ୍ୱ - ଆଉ ଯା' ମଧ୍ୟ ତୁମେ ଜାଣ ଯେ ଏ ମେସ୍‌ର ପରିଚାଳନା ଡାୟାଲେକ୍‌ଟିକାଲ୍ ମେଟେରିଆଲିଜିମ୍ (Dialectical materialism) ଉପରେ ନିର୍ଭର କରେ ।

ସୁର - ଯା ବୋଲି କ'ଣ ଆପଣ ମୋ ବିଛଣାକୁ ଅଧିକାର କରି ବସିବେ ?

ବିଶ୍ୱ - ନିଶ୍ଚୟ, ବାଇ ଅଲ୍ ମିନ୍‌ସ (By all means) ତା'ର ତ ମୂଳ ନୀତି ହେଲା ସେଇୟା - ତମର ବିଛଣାରେ ଏ ମେସ୍‌ର ସବୁ ମେମ୍ବରଙ୍କର ସମାନ ଅଧିକାର । ତମେ ଅସ୍ୱୀକାର କଲେ ଜବରଦସ୍ତି ଆମେ ଅଧିକାର କରିବୁ ।

ସୁର - (ଛଳନା କରି) ଦେଖନ୍ତୁ, ମୁଁ ହେଉଚି ଖାଣ୍ଟି ଗଣତନ୍ତ୍ରବାଦୀ, ଆପଣଙ୍କ ସହିତ ମୋର ଆଦୌ ପଟିବ ନାହିଁ । ଭବିଷ୍ୟତରେ ଆମ ମଧ୍ୟରେ ଯେପରି କୌଣସି ସଂଘର୍ଷ ନଘଟେ, ସେଥିପାଇଁ ଆଜି ଏଠାରେ ଗୋଟାଏ ରାଜିନାମା ହୋଇଯାଉ । (ଘର ମଧ୍ୟରେ ପଡ଼ିଥିବା ଟେବୁଲ୍‌କୁ ଉଭୟ ସିଟ୍ ମଧ୍ୟରେ ରଖି) ଏଣିକି ଆପଣ ଏପାଖକୁ ଆସିବେ ନାହିଁ କି ମୁଁ ସେପାଖକୁ ଯିବିନାହିଁ ।

ବିଶ୍ୱ - (ଗର୍ଜିଉଠି) No, No, No, ଏ ମେସ୍ ମଧ୍ୟରେ ତମେ ତମର କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା କରିପାରିବ ନାହିଁ ।

ସୁର - ତେବେ ମୁଁ ଚଳିବି କେମିତି ? ଆପଣଙ୍କ ସହିତ ମୋ ମତ ଯେ ଖାପଖାଉନାହିଁ ।

ବିଶ୍ୱ - ଖାପ ଖୁଆଇବାକୁ ହେବ କମ୍ରେଡ୍ - ଖାପ ଖୁଆଇବାକୁ ହେବ ।

ସୁର - କ'ଣ ଜବରଦସ୍ତି ?

ବିଶ୍ୱ - ନିଶ୍ଚୟ ! ନହେଲେ ଉପାୟ ନାହିଁ ।

ସୁର - ତା'ହେଲେ ମୋତେ ବାଧ ହୋଇ ଏ ମେସ୍ ଛାଡ଼ିଯିବାକୁ ପଡ଼ିବ ।

ବିଶ୍ୱ - ନା ନା, ତା' ହୋଇପାରେନା- ତୁମେ କୌଣସିମତେ ଏ ମେସ୍ ଛାଡ଼ିପାରିବ ନାହିଁ ।

ସୁର - ତା'ର୍ ମାନେ ?

ବିଶ୍ୱ - ମାନେ ମେସ୍ ତମକୁ ଛାଡ଼ିବାକୁ ଚାହେଁନା । ଆଉ ଛାଡ଼ିପାରିବ ନାହିଁ ମଧ ।

ସୁର - କିନ୍ତୁ ମୁଁ ଯେ ମେସ୍ ଛାଡ଼ିବାକୁ ଚାହୁଁଚି ।

ବିଶ୍ୱ - ଓ, ତୁମେ ମେସ୍ ଛାଡ଼ିବାକୁ ଚାହୁଁଚ; ଅଥଚ ମେସ୍ ତୁମକୁ ଛାଡ଼ିବାକୁ ଚାହେଁନା । ହୁଁ, ଜଟିଳ ସମସ୍ୟା । ଆଚ୍ଛା, ତୁମେ ଟିକେ ରୁହ, ମୁଁ ସୁପ୍ରିମ୍ କାଉନ୍‌ସିଲ୍ ସହିତ ପରାମର୍ଶ କରି ଏଇମାତ୍ର ଫେରୁଛି ।

(ଚାଲିଗଲା । ସୁରେଶ ହସି ହସି ସେଇଆଡ଼େ ଚାହିଁ ରହିଥାଏ । ମେସ୍‌ର ଚାକର ଖଣ୍ଡେ ଚିଠି ଆଣି ସୁରେଶକୁ ଦେଲା - ଲଫାପା ଖୋଲି ସୁର ଚିଠିଟି ପଢ଼ିଲା - କିଛି ସମୟ ପରେ ପୁଣି ସେଠାକୁ ଆସିଲା ବିଶ୍ୱନାଥ ।)

ବିଶ୍ୱ - କମ୍ରେଡ୍ ! ଆମେ ନିଷ୍ପତ୍ତି କରିସାରିଛୁ ।

ସୁର - କି ନିଷ୍ପତ୍ତି କରିଛନ୍ତି ଶୁଣେ ?

ବିଶ୍ୱ - ତୁମକୁ ଅତିଶୀଘ୍ର ବିବାହ କରିବାକୁ ପଡ଼ିବ ।

ସୁର - ହଠାତ୍ ବିବାହ କରିବି କାହିଁକି ?

ବିଶ୍ୱ - ବିବାହ ନକଲେ ତୁମେ ଏ ମେସ୍‌ର ନୀତି ବୁଝିପାରିବ ନାହିଁ ।

ସୁର - ଅର୍ଥାତ୍ ?

ବିଶ୍ୱ - ଅର୍ଥାତ୍ ତୁମେ ବିବାହ କରିବ । ବିବାହ କଲା ପରେ ଯାହା ହୋଇଥାଏ; ତୁମର ହୁଏତ କିଛି ପିଲାପିଲି ହେବେ । ତା'ପରେ ଟଙ୍କା-ପଇସାର ଅଭାବ ଯୋଗୁଁ ତୁମ ସ୍ତ୍ରୀ

ରହିବେ ତାଙ୍କ ବାପଘରେ, ତୁମ ପିଲାମାନେ ରହିବେ ତୁମ ନିଜ ଘରେ, ଆଉ ତୁମେ ରହିବ ଆମର ଏହି ବଲ୍‌ସେଭିକ୍ ମେସ୍‌ରେ ।

ସୁର - ବଲ୍‌ସେଭିକ୍ ମେସ୍ ?

ବିଶ୍ୱ -ହଁ, ତମେ ଯାହା କିଛି ରୋଜଗାର କରିବ ସେସବୁ ମେସ୍‌ର କୋଠଫଣ୍ଡ୍‌ରେ ଦାଖଲ କରିବ । ତା'ପରେ ଫଣ୍ଡ୍‌ର ପାଣ୍ଠି ଅନୁସାରେ ମେସ୍ ତୁମ ପିଲାମାନଙ୍କୁ ସାହାଯ୍ୟ କରିବ । ନିଜର ଏଇ ବ୍ୟକ୍ତିଗତ ଅବସ୍ଥାଟା ଯେତେବେଳେ ତୁମେ ବୁଝିପାରିବ, ସେତେବେଳେ ମେସ୍‌ର ଆଇନ୍‌କାନୁନ ମାନି ଚଳିବାକୁ ତମର କୌଣସି ଆପତ୍ତି ରହିବ ନାହିଁ ।

ସୁର - କିନ୍ତୁ, ଏଇ ମେସ୍‌ରେ ଯେ ଦୁଇଜଣ ବେକାର ମେମ୍ବର ଅଛନ୍ତି, ଆଉ ପାଞ୍ଚଜଣଙ୍କର ଆୟ କୋଡ଼ିଏ ଟଙ୍କାରୁ ବେଶି ନୁହେଁ ।

ବିଶ୍ୱ - ସେଥିରେ ତୁମର କ'ଣ ଅଛି ? ଦିନ ଆସିବ, ଯୋଉଦିନ ତୁମେ ବେକାର ହବ, ଆଉ ସେମାନେ କରିବେ ରୋଜଗାର ।

ସୁର - କିନ୍ତୁ ମୋର ଯେବେ ଟଙ୍କା -ପଇସାର ଅଭାବ ନହୁଏ ?

ବିଶ୍ୱ - ନିଶ୍ଚୟ ହେବ । ବଲ୍‌ସେଭିକ୍ ମେସ୍‌ର କୌଣସି ମେମ୍ବର ମାସକୁ ତିରିଶ ଟଙ୍କାରୁ ଅଧିକ ରୋଜଗାର କରନ୍ତି ନାହିଁ, ତୁମେ ମଧ କରିପାରିବନାହିଁ; କଲେ ତୁମର ସଞ୍ଚୟ କରିବାର କ୍ଷମତା ଆସିବ, ଆଉ ତୁମେ ହେବ ଜଣେ କ୍ୟାପିଟାଲିଷ୍ଟ ଧନୀ ପୁଞ୍ଜିପତି - ଓଡ଼ିଆ ଜାତିର ପରମ ଶତ୍ରୁ ।

ସୁର - ମୁଁ ଏଠାକୁ ପ୍ରଥମେ ଆସିବା ଦିନ ତ ଆପଣ ଏସବୁ କଥା ମତେ କହିନଥିଲେ ?

ବିଶ୍ୱ - ତା'ର ଦରକାର ନଥିଲା; କାରଣ ତୁମେ ଥିଲ ଜଣେ ଅବିବାହିତ କଲେଜ୍ ଛାତ୍ର ।

ସୁର - କିନ୍ତୁ, ମୁଁ ତ ବର୍ତ୍ତମାନ ବିବାହ କରିପାରିବିନି ।

ବିଶ୍ୱ - କରିପାରିବିନି କହିଲେ ଚଳିବନାହିଁ କମ୍ରେଡ୍! ତୁମକୁ ବିବାହ କରିବାକୁ ହେବ, ଆଉ ଯେବେ ନକର ତେବେ ଜଣେ ଅବିବାହିତ ମେମ୍ବର ଭାବରେ ମେସ୍‌ର ସମସ୍ତ ଆଇନ୍‌କାନୁନ୍ ମାନି ତୁମେ ଏଠି ରହିବାକୁ ବାଧ ହେବ ।

ସୁର - ଆଚ୍ଛା, ବିଶ୍ୱନାଥବାବୁ! ଆପଣଙ୍କର ବୟସ କେତେ ?

ବିଶ୍ୱ - what devil you have to do with my age ? ମୋର ବୟସ ସଙ୍ଗେ ତୁମର ସଂପର୍କ କ'ଣ ? ଜଣେ ଭାରତୀୟର ହାରାହାରି ଜୀବନୀଶକ୍ତି ବାଇଶ ବର୍ଷରୁ ବେଶି ନୁହେଁ । ମୁଁ ଯେ ବେଶି ଦିନ ବଞ୍ଚିପାରୁଛି, ସେ ମୋର ବାହାଦୁରି । କିନ୍ତୁ ତୁମେ ମୋତେ ସେଇ ବାଇଶ ବର୍ଷର ଯୁବକ ବୋଲି ଭାବିବ ।

ସୁର - ମୁଁ ଆପଣଙ୍କୁ ବୃଦ୍ଧ ବୋଲି କହୁନାହିଁ ଯେ, ଆପଣଙ୍କ ବୟସ ବୋଧହୁଏ ଚାଳିଶର ପାଖାପାଖି ହେଲାଣି; ଆପଣଙ୍କର ଏ ପାଗଳାମି କେବେ ଛାଡ଼ିବ କହନ୍ତୁ ତ ?

ବିଶ୍ୱ - what, ପାଗଳାମି ? ମତେ ତୁମେ ପାଗଳ କହୁଛ ? ଆଚ୍ଛା, ତୁମେ କୁହ ତ ଏଠାକୁ ଆସିବା ପୂର୍ବରୁ ତୁମେ କୋଉଠି ରହୁଥିଲ ?

ସୁର - କଲେଜ୍ ହଷ୍ଟେଲ୍‌ରେ ।

ବିଶ୍ୱ - O' That fool's paradise! ବୁଝିଲି, ସେଥିପାଇଁ ତମେ ମତେ ପାଗଳ କହୁଛ । ଶୁଣ, ମୁଁ ମଧ ମୋ ଜୀବନର ଦୀର୍ଘ ଚାରୋଟି ବର୍ଷ ସେଇ Fools Paradiseରେ କଟାଇଛି । ସେଠି ଥିବା ପର୍ଯ୍ୟନ୍ତ ବେଶ୍ ଗୋଟାଏ ନିଶାର ମାଦକତାରେ ବୁଡ଼ି ରହିଥିଲି; ମନେହେଉଥିଲା ଜୀବନଟା ମୋର ଗୋଟାଏ ସମତଳଭୂମିରେ ଗଡିକରି ଚାଲିଛି, ଉତ୍‌ଥାନ ନାହିଁ - ପତନ ନାହିଁ - ବେଶ୍ ଚାଲିଛି । କିନ୍ତୁ ସେଠୁ ବାହାରିଆସି ଦେଖିଲି ଯେ ଏତେଦିନ ଗୋଟାଏ ମହାଶୂନ୍ୟକୁ ସମ୍ବଳ କରି ମୁଁ ପ୍ରାଣହୀନ ଜୀବନ କଟାଇଆସିଛି । ତା'ପରେ ମୋ ଜୀବନର ସତ୍ତା ମୁଁ ଅନୁଭବ କରିବାକୁ ଲାଗିଲି । କିନ୍ତୁ ସେଇଠୁ ମୋର ଚାଲିବାର ବାଟ ମୁଁ, ଖୋଜି ପାଇଲିନାହିଁ । ଯେଉଁଠିକି ଗଲି ସେଠି ଶୁଣିଲି ମୋ ଜୀବନର ମୂଲ୍ୟ ହେଉଛି ମୋଟେ ତିରିଶ ଟଙ୍କା - Only thirty rypees ?

ସୁର - Thirty rupees ?

ବିଶ୍ୱ - Yes, thirty rupees- ମାତ୍ର ତିରିଶ ଟଙ୍କା - କିରାନି ଚାକିରି କରି ତିରିଶ ଟଙ୍କା, ମାଷ୍ଟରୀ କରି ତିରିଶ ଟଙ୍କା, ଟିଉସନ୍ କରି ତିରିଶ ଟଙ୍କା । ତିରିଶ ଟଙ୍କାରୁ ଉପରକୁ ଯିବାର ଅଧିକାର ହୁଏତ ଅନ୍ୟମାନଙ୍କର ଅଛି; ମାତ୍ର ମୋର ନାହିଁ । ଜଣେ ମାରୱାଡ଼ି ଶେଠ୍ ପାଖକୁ ଗଲି, କହିଲି, ଶେଠ୍‌ଜୀ ଓଡ଼ିଶାରୁ ତୁମେ ବହୁତ ଟଙ୍କା ନେଲଣି, ମୋତେ କିଛି ଟଙ୍କା ସାହାଯ୍ୟ କର, ମୁଁ ବ୍ୟବସାୟ କରିବି । ସେ ମୋତେ କ'ଣ କହିଲା ଜାଣ ? କହିଲା, ବାବୁଜୀ ! ତମେ ଓଡ଼ିଆ ଆଦ୍‌ମୀ, ପୁଣି ବି.ଏ. ପାସ୍ କରିଚ - ତମେ ଏ ଜୀବନରେ ବ୍ୟବସାୟ କରିପାରିବ ନାହିଁ, କେବଳ ଭାଙ୍ଗିପାରିବ । ଅତଏବ ମୋ ପାଖରେ ଚାକିରି କର - ମୁଁ ତୁମକୁ ମାସକୁ ତିରିଶ ଟଙ୍କା ଦରମା ଦେବି - ବେଶ୍ ଆରାମରେ ରହିବ ।

ସୁର - ତା'ପରେ କ'ଣ କଲେ ?

ବିଶ୍ୱ - ଗରିବ ଘରର ପିଲା, ଉପାୟଶୂନ୍ୟ ହୋଇ ଗୋଟାଏ ଖବରକାଗଜ ଅଫିସ୍‌ରେ ଚାକିରି କଲି । ତା'ପରେ ମୁଁ ଯୁଦ୍ଧ ଘୋଷଣା କଲି ଏଇ ଅମଲାତନ୍ତ୍ର ସରକାର ଆଉ ପୁଞ୍ଜିପତି ବ୍ୟବସାୟୀଙ୍କ ବିରୁଦ୍ଧରେ । ଏହି ଦା'ହାତୁଡ଼ିକି ସମ୍ବଳ କରି ସ୍ଥାପନ କଲି ଏଇ ବଲ୍‌ସେଭିକ୍ ମେସ୍ । ତୁମେ ମତେ ବିପ୍ଳବୀ କହିପାର; କିନ୍ତୁ କମ୍ରେଡ୍, ତୁମେ ମୋତେ ପାଗଳ କହିପାରିବ ନାହିଁ ।

ସୁର - ଦେଖନ୍ତୁ, ଆପଣଙ୍କ ମେସ୍‌ରେ ରହିବାକୁ ରାଜି ଅଛି; କିନ୍ତୁ ଜଣେ ଅବିବାହିତ ମେମ୍ବର ଭାବରେ ।

ବିଶ୍ୱ - That's like a good boy. ତୁମେ ବୁଦ୍ଧିମାନ୍, ସାହସୀ ଆଉ ସ୍ପଷ୍ଟବାଦୀ । ତୁମକୁ ପାଇ ଆମ ବିପ୍ଳବ ଯଥେଷ୍ଟ ଆଗେଇ ଚାଲିବ । ଏ ପର୍ଯ୍ୟନ୍ତ ଆମେ ଏଗାର ଜଣ ମେମ୍ବର ଥିଲୁ, ତୁମେ ହେଲ ଆମର ଦ୍ୱାଦଶ ଯୋଦ୍ଧା । ଏଇ ବାରଜଣ ମେମ୍ବରବିଶିଷ୍ଟ କ୍ଷୁଦ୍ର ବଲ୍‌ସେଭିକ୍ ମେସ୍ ଯେଉଁ ଆନ୍ଦୋଳନ ସୃଷ୍ଟି କରିବ, ତା'ରି ଫଳରେ ଦେଖିବ ପ୍ରତ୍ୟେକ ଭାରତୀୟର ମୂଲ୍ୟ ହେବ ତିରିଶ ଟଙ୍କା - Only thirty rupes. କୋଟିପତି ଶେଠ୍‌ର ମୂଲ୍ୟ ହେବ ତିରିଶ ଟଙ୍କା, ଦୁଇ ହଜାର ଟଙ୍କା ଦରମା ପାଉଥିବା I.C.S. Officer ର ମୂଲ୍ୟ ହେବ ତିରିଶ ଟଙ୍କା, ଆଉ ଦୈନିକ ଛଅ ପଇସା ରୋଜଗାର କରୁଥିବା ଜଣେ ମଜ୍‌ଦୁରର ମୂଲ୍ୟ ହେବ ସେଇ ତିରିଶ ଟଙ୍କା ।

ସୁର - ମୋର ଏଇଠି ଗୋଟାଏ କଥା ପଚାରିବାର ଅଛି ।

ବିଶ୍ୱ - ବେଶ୍ ପଚାର ।

ସୁର - ପ୍ରତ୍ୟେକ ଭାରତବାସୀର ମୂଲ୍ୟ ତିରିଶ ଟଙ୍କା ସ୍ଥଳେ ଆପଣ ଶହେ ଟଙ୍କା ଧରୁନାହାଁନ୍ତି କାହିଁକି ?

ବିଶ୍ୱ - That's not my business, ତା ମୋର କାମ ନୁହେଁ । ମୁଁ ଜଣେ Graduate (ଗ୍ରାଜୁଏଟ୍) ଏ ଦେଶର ସରକାର, ଏ ଦେଶର ଶେଠ୍ ଯଦି ମୋ ଜୀବନର ମୂଲ୍ୟ ତିରିଶ ଟଙ୍କା ଧରିଲେ ତେବେ ମୁଁ ପ୍ରତ୍ୟେକ ଭାରତୀୟର ମୂଲ୍ୟ ସେଇ ତିରିଶ ଟଙ୍କା ହିଁ ରଖିବି । ତା'ଠାରୁ ବେଶି ନୁହେଁ କି କମ୍ ନୁହେଁ, ବୁଝିଲ ?

ସୁର - ବୁଝିଲି ।

ବିଶ୍ୱ - ତୁମର ଆଉ କିଛି ଜାଣିବାର ଅଛି ?

ସୁର - ନା ।

ବିଶ୍ୱ - ଆଚ୍ଛା, ତୁମେ ତା'ହେଲେ ବର୍ତ୍ତମାନ ମୋ ସାଥିରେ ଆସ ଆମ ଲାଇବ୍ରେରିକୁ-

(ସେମାନେ ଲାଇବ୍ରେରିକୁ ଚାଲିଗଲା ପରେ ସେଠାରେ ପ୍ରବେଶ କଲେ ରଙ୍ଗା ଓ କାଳିଚରଣ ।)

ରଙ୍ଗା - କାହିଁ; ଏଠି ତ ନାହିଁ ?

କାଳୀ - ବୋଧହୁଏ ଲାଇବ୍ରେରିକୁ ଯାଇଛି, ଚାଲ ଯିବା ସେଠିକି ।

ରଙ୍ଗା - ନା, ସେଠିକି ଗଲେ ସେ ବିଗିଡ଼ିବ । ଏଇଠି ଅପେକ୍ଷା କରିବା ।

କାଳୀ - ତା'ହେଲେ ଦଳରୁ ଇସ୍ତଫା ଦବା କଥା ଠିକ୍ ହେଲା ?

ରଙ୍ଗା - ହଁ, ମୀରାକୁ ଛାଡ଼ିଛି - ବିଶ୍ୱନାଥକୁ ମଧ୍ୟ ଛାଡ଼ିବି; ତା'ପରେ ମୁଁ ଗଢ଼ିବି ଗୋଟାଏ ନୂଆ ଦଳ - ସର୍ବହରା ଦଳ । ଆଉ ସେଇ ସର୍ବହରାକୁ ନେଇ ମୁଁ ହେବି ସର୍ବହରା ।

(ହସିଉଠିଲା)

(ଏଇ ସମୟରେ ଭିତରୁ ଶୁଭିଲା ଗୀତ - ସର୍ବହରାର ଗୀତ । ମେସ୍‌ର ଅନ୍ୟତମ ମେମ୍ବର ବିରୂପାକ୍ଷ ଗୀତ ଗାଇ ଗାଇ ଆସି ସେଠାରେ ପହଞ୍ଚିଲା ।)

(ଗୀତ)

ଆରେ ସର୍ବହରା, ଆରେ ସର୍ବହରା, ଆରେ ସର୍ବହରା
ସହିବା ଲାଗି ଜୀଇବା ତୋର ଲୁହ ରକତ ବୋଳା,
(ଖାଲି) କପାଳେ ପିଟି ହାତପାପୁଲି ବଞ୍ଚି ରହିଥା ମରିବୁ ବୋଲି,
ପଞ୍ଜରା ଦଳି ହାଲୁକା କର ଖାଙ୍କର ପେଟଜ୍ୱାଳା ।୧ ।
ତୋର ମଥାଟେକିବା ମହା ଅପରାଧ
ମୁହଁ ଲୁଚାଇ ମନେ ମନେ କାନ୍ଦ
କି ଅଧିକାରେ କହୁଚୁ କଥାରେ,
ଜନ୍ମ ତ ତୋର ଲାଞ୍ଛନା ଭରା ।୨ ।
ସୃଷ୍ଟିର ସାରା ଜୀବନେ ଏତେ କୁତ୍ସିତ ପରାଭବ,
ବିଧାତାରେ ନିତି କହ ନିର୍ଜନେ ଆଉ କେବେ ନ ଦେବ,
ମରିବୁ ଯେବେ ଚଞ୍ଚଳ ମର ଧୂଳି କର ସବୁ ବ୍ୟର୍ଥତା ତୋର
ତୋ ପାଇଁ ନୁହେଁରେ କୀଟ ଏ ମାଟିର ବସୁନ୍ଧରା ।୩।

(ଗୀତ ଶେଷ ହେଲା । ରଙ୍ଗା ଓ କାଳୀ ସ୍ତବ୍ଧ ହୋଇ ବସି ରହିଥା'ନ୍ତି । ଯେପରି ସେମାନେ ଗୀତ ଶୁଣି ଶୁଣି ତନ୍ଦ୍ରାରେ ବୁଡ଼ି ରହିଚନ୍ତି । ଏହି ସମୟରେ ସେଠାରେ ପ୍ରବେଶ କଲେ ବିଶ୍ୱନାଥ ଓ ସୁରେଶ । ବିଶ୍ୱନାଥକୁ ଦେଖିଲେ ମନେହୁଏ ଯେପରି କୌଣସି କାରଣରୁ ତା' ପ୍ରାଣରେ ଗୁରୁତର ଆଘାତ ଲାଗିଛି । ତା' ହାତରେ ଗୋଟାଏ ଖବରକାଗଜ । ସମସ୍ତେ ଉଠି ଠିଆହେଲେ ।

ବିଶ୍ୱ - କିଏ ଏଠି ଗୀତ ଗାଉଥିଲା ?

ବିରୂପାକ୍ଷ - ମୁଁ ଗାଉଥିଲି କମ୍ରେଡ୍!

ବିଶ୍ୱ - ନା-ନା, ଏ ଗୀତ ଏଠି କେହି ଗାଇପାରିବେ ନାହିଁ। ଏ ଗୀତର ମର୍ଯ୍ୟାଦା ଆମେ ହରାଇଚୁ, ଆଉ ଏ ଗୀତ ଗାଇବାର ଅଧିକାର ଆମର ନାହିଁ । କମ୍ରେଡ୍ ରଙ୍ଗାଧର! ଆଜିକାର ଏ କାଗଜଟା ପଢ଼ିଛ ?

(ବିରୂପାକ୍ଷ ଚାଲିଗଲା)

ରଙ୍ଗା - (ଆଦୌ ବିଚଳିତ ନ ହୋଇ) ନା ପଢ଼ିନାହିଁ; କିନ୍ତୁ ଜାଣେ ସେଥିରେ ଯାହା ବାହାରିଥିବ ତମ ଦଳର କୀର୍ତ୍ତି ।

ବିଶ୍ୱ - ହଁ, ମୋ'ରି ଦଳର କୀର୍ତ୍ତି । ସାମାନ୍ୟ ଦି'ଟା ସିଗାରେଟ୍ ପାଇଁ ବିଶୁ ପାଖରେ ଜୁଆଚୋରି; ବିନା ପଇସାରେ ଚା'ଖାଇବା ପାଇଁ ପତରା ସିଂର ଚା'ଦୋକାନରେ ଷ୍ଟ୍ରାଇକ୍ ତୁମରି ନେତୃତ୍ୱରେ ଏ ସବୁ ହୋଇଛି ।

ରଙ୍ଗା - ଖାଲି ସେତିକି ନୁହେଁ କମ୍ରେଡ୍ - ଚିନି କାରଖାନାର ଶ୍ରମିକମାନଙ୍କର ଷ୍ଟ୍ରାଇକ୍ ଯେ ବିଫଳ ହେଲା, ତା'ମୂଳରେ ମଧ୍ୟ ଥିଲା.....

ବିଶ୍ୱ - (ଆତଙ୍କରେ ଶିହରି ଉଠି) ତା ମୂଳରେ ମଧ ଥିଲା ତମରି ହାତ ? ବୁଝିଲି ! ସେଇଥିପାଇଁ କାରଖାନାର ମାଲିକ ଶ୍ରମିକମାନଙ୍କର ଦରମା ସାମାନ୍ୟ ବଢ଼ାଇଦେବାପାଇଁ ରାଜି ହେବାରୁ ତୁମେ ଷ୍ଟ୍ରାଇକ୍ ବନ୍ଦ କରାଇବା ପାଇଁ ମୋ ପାଖରେ ସୁପାରିଶ୍ କରିଥିଲ, ଆଉ ତୁମକୁ ବିଶ୍ୱାସ କରି ମୁଁ ତମରି କଥା ରଖିଥିଲି ।

ରଙ୍ଗା - ଷ୍ଟ୍ରାଇକ୍ ବନ୍ଦ କରାଇବା ପାଇଁ ଅନେକ ଟଙ୍କାର ଲୋଭ ମିଲ୍‌ର ମାଲିକ ମତେ ଦେଖାଇଥିଲା । ଷ୍ଟ୍ରାଇକ୍ ବନ୍ଦ ହେଲା ସତ; କିନ୍ତୁ ସେଇ ରାମ୍‌କାଲ୍ ରୂପଚାନ୍ଦ ଅଗରୱାଲା ମତେ ଗୋଟିଏ ପଇସା ସୁଦ୍ଧା ଦେଇନାହିଁ କମ୍ରେଡ୍ !

ବିଶ୍ୱ - ଚୁପ୍‌କର, ଚୁପ୍‌କର ତୁମେ । ମୋତେ ଆଉ କମ୍ରେଡ୍ ବୋଲି ଡାକନାହିଁ । ଗୋଟିଏ ସାମ୍ରାଜ୍ୟବାଦୀ ଶକ୍ତିଠାରୁ ଟଙ୍କା ଖାଇଗଲା ଯୁଦ୍ଧକୁ । ଗଣଯୁଦ୍ଧ ବୋଲି ଘୋଷଣା କରିବାକୁ ମୁଁ ବମ୍ବେ ସେଣ୍ଟର୍‌ରେ ଟଙ୍କା ଛୁଇଁ ନଥିଲି । ମୋର ବିଶ୍ୱାସ ଥିଲା, ତମେମାନେ ଭୋକଉପାସରେ ରହି ସୁଦ୍ଧା ଏ ଦଳକୁ ବଞ୍ଚାଇରଖିବ । କିନ୍ତୁ ଆଜି ବୁଝୁଚି ତୁମେମାନେ ଏଠାକୁ ଦେଶସେବା କରିବାକୁ ଆସିନଥିଲ । ଆସିଥିଲ ସୁଟ୍ ପିନ୍ଧି, ସିଗାରେଟ୍ ଖାଇ ଗୋଟିଏ fashionable ରାଜନୀତି ଗଢ଼ି, ତାକୁଇ ନେଇ ଫୁର୍ତ୍ତି କରିବାପାଇଁ ।

ରଙ୍ଗା - କିନ୍ତୁ କମ୍ରେଡ୍, ଏସବୁ ଭିତରେ ଥାଇ ମଧ କ'ଣ ଆମେ ଏଇ ସର୍ବହରା କୁଲି-ମୂଲିଆଙ୍କ ସେବା କରିନୁ ?

ବିଶ୍ୱ - ହୁଁ, ଖୁବ୍ କରିଚ - ଖୁବ୍ କରିଚ - ତମେ - ସେଇ ଅଶିକ୍ଷିତ ସର୍ବହରା କୁଲି-ମୂଲିଆଙ୍କ ସରଳତାର ସୁଯୋଗ ନେଇ ତମ ନିଜ ସ୍ୱାର୍ଥ ସକାଶେ ତୁମେ ଆଜି ସେମାନଙ୍କର ସର୍ବନାଶ କରିଚ । ତମରି କଥାରେ ପଡ଼ି, ଥରକୁ ଥର ଷ୍ଟ୍ରାଇକ୍ କରି ଆଉ ଥରକୁଥର ବିଫଳ ହୋଇ ଆଜି ସେମାନେ ଆସି ଏପରି ଅବସ୍ଥାରେ ପହଞ୍ଚିଚନ୍ତି - ଯାହାଦ୍ୱାରା ଏ ଦେଶର ଧନୀ ପୁଞ୍ଜିପତିମାନେ ସେମାନଙ୍କର ରକ୍ତ ପୂର୍ବଠାରୁ ଆହୁରି ଅଧିକ ଭାବରେ ଶୋଷଣ କରିପାରିବେ ।

ରଙ୍ଗା - କିନ୍ତୁ ଏ ପ୍ରଦେଶରେ ଷ୍ଟ୍ରାଇକ୍ କରିବା ପାଇଁ ଶିକ୍ଷା ତ ତୁମେଇ ପ୍ରଥମେ ଆମକୁ ଦେଇଥିଲ ।

ବିଶ୍ୱ - କିନ୍ତୁ ମାଲିକଠାରୁ ଟଙ୍କା ଖାଇ ସାଲିସ୍ କରିବାର ଶିକ୍ଷା ମୁଁ ତମକୁ ଦେଇନଥିଲି ।

ରଙ୍ଗା - ବେଶ୍, ତୁମର ବିଶ୍ୱାସ ଯେତେବେଳେ ହରାଇଛୁ, ଆଉ ଏଠି ରହିବା ଆମର ସମ୍ଭବ ନୁହେ । ମୁଁ ଆଜି ଦଳରୁ ଇସ୍ତଫାଦବାକୁ ଚାହେଁ ।

ବିଶ୍ୱ - ଇସ୍ତଫା ତୁମେ ଦେଇପାର । - କିନ୍ତୁ ମୁଁ ଏତେ ଶୀଘ୍ର ତୁମଠାରୁ ବିଶ୍ୱାସ ହରାଇବି ନାହିଁ । ତିନିଦିନ ସମୟ ଦେଲି; ତୁମେ କୋଉ ବାଟରେ ଯିବାକୁ ଚାହଁ, ତା' ତୁମେ ଏଇ ତିନିଦିନ ଭିତରେ ନିଷ୍ପତ୍ତି କରି ମୋତେ ଜଣାଇବ । ଯାଅ ।

ରଙ୍ଗା - ବେଶ୍, ତାହା ହିଁ ହେବ । (ରଙ୍ଗା ଓ କାଳୀ ଚାଲିଗଲା ପରେ ବିଶ୍ୱନାଥ ଖୁବ୍ ଜୋର୍‌ରେ ହସି ଉଠିଲେ)

ସୁର - ଏ କ'ଣ ? ଆପଣ ଏପରି ଭାବରେ ହସିଉଠିଲେ କାହିଁକି ?

ବିଶ୍ୱ - ହସିଲି ଏଇଥିପାଇଁ ଯେ, ୟା'ପରେ ସୁଦ୍ଧା ଏମାନଙ୍କୁ ନେଇ କାମ କରିବାର ଭରସା ମୋର ରହିଛି ।

ସୁର - ସତେ, ଏମାନେ ଆପଣଙ୍କୁ ଅତି ଅନ୍ୟାୟ ଭାବରେ ଠକିଛନ୍ତି ।

ବିଶ୍ୱ - ହୁଁ, ଠିକ୍ ଆଜି ତୁମେ ଯେପରି ଠକିବାକୁ ଯାଉଛ ଶାନ୍ତିକୁ!

ସୁର - ମୁଁ ଶାନ୍ତିକୁ ଠକିବାକୁ ଯାଉଛି!!

ବିଶ୍ୱ - ଏଇ କିଛି ସମୟ ଆଗରୁ ତୁମେ ମତେ ଲାଇବ୍ରେରିରେ କହୁଥିଲ ନା, ଶାନ୍ତିକୁ ତୁମେ କଟକ ଆଣିବ ? ସେ ଏଠି ରହି ଆଉ କିଛି ପଢ଼ାଶୁଣା କରିବ ? ମୁଁ ଜାଣେ, ରେଖା ମହାନ୍ତିଙ୍କୁ ଦେଖିଲା ପରଠୁ ତୁମର ଏ ରୋଗ ବାହାରିଚି । କିନ୍ତୁ ସୁରେଶ, ମୋର ଦୁଃଖ କ'ଣ ଜାଣ ? ରେଖାର ଯେଉଁ ଆକର୍ଷଣ ତୁମକୁ ଆଜି ମୁଗ୍ଧ କରିଚି, ତା'ଫଳରେ ତୁମେ ହୁଏତ ଦିନେ ରେଖା ପାଖରେ ନିଜକୁ ହରାଇ ବସିବ ।

ସୁର - ରେଖାକୁ ଆପଣ ଆଦୌ ଜାଣନ୍ତି ନାହିଁ ।

ବିଶ୍ୱ - ତମେ ବା ତାକୁ କେତେଦୂର ଜାଣ ? "ନିଜେ ଭଲ ହେଲେ ଦୁନିଆ ଭଲ" - ଏଇଟା ଆଦୌ ଠିକ୍ କଥା ନୁହେଁ । ବଂଧୁ! ସ୍ତ୍ରୀଲୋକମାନଙ୍କର ମୁହଁ ମନର ଦର୍ପଣ ନୁହେଁ - ମନର ପର୍ଦ୍ଦା! ମୁହଁ ଦେଖି ସେମାନଙ୍କ ମନର କଥା ତମେ ଜାଣିପାରିବ ନାହିଁ ।.... ଆଉ ତା' ଛଡ଼ା ଶାନ୍ତି! ସେ ଭଲା କାହିଁକି ତା ଦୀକ୍ଷା ଛାଡ଼ି ତମ କଥାରେ ରାଜି ହୋଇ କଟକ ଆସିବ କୁହୁଡ଼ି ପଛରେ ଧାଇଁ ବୁଲିବାକୁ ?

ସୁର - କୁହୁଡ଼ି ପଛରେ ଧାଇଁ ବୁଲିବା କଥାଟା ଭିନ୍ନ; କିନ୍ତୁ ମୋ କଥା ସେ ରଖିବ ନିଶ୍ଚୟ ।

ବିଶ୍ୱ - କାରଣ ସେ ତମକୁ ଭଲପାଏ ।

ସୁର - କି ଆଶ୍ଚର୍ଯ୍ୟ କଥା ଆପଣ କହୁଚନ୍ତି! ସତର ଅଠର ବର୍ଷର ଝିଅ ସେ, ତା'ର ନିଜତ୍ୱ କେତେ ?

ବିଶ୍ୱ - ସତର ଅଠର ବର୍ଷର ଝିଅ ତୁମେ କାହାକୁ କହୁଚ କମ୍ରେଡ୍! You marry a girl to live with a woman । ଆଜି ଯେ ବାଳିକା ବନ୍ଧୁ, କାଲି ସେ ଗୃହିଣୀ । ସେଇ ଶାନ୍ତି ହୁଏତ କାଲି ତୁମକୁ ନୀତିଶିକ୍ଷା ଦେବ ।

ସୁର - ଆପଣଙ୍କର ଏ କଥାଟା ମାନିବାକୁ ମୁଁ ଆଦୌ ପ୍ରସ୍ତୁତ ନୁହେଁ ।

ବିଶ୍ୱ - ବେଶ୍, ଦେଖ - ଚେଷ୍ଟାକର - ମୁଁ କିନ୍ତୁ ଏକାବେଳକେ ଆଶାଶୂନ୍ୟ ।

## ଦ୍ୱିତୀୟ ଦୃଶ୍ୟ

(ବିଷ୍ଣୁପୁର ଗ୍ରାମ୍ୟପଥ - ପଶୁପତି ଓ ଉଦ୍ଧବ ଆସିଲେ ।)

ପଶୁ - ଉଦ୍ଧବ!

ଉଦ୍ଧବ - କ'ଣ ପଶୁପି'ସା ?

ପଶୁ - ଟୋକା କ'ଣ ଗାଉଥିଲାରେ -

ଉଦ୍ଧବ - ମାନିବୁ ନାହିଁ ଆମେ ଗୋଳା -ଗର୍ଜନ....

ପଶୁ - ଆରେ ବାପ୍‌ରେ - ଆରେ ଶଳା....ଉଦ୍ଧବ....

ଉଦ୍ଧବ - ମୁଁ ନୁହେଁ, ମୁଁ ନୁହେଁ - ପଶୁପି'ସା - ମୋ ବାପ - ମୋ ବାପ ତୁମ ଶଳା ।

ପଶୁ - ଆରେ ହଁ ବେ, ତୋ ବାପ - ମୋ ବାପ - ତୁ - ମୁଁ, ଆମ ଚୌଦପୁରୁଷ - ଆରେ ଗୋଳା-ଗର୍ଜନକୁ ଆମେ ଡରୁନଥିଲୁ - ବଳିଆରସିଂ ଉପାଧି ପାଇଛୁ । ଆଉ ଏ ଶଳା ବରଜୁଆ, ଫୁଟ୍‌କି ବାଣରେ ଯେ ଉଡ଼ିଯିବ, ସେ ପୁଣି ବୋଲୁଚି.....

ଉଦ୍ଧବ - ମାନିବୁ ନାଇଁ ଆମେ ଗୋଳା - ଗର୍ଜନ- (ଦୂରରେ ଶାନ୍ତି ଓ କନକୁ ଦେଖି) ପି'ସା ପଛକୁ ହଟ; ଆରେ ବାପ୍‌ରେ ବାପ୍ - ଗୋଳା -ଗର୍ଜନ କଥା ପଡୁପଡୁ କ'ଣ ଆସି ପହଞ୍ଚିଗଲେଣି ।

ପଶୁ - କିଏ, ଶାନ୍ତି, କନ ? ହଉ ହଉ - ଟିକେ ଚୁପ୍ ହୋଇ ଠିଆହେଇଯା' ।

(ଶାନ୍ତି, କନ ଓ ତାଙ୍କ ସହିତ ଆଉ କେତୋଟି ଝିଅ ଆସି ପହଞ୍ଚିଲେ ।)

କନ - ଏଇ ତ ପଶୁଅଜା ! ଆଜି ଆମର ପତାକା ଉତ୍ସବ । ତୁମ ଦିହିଙ୍କି ନିମନ୍ତ୍ରଣ ରହିଲା, ଆଜି ସଞ୍ଜବେଳେ ତୁମେ ଦୁହେଁ ଯିବ ।

ପଶୁ - ଦେଖୁଚୁ ଉଦ୍ଧବ !

ଉଦ୍ଧବ - ଦେଖିବା କାମ ତୁମର ପି'ସା, ମୋର ନୁହେଁ ।

କନ - ଏଥିରେ ଦେଖିବା କ'ଣ ଅଛି ପଶୁଅଜା ? ଗାଁଯାକ ସମସ୍ତେ ଯାଉଚନ୍ତି, ତୁମେ ଯିବ ।

ପଶୁ - ଆହେ ଦେଖ ହେ - ଏ ଗାଁ ଯାକ ଯିବେ ବୋଲି ମୁଁ ଯିବି ? ଆରେ ଏ ଗାଁଟା ଭିତରେ ମୁଁ ଗୋଟାଏ ପଶୁ ଅଛି; ଆଜି ମୋ ଭଳିଆ ଦି'ଟା ମୁଣ୍ଡ ଥିଲେ.....

କନ - କାହିଁକି ଅଜା, ତମ ସାଙ୍ଗରେ ଯିଏ ଅଛନ୍ତି ?

ଉଦ୍ଧବ - ନାଇଁ ଲୋ କନ, ମୁଁ ତାଙ୍କ ସାଙ୍ଗରେ ନୁହେଁ; ସେ ଏକା ।

ପଶୁ - ହଁ ବେ ହଁ; ମୁଁ ଏକା । ତୁ ମାଇଚିଆ ଯା, ତାଙ୍କ କେଳିକୁଞ୍ଜରେ ପଖଉଜ ବଜେଇବୁ ।

ଶାନ୍ତି - ତୁମେ ଅଜା, ଗଲେ ଯିବ ନଗଲେ ନାଇଁ - ଏମିତି ଅସଭ୍ୟ କଥା କାହିଁକି କହୁଚ ?

ପଶୁ - ଆହେ ଦେଖ ହେ - ମୋ ସଭ୍ୟ ନାତୁଣୀ ଅଇଲେ; ତାଙ୍କ ବାହାଘର ହେଉଚି ନା ମୁଁ ଯିବି ସେଠିକି ପତରପାଣି ପକାଇବାକୁ ।

ବୁଦ୍ଧି - ହଁ ସା'ନ୍ତେ ପତରପାଣି ପଡ଼ିବ - ଆମେ ସମସ୍ତେ ଏକାଠି ବସି ଖାଇବା - ତୁମେ ଯିବ ।

ପଶୁ - ଆଲୋ, ତୁ କିଏ ଲୋ ?

ବୁଦ୍ଧି - ମତେ ଚିହ୍ନିପାରୁନା ସା'ନ୍ତେ - ମୁଁ ପରା ବୁଦ୍ଧି ।

ପଶୁ - ଏ ଉଦ୍ଧବ - ଉଦ୍ଧବ !

କନ - ଆମେ ଯାଉଚୁ ଅଜା - ତମେ ଯିବ । (ଚାଲିଗଲେ)

ପଶୁ - ଆହେ ଦେଖ ହ - ଏ ବାଉରାଣୀ ଟୋକୀ.....

ଉଦ୍ଧବ - ସେ କଥା କହନାଇଁ ପଶୁପି'ସା ! ତା ଜାତି ନାଁ ମୁହଁରେ ଧରନାଇଁ - କଞ୍ଚା ଖାଇଯିବେଟି । ଆଜିଠଉଁ କହିବ ହରିଜନ, ହରିଜନ ।

ପଶୁ - ଆରେ ରଖ ତୋ ଧନ, ଜନ - ଆରେ ସେ କ'ଣ ନକଲା ? ଆହେ ଦେଖ ହେ, ଯିଏ ପାଞ୍ଚ ହାତରେ ରହିଲା ଲୋକ.....

ଉଦ୍ଧବ - ଆଉ ପାଞ୍ଚ ହାତ ! - ପାଞ୍ଚ ଆଙ୍ଗୁଳି ଫରକ ଆଉ ନାହିଁ, ସବୁ ମିଶି ଏକାଠି ହେଇଗଲେଣି । ଦେଖିଲେନି, ସମସ୍ତେ ମିଶି କେମିତି ସାଙ୍ଗସୁଙ୍ଗା ହୋଇ ଚାଲିଗଲେ ?

ପଶୁ - ଆରେ ତା' ବୋପା ଘରକୁ ସେ ଗଲା ଗଲା - ମତେ ପୁଣି ନିମିତା ଦେଇଗଲା । କିରେ, ମୁଁ ଥାଉଁ ଥାଉଁ ଯା ହେଲା; ମୋ ଆଖି ପୁଣି ଏସବୁ ଦେଖିଲା !.....ଉଦ୍ଧବ, କ'ଣ କରିବା କହିଲୁ ?

ଉଦ୍ଧବ - କ'ଣ ଆଉ କରିବ ? ଯାହା କରିବାର କଥା ସବୁ ସେ କରିସାରିଲେଣି । ସୂତାକଟା, ଲୁଗାବୁଣା, ଗାଁ ସଫେଇ, ଦଳକଢ଼ା, ରୋଗୀ ସେବା, ପାଠପଢ଼ା, ଗଞ୍ଜେଇ-ଅଫିମ-ମଦ-ଛଡ଼ାଠଉଁ ଆରମ୍ଭ କରି ମୁର୍ଦାର କଢ଼ାଯାଏ ଅନେଶତ ଦଫା କାମ ସେ କରିସାରିଲେଣି - ବାକି ଥେଲା ଏଇ ଗୋଟାକ; ଏଇଥିରେ ଆଜି ଶହେ ମୁଣ୍ଡି ମଲା । ସବୁ ଧର୍ମ-କର୍ମ ଏଇଥିରେ ଶେଷ ପାଇଲା - ତୁମ ପାଇଁ ଆଉ କିଛି ନାହିଁ । ଏଣିକି ଖାଲି ଦେଖ- ବାହାର ଭିତର, ତଳ ଉପର ସବୁ ଦେଖ ।

ପଶୁ - ହଁ ରେ ଉଦ୍ଧବ - ମୁଁ ଖାଲି ଦେଖିବି । ସେ ବରଜୁଆ ଆସୁ, ମୁଁ ଦେଖିବି । ଗାଁରେ ଶ୍ୱଶୁର ଘର ବୋଲି ଟୋକା ହେଣ୍ଡିମାରି ବୁଲୁଚି । ମୁଁ ତାକୁ ଦେଖେଇଦେବି ଯେ, ଗାଁରେ ଶ୍ୱଶୁରଘର ତା'ର ଗୋଟାଏ - ଦଶଟା ନୁହେଁ । ଛୁଆ-ଅଛୁଆଁ ନ ମାନି, ଗାଁଗୋଟାକର ଝୁଅମାଇପଙ୍କୁ ନେଇ କୁଞ୍ଜଲୀଳା ନଗେଇଚି । ଟୋକା ଭାବିଚି, ଦେଶରୁ ଇଙ୍ଗିରିଜୀ ଅମଳ ଚାଲିଗଲାଣି । ଉଦ୍ଧବ ! ତୁ ଗୋଟାଏ କାମ କର....

ଉଦ୍ଧବ - କ'ଣ କରିବି ?

ପଶୁ - ଗଞ୍ଜେଇ ଲୋଭ ଦେଖେଇ, ଆମର ମେଳା ହଉଚି ବୋଲି କହି ତୁ ଗାଁଯାକ ଆମ ଅଗଣାକୁ ଡାକିଆଣ, ତା'ପର.....

ଉଦ୍ଧବ - ତା'ପର କ'ଣ ହବ ?

ପଶୁ - ଆରେ ସେଥିରୁ କେଇଟାକୁ ଫଡ଼କେଇଦେଲେ ତ ଦଳୁଟା ଛାଏଁ ଛାଏଁ ଛତରଛାଙ୍ଗ; ଆଉ ଥବ ନା ପୁଅ କୁଞ୍ଜଲୀଳା ନଗେଇବ ? ପୁଣି ଗାଉଚି କ'ଣ ନା.....

ଉଦ୍ଧବ - ମାନିବୁ ନାଇଁ ଆମେ ଗୋଳା -ଗର୍ଜନ ! (ଗର୍ଜିଉଠିଲା)

## ତୃତୀୟ ଦୃଶ୍ୟ

(ମିନି ଓ ରାନୁର ପଢ଼ାଘର । ସୁରେଶ ଗୋଟିଏ ଚୌକିରେ ବସିଚି- ସାମ୍ନାରେ ଟେବୁଲ୍ । ଟେବୁଲ୍‌ର ଦୁଇ ପାଖରେ ମୁହାଁମୁହିଁ ହୋଇ ବସିଚନ୍ତି ମିନି ଓ ରାନୁ । ମିନି ମନକୁ ମନ କ'ଣ ଗୋଟାଏ ବହିପଢୁଚି; ରାନୁ ଚୁପ୍ ହୋଇ ବସିଚି । ସୁରେଶ ମିନିର ଗୋଟାଏ ଖାତା ଦେଖୁଚି ।)

ସୁର - ନାଃ, ଏ ଜନ୍ମରେ ତୁ ଏ ଗପଟାକୁ ଠିକ୍ କରି ଲେଖିପାରିବୁ ନାହିଁ । ଚୌକି ଉପରେ ଠିଆହେଇପଡ଼ ।

ରାନୁ - ନାଇଁ ସାର୍, ଖାତାରେ ସିନା ଭୁଲ୍ ହେଉଚି, ମୁହଁରେ ଠିକ୍ କରି କହିଦେବି ଯେ!

ସୁର - ଏମିତି କଥା, ତା'ହେଲେ କହ ତ ଦେଖି - ମାଧବ ଘରେ ତା'ର ଆଉ କିଏ କିଏ ଥିଲେ ?

ରାନୁ - ମାଧବ ? ମାଧବ ? ମା-ଧ-ବ, ମା-ଧ-ବ!

ସୁର - ହଁ, ମାଧବ ବୋଲି ଶୁଣିସାରିଲିଣି ।

ରାନୁ - ମାଧବ, ଆଉ, ତା'ର ବିଧବା ସ୍ତ୍ରୀ ।

(ସୁର ଓ ମିନି ହସିଉଠିଲେ)

ସୁର - ବିଧବା ସ୍ତ୍ରୀ କ'ଣରେ ?

ରାନୁ - ନା-ନା, ବିଧବା ମା' ଆଉ ଅବିବାହିତା ସ୍ତ୍ରୀ ।

ରାନୁ - ଅବିବାହିତା ଭଉଣୀ ହବ ପରା ? Sir, ଆପଣ ଏତେ ହସୁଚନ୍ତି କାହିଁକି ? ମୋର ସବୁ ଗୋଳମାଳ ହେଇଯାଉଚି ।

ସୁର - ସେ ସବୁ ଚାଲାକି ଥାଉ, ଚୌକି ଉପରେ ଠିଆ ହ' (ରାନୁ ଚୌକି ଉପରେ ଠିଆ ହେଲା) ହୁଁ, ତୋର କ'ଣ ପଢ଼ାପଢ଼ି ହେଇଚି ଦେଖି ? O'Blue bird, blue bird ହେଇଚୁ ପରା! ଆଚ୍ଛା, blue bird କହ ତ ଦେଖି - ମନେକର ତୁ ସ୍କୁଲ୍‌ରୁ ଫେରିଲାବେଳେ ଗୋଟିଏ ପିଲା ଦେହରେ ସାଇକେଲ୍ ଧକ୍କା ଲାଗିଯିବାରୁ ସେ ପଡ଼ିଗଲା, ତୁ ସେଠି କ'ଣ କରିବୁ କହିଲୁ ?

ରାନୁ - (ଚୌକିରୁ ଓହ୍ଲାଇପଡ଼ି) ମୁଁ କହିବି Sir ?

ସୁର - ଚୁପ୍, ଠିଆ ହୋ ଚୌକି ଉପରେ ।

ରାନୁ - ଉଠେଇ ଦିଅନ୍ତୁ ସାର୍!

ସୁର - କାହିଁକି! ତଳକୁ ଡେଇଁପଡ଼ିବାକୁ ସାର୍ କହିଥିଲେ ? ହଁ, କହ ମିନି (ରାନୁ ଚୌକି ଉପରେ ପୁଣି ଠିଆହେଲା)

ମିନି - ଏତକ ସାର୍, ମୁଁ ଆଉ ଜାଣିନି! ପ୍ରାଥମିକ ଚିକିତ୍ସା କରି ସମସ୍ତେ ମିଳିମିଶି ତାକୁ ଡାକ୍ତରଖାନାକୁ ନେଇଯିବୁ, ନଇଲେ ତାକୁ ତା'ଘରେ ପହଞ୍ଚାଇଦେବୁ ।

ସୁର - ଆଚ୍ଛା, ରାନୁ ! ତୁ କ'ଣ କରିବୁ କହ ତ ?
ରାନୁ - କିନ୍ତୁ ସାର୍, ସେ ପିଲା ବଜାରକୁ ଆସିଥିଲା କାହିଁକି ?
ସୁର - କାହିଁକି ଆସିଥିଲା, ତୋର ସେଥିରେ କ'ଣ ଅଛି ? ଧର ଚକୋଲେଟ୍ କିଣିବାକୁ ଆସିଥିଲା ।
ରାନୁ - (ଚୌକିରୁ ଓହ୍ଲାଇପଡ଼ି) ମୁଁ ତା'ହେଲେ ସାର୍, ତା ପକେଟ୍‌ରୁ ଚକୋଲେଟ୍‌ତକ ଧରି ଘରକୁ ଛୁ' ମାରିଦେବି ।
ରେଖା - (ପରଦା ସେ ପାଖରୁ ବାହାରିପଡ଼ି ରାନୁର କାନଧରି) ଆଉ ଘରେ ପହଞ୍ଚିଲାକ୍ଷଣି ମୁଁ ତୋ କାନ ମୋଡ଼ି ଏମିତି ଦି'ଚଟକଣା ଦେବି ।

(ଦି'ଟା ଚଟକଣା ମାଇଲା, ସୁର ଚୌକିରୁ ଉଠି ଠିଆହେଲେ ।)

ରାନୁ - ଦେଖନ୍ତୁ sir, ଅପା କେମିତି ମତେ ମାରୁଚି ।
ସୁର - ମୁଁ ଆଉ କ'ଣ କରିବି ?
ରାନୁ - କାହିଁକି sir, ଆପଣ ଥାଉଁ ଥାଉଁ ସେ ମତେ କାହିଁକି ମାରିବ ?
ରେଖା - ପୁଣି ପାଜିଲାମି । (ରାନୁର କାନମୋଡ଼ିଲା)
ରାନୁ - ମୁଁ ଯାଉଚି ତେବେ ବାବାଙ୍କୁ କହିଦେବି ।
ରେଖା - ବାବା ତ ତୋ ମୁହଁ ଏମିତି ବଢ଼େଇ ଦେଇଚନ୍ତି । ସତେ ସୁରେଶବାବୁ, ଆପଣ ଦୟାକରି ଏ ପିଲାଟା ଉପରେ ଟିକିଏ କଡ଼ାନଜର ଦିଅନ୍ତୁ; ଏ ଏକାବେଳକେ ଅବାଧ ହେଇଉଠୁଚି ।
ସୁର - କେବେହେଲେ ମୋ କର୍ତ୍ତବ୍ୟରେ ହେଳା କରିବାର ଦେଖିଚନ୍ତିକି ?
ରେଖା - ଏଇ ଆପଣଙ୍କର ରୋଗ ବାହାରିଲା । କଥା କହୁ କହୁ ଆପଣ ଯାଇ କର୍ତ୍ତବ୍ୟରେ ହାଜିର ହେଲେଣି । ଏ କ'ଣ.... ଆପଣ ଠିଆହୋଇରହିଲେ, ବସନ୍ତୁ । ଓ, ବୁଝିଲି, ମୁଁ ଠିଆହୋଇ ରହିଚି ବୋଲି - ମୋର ତେବେ ଏଠାକୁ ନ ଆସିବା ଉଚିତ୍ । (ଚାଲିଯାଉଥିଲା)
ସୁର - ଶୁଣନ୍ତୁ! ଆପଣ ମୋତେ ଭୁଲ୍ ବୁଝିବେ ନାହିଁ । ମୋ କର୍ତ୍ତବ୍ୟ ଅପେକ୍ଷା ତ ମୁଁ ବେଶି କିଛି କରୁନାହିଁ । ଆପଣ ବସନ୍ତୁ ଏ ଚୌକିଟାରେ । ରାନୁ, ତୁ ମିନି ପାଖରେ ଯାଇ ବସ (ଚୌକିରେ ସମସ୍ତେ ବସିଲେ) ମିନି କହୁଥିଲା, ପିକ୍‌ନିକ୍ ସକାଶେ ଯୋଉ ଗୀତଟା ଶିଖାଇଚନ୍ତି, ସେଇଟା ସେମାନେ ପ୍ରାକ୍‌ଟିସ୍ କରିବେ । ଏଇଠି କରନ୍ତୁ ।
ରେଖା - ଆପଣ ଅନୁମତି ଦେଉଚନ୍ତି ତ ?
ସୁର - ସାଙ୍ଗେ ସାଙ୍ଗେ ପ୍ରତିଶୋଧନବାକୁ ଛାଡ଼ିବେ ନାଇଁ ଦେଖୁଚି ।
ରେଖା - ଛାଡ଼ିବି କାହିଁକି ? ଏଇଟା କ'ଣ ମୋର କର୍ତ୍ତବ୍ୟ ନୁହେଁ ?

ମିନି, ଗାଆ ତ ଗୀତଟା, ନାଚି ନାଚି ଗାଇବ ।

ମିନି - ତୁ ଆମ ସାଥିରେ ଗାଇବୁ ତ ?

ରେଖା - ମୁଁ କାହିଁକି ଗାଇବି ?
ମିନି - ଆମର କାଳେ ଭୁଲ୍ ହବ ।
ସୁର - ଅସୁବିଧା ଯଦି ହଉଚି ତେବେ....
ରେଖା - ନା-ନା, ଅସୁବିଧା ଆଉ କ'ଣ ?
ରାନୁ - ତୋର ତ ଅପା, ଗୀତଟା ଆମ ସାଥିରେ ଗାଇବାର କଥା ।
ରେଖା - ବାବାରେ, ବାବା- ନ ଗାଇ ଉପାୟ ନାଇଁ । ଦେଖୁଚି, ଆଚ୍ଛା ଗା.... ମୁଁ ଗାଉଚି ।
ସୁର - ଆପଣ ଖାଲି ଗାଇବେ, ନାଚିବେ ନାହିଁ ବୋଧହୁଏ ।
ରେଖା - (ସୁର ଆଡ଼କୁ କିପରି ଗୋଟାଏ ସ୍ନିଗ୍ଧ ଅଥଚ ବିସ୍ମୟଭରା ଦୃଷ୍ଟିରେ ଚାହିଁ) ଆପଣ ମୋ ନାଚିବାଟା ପସନ୍ଦ କରିବେ ?
ସୁର - କି ଅନ୍ୟାୟ କଥା କହନ୍ତୁ ତ ? ମୋ ପସନ୍ଦ- ଅପସନ୍ଦରେ ଅଛି କ'ଣ ? ଅଛି ଖାଲି ମୋର ଦେଖିବାର ସୌଭାଗ୍ୟ ।
ରେଖା - ଓ, କିନ୍ତୁ ନାଚିବାର କଥା ଯେତେବେଳେ ମୋର ନାହିଁ, ଆପଣଙ୍କର ଦେଖିବାର ସୌଭାଗ୍ୟ ମଧ୍ୟ ନାହିଁ । ଅଛି ଖାଲି ମୋ ଗୀତ ଶୁଣିବାର ଦୁର୍ଭାଗ୍ୟ - ମିନି - ଗା-

(ରେଖା ଗାଇଲା - ମିନି ଓ ରାନୁ ନାଚିଲେ)

(ଗୀତ)

ପାଏନା, ପାଏନାରେ; ପାଏନାରେ ପାଏନା,
ହଜିଲା କି ଅଜଣାରେ,
ଖାଲି ହାରିଲା ପରି ଘାରିହୁଏ ବେସୁରା ବେଦନା -
ବେସୁରା ବେଦନାରେ ବେଦନା । ।
ଚଞ୍ଚଳ ଢେଉ ତଳେ ତଳେ ଶିହରି,
ପାଗଳ ଚାନ୍ଦ କି ଖୋଜେ ପହଁରି ପହଁରି,
ତା'ର ରୂପେଲି ଆଶା ଚହଲେ, ଧୀରେ ଧୀରେ
ସବୁ ବାହାନାରେ ବାହାନା । ।୧ । ।
ଲକ୍ଷ ପ୍ରଦୀପେ କରି ଦିଗ ଉଜାଲା
କି ଖୋଜେ ସରଗ-ବଧୂ- ହୋଇ ଏକେଲା,
କେବେ କି କେହି ପାଏନା ସେହି,
ମନଭୁଲା ଛଳନାରେ ଛଳନା । ।୨ । ।

ସୁର - ବାସ୍ତବିକ୍ ଆପଣଙ୍କ ପରିକଳ୍ପନାକୁ ପ୍ରଶଂସା ନକରି ରହିପାରୁନି । ମୋ ଅଭିମତରେ ଯଦି କିଛି ମୂଲ୍ୟ ଥାଏ ତା'ହେଲେ ମୁଁ କହିବି Splendid.
ରେଖା - ତା'ହେଲେ ଏ କଥା ଠିକ୍ ଯେ ପ୍ର.ଦାସ ଯା'କୁ ଆଦୌ ପସନ୍ଦ କରିବେ ନାହିଁ ।
ସୁର - କାହିଁକି ?

ରେଖା - ଅଡ଼ିଟୋରିୟମ୍ ସାମ୍‌ନା ଚୌକିରେ ଯେଉଁମାନେ ଅଭିନୟ ଦେଖନ୍ତି, ଅଭିନୟଟା ଖୁବ୍ ଭଲ ହୋଇଚି ବୋଲି ସେମାନେ ଏତେ ଦାମ୍‌ର ଟିକେଟ୍ କିଣିବାର ଏକମାତ୍ର କାରଣ ହେଉଚି ଯେ ଟିକେଟ୍‌ର ଦାମ୍ ଖୁବ୍ ବେଶି ।

ସୁର - ଠିକ୍ ବୁଝିପାରିଲି ନାହିଁ ।

ରେଖା - ଭଦ୍ର ପରିବାରର ନାଚଗୀତକୁ ଯେଉଁମାନେ ବଡ଼ଲୋକିର ଗୋଟିଏ ଅଙ୍ଗ ବୋଲି ଭାବନ୍ତି, ସେମାନଙ୍କ ଆଖିରେ ନାଚଟା ହିଁ ସବୁ - ସାଧାରଣ ଆଖିରେ ଯେଉଁଟା ଭଲ ତାକୁ ସେମାନେ ପସନ୍ଦ କରିବେ କାହିଁକି ?

ସୁର - କିନ୍ତୁ ପ୍ରଫେସର୍ ଦାସ ତ ଜଣେ ଜ୍ଞାନୀ ଓ ଗୁଣୀ ଲୋକ ।

ରେଖା - ହଁ, ତା' ସତ୍ୟ; କିନ୍ତୁ ସାମାନ୍ୟ କେତେକଙ୍କର ବଡ଼ଲୋକି ବୋଲି ଯେଉଁ ଶ୍ରେଣୀ ରହିଛି - ସେ ତ ତା'ରି ଭିତରୁ ଜଣେ, ସାଧାରଣ ଆଖିର ଭଲଟାକୁ ସେ ମାନି ସୁଦ୍ଧା ମାନିବେ ନାହିଁ । ମାନିବାକୁ ଲଜ୍ଜାବୋଧ କରିବେ ।

ସୁର - ତେବେ ଆପଣଙ୍କର ଉଚିତ୍ ଥିଲା ତାଙ୍କର ପସନ୍ଦ ଅନୁସାରେ ନାଚ ଗୀତ ଠିକ୍ କରିବା ।

ରେଖା - ଆପଣ ଠିକ୍ କହିଚନ୍ତି, ମୋର ତାହାହିଁ କରିବା ଉଚିତ୍ ଥିଲା । ନକରିବାଟା ମୋର ଭୁଲ୍ ବୋଲି ମୁଁ ବୁଝିଚି । କିନ୍ତୁ ମୋର ସାନ୍ତ୍ୱନା ଏଇ ଯେ ମୁଁ ଇଚ୍ଛାକରି ଏ ଭୁଲ୍ କରିନାହିଁ ।

ଏ ଭୁଲ୍ ଆପେ ଆପେ ହୋଇଯାଇଛି ।

ରାନୁ - ମୋତେ ନିଦ ମାଡ଼ଲାଣି ସାର୍ ।

ସୁର - ଯା' ଶୋଇପଡ଼; ଆଉ ଦୁଃଖ ରହିବ ନାହିଁ ।

(ରାନୁ ଚାଲିଗଲା)

ରେଖା - ପ୍ରଫେସର୍ ଦାସ ବୋଧହୁଏ ବର୍ତ୍ତମାନ ଆସିବେ ।

ସୁର - କ୍ଷମାକରିବେ ରେଖା ଦେବୀ, ଗୋଟିଏ କଥା ମୁଁ ଆପଣଙ୍କୁ ପଚାରିବି ।

ରେଖା - (ହସି) ଦେଖନ୍ତୁ, ନ ପଚାରିଲେ ମୁଁ ଆପଣଙ୍କୁ ମୋଟେ କ୍ଷମାଦେବି ନାହିଁ ।

ସୁର - ମୋର ମନେହେଉଚି ଯେପରି ଆପଣ ବଡ଼ଲୋକ ଘରେ ଜନ୍ମ ହୋଇ ବଡ଼ଲୋକିଟାକୁ ଏଡ଼େଇ ଏଡ଼େଇ ଚାଲିଚନ୍ତି ।

ରେଖା - ତା' ଅପେକ୍ଷା କଥାଟାକୁ ଆହୁରି ପରିଷ୍କାର କରି କହନ୍ତୁ ଯେ, ମୁଁ ପ୍ରଫେସର୍ ଦାସ୍‌କୁ ଏଡ଼େଇ ଏଡ଼େଇ ଚାଲିଚି, ଯଦିଓ ସେ ଏ ଘରର ସବୁଠାରୁ ସମ୍ମାନାସ୍ପଦ ଅତିଥି; କିନ୍ତୁ ସୁରେଶବାବୁ, ଭାରି ଭୁଲ୍ ଧାରଣା ଆପଣଙ୍କର ।

ସୁର - ନା-ନା, ମୁଁ ଠିକ୍ କହିବାକୁ ଚାହୁଁଥିଲି ଯେ...

ରେଖା - ବୁଝିଲି, ଆପଣ ଯାହା କହିବାକୁ ଚାହାଁନ୍ତି । ଧରନ୍ତୁ ପ୍ରଫେସର୍ ଦାସଙ୍କୁ ମୁଁ ଏଡ଼େଇ ଚାଲେ - ଅନ୍ୟ କଥାରେ ତାଙ୍କୁ ମୁଁ ଘୃଣାକରେ, କିନ୍ତୁ ଏଥିପାଇଁ ପ୍ରଫେସର୍ ଦାସ କିମ୍ବା

ତାଙ୍କର ଆଭିଜାତ୍ୟ ଦାୟୀ ନୁହେଁ । ଆପଣମାନେ ଓ ଆପଣମାନଙ୍କର ନୀଚ ମନୋବୃତ୍ତି ମଧ୍ୟ ଦାୟୀ । ଏଇ ଦୁଇ ଶ୍ରେଣୀର ଅନ୍ଧ ବୁଝାମଣା ଆମ ସମାଜ ଭିତରକୁ ଟାଣିଆଣିଚି ଗୋଟାଏ ଅପ୍ରୀତିକର ବ୍ୟବଧାନ । ଦୁହିଁଙ୍କ ଭିତରେ ଅସୁର ଅଛନ୍ତି - ଦେବତା ମଧ୍ୟ ଅଛନ୍ତି - ନାହାନ୍ତି କେବଳ ମଣିଷ । ଏପରି ଅବସ୍ଥାରେ ଏ ଦୁଇ ଶ୍ରେଣୀ ମଝିରେ ଠିଆ ହେବାର ଶକ୍ତି ମୋର ଆସିବ କେଉଁଠୁ ? ଉପରେ ଠିଆ ହୋଇ ତଳୁ କାହାରିକୁ ମୁଁ ଟାଣିଆଣିପାରିବି ନାହିଁ - କିମ୍ବା ମୋ ହାତଧରି କେହି ମତେ ତଳକୁ ଖସାଇ ନେଇପାରିବ ନାହିଁ । କେବଳ ଖାଲରେ ପଡ଼ିରହିବାଟା ହିଁ ସାର ହେବ । ତା'ହେଲେ ପ୍ରଫେସର୍ ଦାସଙ୍କୁ ଘୃଣା କରି ମୁଁ ନିଜେ ନିଜର କ୍ଷତି କରିବି କାହିଁକି ?

ସୁର - ଏତେ ସାଧାରଣ ଜୀବନ ଆମର ଯେ ଏସବୁ କଥା ଚିନ୍ତା କରିବାର ସୁଯୋଗ ଆମର ଆସେନା ।

ରେଖା - ତା'ର କାରଣ ଆପଣ ସମାଜର ପ୍ରକୃତ ରୂପଟାକୁ ପଦାକୁ ଟାଣିଆଣିବାକୁ କେବେହେଲେ ଚେଷ୍ଟା କରନ୍ତି ନାହିଁ ।

ସୁର - ସମାଜର ରୂପ ଯାହାହେଉନା କାହିଁକି, ଆପଣଙ୍କର ପ୍ରକୃତ ସ୍ୱରୂପଟାକୁ ମୁଁ ପାଇଚି । ଦେଶର ପ୍ରତ୍ୟେକ ଝିଅ ଆପଣଙ୍କର ଆଦର୍ଶରେ ଗଢ଼ାହେବା ଉଚିତ୍ ବୋଲି କହିଲେ ମୁଁ ଭୁଲ୍ କହୁନାଇଁ ବୋଲି ମୋର ବିଶ୍ୱାସ ।

ରେଖା - କାହିଁକି ? ପ୍ରଫେସର୍ ଦାସଙ୍କର ଆସୋସିଏସନ୍‌ର ମୁଁ ନିନ୍ଦା କରେ ବୋଲି, ନା ଆପଣଙ୍କର ଗ୍ରାମୋନ୍ନତି ସଂଘର ପ୍ରଂଶସା କରେ ବୋଲି ?

ସୁର - ଯେକୌଣସି କାରଣରୁ ହେଉ ମୋର ଧାରଣା ଆପଣ ବଦଳାଇପାରିବେ ନାହିଁ ।

ରେଖା - ଆପଣଙ୍କ ମୁହଁରେ ମୋର ପ୍ରଶଂସା ଶୁଣି ମୁଁ ଆପଣଙ୍କୁ ଧନ୍ୟବାଦ ଦଉଚି । କିନ୍ତୁ ଆପଣଙ୍କର ଏଇ ଆଦର୍ଶବାଦ କଥା ଭାବି ମୁଁ ନହସି ରହିପାରୁନି ।

ସୁର - ଆପଣ ହସନ୍ତୁ ନା! ମୁଁ କିନ୍ତୁ ଚେଷ୍ଟା କରିବି ଅନ୍ତତଃ ଜଣେ ଝିଅକୁ ଆପଣଙ୍କ ଆଦର୍ଶରେ ଗଢ଼ିବାକୁ ।

ରେଖା - ଦେଖନ୍ତୁ, ରୋଗଟା ବର୍ତ୍ତମାନ ମୋଠାରୁ ଡେଇଁ ଆଉ ଜଣକୁ ଆକ୍ରମଣ କରିବାକୁ ବସିଲାଣି । ଅତଏବ, ଏ ଆଲୋଚନା ଏହିଠାରେ ବନ୍ଦ ରହୁ.... ଆଚ୍ଛା, ସୁରେଶବାବୁ, ଆପଣ ଭଲ ଛବି ଆଙ୍କିପାରନ୍ତି ବୋଲି ମୁଁ ଶୁଣିଛି ।

ମିନି - ହଁ ଅପା, sir ଭଲ ଛବି ଆଙ୍କନ୍ତି । ତାଙ୍କ ପକେଟ୍‌ରେ ଖଣ୍ଡେ ଛବି ଅଛି, ମୁଁ ଦେଖିଛି, ଭାରି ସୁନ୍ଦର ।

(ସୁରେଶ କିଛି ନକହି ପକେଟ୍‌ରୁ ଛବିଟି କାଢ଼ି ରେଖାକୁ ଦେଲା ।)

ରେଖା - (ଛବିଟି ଦେଖି) ସତେ ଭାରି ସୁନ୍ଦର ହେଇଚି, କାହାର ଛବି ଏ ?

ସୁର - ମୋର ଜଣେ ଆତ୍ମୀୟ....

ରେଖା - ଓ, ଜାଣନ୍ତି ସୁରେଶବାବୁ! ଆମ ଜାତିର ଗୋଟାଏ ଲକ୍ଷଣ, ଗୋଟିଏ ଶିକ୍ଷୀ

ଦେଖିଲେ ଛବି-ପାଗଳ ହେଉ । ଅତଏବ, ମୋର ଗୋଟିଏ ଛବି ଆଙ୍କିବାକୁ ମୁଁ ଆପଣଙ୍କୁ ଅନୁରୋଧ କରିବି, ଅବଶ୍ୟ ଆପଣ ଯଦି କିଛି ମନେ ନ କରନ୍ତି ।

ସୁର - ମନା ଆଉ କରିବି କ'ଣ ?

ରେଖା - ତା'ହେଲେ ଆପଣ ମୋର ଖଣ୍ଡେ ଫଟୋ ନେଇ ତାକୁଇ ଦେଖି ମୋର ଛବିଟା ଆଙ୍କନ୍ତୁ । - ମିନି, ମୋ ଟେବୁଲ୍ ଉପରୁ ଫ୍ରେମ୍‌ରୁ ଖାଲି ଫଟୋଟା ଆଣ ତ । (ମିନି ଚାଲିଗଲା) ହଁ, ଆଉ ଗୋଟିଏ କଥା, ମୋ ଛବି ଶେଷ ହେବା ପର୍ଯ୍ୟନ୍ତ ଏ ଛବିଟା ମୋ ପାଖରେ ବନ୍ଧା ରହିଲା, କ'ଣ କହୁଚନ୍ତି ?

ସୁର - ବେଶ୍, ରଖନ୍ତୁ । (ମିନି ଫଟୋଟା ଆଣି ସୁରେଶଙ୍କୁ ଦେଲା)

ରେଖା - ବାବା କ'ଣ କରୁଛନ୍ତି ମିନି ?

ମିନି - ତୋତେ ଖୋଜୁଥିଲେ ।

ରେଖା - କାହିଁକିରେ ?

ମିନି - ମୁଁ କି ଜାଣେ ? ଏଇ ଆସିଲେଣି ।

(ରାୟବାହାଦୁର ଆସିଲାରୁ ସୁର ଓ ରେଖା ଉଠି ଠିଆହେଲେ ।)

ରା.ବା. - ପିକ୍‌ନିକ୍‌ର ସବୁ ବନ୍ଦୋବସ୍ତ ହୋଇଯାଇଚି ତ ରେଖା ?

ରେଖା - ହଁ, ବାବା !

ରା.ବା.- ସୁରେଶଙ୍କୁ କହିଚୁ ତ ?

ରେଖା - ନା ।

ରା.ବା.- Hopeless - ଏ ପର୍ଯ୍ୟନ୍ତ କହିନୁ ?

ରେଖା - ସେ ଯେ ଯିବେ, ଏ କଥା ତ ମୁଁ ଜାଣିନି ।

ରା.ବା. କି ମୁସ୍କିଲ୍ - ଏଥିରେ ଜାଣିବାର କ'ଣ ଅଛି ?

ସୁରେଶ, ତୁମେ ଯିବ କାଲି ଆମ ସାଥିରେ ।

ସୁର - ମୁଁ କାଲି ରାତି ଗାଡ଼ିରେ ଦିନକ ପାଇଁ ଘରକୁ ଯିବି ବୋଲି ଭାବିଚି, ଆପଣଙ୍କର ଆସିବାକୁ ହୁଏତ ଡେରି ହୋଇପାରେ ।

ରା.ବା.- ନା-ନା, ଆମେ ସନ୍ଧ୍ୟାପୂର୍ବରୁ ଫେରିଆସିବୁ । ତମର କ'ଣ ଆଉ କିଛି ଅସୁବିଧା ଅଛି ?

ସୁର - ନା ।

ରା.ବା. - ତମେ ତେବେ କାଲି ସକାଳ ଆଠଟା ବେଳେ ଏଠାକୁ ଆସିବ ! ମୁଁ ତେଣେ ଦେଖେ, ସେ Hopeless ଅବିନାଶ କ'ଣ କଲା । (ପ୍ରସ୍ଥାନ)

ରେଖା - ଆପଣ ମୋତେ ଅଭଦ୍ର ବୋଲି ଭାବୁଥିବେ ।

ସୁର - କାହିଁକି ?

ରେଖା - ଏପର୍ଯ୍ୟନ୍ତ ଆପଣଙ୍କୁ ନିମନ୍ତ୍ରଣ କରିନଥିଲି ବୋଲି ।

ସୁର - ଦେଖନ୍ତୁ, ଏ କ୍ଷେତ୍ରରେ ମୋର ଅବସ୍ଥା ଏତେ delicate ଯେ ମୁଁ ଯା'ର କୌଣସି ଜବାବ ଦେଇପାରିଲିନି ।

ରେଖା - କିନ୍ତୁ ସତ କହିବାକୁ ଗଲେ ସୁରେଶ ବାବୁ, ମୁଁ ଚାହେଁନା ଯେ ଆପଣ ସେଠାକୁ ଯା'ନ୍ତୁ । କାରଣ ମୋର ଆଶଙ୍କା, ଆପଣ ହୁଏତ ସେଠି ନିଜକୁ ଅସହାୟ ମନେକରିବେ । ବାବାଙ୍କର କଥା ଆପଣ ଯେତେବେଳେ ରକ୍ଷା କରିଚନ୍ତି, ଆପଣଙ୍କୁ ଯିବାକୁ ହିଁ ହେବ । ଆଉ ଯା'ହେଉ ଗୋଟାଏ ଅଭିଜ୍ଞତା ତ ଅର୍ଜନ କରିବେ - ଆଉ ଦେଖିବେ ବାରିଷ୍ଟର ମୁଖାର୍ଜୀଙ୍କର ଅଢ଼େଇ ମହଣ ଓଜନର ଝିଅ କିପରି - 'ଆମି ବାଂଲା ମାୟେର କଚି ମେୟେ' ନାଚ ନାଚିବ ! (ରା.ବା. ପୁଣି ପ୍ରବେଶ କଲେ)

ରା.ବା. - ଗୋଟାଏ କଥା ମୁଁ ତୁମକୁ କହିବାକୁ ବରାବର ଭୁଲିଯାଉଚି ସୁରେଶ; ତୁମେ ବସ ତ ବାବା ! ଅବଶ୍ୟ କଥାଟା ତମର ବ୍ୟକ୍ତିଗତ, ସାଧାରଣ ଦୃଷ୍ଟିରୁ ସେଥିରେ ହସ୍ତକ୍ଷେପ କରିବା ମୋର ଉଚିତ୍ ନୁହେଁ; କିନ୍ତୁ ତୁମ ବ୍ୟବହାର ଆଉ କର୍ତ୍ତବ୍ୟନିଷ୍ଠାରେ ମୁଁ ଏତେ ମୁଗ୍ଧ ଯେ ତୁମ ନିଜ ସମ୍ବନ୍ଧରେ ତୁମକୁ ପଦେଅଧେ କଥା କହିବାର ଅଧିକାର ମୋର ଅଧିକାର ଅଛି ବୋଲି ମୋର ଧାରଣା । ମୁଁ ଶୁଣୁଚି, ତୁମେ କଲେଜ ଛାଡ଼ିଲା ପରେ ଗାଁରେ ରହି କୌଣସି ଦେଶ ହିତକର କାମ କରିବ । ଯଦି ତାହା ହିଁ କର, ତା'ହେଲେ ମୋର କିଛି ଆପତ୍ତି ନାହିଁ; ବରଂ ମୁଁ ଖୁସିହେବି । ଆଉ ଯଦି ଏପରି ହୁଏ, ତୁମେ ତୁମ ଜୀବନର ଗତି ଅନ୍ୟ ଦିଗକୁ ଚଳାଇବାକୁ ଚାହଁ, ତେବେ ଦରକାର ମନେକଲେ ତୁମେ ମୋ ପାଖକୁ ଆସିପାର; ତୁମକୁ ଜଣେ ଉପଯୁକ୍ତ ମଣିଷ କରି ଗଢ଼ିବାରେ ସାହାଯ୍ୟ କରିପାରିଲେ ମୁଁ ଖୁସିହେବି । ବୁଝିଲ ସୁରେଶ, ଭଗବାନ୍ ମୋତେ ପୁତ୍ରହୀନ କରିଚନ୍ତି । ଏଇ ଝିଅ ତିନୋଟି ମୋର ସମ୍ବଳ, ସେମାନଙ୍କ ପ୍ରତି କୌଣସି ଅବିଚାର ନକରି ଯଦି କାହାରି କିଛି ଉପକାର କରିପାରିଲି, ଆଉ କିଛି ନହଉ, ଅନ୍ତତଃ ଆତ୍ମପ୍ରସାଦ ଲାଭ କରିବାର ସ୍ୱାର୍ଥ ମୋର ରହିଛି ।

ସୁର - ଆପଣ ରେଖାଦେବୀଙ୍କୁ ବିଲାତ ପଠାଉନାହାନ୍ତି କାହିଁକି ?

ରା.ବା. - ମୋର କେତେକ ବନ୍ଧୁ ମୋତେ ସେଇ ପରାମର୍ଶ ଦେଇଥିଲେ; କିନ୍ତୁ କାହିଁକି କେଜାଣି ବାବା ! ସେ କଥାଟାକୁ ମୁଁ ଆଦୌ ପସନ୍ଦ କରି ନାହିଁ । ତା'ଛଡ଼ା ପ୍ର.ଦାସଙ୍କ ପରି ଜଣେ ଉପଯୁକ୍ତ ପାତ୍ର ମୁଁ ତା ସକାଶେ ପାଇଛି-ତା'ର ଭବିଷ୍ୟତ ଚିନ୍ତା ମତେ ଆଉ କରିବାକୁ ପଡୁନାହିଁ ।

(ଅବିନାଶ ଭିତରୁ ଡାକିଲା)

ଅବି - ଜଷ୍ଟିସ୍ ମିଶ୍ର ଫୋନ୍ କରିଛନ୍ତି ।

ରା.ବା. - Hopeless, ଆରେ ତାଙ୍କର କ'ଣ କିଛି ଅସୁବିଧା ହେଲା ନା କ'ଣ ? (ରା.ବା. ଚାଲିଗଲେ)

ରେଖା - ଆପଣ କ'ଣ ଭାବନ୍ତି ବିଲାତ ଦେଶଟା ମାଟିର ନୁହେଁ, ସୁନାରେ ତିଆରି ?
ସୁର - କାହିଁକି, କୌଣସି ମହତ୍ ଉଦ୍ଦେଶ୍ୟ ନେଇ କ'ଣ କେହି ବିଲାତ ଯା'ନ୍ତି ନାହିଁ ?
ରେଖା - ହୁଁ, ନିଶ୍ଚୟ ଯା'ନ୍ତି; କିନ୍ତୁ ବିଲାତରେ ତ ଗୋଲଟେବୁଲ୍ ବୈଠକ ବସୁନାହିଁ ?
ସୁର - ଦେଖନ୍ତୁ, ଆପଣ ଏ ସବୁ କଥା କହିଲେ ମୁଁ ନାଚାର ।
ରେଖା - ଆଚ୍ଛା, ଆପଣ କ'ଣ ଭାବୁଚନ୍ତି ?
ସୁର - କୋଉ କଥା ?
ରେଖା - ଆପଣଙ୍କ ବିଷୟରେ ବାବା ଯାହା କହିଗଲେ ।
ସୁର - ଆପଣ କ'ଣ କହୁଚନ୍ତି ?
ରେଖା - ମୋ ପରାମର୍ଶ ନେବେ ? ତା'ହେଲେ ହେଇଚି, ଆପଣ ଜାଣନ୍ତି, Man proposes, woman disposes – ଭଗବାନ୍ ଆପଣଙ୍କୁ ସେ ଦୁର୍ବୁଦ୍ଧି ନଦିଅନ୍ତୁ । (ପ୍ର.ଦାସ ଆସିଲେ । ସୁର ଓ ରେଖା ଉଠି ଠିଆହେଲେ ଓ ତାଙ୍କୁ ନମସ୍କାର କଲେ - ସୁରେଶ ରେଖାର ଫଟୋଟାକୁ ଗୋଟିଏ ବହି ଭିତରେ ରଖିଲା । ପ୍ର.ଦାସଙ୍କ ଦୃଷ୍ଟି ତା' ଏଡ଼ାଇ ଯାଇନାହିଁ ।)
ପ୍ର. ଦାସ - ଏଇ ତ ମିସ୍ ମହାନ୍ତି ।
ରେଖା - ଆସନ୍ତୁ ସାର୍, ଆମେ ଆପଣଙ୍କୁ ଅପେକ୍ଷା କରିଥିଲୁ !
ପ୍ର. ଦାସ - ପିକ୍‌ନିକ୍ ସବୁ ବନ୍ଦୋବସ୍ତ ହେଇଯାଇଚି ଶୁଣିଲି !
ରେଖା - ହଁ, ସବୁ ଠିକ୍ ହେଇଯାଇଚି ।
ପ୍ର.ଦାସ - ମୁଁ ଜାଣେ You are an able organiser, ତମ ଉପରେ ନିର୍ଭର କରି ମଣିଷ ନିଶ୍ଚିତ ରହିପାରେ । ଜଷ୍ଟିସ୍ ମିଶ୍ର ଓ ବାରିଷ୍ଟର ମୁଖାର୍ଜୀଙ୍କ family ଯାଉଚନ୍ତି ତ ?
ରେଖା - ହଁ ।
ଦାସ - ମୋର ଆଜି ମି. ଷ୍ଟୋନ୍, ଆଇ.ସି.ଏସ୍.ଙ୍କ ସହିତ ଆଳାପ ହେଲା । ମୁଁ ବିଲାତରେ ଥିବାବେଳେ ମିସେସ୍ ଷ୍ଟୋନ୍‌ଙ୍କ ସହିତ ମୋର ପରିଚୟ ହୁଏ । ଭଦ୍ରମହିଳା ଜଣେ ଉଚ୍ଚ ଦରର ଅଭିନେତ୍ରୀ ଆଉ dancer । ସଙ୍ଗୀତ ବିଦ୍ୟାରେ ତାଙ୍କର ଯଥେଷ୍ଟ ଦକ୍ଷତା ଅଛି । ହଁ ସୁରେଶ, ଗୋପାଳକୃଷ୍ଣ ପଦ୍ୟାବଳୀ - ଆଉ କ'ଣ ତାକୁ କହନ୍ତିଟି - ସେଇ - ସେଇ ଖେଳାଲୋଳା ଖଞ୍ଜନାକ୍ଷୀ.....
ସୁର - ଚମ୍ପୂ !
ଦାସ - Yes-ଚମ୍ପୂ । ସେଥିରୁ କେତେକଟା ଭଲ ଭଲ ଗୀତ ସିଲେକ୍ଟ କରିଦେଇପାରିବ ? ଏପରି ଭାଷାରେ ସେ ସବୁ ଲେଖା ହେଇଚି ଯେ କୋଉଟା ଭଲ, କୋଉଟା ମନ୍ଦ, ତା'ବାଛିବାର ମୋଟେ ନାଇଁ ।
ରେଖା - ଚମ୍ପୂର ଗୀତ ନେଇ ଆପଣ କରିବେ କ'ଣ ?

ଦାସ - ତୁମେ ଜାଣନାହିଁ ପରା ? ଓଡ଼ିଆରେ ମୁଁ ଖଣ୍ଡେ ନାଟକ ଲେଖିଚି, ଆଜିକୁ ପଚାଶ ବର୍ଷ ପରେ ଓଡ଼ିଆ ଜାତି ଯାହା ଭାବିବାକୁ ଶିଖିବ - ତା'ର ଆଭାସ ମୁଁ ସେଥିରେ ଦେଇଛି ! ନାଟକର ନା କ'ଣ ଦେଇଛି ଜାଣ ? "A mid-night kiss !"

ରେଖା - (ହସି ଉଠି) Sir, ଏ ଓଡ଼ିଆ ନାଟକର ଇଂରାଜୀ ନାଁ ?

ଦାସ - ତୁମେ ଯାହା କୁହ ମିସ୍ ମହାନ୍ତି, ମୁଁ ପ୍ରାଣାନ୍ତକ ହେଇଗଲି; କିନ୍ତୁ ଗୋଟାଏ ଭଲ ଓଡ଼ିଆ ନାଁ ବାଛି ପାରିଲି ନାହିଁ । ଆଚ୍ଛା, ସୁରେଶ, ଏଇ ଇଂଲିଶ ନାଁଟାର ଓଡ଼ିଆ ଅନୁବାଦ କର ତ ଦେଖି....

ସୁର - (ଟିକିଏ ଭାବି କୁଣ୍ଠାର ସହିତ).... 'ନିଶୀଥ ଚୁମ୍ବନ'

ଦାସ - 'ନିଶୀଥ-ଚୁମ୍ବନ' ! ବାଃ-ମନ୍ଦ ହେଲାନାହିଁ ତ, ଚଳିଯିବ ଦେଖୁଚି ! ତେବେ ନାଟକର ନାଁ ତାହା ହିଁ ରହୁ । ହଁ, ଏଇ ନାଟକରେ ପୁରୁଣାକାଳିଆ ଓଡ଼ିଶୀ ସଂଗୀତ ରହିବ । ମିସେସ୍ ଷ୍ଟୋନ୍ ସେ ଗୀତ ସବୁର ସୁର ଦେବେ - ଏକାବେଳକେ ଇଂଲିଶ ଟିଉନିଂ ।

ସୁର - ତା'ଦ୍ୱାରା କ'ଣ ଆମ ଓଡ଼ିଶୀ ସଂଗୀତର ମହତ୍ତ୍ୱ ବଢ଼ିବ ବୋଲି ଆପଣ ଆଶା କରନ୍ତି ?

ଦାସ - ନିଶ୍ଚୟ, ଯୁଗ ଯୁଗ ଧରି ଯେଉଁ ସଂଗୀତ ଗୋଟାଏ ଅନ୍ଧକାରମୟ ଗର୍ତ୍ତରେ ପଡ଼ିରହିଥିଲା ; ତାକୁ ମୁଁ ପାଶ୍ଚାତ୍ୟ ସଂଗୀତର ସଂଯୋଗରେ ଆଣି ଆଲୋକିତ କରାଇବି ।

ରେଖା - ଆପଣ ଯାହା କୁହନ୍ତୁ ସାର୍, ସେଇ ଲା, ଲା, ଲା ଶୁଣିବାକୁ ମତେ ଆଦୌ ଭଲ ଲାଗେନାହିଁ ।

ଦାସ - ତୁମେ ଜାଣନାହିଁ ମିସ୍ ମହାନ୍ତି, ବ୍ଲୁ ଡାନ୍ୟୁବର ସୁର ଶୁଣିଲେ ତୁମର ମନେହେବ ଯେପରି ଯୁଗ ଯୁଗ ଧରି ତୁମେ ସ୍ୱପ୍ନ ଦେଖୁଚ - ତନ୍ଦ୍ରାରେ ବୁଡ଼ିରହିଚ । ଖୁବ୍ ଶୀଘ୍ର ସେ ସୁର ତୁମକୁ ଶୁଣାଇବାର ବନ୍ଦୋବସ୍ତ ମୁଁ କରୁଚି । ଆମ ଦେଶର ନାଚସବୁର ମଧ୍ୟ ମୁଁ ବିଶେଷ ପରିବର୍ତ୍ତନ କରାଇବି ।

ରେଖା - କେମିତି ?

ଦାସ - ଓଡ଼ିଶୀ ନାଚରୁ ମୁଦ୍ରା - ଓରିଏଣ୍ଟାଲ୍ ନାଚରୁ ଭଙ୍ଗୀ, I mean pose - ଇଂଲିଶ୍ ନାଚରୁ ଷ୍ଟେପିଙ୍ଗ୍ - ଆଉ ସାନ୍ତାଳି ନାଚରୁ ବାଦ୍ୟ ନେଇ ମୁଁ ଏପରି ଗୋଟାଏ ନାଚର ସୃଷ୍ଟି କରାଇବି, ଯାହାକୁ ଦେଖିଲେ ତୁମେ ବୁଝିପାରିବ ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ କାହିଁକି ହେବା ଉଚିତ୍ ।

ରେଖା - ବାସ୍ତବିକ୍ ସାର୍, ଆପଣ ଗୋଟାଏ ବଡ଼ ଦୁରୂହ କାମରେ ହାତ ଦେଇଛନ୍ତି ।

ଦାସ - ଏ ଦେଶରେ ମୁଁ ଯେଉଁ ନବଯୁଗର କଳ୍ପନା କରୁଚି ତା ଫଳରେ ତୁମେ ଦେଖିବ ଆମର Standard of living ଯଥେଷ୍ଟ ବଢ଼ିଯିବ । ଚାଷୀ ମୂଲିଆ ହଳରୁ ଫେରି ଗାଧୋଇବା ପାଇଁ ବାଥ୍‌ରୁମ୍‌ର ଅଭାବ ଅନୁଭବ କରିବେ । ଓକିଲ ଓ କିରାନିମାନେ ଶନିବାର ରାତିରେ ଘରକୁ ନଯାଇ କୌଣସି ସି-ସୋର୍ କିମ୍ବା ହିଲ୍ ଷ୍ଟେସନ୍‌କୁ ଯିବେ ।

କୁଳି-ମଜଦୂର ତାଙ୍କର ସେଇ ତିନି ଦିନର ବାସିପଖାଳକୁ ଟେବୁଲ୍ ଉପରେ ରଖି ଖାଇବେ କଣ୍ଟା-ଚାମଚ ସାହାଯ୍ୟରେ ।

ରେଖା - ମୋର କିନ୍ତୁ ସାର୍ ଭାରି ଦୁଃଖ ହଉଚି ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କ କଥା ଭାବି । ଅତି ଅଶୁଭ ଲଗ୍ନରେ ସେ ଜନ୍ମ ହେଇଥିଲେ ।

ଦାସ - କାହିଁକି, ତାଙ୍କର ପୁଣି କ'ଣ ହେଲା ?

ରେଖା - ବିଚରା କବି ସମସ୍ତ ଜୀବନଟାଯାକ ତପସ୍ୟା କରି କରି ଏସିଆ ଓ ୟୁରୋପର ଚିନ୍ତାଧାରା କିପରି ଏକ ହେବ ତା'ରି ସ୍ୱପ୍ନ ଦେଖୁଥିଲେ - କିନ୍ତୁ ଆପଣମାନେ ଆଜି ଏ ଦେଶର ବାସି ପଖାଳ ସହିତ ସେ ଦେଶର ଷ୍ଟା-ଚାମଚର କିପରି ମିଳନ ହେବ ତା'ର ସ୍ୱପ୍ନ ଦେଖୁଛନ୍ତି ।

ସୁର - ମୁଁ ଯାଉଛି ରେଖା ଦେବୀ!

ଦାସ - ତୁମେ ଯିବ! ଆଚ୍ଛା, ଯାଅ - ଯାଅ, କିନ୍ତୁ କେତେଟା ଗୀତ ସିଲେକ୍ଟ କରି ଆଣିବ । (ସୁର ଚାଲିଗଲା)

ରେଖା - ସୁରେଶବାବୁ କାଲି ଆମ ସାଥିରେ ପିକ୍‌ନିକ୍‌କୁ ଯିବେ ।

ଦାସ - ସୁରେଶ ଆମ ସାଥିରେ ଯିବ ପିକ୍‌ନିକ୍‌କୁ - ତୁମେ ଏକଥା କହୁଚ ମିସ୍ ମହାନ୍ତି ?

ରେଖା - ମୁଁ କାହିଁକି କହିବି, ବାବା ତାଙ୍କୁ ନିମନ୍ତ୍ରଣ କରିଚନ୍ତି ।

ଦାସ - ହଁ, ମୁଁ ଜାଣେ, ରାୟ ବାହାଦୁରଙ୍କର ଏ ବଦ୍‌ଖିଆଲ ରହିଚି । ତାକୁ ଡାକିବା ଯେ କେତେ ବଡ଼ ଗୋଟାଏ Blunder (ବ୍ଲଣ୍ଡର) ତା'ସେ ଆଦୌ ବୁଝିବେ ନାହିଁ । ଏ ସୋସାଇଟିରେ ମିଶିବାର କାୟଦା ସେ ଜାଣେ କ'ଣ ?

ରେଖା - ଆପଣମାନଙ୍କଠାରୁ ଶିଖିଯିବେ ନାହିଁ ।

ଦାସ - ନା-ନା, ଥଟ୍ଟାନୁହେଁ ମିସ୍ ମହାନ୍ତି - ରାୟ ବାହାଦୁରଙ୍କୁ ମୁଁ ଏକଥା କହିବି - ତାକୁ ଏତେଟା ପ୍ରଶୟ ଦେବା ଆଦୌ ଉଚିତ୍ ନୁହେଁ ।

ରେଖା - ଚାଲନ୍ତୁ ତେବେ ଯିବା ବାବାଙ୍କ ପାଖକୁ ।

ଦାସ - ସେ କଥା ପରେ ହେବ, ତୁମେ ଟିକିଏ ବସ । ତୁମ ସହିତ ଗୋଟାଏ କଥା ଅଛି ।

ରେଖା - କ'ଣ କୁହନ୍ତୁ ?

ଦାସ - ତମେ ମୋତେ ସାର୍ ବୋଲି କାହିଁକି ଡାକ ?

ରେଖା - ଆଉ କ'ଣ ବୋଲି ଡାକିବି ?

ଦାସ - ତା କ'ଣ ତମେ ଜାଣନା ? ମୁଁ ଯେ ତମର ଅଯୋଗ୍ୟ ନୁହେଁ, ଏ କଥା ରାୟବାହାଦୁର ସଂପୂର୍ଣ୍ଣ ସ୍ୱୀକାର କରନ୍ତି, ଅଥଚ ଏପର୍ଯ୍ୟନ୍ତ ମୁଁ ତମର....

ରେଖା - ବାବା ଯଦି ସ୍ୱୀକାର କରନ୍ତି - ଏ କଥା ତେବେ ମୋ ସହିତ ଆଲୋଚନା କରି ଲାଭ କ'ଣ ?

ଦାସ - ସେଇକଥା ମୁଁ ତୁମ ମୁହଁରୁ ଥରଟିଏ ଶୁଣିବାକୁ ଚାହେଁ, ରାଏବାହାଦୁର ଯାହା ଚାହାନ୍ତି

- ମୁଁ ଯାହା ଚାହେଁ - ତୁମେ ମଧ ଠିକ୍ ସେଇଆ ଚାହଁ । ଖୋସାମଦ୍ ମୁଁ କରୁନି ରେଖା- ମୁଁ ଗୁଣ ଚିହ୍ନେ- ରୂପ ଚିହ୍ନେ - ମୋର ଅନ୍ତର କହୁଚି, You are born to rule a million hearts! ତୁମର ଏଇ ଅଧର-କୋଣରେ ଶୁଭ୍ରହାସ୍ୟର ପ୍ରତିଦାନରେ ପୌରୁଷର ଅଞ୍ଜଳି ଦେବାପାଇଁ ମୋ ପ୍ରାଣ ଅଧୀର ହୋଇଉଠେ । ମୋ ଦୁଃଖ ତୁମେ ଜାଣନାଇଁ ରେଖା - ମୋର ଏହି କର୍ମବହୁଳ ଜୀବନର ଅନ୍ତରାଳରେ ଲୁଚି ରହିଚି ନିର୍ମମ ନିଃସଙ୍ଗତା । ଯେଉଁଦିନ ତୁମେ ସଞ୍ଚାରିଣୀ ପଲ୍ଲବିନୀ ଲତାଟି ପରି ମୋ କୁଟୀର ଦୁଆରେ ହସିଉଠିବ, ସେଇଦିନ ମୋର ଏ ଦୁଃଖର ଅବସାନ ହେବ । କୁହ, କୁହ ରେଖା, କେବେ ସେ ସୁଦିନ ମୋର ଆସିବ ?

(କହୁ କହୁ ରେଖାକୁ ଆଲିଙ୍ଗନ କରିବାକୁ ଆଗେଇଗଲେ, ରେଖା କିନ୍ତୁ ଘୁଞ୍ଚିଗଲା ।)

ରେଖା - ଦେଖନ୍ତୁ sir, ଭୁଲିଯାଇଚି । ବାବା କହିଚନ୍ତି, ଡେରି ହେଲେ ସୁରେଶବାବୁଙ୍କୁ ମଟର ନେଇ ଛାଡ଼ିଆସିବ । ଆଜି ବହୁତ ଡେରି ହେଇଯାଇଚି; କିନ୍ତୁ ସେ କ'ଣ କେବେହେଲେ ମଟର ମାଗିଥିବେ ? ମୁଁ ଦେଖେ ସେ ଗଲେଣି କି ନାହିଁ ? (ଚାଲିଗଲା - ପ୍ରଫେସର୍ ଦାସଙ୍କ ମୁହଁରେ ଗୋଟାଏ କଳାପର୍ଦ୍ଦା ଟାଣି ହୋଇଗଲା । ସେ କିଛି ସମୟ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହେଇ ଠିଆହୋଇ ରହିଲେ । ତା'ପରେ ଟେବୁଲ୍ ପାଖକୁ ଫେରିଆସି, ଅନ୍ୟମନସ୍କ ଭାବରେ ଗୋଟାଏ ବହି ଲେଉଟାଇ ଦେଖିଲେ, ସେଥିରେ ରେଖାର ଖଣ୍ଡେ ଫଟୋ ରହିଛି । ପ୍ରଥମେ ସେ କିଛି ବୁଝିପାରିଲା ନାଇଁ - ତା'ପରେ ତାଙ୍କର ମନେପଡ଼ିଲା ଯେ ସେ ଏ ଘରକୁ ଆସିଲାବେଳେ ସୁରେଶ ଏ ଫଟୋଖଣ୍ଡିକ ବହି ଭିତରେ ରଖିଥିଲା । ଫଟୋଖଣ୍ଡିକୁ ସେ ଆଣି ପକେଟ୍‌ରେ ରଖିଲେ । କ୍ରୋଧ, କ୍ଷୋଭ ଓ ପ୍ରତିହିଂସାର ଚିହ୍ନ ସବୁ ତାଙ୍କ ମୁହଁରେ ଫୁଟିଉଠିଲା ।)

ଦାସ - ହୁଁ! ରେଖାର ଫଟୋ ସୁରେଶର ବହି ଭିତରେ!! ଆଚ୍ଛା! (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

(ପଶୁପତିଙ୍କ ଘରର ଅଗଣା - ସେଦିନ ତାଙ୍କର ତ୍ରିନାଥ ମେଳା । ପଶୁ ଓ ଉଦ୍ଧବକୁ ମିଶେଇ ମୋଟେ ଚାରିଜଣ ଉପସ୍ଥିତ ଥିଲେ । ମେଳାକାମ ଶେଷ ହୋଇଯାଇଛି ।)

ପଶୁ - ମୁଁ କହୁଥିଲ କ'ଣ କି, ଆରେ କହିବି ଆଉ କ'ଣ ? ତମେ ତ ଆସିଲ ମୋଟେ ଦି'ଜଣ - ଆରେ ଉଦ୍ଧବ, ଏ ଗାଁଟାଯାକରୁ ଆସିଲେ ମୋଟେ ଦି'ଜଣ ?

ଉଦ୍ଧବ - ଆହେ, ଗଞ୍ଜେଇ ଲୋଭ ନ ଦେଖେଇଲେ ସେ ଦି'ଜଣ କ'ଣ ଆସୁଥିଲେ ?

ପଶୁ - ଆହେ ଦେଖ ହେ, ଏ ଗାଁଟାଯାକ ଲୋକ ଖାଲି ଗୋଟା ହୋ'ରେ ସିନା ମାତିଚନ୍ତି!

ପ୍ରଥମ - ତମେ କ'ଣ କଉଚ ବଳିୟାର୍ ସିଂହ.....

ପଶୁ - ଆହେ ତମେ କ'ଣ ଦେଖୁନା, ଏ ଗାଁଟାକୁ ବରଜୁଆ ଏକାବେଳକେ ସାରିଦେଲାଣି ?

ଦ୍ୱିତୀୟ - କାଇଁ, ବରଜୁଆ କ'ଣ କଲା କି ?

ପଶୁ - ଆରେ ଏ ଶାନ୍ତି, କନିକି ହାତ କରି ସେ ଗାଁରେ ଯୋଉ ଲୀଳା ଲଗେଇଚି, ସେ କଥା କ'ଣ ଦେଖୁନ ? ଏଇଟା କ'ଣ ଠିକ୍ ହଉଚି ? ଯେତେ ସବୁ ଛୋଟଲୋକି କାମ, ଝିଅ-ବୋହୂଙ୍କର ଇଜ୍ଜତ ଗଲା - ଛୁଆଁ ଅଛୁଆଁ ବାରଣ ରଇଲାନାଇଁ - ସେଦିନ ଗାଁଟାଯାକ ଲୋକଙ୍କୁ ମତେଇଦେଲା - ସମସ୍ତେ ଏକାଠି ବସି ଖାଇଲେ - ଏଥିରେ ପୁଣି ତମେ କହୁଛ 'ବରଜୁଆ କ'ଣ କଲା କି ?'

ପ୍ରଥମ - ଆହେ ଗାଁଟାଯାକ ମାତିଯିବେ କାଇଁକି ? ସମସ୍ତେ ଭାବିଚନ୍ତି ଏ କାମ କରିଚନ୍ତି ନା - ତମ ପୁତୁରା ସେଦିନ ସେଠି ଥିଲେ, ତାଙ୍କୁ ପଚାରୁନ ?

ପଶୁ - ଏଇଁ, ହଇରେ ଉଦ୍ଧବ, - ଆରେ ଚଣ୍ଡାଳ-ହଇରେ ତୁ ଏଇଆ କଲୁ - ହଇରେ ମୋ....

ଉଦ୍ଧବ - (ଘୁମାଉ ଘୁମାଉ) ମୋ ଆଖି ବୁଜିହୋଇଆସିଲାଣି ପି'ସା !

ପଶୁ - ହଇରେ କୁଳାଙ୍ଗାର - ତୁ ସେ ବୁଦ୍ଧି....

(ବ୍ରଜ ଆସି ପହଞ୍ଚିଲା - ଟିକିଏ ଉତ୍ତେଜିତ ଭାବରେ)

ବ୍ରଜ - ପଶୁ ଅଜା.....

ପଶୁ - ଉଦ୍ଧବ !

ଉଦ୍ଧବ - ତୁମେ ଆଗ ତାଲୁରୁ ଟଳିପଯାଏ ତାକୁ ଦେଖ ପଶୁ ପି'ସା - ତା'ପରେ କଥାଭାଷା ।

ବ୍ରଜ - ସେବା ଘର ଛାତ ଉପରୁ ପତାକା କିଏ ଆଣିଚି ?

ପଶୁ - ଆହେ ଦେଖ ହେ - ମୋର ଭେକ ସରୁନଥିଲା ଯେ ମୁଁ ଯାଉଥେଲି ୟା'ଙ୍କ ପତାକା ଚୋରି କରିବାକୁ....

ଉଦ୍ଧବ - ହଇହେ ବରଜୁ - ଠିକାଦାର ଯଦି ପତାକା ରଖି ଗଞ୍ଜେଇ ଦେଉଥା'ନ୍ତା ତେବେ କେଜାଣି ଆମ ପି'ସା ପତାକା ଆଣିଥା'ନ୍ତେ !

ବ୍ରଜ - ଚୁପ୍ କର ତମେ ।

ପଶୁ - କିରେ ଟୋକା, କ'ଣ ଡରେଇ ଦଉଚୁ । ଏଇଟା ତୋ ଶ୍ୱଶୁର ଘର ନୁହେଁ - ଜାଣିଲୁ ! ଗାଁଟାଯାକ ମାଇପିଲାଙ୍କୁ ଶିଖେଇ.....

ବ୍ରଜ - ମୁଁ ତୁମ ପ୍ରକୃତି ଜାଣେ ଅଜା ! ମୁଁ ଏ କାମରେ ହାତ ଦେଲା ଦିନଠୁ ତୁମେ ମୋ ନାଁରେ ଦୁର୍ନାମ ଗାଇ ବୁଲୁଚ - ଆସି ବୁଢ଼ାହେଲଣି, ତୁମର ଟିକେ କାଣ୍ଡଜ୍ଞାନ ନାହିଁ ? ତୁମେ ଏ ଗାଁର ଝିଅବୋହୂଙ୍କ ନାଁରେ ଏମିତି କଳଙ୍କ ବୋଲୁଛ ? ଛି-ଛି-ଛି; ତୁମର ପିଲାପିଲି ନାହାନ୍ତି ବୋଲି ସିନା ତୁମେ ଏମିତି କଥା କହିପାରୁଚ ।

ପଶୁ - ଆହେ ଦେଖ ହେ - ଏ ପୁଣି ମୋତେ ଆସିଲା ପୁରାଣ ପଢ଼େଇବାକୁ । ହଇରେ,

ତୁ ସିନା ଥରକୁ ପାଞ୍ଚଥର ଜିହଲ ଫାଟକ ଦେଖିଲୁଣି ଯେ ତୋର କୋଉ କଥାକୁ ପରୁଆ ନାଇଁ - ତୁ ଭଲା କାହିଁକି ଗାଁଟାକୁ ଶିଖେଇ ତୋରି ପଛରେ ଟାଣୁଚୁ କହିଲୁ ? ତୋ'ରି ପାଇଁ ଏଗାଁର ଧର୍ମ, କର୍ମ, ଇଜ୍ଜତ, ମହତ ସବୁଗଲା- ଛୁଆଁ -ଅଛୁଆଁ ବାରଣ କିଛି ରହିଲାନାଇଁ ।

ବ୍ରଜ - ଗାଁବାଲାଙ୍କ କଥା ଗାଁବାଲା ବୁଝିବେ - ତମର ସେଥିରେ କ'ଣ ଅଛି ?

ପଶୁ - ହଇରେ ଗାଁବାଲା କିଏ ? ମୁଁ କ'ଣ ଏ ଗାଁର କେହି ନୁହେଁ ?

ବ୍ରଜ - ତୁମେ ମଣିଷ ନୁହେଁ ଯେ ତୁମେ ଏ ଗାଁରେ ରହିବ । ଏତେ ଅବସ୍ଥା ହେଲାଣି - ତୁମର ହୋସ୍ ଆସୁନି - ଅଣ୍ଟାରେ ଟଙ୍କା ମାରି ଲୁଗା ପାଇଁ ଦୁଆର ଦୁଆର ବୁଲୁଚ, ତୁମରି ଆଗରେ ତୁମରି ଗାଁବାଲା ହାତରେ ସୂତାକାଟି ଦିନ ପନ୍ଦରଟାରେ ଖଣ୍ଡେ ଖଣ୍ଡେ ଲୁଗା ପିନ୍ଧିସାରିଲେଣି । ତୁମେ ସିନା ମଣିଷ ହେଇଥିଲେ ଏକଥା ବୁଝନ୍ତ ? ତୁମେ ପଶୁ - ତୁମ ନାଁ ଯାହା - ତୁମେ କାମରେ ବି ସେଇଆ ।

ପଶୁ - ହଇରେ ବରଜୁଆ, ତୋତେ କ'ଣ ଧରମ ଛାଡ଼ିଲାଣି କିରେ ? ହଇରେ, ତୁ କ'ଣ ଭାବିଚୁ - ଏ ଦେଶରୁ ଇଂରେଜ ସରକାର ଉଠିଗଲା ?

ବ୍ରଜ - ଇଂରେଜ ସରକାର ଉଠିଗଲା କି ନଗଲା ସେ କଥା ତୁମେ ବୁଝିପାରିବ ନାହିଁ - ତୁମେ ବର୍ତ୍ତମାନ ପତାକାଟା ବାହାର କର ।

ପଶୁ - ଦେଖୁଚୁ - ଦେଖୁଚୁ - ଉଦ୍ଧବ ।

ଉଦ୍ଧବ - ହଁ ପି'ସା ଦେଖିଚି - ଦେଖିଚି; ତୁମେ ପତାକାଟା ସେ ଗୁହାଳ ସଙ୍ଗା ଉପରେ ରଖିଚ; ରୁହ - ଆଣି ଦଉଚି ।

(ଆଉ କିଛି ଶୁଣିବାକୁ ଅପେକ୍ଷା ନ କରି ଚାଲିଗଲା ।)

ପଶୁ - ଆହେ ଦେଖ ହେ,- ଉଦ୍ଧବ, ଉଦ୍ଧବ, ଆରେ ଉଦ୍ଧବା !

ଉଦ୍ଧବ - ହଁ-ହଁ, କୁହ ପି'ସା; ସଙ୍ଗା ଉପରୁ କାଢ଼ିକରି ନଉଚି ।

ପଶୁ - ସଙ୍ଗା ଉପରରୁ କାଢ଼ିକରି ନଉଚୁ, ସେ ସଙ୍ଗାରୁ ପଡ଼ି ମରୁନୁ! (ଥକା ହୋଇ ବସିପଡ଼ିଲା ।)

ବ୍ରଜ -ପତାକା ନେଇ ଭାବିଛ ଅଜା ଏମିତି କାମ କରି ଆମକୁ ଦବେଇ ଦେବ ? ତା' ହୋଇପାରିବ ନାଇଁ - ଆମେ ଆମ କାମରେ ଠିକ୍ ଅଛୁ ।

ଉଦ୍ଧବ - (ପ୍ରବେଶି) ହେଇ ବରଜୁ, ତମ ପତାକାଟା ନିଅ । କ'ଣ ପି'ସା ଦେଖିସାରିଲଣି ନା ଆଉ କିଛି ବାକି ଅଛି ?

ପଶୁ - ଆରେ ଉଦ୍ଧବା, ଶେଷରେ ତୁ ମତେ ଏ ଖେଳ ଦେଖେଇଲୁ ? କନାଖଣ୍ଡକ ସକାଶେ ପଶୁପତି ବଳିଆର ସିଂହ ନାଁକୁ ଆଜି ତଳେ ପକେଇଦେଲୁ ? ମୋରି ପଇସାରେ ଗଞ୍ଜେଇ ଖାଇ ମୋତେ ଚୋର କଲୁ ?

ବ୍ରଜ - ମୁଁ ଯାଉଚି ଅଜା; କିନ୍ତୁ କହିଯାଉଚି - ଏଣିକି ଯେମିତି ତମର ଏ ଦୁର୍ବୁଦ୍ଧି ନହୁଏ ।

ଉଦ୍ଧବ - ସେଦିନ ତ ଗଣ୍ଡେ ହରିଜନଙ୍କ ସାଙ୍ଗରେ ବସି ଖାଇ ଦେଇଥିଲି, ତୁମେ ଜାଣିଲଣି ଯେତେବେଳେ ଆଉ ତ ମତେ ପାଖରେ ବସେଇ ଦବ ନାଇଁ । ଏଣିକି ତୁମକୁ ଦେଖିବାକୁ କେହିନାହାନ୍ତି - ନିଜକୁ ନିଜେ ଦେଖ ।

ପଶୁ - ଖାଇଦେଇଥିଲୁ ? ତତେ ଆଉ କିଛି ମିଳିଲା ନାଇଁ ଖାଇବାକୁ! ହଇରେ ତୁ କାହାର ପୁଅ ହେଇ....

ଉଦ୍ଧବ - (ଗ୍ରାମବାସୀ ଦୁହିଁଙ୍କୁ) ଉଠ, ଚାଲ ଯିବା । (କହି କହି ଚାଲିଯାଉଥିଲା)

ପଶୁ - ଏ ଉଦ୍ଧବ!

ଉଦ୍ଧବ - କ'ଣ ?

ପଶୁ - ଆରେ ବାପା ଭଲା ଶୁଣ୍ ।

ଉଦ୍ଧବ - କ'ଣ କଉଚ କୁହ -

ପଶୁ - ଆରେ ମୁଁ ଏକୁଟିଆ ଏଠି ମରିଯିବିରେ ।

ଉଦ୍ଧବ - ତମେ ମରିଗଲେ ତମକୁ ଉଠେଇବାକୁ କେହିନାହାନ୍ତି । ଯଦି ବରଜୁ ପାଖକୁ ଯିବ ତା'ହେଲେ - କେଜାଣି -

ପଶୁ - କ'ଣ କହିଲୁ ? ପୁଣି ସେ ବରଜୁଆ କଥା ମତେ କହୁଚୁ ?

ଉଦ୍ଧବ - ତା'ହେଲେ ବରଜୁଆ ପାଖକୁ ଯିବନାଇଁ, ଏଇଠି ବସି ବସି ତେବେ ଭାବୁଥା । (ପୁଣି ଯିବାକୁ ଆରମ୍ଭ କଲା)

ପଶୁ - ଆରେ ହେ ବାପ! ଭଲା ଟିକେ ଶୁଣ୍ ।

ଉଦ୍ଧବ - ତୁମେ ତ ଯିବନାଇଁ ଆଉ ଶୁଣିବି କ'ଣ ?

ପଶୁ - ହଉ, ତୁ କହୁଚୁ ମୁଁ ଯିବି, - ହେଲେ ମୋ ଆଣ୍ଟା.....

ଉଦ୍ଧବ - ମୁଁ ରଖିବି ଚାଲ । (ଉଭୟେ ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

(ସୁରେଶର ପୂର୍ବବର୍ଣ୍ଣିତ ଗ୍ରାମର ଘର । ଟେବୁଲ୍ ଉପରେ ଗୋଟିଏ ବଡ଼ ଚମତ୍କାର ବ୍ୟାଗ୍ ଥୁଆହୋଇଛି । ଶାନ୍ତି ସେଇ ବ୍ୟାଗ୍‌ଟି ଖୋଲି କ'ଣ ସବୁ ରଖିବାରେ ଲାଗିଚି । ଏଇ ସମୟରେ ସେଠାକୁ ଆସିଲା କନ ।)

କନ - ହେ ଚୋରଣୀ - ଲୁଚି ଲୁଚି କ'ଣ ଏଠି କରୁଚୁ ?

ଶାନ୍ତି - ନାଇଁ ମ, ଏଇ ବ୍ୟାଗ୍‌ଟା ଖୋଲି ଦେଖୁଥିଲି, ସୁରଭାଇ କଟକରୁ ତୋ ପେଇଁ କ'ଣ ସବୁ ଆଣିଚନ୍ତି ?

କନ - ମୋ ପାଇଁ ତ ଆଣିଥିଲେ ଗାଳି, ଆସି ପହଞ୍ଚିବା ସାଙ୍ଗେ ସାଙ୍ଗେ ମୋ ଉପରେ ହେଇସାରିଲାଣି । ଆଉ ଦେଖ ତୋ ପାଇଁ ଯଦି କିଛି ଆଣିଥିବେ ।

ଶାନ୍ତି - ଆଣିବେ ଆଉ କ'ଣ ମୋ ଲାଖି ଜିନିଷ କ'ଣ କଟକ ସହରରେ ମିଳେ ?

ଜନ - ଏଇ କଥା ? ତେବେ ମୁଁ ଆଉ ଦି'ପଦ ଗାଳି ଶୁଣିଲେ ପଛେ ଶୁଣିବି, ଆଜି ଭାଇଙ୍କି କହିବି ।

ଶାନ୍ତି - କ'ଣ କହିବୁ ?

ଜନ - କହିବି, ଦେଖ ଭାଇ ! ଶାନ୍ତି ବିଚାରୀ ହାତରେ ସୂତାକାଟି ତମପାଇଁ ଲୁଗାବୁଣାଇ ରଖିଛି; ଆଉ ତମେ କଟକରୁ ଆସିଲ ଯେ ଖାଲି ହାତରେ; ତା'ପାଇଁ କିଛି ହେଲେ ଆଣିଲନାଇଁ ।

ଶାନ୍ତି - ମୋ ରାଣ ଜନ, ଏସବୁ କିଛି କହିବୁନାଇଁ ତାଙ୍କୁ; ଖିଆଲି ମଣିଷ, କ'ଣ ନାଇଁ କ'ଣ ଭାବି ବସିବେ ।

ଜନ - ସତେ ଶାନ୍ତି, ଭାଇଙ୍କ କଥା ବେଳେବେଳେ ଭାବି ମୁଁ କାବା ହୋଇଯାଏ; ଦିନାକେତେ ଝୁଙ୍କ ଉଠିଲା ପଢ଼ାପଢ଼ି ଛାଡ଼ିଦେଇ ଏ ଦେଶରେ ଯେତେ ପୁରୁଣା ପୋଥି ଅଛି, ତାକୁ ଖୋଜି ବାହାର କରି ସେ ବିଷୟରେ ଦେଶ ବିଦେଶକୁ ଲେଖାମାନ ପଠାଇବେ - ପୁଣି ବେଳେବେଳେ ମନଉଠେ କୋଉଠି ଯାଇ ସୁନାଖଣିରେ କାମ କରିବେ ।

ଶାନ୍ତି - ଆଉ ବର୍ତ୍ତମାନ ଖିଆଲ ପଶିଚି ଗୁରୁଦେବ ଶ୍ରୀ ବ୍ରଜବାସୀଙ୍କ ଚେଲା ହେବେ ।

ଜନ - ଆଚ୍ଛା ଶାନ୍ତି, ଆଜି କଟକରୁ ଭାଇ ଆସି ସାଙ୍ଗେ ସାଙ୍ଗେ ତମ ଘରକୁ ଗଲେ କାହିଁକି ?

ଶାନ୍ତି - କିଏ ଜାଣେ ଲୋ ମା, ହୁଏତ ଗୋଟାଏ ନୂଆ ଜିନିଷ କିଛି ମୁଣ୍ଡରେ ପଶିଛି । (ବ୍ରଜ ଆସିଲା)

ବ୍ରଜ - ଶୁଣିଲି ସଂପାଦିକା ଆଦେଶରେ ଆଜି ସବୁ କାମ ବନ୍ଦ ।

ଶାନ୍ତି - ହଁ, ଏଣିକି ସବୁ ଗୁରୁବାର ଆମ କେନ୍ଦ୍ର କାମ ବନ୍ଦ ରହିବ । ଆପଣଙ୍କର ଏଥିରେ କିଛି ଆପତ୍ତି ଅଛି ?

ବ୍ରଜ - ନା,-ନା ସବୁ କ୍ଷମତା ଯେତେବେଳେ ସଂପାଦିକା ମହାଶୟାଙ୍କ ଉପରେ, ମୁଁ ଆପତ୍ତି କରିବାକୁ କିଏ ? ବରଂ କଥାଟାକୁ ମୁଁ ପସନ୍ଦ କରୁଚି ।

(ସଦର ଦରଜା ଆଡ଼କୁ ଯିବାକୁ ଲାଗିଲା ।)

ଶାନ୍ତି - ବସନ୍ତୁ ନା, କୁଆଡ଼େ ଯାଉଚନ୍ତି ?

ବ୍ରଜ - ନୂଆପାଟଣା ସଡ଼କ କାମ ଯେ ଚାଲିଚି, ସେଠିକି ନ ଗଲେ ଚଳିବ ? ନିଜେ କୋଦାଳ ଧରି ମାଟି ହାଣିବାକୁ ଆରମ୍ଭ କଲାରୁ ଆଜି ପ୍ରାୟ ତିନିଶ' ଲୋକ କାମକୁ ବାହାରିଚନ୍ତି । ହଁ, ଶୁଣିଲି ସୁର ଆଜି କଟକରୁ ଘରକୁ ଆସିଛି, କାହିଁ ସେ ?

ଶାନ୍ତି - ଆସିବା ସାଙ୍ଗେ ସାଙ୍ଗେ ଆମ ଘରକୁ ଯାଇଚନ୍ତି ।

ବ୍ରଜ - ବାବା, ଟାଣ ତ କମ୍ ନୁହେଁ ଦେଖୁଚି । ଆଚ୍ଛା, ମୁଁ ଫେରିଲେ ତା' ସହିତ କଥାହେବି ।

(ଚାଲିଗଲା । ଶାନ୍ତି ବ୍ରଜର ଯିବା ବାଟକୁ ଚାହିଁ କ'ଣ ଯେମିତି ଭାବୁଥିଲା ।)

କନ - କ'ଣ ଭାବୁଚୁ ?

ଶାନ୍ତି - ଭାବୁଚି ଏଇ ବ୍ରଜ ଭାଇଙ୍କ କଥା - କେମିତି ନିଷ୍ଠା, ସତ୍ୟ ଆଉ ଶାନ୍ତିର ସହିତ ସେ କାମ କରନ୍ତି; ତାଙ୍କ କଥା ଭାବିଲେ ମୁଣ୍ଡ ଆପେ ଆପେ ତଳକୁ ନଇଁ ଆସେ ।

କନ - ବୁଝିଲି, ତୁ ଭାଇଙ୍କି ଖାମ୍‌ଖିଆଲି ବୋଲି ଭାବୁଚୁ । ହେଲେ ଜାଣିଥା ଶାନ୍ତି, ତାଙ୍କର ଗୋଟାଏ ଗୁଣ ଅଛି, ଏ ଦୁନିଆକୁ ସେ କେବେହେଲେ ଭଲ ଛଡ଼ା ମନ୍ଦ ଆଖିରେ ଦେଖନ୍ତି ନାଇଁ । (ଶାନ୍ତି କେବଳ କନ ଆଡ଼େ ଚାହିଁ ରହିଲା) କ'ଣ ମୋ କଥା ତୋର ପସନ୍ଦ ହେଲାନାଇଁ ?

ଶାନ୍ତି - ପସନ୍ଦ ନହେବ କାହିଁକି ?

ପାର୍ବତୀ - (ପ୍ରବେଶି) ସୁର ଫେରିନାଇଁ କନ ?

କନ - ନାଇଁ ତ ।

ପାର୍ବତୀ - କିଛି ନଖାଇ ସେମିତି ଚାଲିଯାଇଚି; ବ୍ରଜ ଆସିଥିଲା, କୁଆଡ଼େଗଲା ?

ଶାନ୍ତି - ସଡ଼କ କାମ ପାଖକୁ ଯାଇଚନ୍ତି ।

ପାର୍ବତୀ - ସବୁବେଳେ ତା'ର କାମ ଲାଗିରହିଚି, ଟିକିଏ ହେଲେ ପିଲାଟାକୁ ଫୁରୁସତ ନାଇଁ । ସେ ଆସିଲେ ତାକୁ ଅଟକାଇବୁ । ଜଳଖିଆ ଟିକେ କରିଯିବ । ତୁ ଆ କନ, ଭଜା ଖଣ୍ଡେ ବସେଇଦବୁ । (ଚାଲିଗଲେ)

ଶାନ୍ତି - ମାଉସୀଙ୍କର ବ୍ରଜଭାଇଠାରେ ଯେତେ ସ୍ନେହ, ସୁର ଭାଇଠାରେ ସେତେନାହିଁ ।

କନ - ତୋର ହିଂସା ହଉଚି ନା କ'ଣ ?

ଶାନ୍ତି - ତୋର କ'ଣ ହୁଅନ୍ତା ନାଇଁ ?

କନ - (ଝରକା ବାଟେ ବାହାରେ ସୁରକୁ ଦେଖି) ଏଇଲୋ ଶାନ୍ତି- ଭାଇ ଆଇଲେଣି, ମୁଁ ଯାଉଚି ।

ଶାନ୍ତି - ମଲା ପଳେଇ ଯାଉଚୁ କାହିଁକି, ରହ ନା ।

କନ - ଦର୍କାର ନାଇଁ, ବାବା, ମିଛରେ ଗାଳି ଶୁଣି-

(କନ ଚାଲିଗଲା । ଶାନ୍ତି ଯେପରି ଟିକିଏ ମୁସ୍କିଲରେ ପଡ଼ି ସେଠି ଠିଆ ହୋଇ ରହିଲା- ସୁର ଆସିଲା- ଶାନ୍ତି ଲାଜ ଲାଜ ହୋଇ ସୁରକୁ ମୁଣ୍ଡଲଗାଇ ପ୍ରଣାମ କଲା ।)

ସୁର - ଏତେ ଡେରିରେ ଯେ ?

ଶାନ୍ତି - ବାଃ, ସେତେବେଳେ କନ ଥିଲା ଯେ, କନ ଆଗରେ ପ୍ରଣାମ କରିଥାନ୍ତି ?

ସୁର - କାଇଁକି, କନ କ'ଣ ଭାଗ ନେଇଯାଉଥିଲା କି ? ଆଉ କେବେ ତ ଏମିତି ହୁଅନା ।

ଶାନ୍ତି - ସତେ, ଏଥର କାଇଁକି ମତେ ଭାରି ଲାଜ ଲାଗିଲା ।

ସୁର - କ'ଣ ଦିନ ନିଟକ ହେଇ ଆସୁଚି ବୋଲି ?

ଶାନ୍ତି - ଯାଃ !

ସୁର - ବ୍ରଜ ଆସୁ ତାକୁ ପଚାରିବି, ଯାହାର ଏତିକି ନୈତିକ ସାହସ ନାଇଁ, ସେ କିପରି ବଡ଼ ଅନୁଷ୍ଠାନରେ ସଂପାଦିକା ହୋଇଚି ।

ଶାନ୍ତି - ଥାଉ ସେ କଥା, ଆଗେ କୁହତ, ମେସ୍‌ରେ କିଛି ଅସୁବିଧା ହେଉଚି କି ନାହିଁ ?

ସୁର - ଅସୁବିଧା ଆଦୌ ନାହିଁ, ବାବା ବିଶ୍ୱନାଥଙ୍କ କୃପାରୁ ମୁଁ ବେଶ୍ ଆରାମରେ ଅଛି ।

ଶାନ୍ତି - ବାବା ବିଶ୍ୱନାଥ ! ଯାହାଙ୍କ କଥା ଲେଖିଥିଲ ?

ସୁର - ହଁ ।

ଶାନ୍ତି - ଆମ ଘରୁ ଖାଇକରି ଆସିବ ?

ସୁର - ହଁ ।

ଶାନ୍ତି - କାହିଁକି ଯାଇଥିଲ ?

ସୁର - ବାବାରେ, ଆଜିଠାରୁ କୈଫିୟତ ମଗା ଆରମ୍ଭ ହେଲାଣି !

ଶାନ୍ତି - ଧେତ୍, ପୁଣି ସେଇକଥା, କୁହନା କାହିଁକି ଯାଇଥିଲ ?

ସୁର - ଯେଉଁ ସକାଶେ ଯାଇଥିଲି ତାହା ହେଇଚି ।

ଶାନ୍ତି - କଥାଟା କ'ଣ କୁହ ।

ସୁର - ପହିଲେ ତ ମୋର ଭାରି ଭୟ ହେଉଥିଲା । ମଧୁଦା କାଳେ ମୋ କଥାରେ ରାଜି ହେବେ ନାହିଁ ! କିନ୍ତୁ ଦେଖିଲି ଏଥିରେ ମୋ ଅପେକ୍ଷା ତାଙ୍କର ମନ ବେଶି ।

ଶାନ୍ତି - କହିବ ନାଇଁ ତେବେ, ମୁଁ ଯାଉଚି ।

ସୁର - ଆଃ, ଶୁଣ, ଏମିତି ଉଚ୍ଛନ୍ନ କାହିଁକି ହେଉଚୁ ?

ଶାନ୍ତି - ସେ କଥା ତୁମେ କାହିଁକି ବୁଝିବ ?

ସୁର - ଏଥିରେ ବୁଝିବାର କିଛି ନାଇଁ, ତୋରି କଥା-

ଶାନ୍ତି - ମୋ କଥା କ'ଣ ? (ଯେମିତି ଡରିଯାଉଚି)

ସୁର - ତୁ ଏଣିକି ଯାଇ କଟକରେ ରହିବୁ ।

ଶାନ୍ତି - ଓ, ତେବେ ସାହାରା ଯିବା କଥା ହେଲାନାଇଁ ?

ସୁର - ନା, କଟକରେ ରହି ତୋର ପୁଣି ପଢ଼ିବା କଥା ହେଲା ।

ଶାନ୍ତି - ପୁଣି ପଢ଼ିବି!!!

ସୁର - ହଁ ।

ଶାନ୍ତି - କାଇଁକି ?

ସୁର - ଲୋକେ ପଢ଼ାଶୁଣା କରନ୍ତି କାଇଁକି ?

ଶାନ୍ତି - ସେ କଥା ଯେ ପଢ଼ାଶୁଣା କରୁଚନ୍ତି ତାଙ୍କୁ ଯା'ପଚାରିବ । (ଚାଲିଯାଉଥିଲା)

ସୁର - ମୋ କଥାରେ ଜବାବ୍ ଦେଇ ଯା'ଶାନ୍ତି ।

ଶାନ୍ତି - କଥା ମୂଳରୁ ନାହିଁ, ପୁଣି ଜବାବ୍ ଦେବି କ'ଣ ?

ସୁର - ମୁଁ ବୁଝିପାରୁନାହିଁ ତୋର ଆଜି ହେଉଚି କ'ଣ ? କ'ଣ ସବୁ ଏମିତି କହିଯାଉଚୁ ?

ଶାନ୍ତି - ନୂଆ ତ କିଛିନୁହେଁ, ପିଲାଦିନୁ ଏମିତି କହିଆସିଚି ।

ସୁର - ଆଉ ଭାବିଚୁ, ସବୁଦିନେ ଏମିତି କହିଚାଲିଥିବୁ ।

ଶାନ୍ତି - (ସୁରକୁ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଥରେ ଦେଖିନେଇ) ଓ, ଏଥର ତିନିମାସ ପରେ କଟକରୁ ଫେରି ତୁମେ ଖୁବ୍ ବଦଳି ଯାଇଚ ପରା ! କାହିଁ, ସେମିତି ତ ମୁଁ କିଛି ବୁଝିପାରୁନାହିଁ - ସେଇ ବେଶପୋଷାକ - ସେଇ ଚେହେରା ।

ସୁର - ଫାଜିଲାମି ରଖ ଶାନ୍ତି - କଥାଟା ଏକାବେଳକେ ସତ, ସେଥିପାଇଁ ମୁଁ ତୋ ବାପାଙ୍କ ନିକଟକୁ ଯାଇଥିଲି ।

ଶାନ୍ତି - ବାପା କ'ଣ କହିଲେ ?

ସୁର - ସେ ସଂପୂର୍ଣ୍ଣ ରାଜି ହୋଇଚନ୍ତି । କଥା ହେଉଚି - ତୁ, ମଧୁଦାଦା ଓ ଖୁଡ଼ୀ ସମସ୍ତେ ବର୍ତ୍ତମାନ ଯାଇ କଟକରେ ରହିବ ।

ଶାନ୍ତି - ତେବେ ଦେଖୁଚି ସେମାନେ ବି ଏପର୍ଯ୍ୟନ୍ତ ପବନରେ ଉଡ଼ିବୁଲୁଚନ୍ତି ।

ସୁର - ମାନେ !

ଶାନ୍ତି - ଟିକିଏ ତଳେଇ କରି କଥାଟା ଭାବିଥିଲେ ସେମାନେ କ'ଣ କେବେହେଲେ ଏଥିରେ ରାଜି ହେଇଥା'ନ୍ତେ ?

ସୁର - ରାଜି ଯେତେବେଳେ ହେଇ ସାରିଚନ୍ତି, ସେତେବେଳେ ତୋର ଇଚ୍ଛା କ'ଣ ଶୁଣେ ?

ଶାନ୍ତି - କିଛିନାହିଁ, ବାପା ବୋଉ ରାଜି ହେଇଚନ୍ତି - ବାପା, ବୋଉ ସେ କଥା ବୁଝିବେ- ଗାଁ ଛାଡ଼ି କଟକରେ ରହିବା ଦରକାର ହେଉଚି - ସେମାନେ ଯାଇ ରହନ୍ତୁ । ପଢ଼ାଶୁଣା କରିବାର କଥା, ତମେ ଯାଇ ପଢ଼ - ପାଞ୍ଚ ବରଷ, ଦଶ ବରଷ ଯେତେ ଦିନ ତୁମ ଇଚ୍ଛା - କିନ୍ତୁ ମତେ ଏ ସବୁରୁ ବାଦ୍ ଦିଅ ।

ସୁର - ବାଦ୍ କାହିଁକି ଦେବି, ଟିକିଏ ଶୁଣେ ?

ଶାନ୍ତି - ମୁଁ ପୁଣି କହୁଚି - ଏ କଥାରେ କୌଣସି ଉତ୍ତର ମୁଁ ଦେବିନାହିଁ - ଦେବିନାହିଁ - ଦେବିନାହିଁ ।

(ଚାଲି ଯାଉଥିଲା । ସୁର ତା' ବାହା ଧରି ଅଟକାଇଲା ।)

ସୁର - ତା'ହୋଇପାରେନା, ମୁଁ ତୋର ମନକଥା ସ୍ପଷ୍ଟ ଜାଣିବାକୁ ଚାହେଁ ।

ଶାନ୍ତି - (ଟିକିଏ ଥକାମାରି ରହିଯାଇ ତା'ପରେ କହିଲା) ଆଚ୍ଛା, କେତେ ଦିନ ମୁଁ କଟକରେ ରହିବି ?

ସୁର - ତା'ର କ'ଣ ଠିକ୍ ଅଛି, ବର୍ଷେ, ଦୁଇ ବର୍ଷ......

ଶାନ୍ତି - ହୁଁ, ଏଇ ବର୍ଷେ ଦୁଇବର୍ଷ ଭିତରେ କେତେଦୂର କ'ଣ ପଢ଼ିପାରିବ ବୋଲି ଆଶା କରୁଚ ?

ସୁର - କେବଳ ପାଠପଢ଼ା ପାଇଁ ତ କଟକ ଯିବୁନାହିଁ । ସେଠି ତୁ ଏମିତି ସମାଜରେ ମିଳାମିଶା କରିପାରିବୁ, ଯାହାଦ୍ୱାରା ଏ ବର୍ଷେ, ଦୁଇବର୍ଷ ଭିତରେ ତୁ ଏ ସଂସାରରେ ଅନେକ କିଛି ଜାଣିପାରିବୁ ।

ଶାନ୍ତି - ବିଲାତି ଫୁଲ ଆଉ ବିଲାତି କୁକୁର ପ୍ରଦର୍ଶନୀରେ କିମିତି ପୁରସ୍କାର ପାଇବାକୁ ହେବ, ତା'ବୋଧହୁଏ ଶିଖିବାକୁ ହେବ ?

ସୁର - (ଶାନ୍ତିର ଦୁଇ ବାହୁକୁ ଧରି) ତୁ ପିଲାଳିଆମି କରନା ଶାନ୍ତି - ମୋ ଜୀବନର ସ୍ୱପ୍ନ - ମୁଁ ତତେ ଜଣେ ଉପଯୁକ୍ତ ଝିଅ କରି ଗଢ଼ିବି । ସେଥିପାଇଁ ତତେ କଟକ ଯିବାକୁ ହେବ । ଏକଥା ବର୍ତ୍ତମାନ ସ୍ପଷ୍ଟ ବୁଝିପାରୁଚି ।

ଶାନ୍ତି - ମତେ ମାଫ୍ କର ସୁରଭାଇ, ଲିପ୍‌ଷ୍ଟିକ୍ ଓ ହାଇହିଲ୍‌ରେ ମୋର ମୋଟେ ସଉକନାଇଁ ।

ସୁର - (ଶାନ୍ତିକୁ ଛାଡ଼ିଦେଇ) ଜୀବନରେ କେତେଯୋଡ଼ା ହାଇହିଲ୍ ପିନ୍ଧୁଛୁ ବୋଲି ତୋର ଏ ଆକ୍ଷେପ ?

ଶାନ୍ତି - (ବିସ୍ମୟରେ ସୁର ଆଡ଼େ ଚାହିଁ ରହିଲା, ତା'ପରେ ଧୀର; କିନ୍ତୁ ଦୃଢ଼ ଗଳାରେ କହିଲା) ପିନ୍ଧିନାହିଁ ବୋଲି ତ ଆକ୍ଷେପ, ପିନ୍ଧିଥିଲେ ହୁଏତ ମୋହ ରହିଯାଇଥା'ନ୍ତା ।

ସୁର - ତର୍କ କରନା ଶାନ୍ତି ।

ଶାନ୍ତି - ତୁମେ ଭୁଲ କରନା ସୁରଭାଇ ।

ସୁର - ମୁଁ ଭୁଲ କରୁଚି ?

ଶାନ୍ତି - ହଁ, ମୁଁ ଜୋର୍ କରି କହୁଚି, ତୁମେ ଭୁଲ୍ କରୁଚ । ବ୍ରଜଭାଇ ତୁମ ଉପରେ କେତେ ବଡ଼ ଆଶା ରଖିଚନ୍ତି କହିଲ ? ଯେଉଁଦିନ ତୁମେ ତାଙ୍କ ପାଖକୁ ଚିଠି ଲେଖିଲ ଯେ ବାପା, ତୁମକୁ ଯେଉଁ ସମ୍ପତ୍ତି ଦେବେ ତୁମେ ତାକୁ କେନ୍ଦ୍ର କାମରେ ଲଗାଇବ, ସେହିଦିନୁ ସେ ତୁମକୁ ଦେବ - ଚକ୍ଷୁରେ ଦେଖୁଚନ୍ତି । ତୁମେ ତାଙ୍କୁ କଥା ଦେଇଚ ଯେ ପଢ଼ା ଶେଷ କ‌ ଆସି କେନ୍ଦ୍ରରେ ଯୋଗଦେବ । ତୁମର ସେ କଥା ଉପରେ ଭରସା ରଖି ମୁଁ ଏଠା‌ ଅନେକ କାମର ଭାର ନେଇଚି; କିନ୍ତୁ ଆଜି ତୁମେ ଆମକୁ ଠକିବାକୁ ଯାଉଚ, ‌କା ଆମକୁ କାହିଁକି - ଏ ଜାତିକୁ ମଧ ଠକିବାକୁ ଯାଉଛ ।

ସୁର - କେନ୍ଦ୍ରରେ ମୁଁ ଯୋଗ ନଦେବି ଏ କଥା କହୁଛି କିଏ ?

ଶାନ୍ତି - ତୁମେଇ କହୁଚ, ତୁମ ଆଖିରେ ଆଜି ସହରର ମାୟା ଲାଗିରହିଚି, ସେଇଥିରେ ଅନ୍ଧ ହୋଇ ତୁମେ ଆଜି ମତେ ସେଠିକି ନବାକୁ ବସିଚ । ଏହାପରେ ପୁଣି ଏମିତି ଦିନ ଆସିବ, ଯୋଉଦିନ ତୁମେ ହୁଏତ ତୁମର ମଣିଷପଣିଆକୁ ବଳିଦେଇ ସେଇ ସହରରେ ପରର ଗୋଲାମି କରି ରହିବ । ନା' ସୁରଭାଇ ! ତୁମର ଏ ଅଧଃପତନ ମୁଁ କରାଇଦେବି ନାହିଁ, କେବେହେଲେ କରାଇଦେବି ନାହିଁ ।

ସୁର - ବୁଝିଲି, ଏଇସବୁ ଅର୍ଥହୀନ କଥାର ଦୁହାଇ ଦେଇ ତୁ ମତେ କେବଳ ଆଘାତ କରିବାକୁ ଚାହୁଁ ।

ଶାନ୍ତି - ତୁମ ଗୋଡ଼ତଳେ ପଡୁଛି ସୁରଭାଇ ! ତୁମେ ମୋତେ ଭୁଲ୍‌ବୁଝନା ।

ସୁର - କିନ୍ତୁ ତତେ ଠିକ୍ ବୁଝିବାର ସବୁ ବାଟ ତୁ ବନ୍ଦ କରି ଦେଇଛୁ ।

ଶାନ୍ତି - କୌଣସି ବାଟ ବନ୍ଦ କରିନାହିଁ ସୁରଭାଇ ! ସହରର ଶିକ୍ଷା କ'ଣ ମୁଁ ଜାଣେ । ଏଇଠି ଗାଁଗହଳରେ ରହି, ଏଇ ଚାଷୀ-ମୂଲିଆଙ୍କ ଦୁଃଖରେ ଦୁଃଖୀ - ସୁଖର ସୁଖୀ ହୋଇ, ଘରଠାରୁ ବାହାର ପର୍ଯ୍ୟନ୍ତ କୋଉ କଥାରେ କାହାକୁ ଅନୁସରଣ ନକରି, ଆମେ ଯଦି ଜୀବନ କଟାଇପାରିବା, ତେବେ ସହରରେ ରହି ମୁଁ ପାଠପଢ଼ିବି କୋଉ ଆଶାରେ ? ଏ'ତ ମୋ କଥାନୁହେଁ, ତୁମରି କଥା ଯେ, ଆଜି କାହିଁକି, କୋଉ ମୋହରେ ପଡ଼ି, ତୁମେ ସେ କଥାରୁ ଯିବାକୁ ଚାହୁଁଚ ।

ସୁର - କୋଉଟା ଭଲ, କୋଉଟା ମନ୍ଦ ସେ ବିଷୟରେ ମୁଁ ଏଠି ତୋ'ଠାରୁ ବକ୍ତୃତା ଶୁଣିବାକୁ ଆସିନାହିଁ । ମୋଟ୍ ଉପରେ ମୁଁ ଜାଣିଲି ଯେ, ତୁ କୌଣସି ନା କୌଣସି ଉପାୟରେ ମୋ କଥାଟା କାଟିଦେବାକୁ ଚାହୁଁ । ବାସ୍ - ଏତିକି-

(ଘର ଭିତରକୁ ଚାଲିଗଲା - ଟିକିଏ ପରେ ଆସିଲା କନ ।)

ଶାନ୍ତି - କନ..... (ଆଉ କିଛି କହିପାରିଲା ନାହିଁ, ତା କଣ୍ଠ ରୁଦ୍ଧ ହୋଇଆସିଲା)

କନ - ସେ ପାଖେ ଥାଇ ମୁଁ ସବୁ ଶୁଣିଚି, ମୁଁ କହୁଚି ଶାନ୍ତି ତୁ କିଛିଦିନ ପାଇଁ କଟକ ଯା, ଏମିତିକା ଜିଦ୍ ଯେତେବେଳେ ସେ ଧରିଛନ୍ତି.....

ଶାନ୍ତି - ଛି, କନ ଏ କଥା ତୁ ମତେ କହନା । ଦୁନିଆରେ ଭଲ-ମନ୍ଦ, ଉଚିତ୍ -ଅନୁଚିତ୍ ସବୁ ସେଇ ମତେ ଶିଖେଇଛନ୍ତି । ଆଜି ସେ ନିଜେ ବାଟ ଛାଡ଼ି ଅବାଟରେ ପଶିଲାବେଳେ ମୁଁ ଯଦି ସେଇ ବାଟରେ ଚାଲିବି - ତେବେ ତାଙ୍କଠାରୁ ମୁଁ କି ଶିକ୍ଷା ପାଇଥିଲି ? ଏତେ ଦୁର୍ବଳ ମୁଁ ହେବିନାହିଁ କନ ।

କନ - ମତେ କାହିଁକି ଭାରି ଡର ଲାଗୁଛି । ଯେମିତି ଏକବାଗିଆ ଲୋକ ଫଳ ଯଦି କିଛି ଓଲଟା ହୁଏ -

ଶାନ୍ତି - ସେଥିରେ ମୁଁ ମୋତେ ଦୁଃଖ କରିବିନି, ତାଙ୍କୁ ବାଟକୁ ଆଣିବାର ଶକ୍ତି ଯଦି ମୋର ନାହିଁ, ତେବେ ତାଙ୍କୁ ଅବାଟକୁ ଠେଲି ଦେବାପାଇଁ ତାଙ୍କ କଥାରେ ମୁଁ ରାଜି ହେବି କାହିଁକି ? (ଏତିକିବେଳେ ସୁର ସେ ଘରକୁ ଆସିଲା । ଟେବୁଲ୍ ଉପରୁ ବ୍ୟାଗ୍‌ଟା ଉଠାଇନେଲାବେଳେ ଶାନ୍ତି ସେଇ ବ୍ୟାଗ୍‌ମିଶା ସୁର ହାତ ଧରିପକାଇଲା । କନ କ'ଣ କରିବ କିଛି ବୁଝିନପାରି ଘର ଭିତରକୁ ଚାଲିଗଲା ।)

ସୁର - ହାତ ଛାଡ଼ିଦେ, ମୁଁ ଯାଏ ।

ଶାନ୍ତି - କୁଆଡ଼େ ଯିବ କୁହ !

ସୁର - ସେ କଥା ଜାଣି ତୋର ଲାଭନାହିଁ । ଛାଡ଼ ମୁଁ ଯାଏ ।

ଶାନ୍ତି - ବୁଝିଲି କଟକ ଫେରିଯାଉଚ ତ ?

ସୁର - ହଁ ।

ଶାନ୍ତି - ଆଜି ଆସି ଆଜି ଫେରିଯିବ ?

ସୁର - ସେ କଥା ତୋର ପଚାରିବା ଦରକାର ନାହିଁ...

ଶାନ୍ତି - କିନ୍ତୁ କାହିଁକି ମତେ ଏ ଦଣ୍ଡ ଦଉଚ ?

ସୁର - ଓ, ଖୁବ୍ ବାଧିଯାଇଚି ପରା ! ବେଶ୍ ତ ଲମ୍ବା ଲମ୍ବା କଥା କହିଶିଖିଚୁ, ଆଉ ଦୁଃଖ କ'ଣ ?

ଶାନ୍ତି - ମୋ ଦୁଃଖ ମୁଁ ବୁଝିବି, କିନ୍ତୁ ବଡ଼ମା' କି ଦୋଷ କରିଥିଲେ, ଆଜି ଆସି ଆଜି ଫେରିଗଲେ ସେ ଦେହଧରି ରହିପାରିବେ ତ ?

ସୁର - ବଡ଼ମା' କଥା ବଡ଼ମା' ଜାଣେ, ସେଥିରେ ତୋର ମୁଣ୍ଡ ବଥାଇବା ଦରକାର ନାହିଁ । ତୋର ଖାଲି ଏତିକି ଜାଣିରଖିବା ଉଚିତ୍ ଯେ ମୋ କଥାର ତୁ କିଛି ମୂଲ୍ୟ ଦେଇନାହୁଁ ।

(ବ୍ୟାଗ୍‌ଟା ହାତରେ ଧରି ଚାଲିଗଲା, ପଛେ ପଛେ ସେଠାକୁ ଆସିଲେ ପାର୍ବତୀ ଆଉ କନ ।)

ପାର୍ବତୀ - ସୁର କ'ଣ କଟକ ଚାଲିଗଲା ଶାନ୍ତି ? ଆଜି ଆସି ଆଜି ଚାଲିଗଲା ।

(ଶାନ୍ତି କିଛି କହିପାରିଲା ନାହିଁ, ଖାଲି ତଳକୁ ଚାହିଁ ଠିଆହେଲା, ତା' ଆଖିରୁ ଧାର ଧାର ଲୁହ ବୋହୁଥିଲା ।) ବୁଝିଲି, ତୁ ବି ତାକୁ ଅଟକେଇପାରିଲୁ ନାହିଁ । ଏଠୁ ଯାଇ ମୋ ଆଗରେ ଗୁହାରି କରୁଥିଲା, ମୁଁ କହିଲି, "ତୁ ଆଉ ମଧୁଦାଦା କେହି ଏଠୁ ଶାନ୍ତିକି ନେଇପାରିବ ନାହିଁ, ମୋ ଘରର ଲକ୍ଷ୍ମୀ ସେ, ହାତଗଣ୍ଠିଟା ପଡ଼ିନି ବୋଲି ମୋର କ'ଣ ତା'ଠାରେ ଦାବିନାହିଁ ? ମୁଁ ତାକୁ ଛାଡ଼ିବି ନାହିଁ", ଏତିକି କଥାରେ ରାଗିକରି ଚାଲିଗଲା ।

ଶାନ୍ତି - ମୋର ସବୁ ଦୋଷ ବଡ଼ମା', ମୋରି ସକାଶେ ତୁମେ ଏତେ କଷ୍ଟପାଉଚ ।

ପାର୍ବତୀ - ଲକ୍ଷ୍ମୀ ମା'ଟା ମୋର, ତୁ କିଛି ଦୋଷ କରିନୁ । ସେଇ ପାଗଳଟା କଥାରେ ପଡ଼ି ତୁ ଯାଇଥା'ନ୍ତୁ କଟକ ପାଠ ପଢ଼ିବାକୁ! ରାଗିକରି ଯାଇଚି, ଯାଉ - କେତେଦିନ ତେଣେ ରହିବ ! ମୋ ଆଖିରୁ ଲୁହ ବୋହିଲେ ଦିନ ଦି'ଟା ତେଣେ ସେ ଥୟ ଧରି ରହିପାରିବ ନାହିଁ । ତୁ କାନ୍ଦନା ମା', ଆ, ମୋ ପାଖରେ ତେଣେ ବସିବୁ । ଆଜି ତୁ ଯିବୁନାହିଁ ତୁମ ଘରକୁ, ଏଇଠି ରହିବୁ ମୋ ପାଖରେ । ପାଗଳଟା ! ରାଗିକରି ଚାଲିଯାଇଚୁ, ଦେଖିବି ମୁଁ କେତେଦିନ ଭଲା ତୁ ତେଣେ ରହିବୁ ? (ଚାଲିଗଲେ)

ଶାନ୍ତି - ଏତେଦୂର ତ ମୁଁ ଆଶା କରିନଥିଲି କନ !

କନ - ସେଇଆ ତ, ଆଜି ଆସି ଆଜି ଚାଲିଗଲେ !

ଶାନ୍ତି - ଗଲାବେଳେ ମତେ କ'ଣ କହିଗଲେ ଜାଣୁ କନ, ମୁଁ ତାଙ୍କ କଥାରେ କୌଣସି ମୂଲ୍ୟ ଦେଇନାହିଁ । କଳିକଜିଆ ହୁଏ, ଯୁକ୍ତି ତର୍କ ଚାଲେ । ସବୁଦିନେ ମତେ କହନ୍ତି, "ଶାନ୍ତି, ଗୋଟାଏ ଗୀତ ଗା' ।" ଆଉ ଆଜି କହିଗଲେ, "ଶାନ୍ତି, ତୋର

ଜାଣିରଖିବା ଉଚିତ୍ ଯେ ତୁ ମୋ କଥାରେ କୌଣସି ମୂଲ୍ୟ ଦେଇନାହୁଁ ।" ତେବେ କ'ଣ କନ, ସେ ମୋଠୁଁ ପ୍ରତିଶୋଧ ନେବେ ? ମୋ ଜୀବନର କୌଣସି ମୂଲ୍ୟ ମତେ ଦେବେନାହିଁ ।

## ଷଷ୍ଠ ଦୃଶ୍ୟ

(କଟକ ସହରର ଗୋଟାଏ ଗଳି)

ରଙ୍ଗା – ହଁ, ମୁଁ ପ୍ରତିଶୋଧ ନେବି । ତା ଜୀବନର କୌଣସି ମୂଲ୍ୟ ମୁଁ-ଦେବି ନାହିଁ । ତାରି ସକାଶେ ମୁଁ ଦେଶଦ୍ରୋହୀ ହେଇଚି । ତା'ଉପରେ ବିଶ୍ୱାସ ରଖି ମୁଁ ଆଜି ହେଇଚି ବିଶ୍ୱାସଘାତକ; କିନ୍ତୁ ସେ ଆଜି ହେଇଚି ପ୍ରଫେସର୍ ଦାସଙ୍କ ପ୍ରଣୟିନୀ ।

କାଳୀ – ଖଣ୍ଡେ ଫଟ ନେଇ ତୁ ମୀରାର କ'ଣ କରିପାରିବୁ ଭଲା କହିଲୁ ?

ରଙ୍ଗା – ମୀରା, ମୀରା, ତୁ ଜାଣୁ କାଳୀ, ମୁଁ ମୀରାକୁ ନେଇ କି ସ୍ୱପ୍ନ ଦେଖୁଥିଲି । ବି.ଏ. ପାସ୍ କରି ସେ ଆମ ଦଳରେ ଯୋଗ ଦେଇଥା'ନ୍ତା – ତା'ପରେ ବିଶ୍ୱନାଥକୁ ଦଳରୁ ତଡ଼ି ମୁଁ ହେଇଥା'ନ୍ତି – ଦଳର ନେତା ଆଉ ମୀରା ହେଇଥା'ନ୍ତା ମୋର – ଗୁପ୍ତଚର । ଗୋଟାଏ ବର୍ଷ ଭିତରେ ମୁଁ ତିନି ତିନିଟା ମିଲ୍‌ର ମାଲିକ ହୋଇପାରିଥା'ନ୍ତି । କିନ୍ତୁ ମୋର ସେ ସ୍ୱପ୍ନକୁ ଭାଙ୍ଗିଦେଇ ସେ ଆଜି ହେଇଚି ପ୍ରଫେସର୍‌ର ପ୍ରଣୟିନୀ ।

କାଳୀ – ତୁ ତା କଥାକୁ ଛାଡ଼ୁ କମ୍ରେଡ୍ – ବିଚାରୀ ଏକାବେଳକେ ଭାଙ୍ଗିପଡ଼ିଚି, ଆମେ ସେ ଫଟ ନେବା କଥାଟା ଏ ପର୍ଯ୍ୟନ୍ତ ସେ ପ୍ରଫେସର୍ ଦାସଙ୍କୁ କହିନାହିଁ । ସତେ କମ୍ରେଡ୍, ତାକୁ ଦେଖି ମୋର ଭାରି ଦୁଃଖ ହେଲା । ତା'ର ସେ ଫୁର୍ତ୍ତି – ସେ ଚେହେରା – ସବୁ କିଛି ନଷ୍ଟ ହେଇଗଲାଣି ।

ରଙ୍ଗା – ତୁ ଚୁପ୍‌କର ! ତା'ର ଚେହେରା କଥା ଭାବି ତୁ ଆଉ ତୋ ଚେହେରା ନଷ୍ଟ କରନା ।

କାଳୀ – ଚେହେରା ଆଉ କ'ଣ ଅଛି କମ୍ରେଡ୍ । ଦଳରୁ ତୁ ଇସ୍ତଫା ଦେଲେ ସିଗ୍ରେଟ୍ ବିରହ ଦିନକୁ ଦିନ ବଳିପଡୁଚି ।

ରଙ୍ଗା – ମୁଁ କହୁଛି କାଳୀ, ଏମିତି ସ୍ତ୍ରୀଲୋକଙ୍କ ପରି ତୁ ଯଦି କାନ୍ଦିବାକୁ ଚାହୁଁ ତ ମୋ ସାଙ୍ଗ ଛାଡ଼ି ଦେ' ।

କାଳୀ – ମରିଯିବି କମ୍ରେଡ୍, ତୋ ସାଙ୍ଗ ଛାଡ଼ିଦେଲେ ମତେ ସିଗ୍ରେଟ୍ ସାଙ୍ଗ ବିଲ୍‌କୁଲ୍ ଛାଡ଼ିଦେବାକୁ ପଡ଼ିବ । କ'ଣ କରିବାକୁ ହେବ ତୁ କହ ।

ରଙ୍ଗା – ଆଜିକାର ପ୍ରୋଗ୍ରାମରେ କ'ଣ ଅଛି ଜାଣୁ ?

କାଳୀ – ଧେତ୍ ତେରି ପ୍ରୋଗ୍ରାମ, ଏଇ ପ୍ରୋଗ୍ରାମ ଇ ଦିନେ ଆମକୁ ପଶୁପତି ଭବନକୁ ପଠାଇଦେବ । ସେଦିନ ରାୟବାହାଦୁର ଘର ପ୍ରୋଗ୍ରାମର ଅବସ୍ଥାଟା କ'ଣ ହେଲା ଦେଖିଲୁ ?

ରଙ୍ଗା - ସେଦିନ କାଳୀ, ମୁଁ ଭାବିଥିଲି ଯେ ଏପରି ଗୋଟାଏ ଅଭିନୟ କରି ରେଖା ମହାନ୍ତିକୁ ପଟାଇ ନେଇ ପାରିବେ କାମଟା ହାସଲ ହେଇଯିବ । କିନ୍ତୁ ସେଇ ରାସ୍କେଲ୍ ଅବିନାଶ...

(ଏଇ ସମୟରେ ସେଇ ବାଟ ଦେଇ ଆସୁଥିଲା ମଦନା - ତା ହାତରେ ଗୋଟାଏ ଟିଫିନ୍ କ୍ୟାରିଅର୍, ସେ ଚିନାବାଦାମ ଖାଇ ଖାଇ ଚାଲିଚି ।)

ରଙ୍ଗା - ଓ ମାଲିକେ !

ମଦନା - କ'ଣ ବାବୁ !

ରଙ୍ଗା - ତମ ନାଁ କ'ଣ ?

ମଦନା - ଆଜ୍ଞା ମଦନା ।

ରଙ୍ଗା - କ'ଣ କର ?

ମଦନା - ରାୟବାହାଦୁର ଘର ଚାକର ।

ରଙ୍ଗା - କୁଆଡ଼େ ଚାଲିଛ ।

ମଦନା - ମିନି ଦେଈହେରିକାଙ୍କ ସ୍କୁଲକୁ, ତାଙ୍କ ପାଇଁ ଜଳଖିଆ ନଉଚି ।

କାଳୀ - ତମ ଦେଈ କ'ଣ ବୋଡ଼ିଂରେ ରହିଲେଣି କି ?

ମଦନା - ନାଇଁ ବାବୁ! ଦେଢୁଟା ଛୁଟିରେ ଜଳଖିଆ ଖାଇବେ ନାଇଁ ?

କାଳୀ - କିରେ ଚାରିଟା ଆସି ବାଜିବ - ତୁ ଦେଢୁଟା ଛୁଟି ପାଇଁ ଜଳଖିଆ କ'ଣ ନଉଚୁ ?

ମଦନା - କ'ଣ କହିଲ ବାବୁ ! କେଇଟା ବାଜିବ ?

କାଳୀ - ଚାରିଟା ।

ମଦନା - ନାଇଁ ବାବୁ ମିଛ କଥା । (ଏତିକି ବେଳକୁ ଦୂରରୁ ଘଣ୍ଟା ଶୁଭିଲା)

କାଳୀ - ଏଇ ଶୁଣ ଚାରିଟା ବାଜିଲା (ଘଣ୍ଟାର ତାଳେ ତାଳେ) ଏକ୍, ଦୁଇ, ତିନି-ଚାରି-

ମଦନା - ମରିଯିବି ଲୋ ବୋଉ, ଚାକିରି ଖଣ୍ଡକ ଗଲା, ମୁଁ କ'ଣ କରିବି ବାବୁ ?

କାଳୀ - ଆରେ ଚାକିରି ଯିବ କାହିଁକି ?

ମଦନା - ଆଜ୍ଞା ଗୋଟାଏ ବେଳୁ ଘରୁ ବାହାରିଲିଣି, ପାଖରେ ପଇସା ଚାରଣା ଥିଲା, ସୂତାହାଟ ଛକରେ ବସି ବାବୁ ତିନିଅଣାର ଚିନାବାଦାମ କିଣି ଖାଉଚି ତ ଖାଉଚି ଆସି ଚାରିଟା ବାଜିଲାଣି । ମୁଁ କ'ଣ କରିବି ବାବୁ ? ଅବିନାଶବାବୁ ଆଜି ମତେ ଖାଇଯିବେ । କି ଜବାବ ତାଙ୍କୁ ଆଜି ଦେବି ? ହଁ, ବାବୁ ତମେ କ'ଣ କହିଲ ଚାରିଟା ବାଜିଲାଣି, ଏଡ଼େ ବେଗି ଚାରି ବାଜିଲାଣି - ତେବେ ବାବୁ ଆଜି ଖେଳଛୁଟି ହେଇନାଇଁ ?

କାଳୀ - ଧେତ୍ ଖେଳଛୁଟି ହେଇନାହିଁ, ଆରେ ଆମେ ତା'ହେଲେ ଏଠି ଅଛୁ କାହିଁକି ? ଦିନେ ଖେଳଛୁଟି ନ ହେଲେ ତା ଆରଦିନ ସ୍କୁଲ୍‌ରେ ଷ୍ଟ୍ରାଇକ୍ କରାଇ ଦବୁ ନାଇଁ !

ମଦନା - ତା'ହେଲେ ବାବୁ ମୁଁ କ'ଣ କରିବି ?

ରଙ୍ଗା - ଏ ମଦନ ଶୁଣ୍ ।
ମଦନା - କ'ଣ ବାବୁ ?
ରଙ୍ଗା - ଆରେ ତୁ ମଣିଷ ତ ?
ମଦନା - କି କଥା କହୁଚ ବାବୁ, ମୁଁ ମଣିଷ ହେଇନଥିଲେ, ବାହା ହେଇଥା'ନ୍ତି କମିତି ?
କାଳୀ - ବାଃ', ବାଃ', ତୁ ମଣିଷ ହେଇ ଏ କାମ କାହିଁକି କରୁଚୁ ?
ମଦନା - ମୁଁ କ'ଣ ବାବୁ ଜାଣିଥେଲି ଏତେ ବେଏଗି ବେଏଗି ଚାରି ବାଜିଯିବ ବୋଲି ?
ରଙ୍ଗା - ଆରେ ମୁଁ ସେ କଥା କହୁନାଇଁ, ଟଙ୍କା କେଇଟା ଦରମା ପାଇଁ ତୁ କାହିଁକି ଏମିତି ଖଟି ଖଟି ମରୁଚୁ ?
ମଦନା - ଖଟିଲି ଆଉ କୋଉଠି ବାବୁ! ଦେଖୁନ ଏଇ ଦିନ ଗୋଟାକରୁ ଆସି ଚାରିଟା ବାଜିଲାଣି - ବସି ବସି ଚିନାବାଦାମ ଖାଉଚି, ସେଥିରୁ ମତେ କ'ଣ ମିଳିବ ବାବୁ । ଅବିନାଶବାବୁ ମତେ ଆଜି ଖାଇଲେ ।
ରଙ୍ଗା - ଆଚ୍ଛା, ତୁ ଗୋଟାଏ କଥା କର, ତୋ ଚାକିରି କେବେ ଯିବନାଇଁ, ତା ଉପରେ ପୁଣି ତୋର ଦରମା ବଢ଼ିଯିବ ।
ମଦନା - କ'ଣ କିମିତି କରିବି ବାବୁ କହିଲ ?
ରଙ୍ଗା - ତୁ କ'ଣ ସଂଜ ଛଅଟା ବେଳେ ଗଙ୍ଗାମନ୍ଦିର ପୋଖରୀ ଉପରେ ସେଇ ଭଙ୍ଗା କୋଠାକୁ ଆସିବୁ, ସେଠି ତମ ଘରୁଆ ଚାକରମାନଙ୍କର ଗୋଟାଏ ସଭା ହେବ, ଯାହା କରିବାର କଥା ସେଇଠି ଠିକ୍ ହବ । ତୁ ଏଇକ୍ଷଣି ଯା-
ମଦନା - (ଯାଉ ଯାଉ) ହେଲେ ସେ ଅବିନାଶବାବୁ.....
କାଳୀ - ଏ ଅବିନାଶବାବୁ! ତୋ ଚାନ୍ଦାଟା ଦେଇଯା' ।
ମଦନା - ଚାନ୍ଦା, ଏଥିରେ ବି ଚାନ୍ଦା ଅଛି, କେତେ ଦେବି ବାବୁ ?
କାଳୀ - ବେଶୀ ନୁହେଁ, ଅଣାଏ; ଅଣାଏ ତ ପାଖରେ ଥିବ ଦେଇଦେବୁ ।
ମଦନା - (ଅଣ୍ଟାରୁ କାଢ଼ି) କ'ଣ ବାବୁ ଜାଣିଲା ପରି କହିଦେଲ!
କାଳୀ - ଆଉ ପାଠପଢ଼ିଥେଲୁ କାହିଁକି ?
ମଦନା - ହଉ ବାବୁ ଯାଉଚି । ସଞ୍ଜବେଳକୁ ତ ଆସିବି, ହେଲେ ସେଇ ଅବିନାଶବାବୁ..... (କହି କହି ଚାଲିଗଲା)
କାଳୀ - (ଅଣାଟିକୁ ମଝିଆଙ୍ଗୁଠି ଓ ବୁଢ଼ା ଆଙ୍ଗୁଠି ଟିପ ସାହାଯ୍ୟରେ ଘୂରେଇ ଘୂରେଇ ଛାଡ଼ିଦେଇ ପୁଣି ଦୁଇ ପାପୁଲି ଭିତରେ ଚାପି ଧରି) କମ୍ରେଡ୍ ! ଆମକୁ କିଏ ପରା କହିଥିଲା 'ଜୁଆଚୋର' ।
ରଙ୍ଗା - ବିଶ୍ୱନାଥ ବି ସେଇ କଥା କହିଥିଲା; କିନ୍ତୁ ଆମେ ଜୁଆଚୋର ହେଲୁ କାହିଁକି ? ଆମକୁ ଜୁଆଚୋର କଲା କିଏ, ଯାର ଉତ୍ତର ଦେଇପାରିବୁ କମ୍ରେଡ୍ ?
କାଳୀ - ଏ ସିଗ୍ରେଟ୍ ନିଶା ।

ରଙ୍ଗା - କିନ୍ତୁ ଖୁବ୍ ସିଗ୍ରେଟ୍ ଆମେ ଖାଉଥିଲୁ, ଢେର ସୁଟ୍ ପିନ୍ଧୁଥିଲୁ, ବେଶ୍ ଆରାମରେ ଚଳିଯାଉଥିଲୁ, କିଛି ଅଭାବ ନଥିଲା ଆମର । ବୁଝିଲୁ କମ୍ରେଡ୍ ଏ ସିଗ୍ରେଟ୍ ନିଶା ଆମକୁ ଜୁଆଚୋର କରିନାହିଁ, ଆମକୁ ଜୁଆଚୋର କରିଛି କମ୍ରେଡ୍ ବିଶ୍ୱନାଥ । ହଠାତ୍ ତା' ମୁଣ୍ଡରେ ଦିନେ କି ଖିଆଲ ପଶିଲା କେଜାଣି, ବମ୍ବେ ସେଣ୍ଟରରୁ ଟଙ୍କା ଆଣିବା ବନ୍ଦ କରିଦେଲା, କହିଲା କ'ଣ ନା, "ଗୋଟାଏ ସାମ୍ରାଜ୍ୟବାଦୀ ସରକାର ଆମକୁ ଲାଞ୍ଚ ଦଉଚି ।" ସେଇ ଦିନଠାରୁ ଆମକୁ ଜୁଆଚୋରୀ କରିବାକୁ ହେଲା । ତା'ପରେ ପୁଣି ଦାଉ ସାଧିଲା ମୀରା..... ବୁଝିଲୁ କମ୍ରେଡ୍, ଟଙ୍କାର ଅଭାବ ମତେ ଆଜି ବାଧୁନାହିଁ । ମତେ ବାଧୁଛି ମୀରାର ଅଭାବ ।

କାଳୀ - ପୁଣି ସେଇ ମୀରା !

ରଙ୍ଗା - ହଁ, ମୀରା, ଏତେ ସୁବିଧାରେ ମୁଁ ତାକୁ ଛାଡ଼ିଦେଇ ପାରିବିନାହିଁ । ମୋର ସ୍ୱପ୍ନ ଥିଲା ମୀରାକୁ ଏକସ୍‌ପ୍ଲଏଟ୍ କରି ମୁଁ ରୋଜଗାର କରିବି ଟଙ୍କା; କିନ୍ତୁ ଆଜି ସେ ମୋତେ ଏକ୍‌ସପ୍ଲଏଟ୍ କରି ମୋର ଚେଷ୍ଟାରେ କଲେଜ୍‌ରେ ପାଠପଢ଼ି ସେ ପାଇଛି ପ୍ରଫେସର୍ ଦାସର ପ୍ରେମ - ହାଃ, ହାଃ, ହାଃ ।

## ସପ୍ତମ ଦୃଶ୍ୟ

(ମୀରାର ସେଇ ଘର । ଆଇନା ସାମ୍‌ନାରେ ଠିଆ ହୋଇ ସେ ଗାଉଛି ଗୋଟାଏ ଗୀତ- ଗୀତରେ ବେଦନାର ଛାୟା ଫୁଟିଉଠିଛି ।)

(ଗୀତ)

ମୁଁ ଯେ ଅଞ୍ଜଳି ଭରି ଅଜାଡ଼ିଦେଲି ଗୋ,
ସାରା ଜୀବନର ସରାଗ ତବ ଚରଣେ ।
ତା ବଦଳେ ଲାଭ ହେଲା ଗୋ ଏତିକି
ଖୋଜି ବୁଲେ ନିତି ନୀରବ ନୟନେ ।୧ ।
    ସପନ ମାୟାରେ ଆପଣାରେ ଭୁଲି,
    ଛନ୍ଦିଦେଲି ମୋର ତନୁ ମଞ୍ଜରୀ,
    ନିରିମମ ତୁମ ପାଷାଣ ବୁକୁରେ -
    କରୁଣାର ଅନୁସରଣେ ।୨ ।
ଅନ୍ତରେ ଯେବେ ଥିଲା ଏ ଛଳନା,
ନାରୀ ତୁମ ମନ ଭୁଲିବା ଖେଳନା,
ନୟନ ଲୋତକେ କଳଙ୍କର ଚିତା
ଦେଇ ଭାଳେ ବିନା କାରଣେ ।୩ ।

(ମୀରାର ଅଲକ୍ଷ୍ୟରେ ପ୍ରବେଶ କଲେ ପ୍ରଫେସର୍ ଦାସ ।)

ପ୍ର.ଦାସ - Why this paradox Mira ? ତୁମ କଣ୍ଠରେ ବେଦନାର ଗୀତି କାହିଁକି ?

ମୀରା - ଓ, ତୁମେ ଆସିଛ ?

ପ୍ର.ଦାସ - କିନ୍ତୁ ତୁମେ ଏ ଗୀତ ଗାଇବ କାହିଁକି ? ବୁଲବୁଲ୍‌ର ଗାନରେ ବେଦନା ....

ମୀରା - ଖାଲି ସେତିକି ନୁହେଁ, ଗୋଲାପରେ ଆଉ ଗନ୍ଧନାହିଁ, କକ୍‌ଟେଲ୍‌ର ପେଗ୍‌ଟା ଖାଲିପଡ଼ିଛି, ଆଉ ଚାନ୍ଦର ସରବତରେ ବୋଧହୁଏ ଆଜିକାଲି ମିଶିଛି ଟିକିଏ ସିରାଜି, ବେଶ୍ ନିଶା ହୁଏ ସେଥିରେ.....

ଦାସ - Don't be silly Mira! ତୁମେ ପୁଣି ଫେରିଯାଉଛ ସେଇ କେଦାରଗୌରୀଙ୍କ ଯୁଗକୁ ।

ମୀରା - ଓଃ, କେଦାରଗୌରୀଙ୍କର ଉପାଖ୍ୟାନଟା ତା'ହେଲେ ତୁମର ମନେଅଛି ।

ଦାସ - କିନ୍ତୁ ଆମକୁ ଭୁଲିବାକୁ ହେବ; ହଁ ମୀରା, ଆମକୁ ଭୁଲିବାକୁ ହେବ ସେଇ ଚପଳମତି ପିଲା ଦୁହିଁଙ୍କର କଥା- ପ୍ରେମର କାହାଣୀ - ନହେଲେ ସେମାନଙ୍କ ପରି ଆମର ମଧ ଭୁଲ୍ ହେବାର ଆଶଙ୍କା ରହିଛି ।

ମୀରା - ସେମାନଙ୍କୁ ଆଉ ଭୁଲି ଲାଭ କ'ଣ କୁହ ? ଭୁଲ୍ ତ ଆମର ହେଇସାରିଚି ।

ଦାସ - ଆମର ଭୁଲ୍ ହେଇଚି ?

ମୀରା - (ପ୍ର.ଦାସଙ୍କ ମୁହଁକୁ ସ୍ଥିର ଦୃଷ୍ଟିରେ ଚାହିଁ) ନା, ମୁଁ ଭୁଲ୍ କହିଚି, ମୋର ଭୁଲ୍ ହେଇଚି - ତମର ନୁହେଁ ।

ଦାସ - ତୁମର ଆଜି ହେଇଚି କ'ଣ କୁହ ତ ମୀରା ?

ମୀରା - ଆଜିକୁ କେତେଦିନ ହେଲା ତମେ ଏଠିକି ଆସିନ କହିପାରିବ ?

ଦାସ - ଏତେ ଯେ ଦାମୀ ଦାମୀ କଥା ସବୁ କହିଗଲ- ତା'ମୂଳରେ ତା'ହେଲେ ଅଛି ମୋର ଏଇ ଏଗାରଟି ଦିନର ଅନୁପସ୍ଥିତି । (ହସି ଉଠିଲେ) ତମ ପ୍ରେମର Velocity ଗୌରୀକୁ ଟପିଯାଇଛି ମୀରା - ଆଛା, ତୁମେ କୁହ ତ ତିନିଦିନ ହେଲା ତୁମେ କଲେଜ୍ ଯାଉ ନାହିଁ କାହିଁକି ?

ମୀରା - ତାରି ଖବର ନବାପାଇଁ ତା'ହେଲେ ତୁମେ ଏଠିକି ଆସିଚ !

ଦାସ - ମୋର ଆସିବା କଥା ମୁଁ ଆସିଚି, ତୁମେ କୁହ ତ ଆଗେ ତୁମର କ'ଣ ହେଇଚି ?

ମୀରା - ଶୁଣି ଲାଭନାହିଁ ତୁମର ।

ଦାସ - ଲାଭ ମୁଁ ଚାହୁଁନାହଁ ମୀରା - ଆମ ବ୍ୟବସାୟର ଲାଭ କ୍ଷତି ହିସାବ କରିବା ପାଇଁ ସମୟ ଏ ପର୍ଯ୍ୟନ୍ତ ଆମର ହେଇନି ।

ମୀରା - ହଁ, ତୁମେ ତା କହିପାର ।

ଦାସ - ବେଶ୍ ତୁମେ ତା'ହେଲେ କୁହ, ଏଇ ତିନିଦିନ ଭିତରେ ତୁମେ କେତେ କ'ଣ ଲାଭ କରିଚ - ଆଉ କ୍ଷତି ମଧ କ'ଣ ହେଇଚି ?

ମୀରା - କିନ୍ତୁ ତୁମେ ଯେ କହୁଚ ଲାଭ କ୍ଷତି ହିସାବ କରିବାର ସମୟ ଏପର୍ଯ୍ୟନ୍ତ ତମର ହେଇନି ।

ଦାସ - ମୋ ଆଖି ସାମ୍ନାରେ ତୁମେ ଗୋଟାଏ ଗୋଲାକାର ବୃତ୍ତ ଆଙ୍କି ଦେଉଚ ମୀରା - ଯାହାର ଆରମ୍ଭ ଯୋଉଠି ଶେଷ ମଧ ସେଇଠି - ତମ କଥାର ଅର୍ଥ ଠିକ୍ ଏହିପରି ହଉଚି ।

ମୀରା - ମୋ ଜୀବନର ଏଇ ସନ୍ଧିକ୍ଷଣ - ଏଥିରେ ମୁଁ ମୋର ସମସ୍ତ କଥା ହରେଇ ବସିଛି ।

ଦାସ - ମୀରା.....

ମୀରା - ଭାବିଥିଲି ତୁମେ ଆସିଥିଲେ ମୁଁ ମୋର ଏଇ ଭଙ୍ଗାମନକୁ ଯୋଡ଼ି ପୁଣି ହସି ହସି ତୁମ ଆଗରେ ଯାଇ ଠିଆହେବି । କିନ୍ତୁ ତୁମକୁ ଦେଖିଲା ପରଠୁଁ ମୁଁ ଯେ ଆଉରି ଭାଙ୍ଗିପଡୁଚି ।

ଦାସ - କୁହ ମୀରା - କୁହ ତମର କ'ଣ ହେଇଚି ?

ମୀରା - ସେ ଭରସା ତୁମେ ମତେ ଦଉଚ ?

ଦାସ - ତା'ହେଲେ ତୁମେ କହିବାକୁ ଚାହଁ.....

ମୀରା - ହଁ, ଠିକ୍ ମୁଁ ସେଇଆ କହିବାକୁ ଚାହେଁ, ମୁଁ ଆଜି ତୁମ...

ଦାସ - ମୀରା !

ମୀରା - ହଁ, ମୁଁ ଆଜି ତୁମ ସନ୍ତାନର ମା'-

(ମୀରାର ଏ ଅବସ୍ଥାର ସୁଯୋଗ ନେବାପାଇଁ ପ୍ର.ଦାସ ମୁହୂର୍ତ୍ତକରେ ପ୍ରସ୍ତୁତ ହୋଇଗଲେ ।)

ଦାସ - ସନ୍ତାନର ମା'!! କୁମାରୀ ମୀରା ଆଜି ସନ୍ତାନର ମା', Congratulations Mira - ଇତିହାସର ଛାତ୍ରୀ ଆଜି ଇତିହାସର ଏଇ ଉଲ୍ଲେଖଯୋଗ୍ୟ ଘଟଣା ପାଇଁ ମୁଁ ଆଜି ତୁମକୁ congrtulation ଜଣାଉଚି ।

ମୀରା - (କାନ୍ଦି ପକାଇ) ମୁଁ ଜାଣେ ତୁମେ ମୋ କଥା ଶୁଣି ମତେ ଏମିତି ବିଦ୍ରୂପ କରିବ ।

ଦାସ - ଆଉ ଯେତେବେଳେ ସମସ୍ତ ସହରଟା ତୁମକୁ ବିଦ୍ରୂପ କରି ହସିଉଠିବ - ସେତେବେଳେ ତୁମେ କ'ଣ କରିବ ମୀରା ? କାହା ନିକଟରେ ଆଣିବ ତୁମର ଏହି ଅଭିଯୋଗ ?

ମୀରା - ମୋର ହେଇ ତମେ ଏ ପ୍ରଶ୍ନର ଉତ୍ତର ଦିଅ । କୁହ କାହା ନିକଟରେ ମୁଁ ଆଣିବି ମୋର ଏହି ଅଭିଯୋଗ ? କିଏ ଆଉ ମୋର ଅଛି ।

ଦାସ - ତୁମେ ସେଇ ମୀରା ନା ? ହାତରେ ମଦର ଗ୍ଲାସ୍ ଧରି ଯେ ଦିନେ କହୁଥିଲା - ମୀରା ମଦ ଖାଏ, ମଦ ଖାଇ ମାତାଲ ହବାକୁ ନୁହେଁ । ଜୀବନକୁ ଉପଭୋଗ କରିବା ପାଇଁ ଦୁନିଆର କୌଣସି ବିଦ୍ରୂପକୁ ସେ ଖାତିର କରେନା - ଏଇ କଥା ପ୍ରମାଣ କରିବା ପାଇଁ ସେ ମଦ ଖାଏ - ସେ ବ୍ୟଭିଚାର କରେ - ତା' ଦେହର ଶିରାପ୍ରଶିରା ସବୁ ଇସ୍ପାତ୍‌ରେ ତିଆରି ।

ମୀରା - କିନ୍ତୁ କିଏ ମତେ ଏ ବାଟକୁ ଟାଣିଆଣିଥିଲା ? କାହା ଉପରେ ଭରସା ରଖି ମୁଁ ଦୁନିଆକୁ ଭ୍ରୂକ୍ଷେପ କରିନଥିଲି ।

ଦାସ - ମୋ ଉପରେ ଭରସା ରଖି ତୁମେ ଇତିହାସରେ ଅନର୍ସ ରଖି ପାସ୍ କରିଯାଇପାର

ମୀରା - କିନ୍ତୁ ଦୁନିଆର ଭ୍ରୂକ୍ଷେପକୁ ଏତେ ସହଜରେ ଏଡ଼ାଇ ଦେଇପାରିବ ନାହିଁ । ଆଚ୍ଛା, ଦୁନିଆ କଥା ଥାଉ, ତୁମର ମା'....

ମୀରା - ତାକୁ ମୁଁ ସବୁକଥା କହିଦେଇଚି ।

ଦାସ - ଚମତ୍କାର, ଏ ଅବସ୍ଥାରେ ତୁମେ ଏ ବୋକାମି କରିବାକୁ ଗଲ କାହିଁକି ଶୁଣେ ?

ମୀରା - ବୋକାମି କରିଚି ନା ?

ଦାସ - ନହେଲା ଖୁବ୍ ଚାଲାକି କରିଚ । ଆଚ୍ଛା, ଶୁଣିକରି ସେ କ'ଣ କହିଲେ ?

ମୀରା - କିଛି ନା, ତା'ର ଧାରଣା....

ଦାସ - ବୁଝିଲି, ତାଙ୍କର ଧାରଣା ଯେ ମୁଁ ତୁମକୁ ବିବାହ କରିବି ।

ମୀରା - ଆଜି ତ ନୁହେଁ, ମୂଳରୁ ସେ ଧାରଣା ତା'ର ରହିଚି ।

ଦାସ - (ହସିଉଠିଲେ)

ମୀରା - ଓଃ, ତୁମେ ଏତେ ଜୋର୍‌ରେ ହସନା, ଯା'ଦ୍ୱାରା ତୁମେ ମୋ ମା'ର ସରଳ ବିଶ୍ୱାସକୁ ଆଘାତ କରୁଚ ।

ଦାସ - ତାଙ୍କର ସରଳବିଶ୍ୱାସକୁ ଆଘାତ କରିବା ପାଇଁ ମୁଁ ହସୁନାହିଁ । ମୀରା - ତାଙ୍କର ସେଇ ସରଳ ବିଶ୍ୱାସର ସୁଯୋଗ ନେଇ ତମେ ନିଜକୁ ଆଜି ଯେଉଁ ଅବସ୍ଥାକୁ ଟାଣିଆଣିଚ ସେଇକଥା ଭାବି ମୁଁ ହସୁଚି ।

ମୀରା - କିନ୍ତୁ ତୁମର ଏ ହସର ପ୍ରତ୍ୟେକ ଲହରୀ ଯାଇ ଆଘାତ କରୁଚି କାହାକୁ ଜାଣ.....

ଦାସ - ଜାଣେ, ଆମର ଅତୀତ ଦିନର ସେଇ ମୁହୂର୍ତ୍ତଗୁଡ଼ିକୁ ।

ମୀରା - ହଁ, ସେଦିନ କଲେଜ୍‌ର ଏକ୍‌ଜିବିସନ୍.....

ଦାସ - ଆଉ ଏକ୍‌ଜିବିସନ୍‌ର ଲକ୍ଷ ଲକ୍ଷ ଲୋକଗହଳିର ଦୂରରେ ଲ'କ୍ଲାସ୍‌ର ଗୋଟିଏ ଏକାନ୍ତ ନିଭୃତ କୋଣରେ ତୁମ ସହିତ ମୋର ହେଲା ପ୍ରଥମ ପ୍ରାଣ ବିନିମୟ-

ମୀରା - ତା'ପରେ ମୁଁ ମୋର ଅତି ପ୍ରିୟ ସବ୍‌ଜେକ୍ଟ ପଲିଟିକାଲ୍ ଇକନମିକ୍‌ସକୁ ଛାଡ଼ି ହେଲି ଇତିହାସର ଛାତ୍ରୀ ।

ଦାସ - ତା'ମାନେ ମୋର ଛାତ୍ରୀ ! ତା'ପରେ ଗୋଟାଏ ଭଲଦିନ ଦେଖି ହେଲା ତୁମ ଘରକୁ ମୋର ଶୁଭାଗମନ - ଆଉ ତୁମ ମା'ଙ୍କ ସହିତ ଆଳାପ ପରିଚୟ.....

ମୀରା - ସେଥିରେ ମା'ର, ମୋର ଆନନ୍ଦର ଆଉ ସୀମା ରହିଲାନାହିଁ ।

ଦାସ - କାରଣ ଗୋଟିଏ ବିଲାତ ଫେରନ୍ତା ତରୁଣ ପ୍ରଫେସର୍ ବିନା ପଇସାରେ or rather ହାତରୁ ପଇସା ଖର୍ଚ୍ଚକରି, ତାଙ୍କ ଝିଅର ପଢ଼ାଇବାର ଭାରନେଲା ।

ମୀରା - ମୋରି ଅବସ୍ଥାରେ ତୁମେ ସେଦିନ ଥିଲେ ବୁଝିପାରିଥା'ନ୍ତ ଯେ କି ବିରାଟ ତୁମର

ସେଇ ପ୍ରଲୋଭନ । ମୋ ନାରୀ ଜୀବନର ସବୁ ଆଶା ଆକାଙ୍କ୍ଷାକୁ ଦାରିଦ୍ର୍ୟର ଅଭିଶାପ ତଳେ ସମାଧିଗ୍ରସ୍ତ କରି ମୁଁ ବାଛିନେଇଥିଲି ଗୋଟାଏ ଶୁଷ୍କ ମରୁମୟ ପଥ । ଠିକ୍ ସେତିକିବେଳେ ତୁମେ ମୋର ସୁପ୍ତ ଯୌବନର ଦ୍ୱାରଦେଶରେ ଆଣି ବିଛାଇଦେଲ ତୁମର ଧନ - ତୁମର ଶିକ୍ଷା-ତୁମର ଯୌବନ - ଏ ସବୁର ଗୋଟାଏ ଦୁର୍ଦ୍ଦାନ୍ତ ପ୍ରଲୋଭନ । ତାକୁଇ ଏଡ଼ି ନପାରି ମୁଁ ସାମ୍ୟବାଦୀ ଦଳର ଟଙ୍କାରେ ତିନିବର୍ଷ ପଢ଼ି ତାଙ୍କୁ ଆଜି ଫାଙ୍କିଦେଇଛି ।

ଦାସ - ତା'ପରେ ମୁଁ ତୁମଠାରେ ଆବିଷ୍କାର କଲି ଗୋଲାପର ଗନ୍ଧ ଓ ସିରାଜୀର ନିଶା; କିନ୍ତୁ ମୀରା ! ଏସବୁ ଘଟଣାକୁ ଏକାଠି ମିଶାଇଦେଲେ ଫଳ କ'ଣ ହେଉଛି ଜାଣ ? ତମେ ତମ ଜୀବନର ଗୋଟିଏ risk (ରିସ୍କ) ନେଇଥିଲ - A dangerous risk ପାର ହୋଇଯାଇଥିଲେ ତୁମେ ହୁଏତ ମତେ ଫାଙ୍କିଦେଇ ପୁଣି ଫେରିଯାଇଥା'ନ୍ତ ସେଇ ସାମ୍ୟବାଦୀ ଦଳକୁ, କିନ୍ତୁ ତମର ଦୁର୍ଭାଗ୍ୟ ଯେ, ତମର ସେ risk successful ହୋଇପାରିଲା ନାହିଁ ।

ମୀରା - ତୁମେ ଆଜି ଯାକୁ risk କହୁଚ - ରିସ୍କ ! ନା, ନା, ତୁମେ ଏପରି ନିଷ୍ଠୁର ହୋଇପାରିବନି । ମୁଁ ଆଜି ମାତୃତ୍ୱର ଅଧିକାର ପାଇଚି - ମୋ ନାରୀ ଜୀବନର ସାର୍ଥକତା - ମା' ହେବାର ଅଧିକାର......

ଦାସ - ମା' ହେବାର ଅଧିକାର କି ମା' ହେବାର ଅଭିଶାପ ତା'ର ନିଷ୍ପତ୍ତି ତୁମେ କରିବ ମୀରା, ମୁଁ ନୁହେଁ ।

ମୀରା - କିନ୍ତୁ ଏ ନିଷ୍ପତ୍ତି କରିବାର ଶକ୍ତି ମୋର ନାହିଁ, ତା' କ'ଣ ତୁମେ ଜାଣନା ।

ଦାସ - ଖୁବ୍ ଅଛି ମୀରା - ତୁମେ ଆଜି ହସି ହସି କହିଦିଅନା ତୁମର ଏ ଦୁରବସ୍ଥା ପାଇଁ ଦାୟୀ ତୁମେ ନୁହଁ.... ଦାୟୀ ଭଗବାନ୍; କାରଣ ସେ ମା' ହେବାପାଇଁ ଜନ୍ମ ଦେଇଛନ୍ତି ନାରୀକୁ, ପୁରୁଷକୁ ନୁହେଁ ।

ମୀରା - କହିବାର ସୁଯୋଗ ଆଜି ତୁମେ ପାଇଚ - ତୁମେ ସବୁ କିଛି କହିପାର; କିନ୍ତୁ ସବୁ ପାପ ଆଉ ବ୍ୟଭିଚାର ଭିତରେ ମୋର ପରିଚୟ ହେଉଚି ଜଣେ ଶକ୍ତିହୀନା ନାରୀ - ତୁମେ ଯଦି ମୋର ଏଇ ମାତୃତ୍ୱର ଗୌରବକୁ ଅସ୍ୱୀକାର କର ତେବେ ମୁଁ....

(ଏଇଠି ଦୁର୍ବଳମନା ନାରୀକୁ ନିଜ ହାତମୁଠାକୁ ଆଣିବାର ଏକ ସୁଯୋଗ ତାଙ୍କୁ ମିଳିଗଲା ।)

ଦାସ - ନା-ନା ମୀରା, ତୁମକୁ କହୁନାହିଁ ଯେ ଗୋଟାଏ ଅଶିକ୍ଷିତା ଧାଈ ପାଖକୁ ଯାଇ ଗୋଟାଏ ନିର୍ଦ୍ଦୋଷ ଶିଶୁର ପ୍ରାଣ ନିଅ କିମ୍ବା ପଟାସିୟମ୍ ସାଇନାଇଟ୍ ଖାଇ ନିଜେ ଆତ୍ମହତ୍ୟା କର ।

ମୀରା - ତେବେ ?

ଦାସ - ପିତା ହେବାର ହୃଦୟ ନେଇ ମୁଁ ମଧ ଜନ୍ମ ହୋଇଚି । ମୀରା - ମୋ ପ୍ରାଣରେ ଆଜି ପିତୃତ୍ୱର ସ୍ପନ୍ଦନ ମୁଁ ଅନୁଭବ କରୁଚି ।

ମୀରା - ବିଶ୍ୱମୋହନ....

ଦାସ - ହଁ ମୀରା, ମୁଁ ତୁମକୁ ବିବାହ କରିବି ।

ମୀରା - ତେବେ, ତେବେ - ମୁଁ - ମା'-ମା' କାହିଁଗଲା - ମୁଁ ଯାଉଚି ତେବେ ମା'କୁ ଖବରଟା ଦେଇଦିଏଁ ।

ଦାସ - ଏମିତି ଦୁର୍ବଳ ହୃଦୟ ନେଇ କେହି କେବେ ଦୁନିଆରେ ବଞ୍ଚିପାରିନାହିଁ ମୀରା - ମା'କୁ ଯାଇ ଖବର ଦବାଟା ବଡ଼ କଥା ନୁହେଁ - ଆହୁରି କଥା ଅଛି ଶୁଣ-

ମୀରା - ଆଉ କ'ଣ କଥା ?

ଦାସ - ମୁଁ ଦରମା କେତେ ପାଏ ଜାଣ ମୀରା ?

ମୀରା - ଠିକ୍ ଜାଣେନା - କିନ୍ତୁ ସେ କଥା ଏଠି କାହିଁକି ?

ଦାସ - ସେ କଥାକୁ ବାଦ୍ ଦେଇ ଲୋକ ସ୍ୱପ୍ନ ଦେଖିପାରେ ମୀରା ; କିନ୍ତୁ ବଞ୍ଚିରହିପାରେନା - ମୁଁ ଦରମା ପାଏ ମାସକୁ ମୋଟେ ଚାଳିଶ ଟଙ୍କା । ପୈତୃକ ସମ୍ପତ୍ତି ଭିତରେ ମୋର ନିଜର ଏହି ଦେହଟି ଛଡ଼ା ଆଉ କିଛିନାହିଁ । ରାଣୀଭବନ ପରି ପ୍ରକାଣ୍ଡ କୋଠା ଭଡ଼ା ନେଇଛି । ମୋଟର, ଫୋନ୍, ପାର୍ଟି, ପିକ୍‌ନିକ୍- ସୁଟ୍- ସିଗ୍ରେଟ୍- ମୋଟ ଉପରେ ଗୋଟାଏ ପ୍ରଫେସନାଲ୍ ଆଭିଜାତ୍ୟକୁ ବଞ୍ଚାଇରଖିବା ପାଇଁ ଯାହା କିଛି ଦରକାର ସେ ସବୁ ମୋତେ ଦରକାର ମାସକୁ ଚାରିହଜାର ଟଙ୍କା ।

ମୀରା - Professional ଆଭିଜାତ୍ୟ !

ଦାସ - ହଁ, ମୀରା, ମୋ ପ୍ରଫେସର୍‌ଗିରିଟା ମୋ ରୋଜଗାରର ପନ୍ଥାନୁହେଁ, ମୋ ବଡ଼ଲୋକିଟା ମୋର ରୋଜଗାରର ପନ୍ଥା । ଅକ୍‌ସଫୋର୍ଡ୍ ଇଉନିଭର୍‌ସିଟି ମତେ ଯେଉଁ ଡିଗ୍ରୀ ଦେଇଛି, ତା ସାହାଯ୍ୟରେ ମୋ ରୋଜଗାର ମୋଟେ ଚାରିଶ - କିନ୍ତୁ ଏ ପ୍ରଦେଶର ବଡ଼ଲୋକମାନେ ମତେ ଯେଉଁ ଅଧିକାର ଦେଇଛନ୍ତି ତା' ସାହାଯ୍ୟରେ ମୋ ରୋଜଗାର ହେବ ଚାରିହଜାର ।

ମୀରା - କିନ୍ତୁ ଏ ସବୁ ଛାଡ଼ି ଆମେ କ'ଣ ଚଳିପାରିବା ନାହିଁ ?

ଦାସ - ହଁ, ହିମାଳୟରେ ତପସ୍ୟା କରି ଆମେ ମଧ ଚଳିପାରିବା । ଦୁଇଟୋପା ଖାଦ୍ୟରସ ଖାଇ ଆମେ ମଧ ବଞ୍ଚିପାରିବା । କିନ୍ତୁ ଏଇ ଆଭିଜାତ୍ୟର ସ୍ୱାଦ ମୁଁ ପାଇଛି ମୀରା - ଯାକୁ ମୁଁ ଛାଡ଼ିପାରିବି ନାହିଁ । ଆଉ କେବଳ ଏଇଥିପାଇଁ ମୁଁ ତୁମକୁ ବିବାହ କରିବି ।

ମୀରା - କେବଳ ଏଇଥିପାଇଁ ?

ଦାସ - ଆଶ୍ଚର୍ଯ୍ୟ ହେଇ ଯାଅନା ମୀରା - ହଜାର ହଜାର ପ୍ରମାଣ ନେଇ ତୁମେ ଯଦି ଅଦାଲତର ଆଶ୍ରୟ ନିଅ ତେବେ ସୁଦ୍ଧା ମୁଁ ତୁମକୁ ଫାଙ୍କି ଦେଇପାରିବି - କିନ୍ତୁ ମୁଁ ତା' ଚାହେଁନା । ମୁଁ ତୁମକୁ ବିବାହ କରିବି । ଗୋଟାଏ ଆସୋସିଏସନ୍ ଗଢ଼ିଛି - ଆଜିରି

ଗଢ଼ିବି - ସୋସାଇଟି, ସଂଘ, ସମିତି - ଯେତେ ପାରେ । ତା'ପର ଏଇ ସହରର ଯେକୌଣସି ବଡ଼ଲୋକ - ଧର ରାୟବାହାଦୁର ପି.ଏନ୍.ମହାନ୍ତି - ତାଙ୍କୁ କରିବା ଚା'ର ନିମନ୍ତ୍ରଣ । ହସି ହସି ଗୀତ ଗାଇ ତୁମେ ତାଙ୍କୁ ଚା'ପରିବେଷଣ କରିବ, ଆଉ ଆସୋସିଏସନ୍‌ର ଚାନ୍ଦା ବାବଦକୁ ଲେଖାଇନେବ ଖଣ୍ଡେ ହଜାରେ ଟଙ୍କାର ଚେକ୍ । ବାସ୍ - ଗୋଟାଏ ମାସରେ ଯଦି ଏହିପରି ଚାରୋଟି ରାୟବାହାଦୁର ନିମନ୍ତ୍ରଣ ପା'ନ୍ତି ତେବେ ଆମେ ବଞ୍ଚିରହିବା, ଆମର ପ୍ରେମ ବଞ୍ଚିରହିବ । ଆଉ ଆମେ ବଞ୍ଚିବା, ଯେପରି ଭାବରେ ଆମର ବଞ୍ଚିବା ପ୍ରୟୋଜନ ।

ମୀରା - ବଞ୍ଚିରହିବା ପାଇଁ ଏ ପାପ, ଏ ଅନ୍ୟାୟ ?

ଦାସ - Shut up you- ପାପ ! ଯେଉଁଦିନ ତମେ ହସି ହସି ମତେ ତୁମର ଏହି ଦେହ ଦାନ କରିଥିଲ, ସେଦିନ କ'ଣ ଜାଣି ନଥିଲ ତା' ପାପ ଆଉ ଅନ୍ୟାୟ ବୋଲି ? କିନ୍ତୁ ମୁଁ ତୁମକୁ ବିବାହ କଲେ ସେଇ ପାପ ପରିଣତ ହେବ ମହାପୁଣ୍ୟରେ । ଆମେ ପାପ ପଥରେ ଆଗେଇ ଚାଲିବା ମୀରା - ଏଇ ତେତିଶକୋଟି ଦେବଦେବୀଙ୍କ ଦେଶର ପୁଣ୍ୟର ଅଭାବ ହେବନାହିଁ । ତୁମେ କୁହ ତୁମର କଥା, ଏଇ ସର୍ତ୍ତରେ ତୁମେ ମୋତେ ବିବାହ କରିବାକୁ ଚାହଁ କି ନା ?

ମୀରା - ପାପ-ପୁଣ୍ୟ-ନୀତି-ଅନୀତି ମୁଁ କିଛି ବୁଝେନାଇଁ । ମୁଁ ତୁମକୁ ପାଇଛି ବିଶ୍ୱମୋହନ ! ତୁମେ ମୋତେ ଯେଉଁ ବାଟରେ ନେବ ମୁଁ ସେଇ ବାଟରେ ଯିବି ।

ଦାସ - ଗୋଲାପର ଗନ୍ଧ - ସିରାଜୀର ନିଶା - ଆଉ ଡେଭିଲର୍ ରକ୍ତ, ଏସବୁର ସନ୍ଧାନ ମୁଁ ତୁମଠାରେ ପାଇଚି ମୀରା - ମୁଁ ତୁମକୁ ଚାହେଁ । ଅକ୍ସଫୋର୍ଡ୍ ଇଉନିଭରସିଟି ମତେ ଗୋଟାଏ ରିଭଲଭର୍ ଦେଇଥିଲା - ଏ ଦେଶର ବଡ଼ଲୋକମାନେ ସେଥିରେ ଭରିଦେଇଛନ୍ତି ଗୁଳି, ଆଉ ସେଇ ଗୁଳିଭରା ରିଭଲ୍‌ଭର୍‌କୁ ଚାଲୁକରିବା ପାଇଁ ତୁମେ ହବ ମୋର ଲାଇସେନ୍‌ସ । ତୁମକୁ ପାଇ ମୁଁ କ'ଣ ହେବି ଜାଣ ମୀରା -I will be the most finished scoundrel that ever belonged to an Arstiocratic Society.

# ତୃତୀୟ ଅଙ୍କ
## ପ୍ରଥମ ଦୃଶ୍ୟ

(ରାୟବାହାଦୁରଙ୍କ ଗୃହରେ ଗୋଟିଏ ବଡ଼ କକ୍ଷ, ରେଖାର ସେଦିନ ଜନ୍ମଦିନ -ସେଥିପାଇଁ କକ୍ଷଟି ବିଶେଷ ଭାବରେ ସଜ୍ଜିତ । ଆମନ୍ତ୍ରିତ ଭଦ୍ରଲୋକସବୁ ଖିଆପିଆ ସାରି ଫେରିଯାଇଚନ୍ତି । ସେତେବେଳକୁ ରାତି ପ୍ରାୟ ନଅଟା । ଗୋଟିଏ ଟେବୁଲ୍ ଉପରେ ଅନେକ ପ୍ରକାର ଉପହାର ଥୁଆ ହୋଇଛି - ରେଖା ସେଇ ଟେବୁଲ୍‌କୁ ଆଉଜି ଠିଆହୋଇଚି, ତା'ମୁହଁ ଦେଖିଲେ ବୁଝାଯାଏ ଯେପରି ତା'ର ଏଇ ସନ୍ଧ୍ୟାର ଆନନ୍ଦକୁ ଗୋଟାଏ ମ୍ଳାନଭାବ ଢାଙ୍କିରଖିଚି, ତା'ର କାରଣ ଯେପରି ସେ କା'ର ଅପେକ୍ଷାରେ ରହିଚି । ଅଥଚ ସେ ଆସୁନାହିଁ । ଏହି ସମୟରେ ଦରଜାର ପରଦା ଆଡ଼େଇ ସେଠାକୁ ଆସିଲା ଅବିନାଶ, ରେଖାର ଅଲକ୍ଷ୍ୟରେ ।)

ରେଖା - କିଏ ସୁରେଶବାବୁ !

ଅବି - ସୁରେଶବାବୁ କାହାନ୍ତି ମା' ?

ରେଖା -ମୋର ଭୁଲ୍ ହେଇଗଲା, ମୁଁ ଭାବିଲି ବୋଧହୁଏ ପ୍ରଫେସର୍ ଦାସ ଆସିଲେ ।

ଅବି - (ହସି) ଏଇଟାବି ତ ଠିକ୍ ନୁହେଁ ମା' -ପ୍ରଫେସର୍ ଦାସ ଘରର ଭିତରପଟୁ ଆସିବେ କିମିତି ?

ରେଖା - ସତେ ଅବିନାଶବାବୁ, ଆଜି କାହିଁକି ମୋର ଭାରି ଭୁଲ୍ ହେଇଯାଇଚି - ଦେଖିଲେ ନାଇଁ ସେତେବେଳେ ମିସେସ୍ ଗୁପ୍ତଙ୍କ ପାଖରେ ମୁଁ କିପରି ଅପଦସ୍ତ ହୋଇପଡ଼ିଲି ।

(ଭିତରୁ ଆସିଲେ ରା.ବା. ଖୁବ୍ ଅସ୍ତବ୍ୟସ୍ତ ହୋଇ)

ରା.ବା.- ଅବିନାଶ, ଏ ପର୍ଯ୍ୟନ୍ତ କ'ଣ ପ୍ରଫେସର୍ ଦାସ ଆଉ ସୁରେଶ ଆସିନାହାନ୍ତି ?

ଅବି - ନା Sir, ଆସିନାହାନ୍ତି ।

ରା.ବା.- Hopeless, ଆରେ ସମସ୍ତେ ଠିକ୍ ସମୟରେ ଆସିଲେ; ଅଥଚ ଯୋଉ ଦି'ଜଣ ଘରର ଲୋକ ପରି, ସେମାନଙ୍କର ଏପର୍ଯ୍ୟନ୍ତ ଦେଖାନାଇଁ !

ଅବି - ପ୍ରଫେସର୍ ଦାସ ବର୍ତ୍ତମାନ ଗୋଟିଏ ଅଳଙ୍କାର ଦୋକାନରୁ ଫୋନ୍ କରିଥିଲେ ।

ରା.ବା.- କ'ଣ କହିଲେ ?

ଅବି - ଖୁବ୍ ଶୀଘ୍ର ଆସୁଚନ୍ତି ବୋଲି ତ କହିଲେ ।

ରା.ବା.- ତେବେ ସୁରେଶ ଗଲା କୁଆଡ଼େ ?

ରେଖା - ସେ ହୁଏତ ଆସିନପାରନ୍ତି !

ରା.ବା. - କି ମୁସ୍କିଲ୍, ସେ ଆସିବ ନାହିଁ କାହିଁକି ? ଆରେ ଅବିନାଶ, ସୁରେଶକୁ ନିମନ୍ତ୍ରଣ

କରାହୋଇଛି ତ ? ତା'ର ତ କାହିଁ କାଲିଠାରୁ ଦେଖାନାହିଁ !

ଅବି - କାଲି ସେ ନଆସିବାରୁ ମୁଁ ନିଜେ ତାଙ୍କ ମେସ୍‌କୁ ଯାଇ ତାଙ୍କୁ କାର୍ଡ୍ ଦେଇଆସିଥିଲି । କାଲି ଯେପରି ସେ ଭଲ ମନରେ ନଥିଲା ପରି ଜଣାଯାଉଥିଲା ।

(ଏଇ ସମୟରେ ମଟର୍ ହର୍ଣ୍ଣ ଶୁଭିଲା ।)

ରା.ବା. - ଏଇ ବୋଧହୁଏ ପ୍ର.ଦାସ ଆସିଲେ !

(ରେଖା ନିଜକୁ ଟିକିଏ ସଜାଡ଼ି ନେଇ ପ୍ର.ଦାସଙ୍କୁ ଅଭ୍ୟର୍ଥନା କରିବା ଉଦ୍ଦେଶ୍ୟରେ ଅପେକ୍ଷା କରି ରହିଲା । ପ୍ର.ଦାସ ଆସିଲେ; ତାଙ୍କର ଗୋଟାଏ ହାତରେ ମସ୍ତବଡ଼ ଫୁଲର ତୋଡ଼ା, ଅନ୍ୟ ହାତରେ ଦୁଇଟା ସବୁଜ ରଙ୍ଗର ଭେଲଭେଟ୍‌ର କେଶ୍ । ତାଙ୍କର ଆନନ୍ଦ ଯେପରି ଦ୍ୱିଗୁଣ ବଢ଼ିଯାଇଛି ।)

ଦାସ - ଗୁଡ୍ ଇଭିନିଂ ରାୟବାହାଦୁର - ଗୁଡ୍ ଇଭିନିଂ ମିସ୍ ମହାନ୍ତି -

(ରାୟବାହାଦୁରଙ୍କ ସହିତ ହାତ ମିଳାଇଲେ, ରେଖା ହାତ ଉଠାଇ ନମସ୍କାର କଲା ।)

ରା.ବା.- You are too late Professor!

ରେଖା - ସତେ, ଆପଣଙ୍କର ଏତେ ଡେରିହେବ ବୋଲି ଆମେ ଆଦୌ ଆଶାକରିନଥିଲୁ ।

ଦାସ - (ଖୁବ୍ ଉଚ୍ଛ୍ୱସିତ ଭାବରେ) ମୁଁ ଜାଣେ ମୋର ଅନୁପସ୍ଥିତି ତୁମ ମନରେ ଖୁବ୍ ଆଘାତ ଦେଇଛି - ସେଥିପାଇଁ ମୁଁ ବିଶେଷ ଦୁଃଖିତ ମିସ୍ ମହାନ୍ତି !

ଅବି - ଏତେ ବିଚଳିତ ହେବେନାଇଁ ସାର୍ - ଏ ତ ଆପଣଙ୍କ ଘରପରି ।

ଦାସ - ନିଶ୍ଚୟ, ନିଶ୍ଚୟ - ସେ ବି ଗୋଟାଏ କଥା - Well ରାୟବାହାଦୁର ! ବର୍ତ୍ତମାନ ଆପଣ ଅନୁମତି ଦେଲେ, ମୁଁ ମିସ୍ ମହାନ୍ତିଙ୍କୁ ତାଙ୍କର ଏଇ ସେଭେନ୍‌ଟିନ୍ଥ - ମାନେ ଶୁଭ ସପ୍ତଦଶ ଜନ୍ମ ତିଥିରେ ମୋର ଯତ୍‌ସାମାନ୍ୟ ଉପହାର ଦେବି ।

ରା.ବା. - Hopeless, ଏଥିରେ ଅନୁମତି ଦେବାର କ'ଣ ଅଛି ?

ଦାସ - (ରେଖା ପାଖକୁ ଆଗେଇ ଆସି) ଆଜିର ଏଇ ଶୁଭସନ୍ଧ୍ୟାରେ ମୁଁ ଅନ୍ତରର ସହିତ ତୁମର ମଙ୍ଗଳ କାମନା କରୁଚି । ତୁମର ଏ ନବବର୍ଷ ଅସୀମ ସାଫଲ୍ୟମଣ୍ଡିତ ହେଉ ।

(ଉପହାରତକ ରେଖା ହାତକୁ ବଢ଼ାଇଦେଲେ ।)

ରେଖା - ଚମତ୍କାର ଫୁଲ ସବୁ - କେଉଁଠୁ ପାଇଲେ ?

ଦାସ - କେବଳ ଏଇଥିପାଇଁ ମତେ ଆଜି ବାର ମାଇଲ୍ ବାଟ ମୋଟରିଂ କରିବାକୁ ପଡ଼ିଚି ।

(ରେଖା ଫୁଲ ତୋଡ଼ାଟିକୁ ଟେବୁଲ୍ ଉପରେ ରଖି ଭେଲଭେଟ୍ କେଶ୍ ଦୁଇଟିରୁ ଗୋଟିଏ ଖୋଲି ଦେଖିଲା, ସେଥିରେ ଅଛି ଖୁବ୍ ଦାମିକା ଗୋଟିଏ ହାର; ହାରଟିକୁ ହାତରେ ଟେକି ଦେଖି ପୁଣି କେଶ୍ ଭିତରେ ରଖିଲା । ତା'ପର ଆର୍ କେଶ୍‌ଟିକୁ ଖୋଲି ଦେଖିଲା, ସେଥିରେ ଅଛି ଦୁଇପଟ ବାଲା, ବାଲା ଦୁଇପଟକୁ ହାତରେ ଧରି ଯେପରି ସେ ଚମକିପଡ଼ିଲା ।)

ରେଖା - କିନ୍ତୁ ଏଇ ବାଲା...!! (ପ୍ରଫେସର୍ ଦାସ କିଛି କହିଲେ ନାହିଁ । ରା.ବା. କଥାଟା ବୁଝିପାରିଲେ - ରେଖା ପାଖକୁ ଆସି ତା'ର ପିଠି ଆଉଁସିଦେବାକୁ ଲାଗିଲେ ।)

ରା.ବା. - ସେ ଠିକ୍ ଅଛି ମା'- ଠିକ୍ ଅଛି । ତୁମେ ଟିକେ ଡେରିରେ ଆସିଲ ପ୍ରଫେସର୍, ନଇଲେ ମୁଁ ଆଜି ମୋର ନିମନ୍ତ୍ରିତ ଅତିଥିମାନଙ୍କ ସାମ୍ନାରେ ତମ ଦୁହିଁଙ୍କର ବିବାହର ଦିନଟା ଆନାଉନ୍‌ସ କରିଦେଇଥା'ନ୍ତି ।

ରେଖା - ବହୁ ଧନ୍ୟବାଦ ପ୍ରଫେସର୍ ଦାସ! ଆପଣଙ୍କ ଉପହାର ସବୁ ଭାରି ସୁନ୍ଦର ହୋଇଛି ।

ଦାସ - ମୁଁ ଜାଣେ, ମୋର ଚୟସ୍ ତୁମର କେବେହେଲେ ଅପସନ୍ଦ ହେବନାହିଁ, ହଁ ଆଜିକାର ପ୍ରୋଗ୍ରାମଟା ତା'ହେଲେ କ'ଣ ଶେଷ ହୋଇଯାଇଛି ?

ଅବି - ଆପଣ ନଆସିବା ପର୍ଯ୍ୟନ୍ତ କ'ଣ କେବେହେଲେ ଶେଷ ହୋଇପାରେ ?

ଦାସ - ସେ ମୋର ପରମ ସୌଭାଗ୍ୟ । ତା'ହେଲେ ରେଖା ଦେବୀଙ୍କୁ ମୁଁ ଅନୁରୋଧ କରିପାରିବି କି ଗୋଟାଏ ନାଚ ସକାଶେ -

ରେଖା - (ମ୍ଲାନ ହସି) କ୍ଷମା କରିବେ; ଆପଣ ତ ଜାଣନ୍ତି ଆଜିକାଲି ସେ ସବୁ ମୁଁ ଛାଡ଼ିଦେଇଚି । ମିନି ଆଉ ରାନୁ ନାଚିବେ । ଅବିନାଶବାବୁ! ସେମାନଙ୍କୁ ଡାକି ଦିଅନ୍ତୁ ଦୟାକରି । (ଅବିନାଶ ଚାଲିଗଲା )

ରା.ବା.- ମିନି ଆଉ ରାନୁର ନାଚକୁ ଆଜି ସମସ୍ତେ ଖୁବ୍ ପସନ୍ଦ କରିଚନ୍ତି । (ମିନି ଆସିଲା) ମିନି, ରାନୁକୁ ଡାକି ପ୍ରସ୍ତୁତ ହେଇ ଆସ - ପ୍ରଫେସର୍ ଦାସ ତମ ନାଚ ଦେଖିବେ ।

ମିନି - (ହସି) ଆମକୁ ତ ବିଲାତି ନାଚ ଆସେନାହିଁ ବାବା!

ଦାସ - You naughty girl! ମୁଁ ତୁମର ସେହି ଦେଶୀ ନାଚ ହିଁ ଦେଖିବ ।

(ମିନି ଚାଲିଗଲା)

ରା.ବା.- ଅବିନାଶ, ଅବିନାଶ!

ଅବିନାଶ - (ଭିତରୁ) Yes Sir.

ରା.ବା. - ତୁମେ ଗାଡ଼ି ନେଇ ଯାଅ ସୁରେଶକୁ ନେଇଆସିବ ।

ଦାସ - ସୁରେଶ, କେଉଁ ସୁରେଶ ? ଆପଣଙ୍କ ଘରେ ଯେ ପଢ଼ାଏ ତ ?

ରା.ବା. - ହଁ ।

ଦାସ - ମୋର ତ ମନେହୁଏ ସେ ଆଉ ଏଠିକି ଆସିବ ନାହିଁ ।

ରା.ବା. - କାହିଁକି ?

ଦାସ - ଆପଣ ଶୁଣିନାହାନ୍ତି ବୋଧହୁଏ; ବାସ୍ତବିକ୍ ବଡ଼ ଦୁଃଖର କଥା। ତାକୁ ଆଜି କଲେଜ୍‌ରୁ ତଡ଼ି ଦିଆହୋଇଚି, ମାନେ ସେ Expelled ହୋଇଛି । (ରେଖା ଆତଙ୍କରେ ଉଠି ଠିଆହେଲା ।)

ରେଖା - ତଡ଼ି ଦିଆହୋଇଛି, କାହିଁକି ?

ଦାସ - ସେସବୁ କଥା ଏଠି ନପଡ଼ିବା ହିଁ ଭଲ ।

ରେଖା - (ନିଜକୁ ଯଥେଷ୍ଟ ସଂଯତ କରି) କହନ୍ତୁ ନା, କ'ଣ ହେଇଚି ?

ଦାସ - ବାସ୍ତବିକ୍ ବଡ଼ ଦୁଃଖର କଥା - ସେସବୁ କଥା କହିବାକୁ ମତେ ବଡ଼ ଘୃଣା ବୋଧହେଉଚି । ଆମ କଲେଜ୍‌ରେ ମୀରା ବୋଲି ଗୋଟିଏ ଗାର୍ଲଷ୍ଟୁଡେଣ୍ଟ୍ ପଢ଼େ, ତମେ ବୋଧହୁଏ ତାକୁ ଜାଣ ?

ରେଖା - ନା ।

ଦାସ - ସେଇ ମୀରାକୁ ନେଇ ଏ କଳଙ୍କ । ଅନେକ ଦିନରୁ ସୁରେଶର ଆଖି ମୀରା ଉପରେ ଥିଲା । କିନ୍ତୁ ମୀରା ଏସବୁ ଚାହେଁନା । ଆମେ ପିକ୍‌ନିକ୍ ଯିବାର ପରଦିନ କମନ୍‌ରୁମ୍‌ରୁ ଏକୁଟିଆ ବାହାରି ଆସୁଥିବା ବେଳେ ସୁରେଶ ତା' ପ୍ରତି ଅତି ଜଘନ୍ୟ ଓ କୁତ୍ସିତ ବ୍ୟବହାର କଲା । ଫଳରେ ବିଚାରୀ ମୀରା କାନ୍ଦି କାନ୍ଦି ପ୍ରିନ୍‌ସପାଲ୍‌ଙ୍କ ଆଗରେ ଏକଥା କହିଲା । ସେତେବେଳକୁ ସୁରେଶ କଲେଜ୍‌ରୁ ଚମ୍ପଟ୍ ଦେଲାଣି ।

ରେଖା - ତା' ପରେ ?

ଦାସ - ତା ପରଦିନ, ମାନେ କାଲି, ସୁରେଶ କଲେଜ୍ ଆସିବାରୁ ପ୍ରିନ୍‌ସପାଲ୍ ତାକୁ କୈଫିୟତ୍ ମାଗିଲେ; କିନ୍ତୁ କି କୈଫିୟତ୍ ବା ସେ ଦେବ ? ତିନିଜଣ ପିଲା ଏ ଘଟଣା ଦେଖିଚନ୍ତି ବୋଲି ସାକ୍ଷୀ ଦେଲେ, ଫଳରେ ତାକୁ କଲେଜ୍‌ରୁ ତଡ଼ିଦିଆଗଲା ବୋଲି ପ୍ରିନ୍‌ସପାଲ୍ ଆଜି ଦିନ ବାରଟା ବେଳେ ଶୁଣାଇ ଦେଲେ । ତା' ଛଡ଼ା ମୀରା ତା' ବିରୁଦ୍ଧରେ କ'ଣ କେଶ୍ କରିବ ବୋଲି ମୁଁ ଶୁଣୁଛି ।

ରା.ବା.- କରିବା ଉଚିତ୍! ଏଡେବଡ଼ ହୀନ ଚରିତ୍ର ଏ ସୁରେଶଟା ? ଅଥଚ ତା'ପ୍ରତି ମୋର ଯଥେଷ୍ଟ ଉଚ୍ଚ ଧାରଣା ଥିଲା ।

ଦାସ - ଯା' ପରେ ସେ ଆଉ ଏଠିକି ଆସିବ ବୋଲି ମୋର ବିଶ୍ୱାସହୁଏନା ।

ରା.ବା. - ଯଦି ଆସେ ତେବେ ମୁଁ ତାକୁ ଉପଯୁକ୍ତ ଶିକ୍ଷା ନ ଦେଇ ଛାଡ଼ିବି ନାହିଁ । (ରେଖା ଯିବାକୁ ଲାଗିଲା)

ଦାସ - ତମେ ଚାଲିଯାଉଚ ଯେ ରେଖା ?

ରେଖା - (ଖୁବ୍ ସହଜ ଗଳାରେ) ଆପଣ ମୋ ନାଚ ଦେଖିବେ ବୋଲି କହୁଥିଲେ ନା ?

ଦାସ - ତମେ ନାଚିବ ?

ରେଖା - ହଁ, ମାତ୍ର ଗୋଟାଏ ମିନିଟ୍, ଅପେକ୍ଷା କରନ୍ତୁ, ମୁଁ ଆସୁଛି ।

(ଚାଲିଗଲା)

ରା.ବା. - ଘଟଣାଟା ଶୁଣି ରେଖା ମନରେ କ'ଣ କିଛି ଆଘାତ ଲାଗିଲା ?

ଦାସ - ତା ମନରେ ଆଘାତ ଲାଗିବାର କ'ଣ ଅଛି ?

ରା.ବା. - କିନ୍ତୁ ମୁଁ ଗୋଟାଏ କଥା ଭାବୁଚି ପ୍ରଫେସର୍, ସୁରେଶର ଏହି କଳଙ୍କ ତ ମୋର ସାମାଜିକ ସୁନାମ ପକ୍ଷରେ ମଙ୍ଗଳଜନକ ନୁହେଁ ।

ଦାସ - ନା-ନା, ଆପର ସେସବୁ କଥା ଭାବନ୍ତୁନାହିଁ । ମୁଁ କିନ୍ତୁ ଟାକୁ ଦେଖିଲାବେଳୁ ଚିହ୍ନିପାରିଛି ।

ରା.ବା. - ଏ ତେବେ ତମର ବଡ଼ ଅନ୍ୟାୟ ପ୍ରଫେସର୍ । ତମର ମତେ ଆଗରୁ ସତର୍କ କରିଦେବା ଉଚିତ୍ ଥିଲା ।

ଦାସ - ଛାଡ଼ନ୍ତୁ ସେ କଥା - ସେ ତା'ର ଉପଯୁକ୍ତ ଦଣ୍ଡ ପାଇଛି ।

(ଏହି ସମୟରେ ବାହାରେ ସୁ-ସୁ ହୋଇ ପବନ ଗର୍ଜି ଉଠିଲା । ବର୍ଷା, ବିଦ୍ୟୁତ୍ ଓ ଘଡ଼ଘଡ଼ି ସଙ୍ଗେ ସଙ୍ଗେ ଗୋଟାଏ ପ୍ରଳୟଙ୍କର ତୋଫାନର ଲକ୍ଷଣ ମଧ୍ୟ ଦେଖାଦେଲା ।)

ରା.ବା. - ବର୍ଷା ଆସିଲା ବୋଧହୁଏ ପ୍ରଫେସର୍..... (ଝରକା ବାଟେ ପଦାକୁ ଚାହିଁ)

ଦାସ - ହଁ । ସଙ୍ଗେ ସଙ୍ଗେ ତୋଫାନ ମଧ୍ୟ ଦେଖାଦେଇଛି ।

(ହଠାତ୍ ମଞ୍ଚ ଏକାବେଳକେ ଅନ୍ଧକାର ହୋଇଗଲା ।)

ରା.ବା. - ଏ କ'ଣ ? ସବୁ ଅନ୍ଧକାର ହୋଇଗଲା ଯେ.....

ଦାସ - ବୋଧେ Line contact କଲା ।

(ବାହାରେ ସେହିପରି ତୋଫାନର ଲୀଳା ଚାଲିଛି - ଏହି ସମୟରେ ପୁଣି ମଞ୍ଚରେ ଆଲୋକ ଜଳିଉଠିଲା - ଆଉ ସାଙ୍ଗେ ସାଙ୍ଗେ ଦେଖାଗଲା - ରେଖା ରଙ୍ଗମଞ୍ଚରେ ତା'ର ନୃତ୍ୟ ଆରମ୍ଭ କରିଦେଇଛି । ମିନି ଓ ରାନୁ ରେଖା ସହିତ ଆସିଥିଲେ, ସେମାନେ ଗୋଟିଏ ଗୋଟିଏ କାଉଚ୍‌ରେ ଯାଇ ବସିଲେ । ରେଖାର ବେଶଭୂଷାର ପରିବର୍ତ୍ତନ କିଛି ହୋଇନାହିଁ - ସେ କେବଳ ତା ଶାଢ଼ିର ପଣତଟା ବୁଲାଇଆଣି ତା ଅଣ୍ଟାରେ ଖୋସିଦେଇଛି । ତା' ମୁହଁ ଦେଖିଲେ ଜଣାଯାଇଛି ସେ ଏଇମାତ୍ର କାନ୍ଦିଚି । କିନ୍ତୁ ଅବସ୍ଥା ଲୁଚାଇବା ପାଇଁ ଜୋର୍ କରି ମୁହଁର ଭାବ ପରିବର୍ତ୍ତନ କରିବାକୁ ଚେଷ୍ଟା କରିଚି । ପ୍ର.ଦାସ ରେଖାର ଭିତର କଥା ଯେମିତି ବୁଝିପାରୁଥିଲେ; କିନ୍ତୁ ସେ ଯଥେଷ୍ଟ ଉତ୍ସାହର ଛଳନା କରି ନାଚ ଦେଖିବାକୁ ଲାଗିଲେ, ନାଚ ପ୍ରାୟ ଅଧାଅଧି ହେଇଚି - ସେଠିକି ଆସିଲା ସୁରେଶ । ତାକୁ ଦେଖିଲେ ମନେହୁଏ ତା ଜୀବନ ଉପରେ ଯେମିତି ଗୋଟାଏ ଝଡ଼ ବତାସ ବହିଯାଇଛି । ବର୍ଷାପାଣିରେ ସୁରେଶ ଦେହର କେତେକାଂଶ ଭିଜିଯାଇଛି । ସୁରେଶକୁ ଦେଖି ରେଖାର ନାଚ ହଠାତ୍ ବନ୍ଦ ହୋଇଗଲା । ସେ ସୁରେଶ ଆଡ଼େ ଅତି କରୁଣ ଭାବରେ କ୍ଷଣକ ସକାଶେ ଚାହିଁ ରହି ତା'ପରେ ତା'ଠାରୁ ହଠାତ୍ ଘୃଣାରେ ମୁହଁ ଫେରାଇଆଣି ପୁଣି ନାଚିବାକୁ ଆରମ୍ଭ କଲା । ବାହାରେ ଝଡ଼ତୋଫାନର ବେଗ ବଢ଼ିଚାଲିଥାଏ; ଆଉ ଘର ଭିତରେ ସେଇ ଝଡ଼ତୋଫାନ ସହିତ ସମତା ରଖି ଚାଲିଥାଏ ରେଖାର ନୃତ୍ୟ । ତା'ର ନାଚ ଦେଖିଲେ ମନେହୁଏ ଯେମିତି ସେ ସେଠାରେ

ପ୍ରଳୟର ସୃଷ୍ଟି କରୁଚି । ଅବିନାଶ ସୁରେଶ ସହିତ ଆସିଥିଲା, ସେ ସୁରେଶକୁ ବସିବା ପାଇଁ ଗୋଟାଏ ଚୌକି ଆଗେଇଦେଲା; କିନ୍ତୁ ସୁରେଶ ନ ବସି ସେହିପରି ଠିଆହୋଇ ରହିଲା ।

ରେଖାର ନାଚ ଶେଷ ହେଲା । ନାଚ ପରେ ସେ ଗୋଟାଉ କାଉଚ୍‌ରେ ଯାଇ ଢଳିପଡ଼ିଲା ।

ସମସ୍ତ ବାଦ୍ୟଯନ୍ତ୍ର ବନ୍ଦ ହୋଇଯାଇଛି; ଉପସ୍ଥିତ ସମସ୍ତେ ନିର୍ବାକ୍ ନିସ୍ପନ୍ଦ, ସମସ୍ତ କକ୍ଷଟାକୁ ଗୋଟାଏ ନିସ୍ତବ୍ଧତା ଗ୍ରାସ କରିଛି; ଅତି ଭୟାନକ ସେ ନିସ୍ତବ୍ଧତା । ମନେହୁଏ ଯା'ପରେ ପରେ ଯେମିତି ଗୋଟାଏ ଆକସ୍ମିକ କିଛି ଘଟିବ । ଏହି ନିସ୍ତବ୍ଧତାକୁ ଭଙ୍ଗକଲା ରେଖା - କାଉଚ୍ ଉପରେ ବସି ।)

ରେଖା - ଆପଣ ଏଠିକି ନ ଆସିଥିଲେ ବୋଧହୁଏ ଆମେ ଖୁସିହୋଇଥା'ନ୍ତୁ, ସୁରେଶ ବାବୁ !

ସୁର - ସେ କଥା ମୁଁ ଏଠିକି ଆସିବାକ୍ଷଣି ବୁଝିପାରିଛି । ଏଠିକି ଆସି ଗୋଟିଏ ଅପ୍ରୀତିକର ଅବସ୍ଥା ସୃଷ୍ଟି କରିବା ମୋର ଉଚିତ୍ ନଥିଲା, ଯା ମଧ୍ୟ ମୁଁ ଜାଣେ.... ।

ରେଖା - ଜାଣନ୍ତି ଯେବେ ଆସିଲେ କାହିଁକି ?

ସୁର - ଆସିଲି.... ଆସିଲି କେବଳ ଆପଣ ନିଜେ ଯାଇ କାଲି ମତେ ନିମନ୍ତ୍ରଣ କରିଆସିଥିଲେ ବୋଲି ।

ଦାସ - ମିସ୍ ମହାନ୍ତି ?

ରେଖା - (ଠିଆ ହୋଇ) ହଁ, ମୁଁ ନିଜେ ଯାଇ କାଲି ନିମନ୍ତ୍ରଣ କରି ଆସିଥିଲି; କିନ୍ତୁ ସୁରେଶବାବୁ, ଆପଣ ପ୍ରକୃତରେ କ'ଣ, କାଲି ପର୍ଯ୍ୟନ୍ତ ତା ମୁଁ ଜାଣିନଥିଲି । ଆଜି ଯେତେବେଳେ ଆପଣଙ୍କ ନିଜ ରୂପଟା ପ୍ରକାଶ ପାଇଲା, ସେତେବେଳେ ଆପଣଙ୍କର ନିଜ ଆଡୁ ନିଜେ କଥାଟାର ନିଷ୍ପତ୍ତି କରିବା ଉଚିତ୍ ଥିଲା ।

ସୁର - ଦେଖନ୍ତୁ, ମୁଁ ଆପଣଙ୍କ ସହିତ ଯୁକ୍ତି କରିବାକୁ ଏଠିକି ଆସିନି । ବର୍ତ୍ତମାନ ମୁଁ ଚାଲିଯାଉଛି; କିନ୍ତୁ ଯିବା ପୂର୍ବରୁ ଏତିକି କହିଯାଉଚି.....

ରା.ବା. - ନା-ନା, କୌଣସି କଥା ତମେ ଏଠି କହିପାରିବନି । ତମକୁ ମୁଁ ଯଥେଷ୍ଟ ବିଶ୍ୱାସ କରୁଥିଲି, ସ୍ନେହ ମଧ୍ୟ କରୁଥିଲି; କିନ୍ତୁ ତମେ ଯେ ଗୋଟାଏ ଏତେବଡ଼ ଚରିତ୍ରହୀନ, ତା ଜାଣିବାର ସାମାନ୍ୟ ଅବସର ମୋର ନଥିଲା । ସ୍ୱପ୍ନରେ ସୁଦ୍ଧା ମୁଁ ଭାବିନଥିଲି ଯେ ତମ ସହିତ ଦିନେ ମତେ ଏମିତି କଦର୍ଯ୍ୟ ବ୍ୟବହାର କରିବାକୁ ପଡ଼ିବ । ତମେ ଆଜି ମୋର ସମସ୍ତ ସ୍ନେହ, ସମସ୍ତ ଶ୍ରଦ୍ଧା ହରାଇଚ ।

ସୁର - ମୁଁ ମାନୁଚି ଆପଣମାନେ ଆଜି ମୋର ପଶୁତ୍ୱର ପରିଚୟ ପାଇଚନ୍ତି; କିନ୍ତୁ ସେଇ ପଶୁତ୍ୱଇ କ'ଣ ମୋର ସବୁ ! ମୁଁ ଯେ ମଣିଷ.....

ରେଖା - ନା-ନା, ଆପଣ ମଣିଷ ନୁହଁନ୍ତି; ଆପଣ....ଆପଣ.... ଯେ କ'ଣ.... ଆପଣଙ୍କର ବିଶେଷଣ ମୁଁ ଖୋଜି ପାଉନାହିଁ । (ଉତ୍ତେଜନାରେ କଥାତକ କହି ରେଖା କାନ୍ଦିପକାଇ କାଉଚ୍ ଉପରେ ବସିପଡ଼ିଲା ।)

ଦାସ - ତୁମେ ଏମିତି ଉତ୍ତେଜିତ ହୋଇପଡ଼ନି, ରେଖା !

ରା.ବା. - ସୁରେଶ, ତମେ ଏଇ ମୁହୂର୍ତ୍ତରେ ଏଠୁ ଚାଲିଯାଅ । (ସୁରେଶ କ୍ଷଣକାଳ ସ୍ତବ୍ଧ ହୋଇ ରହିଲା । ଏମିତି ଭାବରେ ସେ ରା.ବା. ଓ ରେଖା ମୁହଁକୁ ଚାହିଁଲା ଯେ ସେଥିରୁ କନ - (ପ୍ରବେଶ) ଶାନ୍ତି ! ଏ କ'ଣ ହେଉଛି ଶାନ୍ତି ?

ଶାନ୍ତି - ତୁ କ'ଣ ଦେଖିପାରୁନୁ କନ - ବାହାରର ଏହି ଝଡ଼, ବତାସ, ବିଜୁଳି, ଘଡ଼ଘଡ଼ି - ସଂସାର ଆଜି ଯିମିତି ଉଚ୍ଛନ୍ନ ହୋଇଯିବାକୁ ବସିଛି ।

କନ - ମୁଁ ଆଉ ପାରିବିନାଇଁ ଲୋ ମା - ନିଦରୁ ଉଠିଆସି ତୁ କାହିଁକି ଏମିତି ପାଗଳୀଙ୍କ ପରି ହେଉଚୁ କହିଲୁ !

ଶାନ୍ତି - ତାଙ୍କ କଥାର ମୂଲ୍ୟ ଦେଇନଥିଲି, ସେଥିପାଇଁ କ'ଣ ସେ ନିଜର ସର୍ବନାଶ କରି ମୋ ଉପରେ ପ୍ରତିଶୋଧ ନେବେ ?

କନ - ତୁ ଏମିତି ହେଲେ ମୁଁ ଯାଉଛି ବୋଉକୁ ଡାକିଆଣିବି ।

ଶାନ୍ତି - ନା କନ, ତାଙ୍କୁ ଉଠାନା, ସେ ଟିକେହେଲେ ନିଶ୍ଚିନ୍ତରେ ଶୁଅନ୍ତୁ ।

କନ - ତୁ ତେବେ ଆ ଶୋଇବୁ - କେତେ ରାତି ହେଲାଣି କହିଲୁ ?

ଶାନ୍ତି - ଶୋଇ ତ ପାରିଲିନାହିଁ କନ, ମୋ କାନେ କାନେ ଯେମିତି କିଏ କହିଦେଇଗଲା - ସୁରଭାଇ ଏ ଝଡ଼ତୋଫାନରେ ବାଟ ହରେଇ ଏଣେତେଣେ ବୁଲୁଚନ୍ତି, ବ୍ରଜଭାଇ ତାଙ୍କୁ ସାରା ସହରଟା ଖୋଜି ବୁଲିଲେଣି; କିନ୍ତୁ ପାଉନାହାନ୍ତି ।

କନ - ସେଦିନ ତ ତାଙ୍କ ମୁହଁକୁ ଚାହିଁଲୁ ନାହିଁ - ଆଉ ଆଜି ଦୁନିଆଯାକର ଯେତେ ଅମଙ୍ଗଳ କଥା ସବୁ ଯେମିତି ତୋରି ମୁହଁରେ....

ଶାନ୍ତି - ତା'ହେଲେ କନ, ତୁ ମତେ ପାଗଳୀ ନ କହି ରାକ୍ଷସୀ କହୁନୁ କାହିଁକି ? ରାକ୍ଷସୀ....ତାଙ୍କର ଅମଙ୍ଗଳ ଚିନ୍ତା ମୁଁ କରୁଚି ।

କନ - ଶାନ୍ତି..... ତତେ ନେହୁରା ହେଉଚି ଭଲା - ତୁ ଏମିତି ହ'ନା । ବୋଉ - ବୋଉ ।

ଶାନ୍ତି - ସୁରଭାଇ, ସୁରଭାଇ, ତମେ ଫେରିଆସି ସୁରଭାଇ - (ଦୃଶ୍ୟପଟ୍ଟ ବଦଳିଗଲା । ରେଖାର ସେଇ ଜନ୍ମଦିନ ଦୃଶ୍ୟ - ଦୃଶ୍ୟର ଆରମ୍ଭ ସଙ୍ଗେ ସଙ୍ଗେ ଦେଖାଗଲା ରେଖା ଧୀରେ ଧୀରେ ଦୁଆର ମୁହଁ ପାଖରୁ ଫେରିଆସି କାଉଚ୍ ଉପରେ ବସିଲା । କାଉଚର ପଛପଟ ଧାର ଉପରେ ବାଁ ହାତଟି ଲମ୍ୱାଇଦେଇ ତା ଉପରେ ମଥାଟି ରଖିଲା, ତା' ପରେ ତା ଡାହାଣ ହାତ ବାହାଟିକୁ ସେ ଏପରି ଭାବରେ ନେଇ ତା ନିଜ ମୁହଁ ଉପରେ ରଖିଲା । ଯେମିତି ସେ ଚାହେଁନା ତା'ର ସେଇ ବେଦନାକ୍ଳିଷ୍ଟ ମୁହଁଟିକୁ

କାହାରିକୁ ଦେଖାଇବା ପାଇଁ । ରା.ବା. ଏକଦୃଷ୍ଟିରେ ଚାହିଁ ରହିଲେ ରେଖାକୁ, ପ୍ରଫେସର ଗଭୀର ଚିନ୍ତାମଗ୍ନ ଥିଲା ପରି ଜଣାପଡୁଥିଲେ ।)

ରା.ବା. - ଏ ଝଡ଼-ବର୍ଷା କ'ଣ ଆଜି କମିବ ନାଇଁ ପ୍ରଫେସର୍ ?

ଦାସ - ଏଁ ଝଡ଼ ? (ଝରକା ନିକଟକୁ ଯାଇ) କମିଆସିଲାଣି, ବର୍ଷା ତ ମୋଟେ ନାହିଁ; ଖାଲି ଯାହା ଅଛ ତୋଫାନ ହେଉଛି । ଖୁବ୍ ଚଞ୍ଚଳ ବୋଧହୁଏ ସବୁ ପରିଷ୍କାର ହୋଇଯିବ ।

ରା.ବା. - ପରିଷ୍କାର ନହୋଇ ଆଉ କେତେ ସମୟ ବା ରହିବ! କମ୍ ଝଡ଼ ତ ଗୋଟାଏ ହୋଇଗଲାନାହିଁ । ....ଯେ....ଜାଣ ପ୍ରଫେସର୍, ମୋର ଏ ଅଦିନିଆ ଝଡ଼-ତୋଫାନକୁ ଭାରି ଭୟ ।

ଦାସ - ମୁଁ ତା'ହେଲେ ଆଜି ଆସୁଛି ।

ରା.ବା. - ତମେ ଯିବ କହୁଚ ? -ଆଚ୍ଛା-ଝଡ଼ ତ କମିଆସିଲାଣି - ରେଖା, ପ୍ରଫେସର୍ ଯିବାକୁ ବାହାରିଲେଣି ଯେ ?

ରେଖା - ସେ କିଛି ଖାଇନାହାନ୍ତି ଯେ ବାବା!

ରା.ବା.- Hopeless, ଆରେ ମୋର ତ ସେ କଥା ଆଦୌ ମନେନାହିଁ ।

ଦାସ - ନା-ନା, ମୋର ଆଜି ଖାଇବାକୁ ମୋଟେ ଇଚ୍ଛା ନାହିଁ ।

ରେଖା - ବାଃ, ମୋର ଆଜି ଜନ୍ମଦିନ, ଆପଣ ଆଜି ଆମ ଘରେ କିଛି ଖାଇବେ ନାହିଁ!

ରା.ବା. - ଠିକ୍ କଥା ପ୍ରଫେସର୍ ! ରେଖାର ଜନ୍ମଦିନରେ ତମେ ନଖାଇ ଚାଲିଯିବ ? ଅବିନାଶ - ଏ ଅବିନାଶ!

ରେଖା - ମୁଁ ନିଜେ ଯାଉଛି ବାବା!

ଦାସ - ନା-ନା, ରେଖା ତମେ କାହିଁକି ଏତେ କଷ୍ଟ କରିବ ?

ରେଖା - ବାଃ, ଆପଣ ଆଜି ମୋ ସକାଶେ କେତେ ପରିଶ୍ରମ କରି ଏଇ ଉପହାରସବୁ ଆଣିଚନ୍ତି କହିଲେ ?......ଆପଣ ଟିକିଏ ଅପେକ୍ଷା କରନ୍ତୁ - ମୁଁ ଆସୁଚି । (ରେଖା ଚାଲିଗଲା - ରା.ବା. ଓ ପ୍ରଫେସର୍ ଯେପରି କିଛି ବୁଝି ନପାରିଲା ଭଳି ଦୁହେଁ ଦୁହିଁଙ୍କ ମୁହଁକୁ ବାରମ୍ବାର ଚାହାଁଚାହିଁ ହେଲେ ।)

ରା.ବା. - ହଠାତ୍ ରେଖାର ଏ ପରିବର୍ତ୍ତନର କିଛି ମାନେ ବୁଝିପାରୁଛ ପ୍ରଫେସର୍ ?

ଦାସ - (ଇତସ୍ତତଃ ହୋଇ ) ନା....ତ.....

ରା.ବା. - Hopeless! ତୁମେ ତା'ହେଲେ କି ପ୍ରଫେସର୍ ହୋଇଚ? ରେଖା ଏଇ କଥା ଜଣାଇ ଦେଇଗଲା ଯେ , ସେ ରାୟବାହାଦୁର ପି.ଏନ୍. ମହାନ୍ତିର ଝିଅ - ଆଉ ତା'ର ବାପର ମର୍ଯ୍ୟାଦା ସେ ରକ୍ଷା କରି ଜାଣେ!

(ଭିତରୁ ଆସିଲା ରେଖା - ତା'ହାତରେ ସୁନ୍ଦର ଗୋଟିଏ ଟ୍ରେ । ଟ୍ରେ ଉପରେ ଢଙ୍କା ହୋଇଛି ଆଉରି ସୁନ୍ଦର ଗୋଟିଏ ର୍‌ୟାପାର୍ । ଟ୍ରେ' ଟିକୁ ସେ ଆଣି ପ୍ର.ଦାସଙ୍କ ବସିଥିବା କାଉଚ୍ ସାମ୍‌ନାରେ ଗୋଟିଏ ଛୋଟ ଟି'ପୟ ଉପରେ ରଖିଲା । ତା'ପରେ ଟ୍ରେ ଉପରୁ ର୍‌ୟାପାରଟି ଉଠାଇନେଲା ।)

ରେଖା - ଏଇ ସନ୍ଦେଶଟା ଆଗେ ଖା'ନ୍ତୁ - ଏଇଟା ମୁଁ ଆଜି ନିଜ ହାତରେ ତିଆରି କରିଛି ।

ଦାସ - ଓ, (ପ୍ରଫେସର୍ ରେଖାର ମୁହଁକୁ ଚାହିଁଲେ - ତା'ପରେ ଅଳ୍ପ ହସି ସନ୍ଦେଶଟା ହାତରେ ଧରିଛନ୍ତି, ଠିକ୍ ସେଇ ସମୟରେ ବାହାରୁ ପାଟି ଶୁଭିଲା ଓ ସାଙ୍ଗେ ସାଙ୍ଗେ ସେଠାକୁ ଆସିଲେ ବିଶ୍ୱନାଥ ଓ ବ୍ରଜ ।)

ବିଶ୍ୱ - ସୁରେଶ, ସୁରେଶ ।

ବ୍ରଜ - କାହିଁ ଏଠି ତ ନାହିଁ!

ବିଶ୍ୱ - ସୁରେଶ କ'ଣ ଆଜି ଆସିନାହିଁ ଏଠିକି ?

ଦାସ - But, who are you ?

ବିଶ୍ୱ - ଆମେ କିଏ - ସେକଥା ଜାଣି ଆପଣଙ୍କର କିଛି ଲାଭନାହିଁ । ସୁରେଶ କାହିଁ, କହନ୍ତୁ ?

ରେଖା - ଆପଣମାନେ କାହିଁକି ତାଙ୍କୁ ଖୋଜୁଛନ୍ତି ?

ବିଶ୍ୱ - ଆପଣ ଜାଣନ୍ତିନାହିଁ ବୋଧହୁଏ .....

ରେଖା - ହଁ, ମୁଁ ଜାଣେ। କିନ୍ତୁ ସେ ଏଠି ନାହାନ୍ତି; ସେ ଫେରିଯାଇଛନ୍ତି ତାଙ୍କ ବାଟରେ - ଆପଣମାନେ ଯାଆନ୍ତୁ ।

ବ୍ରଜ - କିନ୍ତୁ ତାଙ୍କୁ ଏଇଠି ପାଇବୁ ବୋଲି ମୋର ଖୁବ୍ ଆଶା ଥିଲା ।

ରା.ବା. - ଏଇଟା ତା'ର ଘର ନୁହେଁ ଯେ ସେ ଏଠି ରହନ୍ତା । ଗୋଟାଏ ଅଦିନିଆ ଝଡ଼-ତୋଫାନକୁ ସାଥିରେ ଧରି ସେ ଏଠିକି ଆସିଥିଲା । ତା'ର କାଳିର ମୁକୁଟପିନ୍ଧି; ଆଉ ସେଇ ଝଡ଼ତୋଫାନ ସାଥିରେ ସେ ଏଠୁ ଚାଲିଯାଇଛି - ଆପଣମାନେ ଫେରିଯା'ନ୍ତୁ ।

ବିଶ୍ୱ - ସେଇ ଭୟଙ୍କର ଝଡ଼ତୋଫାନ ବେଳେ ଆପଣମାନେ ତାଙ୍କୁ ଛାଡ଼ିଦେଲେ, ଟିକିଏ ଅଟକାଇ ପାରିଲେ ନାହିଁ ?

ରେଖା - ଆପଣଙ୍କର ଏଇ ଅଭିଯୋଗର କୌଣସି ମାନେ ହୁଏନା; କାଇଁକି ଆମେ ତାଙ୍କୁ ଅଟକାଇଥା'ନ୍ତୁ ? କି ଦାବି ତାଙ୍କର ଏଠି ଥିଲା । କହନ୍ତୁ, କି ଦାବି ତାଙ୍କର ଏଠି ଥିଲା ।

ଦାସ - ତମେ ପୁଣି ଉତ୍ତେଜିତ ହୋଇପଡୁଚ ରେଖା -

ରା.ବା. - Hopeless! ସାମାନ୍ୟ ଗୋଟାଏ ଟିଉସନ୍ ମାଷ୍ଟରର ଖୋଜ ନେବାପାଇଁ

ଆପଣମାନେ ଆସି ରାୟବାହାଦୁର ପି.ଏନ୍. ମହାନ୍ତିଙ୍କର ଘରେ ଆକ୍ରମଣ ଚଳାଇଚନ୍ତି; ଆପଣମାନଙ୍କର ତ ଆଦୌ ଶିଷ୍ଟାଚାର ଜ୍ଞାନ ନାହିଁ । ମୋର ସବୁଠାରୁ ସେ ପ୍ରିୟ ଅତିଥି, ତାଙ୍କର ଖାଇବାରେ ଆପଣମାନେ ଆସି ବାଧା ଦେଉଛନ୍ତି - ଆପଣମାନେ ଚାଲିଯାନ୍ତୁ, ଏଇ ମୁହୂର୍ତ୍ତରେ ଏଠି ଚାଲିଯାନ୍ତୁ । (ବିଶ୍ୱନାଥ ଓ ବ୍ରଜ ଯିବାପାଇଁ ଉଦ୍ୟତ ହେଲେ) ପ୍ରଫେସର୍ ଆଗେ ତମର ଖାଇବାଟା ତମେ ଶେଷ କରିନିଅ ତ !

(ଠିକ୍ ଏତିକିବେଳେ ସେଠାକୁ ଆସିଲା ରଙ୍ଗାଧର - ତା ପଛରେ ରହିଛି ମୀରା ।)

ରଙ୍ଗା - Yes, ପ୍ରଫେସର୍ ଦାସ, ଆପଣ ଆଗେ ଖାଇବାଟା ଶେଷ କରିନିଅନ୍ତୁ । ଯା'ପରେ ହୁଏତ ଏଠି ଆଣପଙ୍କର ଆଉ ଖାଇବାର ସୁଯୋଗ ଆସିବ ନାହିଁ ।

ବିଶ୍ୱ - ରଙ୍ଗାଧର ! ତମେ ଆସିଲ, ସୁରେଶ କାହିଁ ?

ରଙ୍ଗା - ତା'ର କୌଣସି ଖବର ପାଇଲି ନାହିଁ ?

ବ୍ରଜ - ତେବେ ଚାଲନ୍ତୁ ବିଶ୍ୱନାଥ ବାବୁ, ଦେଖିବା ସେ କୁଆଡ଼େଗଲା ।

ରଙ୍ଗା - A minute please comrade! ଆମେ ସମସ୍ତେ ଏକା ଯାଇ ତା'ର ଖୋଜ ନବା ।

ବ୍ରଜ - ଆପଣ ଜାଣନ୍ତି ନାହିଁ - ଯେପରି ଖାମ୍‌ଖିଆଲି ଲୋକ....

ରଙ୍ଗା - ବୁଝିଛି, କିନ୍ତୁ ସୁରେଶକୁ ଖୋଜି ବାହାର କରିବା ପୂର୍ବରୁ ତା ସମ୍ବନ୍ଧରେ ଗୋଟାଏ ନିଷ୍ପତ୍ତି ଆଗେ ଏଠି ହେଇଯାଉ ।

ବିଶ୍ୱ - କ'ଣ ତମେ କହିବାକୁ ଚାହୁଁଚ କମ୍ରେଡ୍ ?

ରଙ୍ଗା - ମୁଁ କିଛି କହିବି ନାଇଁ, ଯାହାର କହିବାର କଥା ସେହି କହିବ ।

ରା.ବା. - ପ୍ରଫେସର୍, ବାହାରର ଝଡ଼ତୋଫାନ ଶେଷ ନ ହେଉଣୁ ମୋ ଘର ଭିତରେ ଆଉରି ଗୋଟାଏ ଭୀଷଣ ତୋଫାନର ଆଭାସ ମିଳିଲାଣି । ....ରେଖା - ତୁ ଚାଲ ମା, ଏଠୁ ବାହାରିଯିବା; ଆମେ ଏସବୁ ସହିପାରିବା ନାହିଁ ।

(ପ୍ରଫେସର୍ ଏ ପର୍ଯ୍ୟନ୍ତ ମୀରାର ମୁହଁକୁ ଚାହିଁ ରହିଥିଲେ ।)

ଦାସ - ତମେ ଏଠି କାହିଁକି ମୀରା ?

ରା.ବା. ଓ ରେଖା - (ଖୁବ୍ ଆଶ୍ଚର୍ଯ୍ୟ ହୋଇ) - ମୀରା !

ମୀରା - ହଁ; ରାୟବାହାଦୁର- ମୁଁ ମୀରା -

ରା.ବା. - ଯାହା ତ ହବାର ହୋଇଯାଇଛି ମୀରା - ପୁଣି ସେ ସବୁର ଘଣ୍ଟାଘଣ୍ଟି ଏଠି କାହିଁକି ?

ମୀରା - ବିଶ୍ୱମୋହନ !

ରା.ବା. - ବିଶ୍ୱମୋହନ !

ଦାସ - (ଗର୍ଜି ଉଠି) ମୀରା !

ମୀରା - ନା ବିଶ୍ୱମୋହନ, ମୁଁ ପାରିଲିନାହିଁ ।

ରେଖା- କ'ଣ ତମେ ପାରିଲନାହିଁ, ମୀରା ?

ମୀରା - ସ୍ୱର୍ଗର ଦେବଶିଶୁ ପରି ସରଳ ଆଉ ନିଷ୍ପାପ ଏଇ ସୁରେଶବାବୁ; ତାଙ୍କର ଏ ସର୍ବନାଶ.... ନା, ନା, ବିଶ୍ୱମୋହନ ! ତମେ ମଧ ପାରନ୍ତ ନାହିଁ....

ବିଶ୍ୱ - କ'ଣ ତମେ କହିବାକୁ ଚାହୁଁଚ ମୀରା ?

ମୀରା - ସୁରେଶବାବୁଙ୍କ ବିରୁଦ୍ଧରେ ମୁଁ ଯେଉଁ ଅଭିଯୋଗ ଆଣିଥିଲି, ତା ଏକାବେଳକେ ମିଛ, ସୁରେଶବାବୁ ନିର୍ଦ୍ଦୋଷ, ସଂପୂର୍ଣ୍ଣ ନିର୍ଦ୍ଦୋଷ ।

ରେଖା - ସୁରେଶ ବାବୁ ନିର୍ଦ୍ଦୋଷ ?

ରା.ବା. - ଏ ମୁଁ କ'ଣ ଶୁଣୁଛି ପ୍ରଫେସର୍ ?

ଦାସ - ମୁଁ ସ୍ପଷ୍ଟ ବୁଝିପାରୁଛି ରାୟବାହାଦୁର, ଏ ସୁରେଶର ଗୋଟାଏ ଚକ୍ରାନ୍ତ ଛଡ଼ା ଆଉ କିଛି ନୁହେଁ - ମୀରାର ମୁଣ୍ଡ ସେ ବିଗାଡ଼ି ଦେଇଚି । ଏ ସବୁ ଫାର୍ଶ ମୁଁ ଏଠି ଦେଖିବାକୁ ଚାହେଁନା - ମୀରା, ତମେ....ତମେ ଚାଲିଯାଅ ଏଠୁ ।

ରଙ୍ଗା - A minute please Prof. Das! ଆପଣ କେଉଁ ଅଧିକାରରେ ମୀରାକୁ ଏଠୁ ଯିବାକୁ କହୁଚନ୍ତି ?

ଦାସ - Shut up, ମୋର ଅଧିକାର ଜାଣିବାକୁ ତମେ କିଏ ?

ରଙ୍ଗା - ଏଇଟା ଇତିହାସର କ୍ଲାସ୍ ନୁହେଁ ପ୍ରଫେସର୍ ! ମୀରା ଯାଇପାରିବ ନାହିଁ ।

ଦାସ - ମୀରା ! (ମୀରା ଖୁବ୍ ଧୀର ଭାବରେ ଯିବାକୁ ବସିଲା)

ବିଶ୍ୱ - ନା ମୀରା, ତୁମର କଥା ଶେଷ ନକରି ତୁମେ ଯାଇପାରିବି ନାହିଁ ।

ମୀରା - ମୋର କଥା ତ ଶେଷ ହେଇଚି - ମୁଁ କହିଦେଇଚି ଯେ ସୁରେଶ ବାବୁ ନିର୍ଦ୍ଦୋଷ-

ବିଶ୍ୱ - କିନ୍ତୁ କାହିଁକି ତୁମେ ସୁରେଶ ବିରୁଦ୍ଧରେ ଏ ମିଥ୍ୟା ଅଭିଯୋଗ ଆଣିଥିଲ ? ତମର ଭୁଲ୍ ସକାଶେ ତା'ର ଅବସ୍ଥା କ'ଣ ହେଇଚି ଜାଣ ?

ଦାସ - ମୁଁ ବୁଝିପାରୁନାହିଁ ରାୟବାହାଦୁର, ଆପଣ କିପରି ଚୁପ୍ ହୋଇ ଏ ସବୁ କଥା ଶୁଣୁଚନ୍ତି ?

ରା.ବା.- Hopeless, ମୁଁ ତ ସେଇଆ ଭାବୁଚି, ରେଖା !

ରେଖା - (ମୀରା ନିକଟକୁ ଆଗେଇଯାଇ ତା'ର ଦୁଇ ବାହୁକୁ ଧରି) ମୀରା ! କୁହ ମୀରା - ତମେ ଏ ଭୁଲ୍ କାହିଁକି କଲ ?

ଦାସ - ମିସ୍ ମହାନ୍ତି !

ରେଖା - ଆପଣ ଚୁପ୍ ରୁହନ୍ତୁ Sir! କୁହ ମୀରା, କାହିଁକି ତମେ ଏ ଭୁଲ୍ କଲ ?

ରଙ୍ଗା - ଜୀବନରେ ଆଉ କେତେ ତଳକୁ ଖସିଆସିଲେ ତମର ହୋସ୍ ଆସିବ ମୀରା ? କୁହ ତୁମର କଥା ।

ମୀରା - ପ୍ରଫେସର୍ ଦାସ ଯେ ରେଖାକୁ ବିବାହ କରିବେ ଏକଥା ମୁଁ ଏଇ ଅଳ୍ପ ସମୟ ପୂର୍ବରୁ ଶୁଣିଲି.... ଏଇ ରଙ୍ଗାଧରବାବୁଙ୍କ ମୁହଁରୁ । କିନ୍ତୁ ଯା'ର ଅନେକ ଆଗରୁ

ପ୍ରଫେସର୍ ଦାସଙ୍କ ସହିତ ମୋର ବିବାହ ଠିକ୍ ହୋଇସାରିଛି ।

(ରେଖା ପାଟିରୁ ଗୋଟାଏ ଯନ୍ତ୍ରଣାସୂଚକ ଅସ୍ପଷ୍ଟ ଧ୍ୱନି ବାହାରିପଡ଼ିଲା; ସେ ଆଉଜି ପଡ଼ିଲା ରା.ବା.ଙ୍କ ଛାତିରେ)

ରା.ବା. - ପ୍ରଫେସର......

ଦାସ - ତମର କ'ଣ ମୁଣ୍ଡ ଖରାପହୋଇଛି ମୀରା ! ଆପଣ ଏସବୁ ବିଶ୍ୱାସ କରନ୍ତୁ ନାହିଁ ରାୟବାହାଦୁର - ଏସବୁ ମିଛ- ନିରାଟ ମିଛ- ମୁଁ ଏସବୁ କିଛି ଶୁଣିବାକୁ ଚାହେଁନା- (ପ୍ରଫେସର୍ ଚାଲିଯିବାକୁ ବସିଲେ)

ରେଖା - ମୀରାର କଥା ଶେଷନହେବା ପର୍ଯ୍ୟନ୍ତ ଆପଣ ଏଠୁ ଚାଲିଯାଇପାରିବେ ନାହିଁ, ସାର୍ !

(ରେଖା ଦୁଇ ପାପୁଲିରେ ତା' ମୁହଁକୁ ଚାପି ଧରି ବସିପଡ଼ିଲା ।)

ମୀରା - (ପ୍ରଫେସର୍‌ଙ୍କୁ ଉଦ୍ଦେଶ୍ୟ କରି) ମୋ'ରି ସାହାଯ୍ୟରେ ଦୁନିଆକୁ ଠକିବାକୁ ଯାଇ ତମେ ସର୍ବପ୍ରଥମେ ଠକିଲ ମତେ । ଆଜି କଲେଜ୍‌ରୁ ଫେରି ମୁଁ ତମକୁ ସାରାଦିନ ଅପେକ୍ଷା କରୁଚି - ସନ୍ଧ୍ୟା ହେଲା; କିନ୍ତୁ ତମେ ଆସିଲନାହିଁ । ତା'ପରେ କେଉଁଠୁ ମାଡ଼ିଆସିଲା ଝଡ଼ତୋଫାନ ।

ରଙ୍ଗା - ଆଉ ସେହି ଝଡ଼ତୋଫାନକୁ ନ ମାନି ମୁଁ ଗଲି ମୀରାଦେବୀଙ୍କ ଘରକୁ । କିନ୍ତୁ ସେଠି ମୀରାର ଏଇ କାହାଣୀ ଶୁଣି ମୋର ଆଦୌ ବିଶ୍ୱାସ ହେଲାନାଇଁ ଯେ ପ୍ରଫେସର୍ ଦାସଙ୍କ ଟଙ୍କା ରୋଜଗାର କରିବା ବାଟରେ ସୁରେଶ ବାଧା ଦେବାରୁ ପ୍ରଫେସର୍ ସୁରେଶର ଏ କ୍ଷତି କରାଇଛନ୍ତି । ମୋଟ ଉପରେ ବ୍ଲାକ୍‌ମେଲ୍ କରି ରାୟବାହାଦୁରଙ୍କଠାରୁ ଟଙ୍କା ରୋଜଗାର କରିବା କଥାଟା ମୀରାକୁ ଗୋଟାଏ ସୁଖ-ସ୍ୱପ୍ନର ଆଶା ଦେଖାଇ କେବଳ ଫାଙ୍କିଦିଆ ହୋଇଥିଲା । ଏଥିପାଇଁ ପ୍ରକୃତ କଥାଟା କ'ଣ ଜାଣିବା ପାଇଁ ମୀରାକୁ ସାଥିରେ ଧରି ମୁଁ ଏଠିକି ଆସିଲି ।

ରା.ବା. - କିନ୍ତୁ ପ୍ରଫେସର୍, ସୁରେଶ ତ କେବେହେଲେ ତମ ବିରୁଦ୍ଧରେ କୌଣସି କଥା ମତେ କହିନାହିଁ ! କାହିଁକି ତମେ ତା'ର ଏ କ୍ଷତି କରାଇଲ ?

ରେଖା - ମୁଁ ବୁଝୁଛି ବାବା, ପ୍ରଫେସର୍ କାହିଁକି ସୁରେଶବାବୁଙ୍କର ଏ ସର୍ବନାଶ କରାଇଥିଲେ । ତାଙ୍କର ଦୁଷ୍ଟ ସନ୍ଦେହୀ ମନ....

ରା.ବା. - ତା'ମାନେ ? ସୁରେଶ ସହିତ ତୋ'ର ସମ୍ପର୍କ ନେଇ ପ୍ରଫେସର୍ ସନ୍ଦେହ କରୁଥିଲେ !

ରେଖା - ହଁ ବାବା ! ସୁରେଶବାବୁ ଏ ଘରକୁ ଆସିବା ଦିନୁ ପ୍ରଫେସର୍ ଦାସଙ୍କ ମନରେ ଏଇ କୁତ୍ସିତ ସନ୍ଦେହର ପରିଚୟ ମୁଁ ପାଇଆସିଚି । କିନ୍ତୁ ମୋର କରିବାର କିଛିନଥିଲା ।

ରା.ବା. - ଛି-ଛି, ପ୍ରଫେସର୍ ! କାହିଁକି ତୁମେ ଏ ମିଥ୍ୟା ସନ୍ଦେହ କରିବାକୁ ଗଲ ? ତମପାଇଁ ଏ ଘରର ଦରଜା ତ କେବେହେଲେ ବନ୍ଦ ନଥିଲା ?

ମୀରା - ଏବେ ବି ସମୟ ଅଛି ବିଶ୍ୱମୋହନ - ତମେ ଫେରିଆସ । ଏ ବାଟରେ ଚାଲିବା ଯେତେବେଳେ ସମ୍ଭବ ନୁହେଁ.....

ଦାସ - ହାଃ-ହାଃ-ହାଃ । (ପ୍ରଫେସର୍ ଏପରି ଅଟ୍ଟହାସ୍ୟ କରିଉଠିଲେ ଯେ, ଯାହାଦ୍ୱାରା ଜଣାଗଲା ଏପର୍ଯ୍ୟନ୍ତ ଯାହା ଘଟିଯାଇଚି, ସେ ସବୁ ମିଛ । ହସୁ ହସୁ ସେ କାଉଚ୍ ଉପରୁ ଉଠି ଖୁବ୍ Steady ହେଇ ଠିଆହେଲେ) ଶ୍ରୀମତୀ ମୀରା ଦେବୀ, ଆଜିକାର ଏଇ ଅଭିନୟ ଏଠି ନ ହୋଇ ଯଦି କୌଣସି ରଙ୍ଗମଞ୍ଚରେ ହୋଇଥା'ନ୍ତା, ତେବେ ତମର ଓ ତମ ସନ୍ତାନଟିର ଭରଣପୋଷଣ ସକାଶେ ଟଙ୍କାର ଅଭାବ ହୁଅନ୍ତା ନାହିଁ! ବାଃ, ବୁଦ୍ଧିର ତାରିଫ୍ କରିବାକୁ ହେବ । କିନ୍ତୁ ଏ ବୁଦ୍ଧି ଏଠି କାହିଁକି । ବ୍ଲାକ୍‌ମେଲ୍ କରିବାକୁ ଚାହିଁ । ଚାହିଁ ଡିଭୋନ୍‌ଚାର - ସୁଇଣ୍ଡ୍‌ଲିଂ ? ? ତେବେ ବମ୍ବେ ଯାଅ, ବମ୍ବେ କିମ୍ବା ଆଉ ଟିକିଏ ଦୂରକୁ -ସିକାଗୋ, ସାନ୍‌ଫ୍ରାନ୍‌ସିସ୍‌କୋ । ସେଠି ଏପରି କୁମାରୀ ଅବସ୍ଥାରେ ଗୋଟାଏ ପରେ ଗୋଟାଏ ସନ୍ତାନର ମା' ହେଇ ଚାଲିଥିବ - କେହି ଭ୍ରୂକ୍ଷେପ କରିବେ ନାହିଁ । ଆଉ ସେଠାକାର ଲୋକେ ତମର ଏଇ ନଟୋରିଅସ୍ ଜୀବନର ମୂଲ୍ୟଦେବେ ।

ମୀରା - ମତେ ତମେ ଚରିତ୍ରହୀନା ଆସନକୁ ଠେଲି ଦେଇପାର ବିଶ୍ୱମୋହନ - ସେଥିରେ ଦୁନିଆ ଆଖିରେ ତମର ଚରିତ୍ର ଉଜ୍ଜ୍ୱଳ ହୋଇଉଠିବ । ମୋ ପରି ଶହ ଶହ ପ୍ରେମ-ଭିକାରୁଣୀ ମୀରାକୁ ତୁମର ଶିକ୍ଷା ଆଉ ସଭ୍ୟତାର ସୁଯୋଗ ନେଇ ତମେ ଏ ବାଟକୁ ଠେଲିଦେବାର ଠିକ୍ ପରଦିନ ତମର ଭକ୍ତମାନେ କହିବେ, ଏ ଦେଶର ପ୍ରତ୍ୟେକ ମୀରା ହେଉଛି ଚରିତ୍ରହୀନା, ଆଉ ପ୍ରଫେସର୍ ଦାସ ହେଉଚନ୍ତି ଜଣେ ଉଚ୍ଚଦରର ପ୍ରେମିକ ।

ରା.ବା. - ମୁଁ ବୁଝିପାରୁନାହିଁ ପ୍ରଫେସର୍, ଏ ସବୁ କ'ଣ ହେଉଛି ?

ଦାସ - ଶୁଣନ୍ତୁ ରାୟବାହାଦୁର ! ସୁରେଶ ନାଁରେ କଳଙ୍କ ବୋଳିଥିଲା ମୀରା; ସେ କଥା ସତ କି ମିଛ ତା ମୀରା ଜାଣେ, ଆଉ ସୁରେଶ ଜାଣେ । କିନ୍ତୁ ମୀରା ଆଜି କା' ସନ୍ତାନର ମା' ହେବାକୁ ଯାଉଛି, ତା'ର କୈଫିୟତ୍ ଦେବ ସେଇ ମୀରା । ସେ ସମ୍ବନ୍ଧରେ ମୁଁ କିଛି ଜାଣେନା ।

ରା.ବା. - Hopeless, ତମେ କିଛି ଜାଣନା - ତେବେ, ଆରେ ରେଖା....

ଦାସ - ମୋ କଥା ଆପଣ ବିଶ୍ୱାସ କରନ୍ତୁ ନ କରନ୍ତୁ, ସେ ଆପଣଙ୍କ ଇଚ୍ଛା; କିନ୍ତୁ ମୁଁ ଗୋଟାଏ କଥା କହି ରଖୁଛି, ଏ ହେଉଛି ସୁରେଶର ଗୋଟାଏ ଷଡ଼ଯନ୍ତ୍ର । ରେଖା ସମ୍ବନ୍ଧରେ ମୁଁ ସୁରେଶକୁ ସନ୍ଦେହ କରିଛି ବୋଲି ଗୋଟାଏ କଳଙ୍କ ରଟାଇ ଦେଲେ ଆପଣ ବାଧହୋଇ ରେଖାକୁ ସୁରେଶ ହାତରେ ଦେବେ । ତା'ପରେ ମୀରା, ସେ ତା'ର ଏହି ଦୁରବସ୍ଥା ପାଇଁ ମୋତେ ଦାୟୀ କରି ତା'ର ଗୋଟାଏ କିଛି ସଦୁପାୟ କରିନେବାର ଚେଷ୍ଟାରେ ଅଛି । ହୁଁ, କମ୍ରେଡ୍ ରଙ୍ଗାଧର ! ଭିତରେ ଭିତରେ ରହି

ଏ'ଯେ ଚାଲ୍‌ଟା ଖେଳିଚ, ସେଥିପାଇଁ ତମ କମିସନ୍‌ର ପରିମାଣଟା ଟିକିଏ ଶୁଣେ ?

ରଙ୍ଗା - ତା'ହେଲେ ଆପଣ ମୀରାର ଘଟଣାକୁ ସଂପୂର୍ଣ୍ଣ ଅସ୍ୱୀକାର କରିଗଲେ ।

ଦାସ - ଗୋଟାଏ କକ୍ଷଚ୍ୟୁତ ଗ୍ରହ ପରି ଯାହାର କୌଣସି ସ୍ଥିରତା ନାହିଁ, ସେ ପୁଣି ଆସିଛି ମୋ'ଠାରୁ କନ୍‌ଫେସନ୍ ଆଦାୟ କରିବାକୁ! ନାଇସ୍, ଚମତ୍କାର! ଏ !! ଆଚ୍ଛା ରାୟବାହାଦୁର, ଆପଣ ଏମାନଙ୍କର ଯାହା କିଛି ବ୍ୟବସ୍ଥା କରିବେ । ମୁଁ ଚାଲିଲି ।

ରଙ୍ଗା - A minute please! (ପ୍ରଫେସର୍ ଫେରି ଚାହିଁଲେ - ରଙ୍ଗାଧର ପକେଟ୍‌ରୁ ତିନିଖଣ୍ଡି ଫଟୋ ବାହାର କରି ଖଣ୍ଡେ ପ୍ରଫେସରଙ୍କ ହାତକୁ ଦେଲା ।)

ଦାସ - ଏ କାହାର ଫଟୋ ?

ରଙ୍ଗା - ଏଇ ଉଚ୍ଛ୍ୱସିତ ବିଜୁଳି ଆଲୁଅରେ ଭଲକରି ଦେଖନ୍ତୁ, ଏ ଫଟୋଟି ଆପଣଙ୍କ ଅତୀତ ଜୀବନର କୌଣସି ସ୍ମୃତି ମନେପକାଇ ଦେଉଚି କି ନା । ସେଇ ପାରସ୍ୟର ଗୋଲାପ - ବସୋରାର ବୁଲ୍‌ବୁଲ୍......

ଦାସ - Are you a magician.

ରଙ୍ଗା - ହାଃ, ହାଃ, ହାଃ, ମ୍ୟାଜିସିଆନ୍ ନୁହେଁ ମି. ଦାସ୍, ଗୋଟାଏ କକ୍ଷଚ୍ୟୁତ ଗ୍ରହ - ହଁ, ଗୋଟାଏ କକ୍ଷଚ୍ୟୁତ ଗ୍ରହ ପରି ବୁଲ୍‌ବୁଲ୍ ଦିନେ ମୀରାର ଘରେ ମୀରା ସହିତ ଆପଣଙ୍କୁ ଯେଉଁ ଅବସ୍ଥାରେ ଦେଖିଥିଲି, ଏ ଫଟୋ ତା'ରି ସାକ୍ଷ୍ୟ । (ଅନ୍ୟ ଫଟୋ ଦୁଇଖଣ୍ଡ ରାୟବାହାଦୁର ଓ ବିଶ୍ୱନାଥ ହାତକୁ ବଢ଼ାଇଦେଲା ।)

ଦାସ - (ଧୀର ଗଳାରେ) ମୀରା!

ମୀରା - ହଁ, ମୁଁ ଏ ଫଟୋ କଥା ଜାଣେ; କିନ୍ତୁ ଏ ପର୍ଯ୍ୟନ୍ତ ତୁମକୁ କହିନଥିଲି, କେବଳ ଭୟରେ ।

ଦାସ - ଆଉ ଆଜି ଏଇ ପ୍ରମାଣ ନେଇ ଆସିଚ ମୋତେ ଭୟ ଦେଖାଇ ଆୟତ୍ତ କରିବାକୁ ?

ମୀରା - ଭୟ ଦେଖାଇ ତୁମକୁ ଆୟତ୍ତ କରିବା ଭଳି ବୋକାମୀ ଯେ ମୋର ନାଇଁ, ଯା ମୁଁ ଜାଣେ -

ଦାସ - ତମର ଇସ୍ପାତର ଶିରାପ୍ରଶିରାଗୁଡ଼ାକ ଏତେ ଚଞ୍ଚଳ ଭାଙ୍ଗି ଚୂନା ହୋଇଗଲା କାହିଁକି ମୀରା ?

ବିଶ୍ୱ - ତା'ର ଉତ୍ତର ମୀରା ଦେଇସାରିଛି ପ୍ର.ଦାସ - ମୀରାର ଶିରାପ୍ରଶିରାରେ ଆପଣ ଢାଳି ଦେଇଥିଲେ ଗୋଟାଏ ମାରାତ୍ମକ ନିଶା, ଆଉ ସେଇ ନିଶା ଆଜି ମୀରାକୁ ଏ ଅବସ୍ଥାକୁ ଟାଣିଆଣିଚି ।

ରଙ୍ଗା - ଆଉ ସେଇକଥା ଆଜି ଆପଣଙ୍କୁ ସ୍ୱୀକାର କରିବାକୁ ପଡ଼ିବ । ବର୍ତ୍ତମାନ ଆପଣ କୁହନ୍ତୁ ଯେ ମୀରାର ଏ ଅବସ୍ଥା ସକାଶେ ଦାୟୀ କିଏ ?

ଦାସ - ତମର ଖେଳ ଶେଷ ହୋଇଯାଇଚି ରଙ୍ଗାଧର; ତମେ ଚୁପ୍ କର ।

ରଙ୍ଗା - ତା ସଙ୍ଗେ ସଙ୍ଗେ ଆପଣଙ୍କର ଖେଳ ବି ଶେଷ ହୋଇଯାଇଚି ମି. ଦାସ ! ବିଲାତି ଡିଗ୍ରୀର ମୁଖାପିନ୍ଧି ଏ ଦେଶରେ ଆଉ ଏ ବିଲାତି ଖେଳ ଚଳିବ ନାହିଁ । ମୀରାକୁ ଆପଣ ବିବାହ ହେବାକୁ ବାଧ୍ୟ, ଟିକିଏ ଏପାଖ ସେପାଖ ହେଲେ ହାତରେ ଖଣ୍ଡିଏ ତୃତୀୟ ଶ୍ରେଣୀର ଟିକେଟ୍ ଧରି ଆପଣଙ୍କୁ ଫେରିଯିବାକୁ ପଡ଼ିବ ସେଇ ବିଲାତକୁ; ସେଇଠି ଯାଇ ଏ ଖେଳ ଖେଳୁଥିବେ ।

ଦାସ - (ତୀକ୍ଷ୍ଣ ଦୃଷ୍ଟିରେ ରଙ୍ଗାଧରକୁ ଚାହିଁଲେ, ତା'ପରେ ରାୟବାହାଦୁରଙ୍କ ଆଡ଼କୁ ଆଗେଇଯାଇ) ଏ ଦୃଶ୍ୟର ଆରମ୍ଭରେ ଯେଉଁ ଝଡ଼ ତୋଫାନ ଦେଖାଦେଇଥିଲା ରାୟବାହାଦୁର, ବର୍ତ୍ତମାନ ତାହା ସଂପୂର୍ଣ୍ଣ ଶେଷ ହୋଇଯାଇଚି । ଆଉ ଆପଣଙ୍କର କୌଣସି ଭୟ ନାହିଁ । ହଁ ମିସ୍ ମହାନ୍ତି, ଖୁବ୍ ଗୋଟାଏ ଖେଳ ତୁମ ସହିତ ଖେଳିଥିଲି; କିନ୍ତୁ କିଛି ଲାଭ ହେଲାନାହିଁ । ଶେଷରେ ତମେଇ ଜିତିଲ; ଆଉ ମୁଁ ହାରିଗଲି । ଆଚ୍ଛା, ମୁଁ ତା'ହେଲେ ଆସୁଚି । Good bye. ଆମେ ଫେରିଯିବା ପୁଣି ସେଇ କେଦାରଗୌରୀ ଯୁଗକୁ । (ଦାସ, ମୀରା, ରଙ୍ଗା ଚାଲିଗଲେ ।)

ରା.ବା. - ମାତ୍ର ଘଣ୍ଟାଏ ଆଗରୁ ଏଇ ପ୍ରଫେସର୍ ଦାସ ଥିଲା ଏଇ ଘରର ସବୁଠାରୁ ପ୍ରିୟ ଅତିଥି, ଆଉ ବର୍ତ୍ତମାନ....

ବିଶ୍ୱ - ବାସ୍ତବିକ୍, ଅତି ଅନ୍ୟାୟ ଭାବରେ ସେ ଆପଣଙ୍କୁ ଆଘାତ କରିଯାଇଛି ।

ରା.ବା. - ମୋର ଦୁଃଖ କଥା ମୁଁ ଖାଲି ଭାବୁନାହିଁ ବାବୁ ! ମୁଁ ଭାବୁଚି ଏପରି ଗୋଟିଏ ନଷ୍ଟ ଚରିତ୍ର ଲୋକ ଉପରେ କିପରି ଆମ ଦେଶର ଛାତ୍ରଶକ୍ତିକୁ ଗଢ଼ିବାର ଭାର ନିଶ୍ଚିନ୍ତ ଭାବରେ ଛାଡ଼ିଦିଆହେଉଚି ।

ବିଶ୍ୱ - ଏଥିରେ ଦୁଃଖ କରିବାର କିଛି ନାହିଁ ରାୟବାହାଦୁର ! ଆମର ସମାଜ ଆଉ ସରକାର ଯାହାକୁ ଖୁବ୍ ବିଶ୍ୱାସଯୋଗ୍ୟ ଆଉ ଉଚ୍ଚ ଆସନରେ ବସାଇଛନ୍ତି, ଠକିବାର ଓ ଭଣ୍ଡାମୀ କରିବାର ଅଧିକାର ଏ ଦେଶରେ ତା'ରି ସବୁଠୁ ବେଶି ।

ରା.ବା. - ହୁଁ, ତମରି କଥା ହୁଏତ ଠିକ୍ - ରେଖା କାହିଁଗଲା, ରେଖା !

ରେଖା - ବାବା ! (ଉଚ୍ଛ୍ୱସିତ କ୍ରନ୍ଦନର ଢେଉ ସହିନପାରି ରା.ବା.ଙ୍କ ଉପରେ ଆଉଜିପଡ଼ିଲା ।)

ରା.ବା. - ତୁ କାହିଁକି କାନ୍ଦୁଚୁ ମା' ! କୌଣସି କଳଙ୍କ ତତେ ସ୍ପର୍ଶ କରିପାରିନାହିଁ । ମୁଁ ଜାଣେ ତୁ ଫୁଲଟି ପରି ନିର୍ମଳ ! ତୋ ଜାଗାରେ ଆଜି ଆଉ କେହି ଝିଅ ଥିଲେ ହୁଏତ ତା'ର ଦୁରବସ୍ଥା ସକାଶେ ମତେ ଭାବିବାକୁ ପଡ଼ିଥା'ନ୍ତା; କିନ୍ତୁ ମୋର ଗର୍ବ ଯେ ମୁଁ ତୋ' ପରି ଝିଅ ପାଇଛି । ତୁ କାନ୍ଦନା ମା'ତୁ କାନ୍ଦନା - (କହି କହି ଚାଲିଗଲେ)

ବିଶ୍ୱ - ଆମେ ତେବେ ଆସୁଚୁ ରେଖାଦେବୀ !

ରେଖା - ଟିକିଏ ଶୁଣିବେ ? ସୁରେଶବାବୁଙ୍କ ସହିତ ମୋର ଆଉ ହୁଏତ ଦେଖାହୋଇପାରିବ ନାହିଁ । ତାଙ୍କ ସମ୍ବନ୍ଧରେ କେତେଟା କଥା ମୁଁ ଜାଣିବାକୁ ଚାହେଁ । ଆପଣମାନେ ଯଦି

କିଛି ମନେକରନ୍ତି.....

ବିଶ୍ୱ - କି ଆଶ୍ଚର୍ଯ୍ୟ! ଏଥିରେ ମନେକରିବାର କ'ଣ ଅଛି ? ତେବେ ମୋ ଅପେକ୍ଷା ଯା'ଙ୍କଠାରୁ ଆପଣ ସୁରେଶର କଥା ବେଶି ଜାଣିପାରିବେ । ଆପଣ ତା'ହେଲେ ଏଠି ରହନ୍ତୁ ବ୍ରଜବାବୁ । ମୁଁ ଯାଇ ଦେଖେ ସେ ଗଲା କୁଆଡ଼େ! ଆଚ୍ଛା, ମୁଁ ଆସୁଚି ରେଖାଦେବୀ, ନମସ୍କାର । (ଚାଲିଗଲେ)

ରେଖା - ଆପଣ....

ବ୍ରଜ - ମୁଁ ସୁରେଶର ଆତ୍ମୀୟ, ନିଃସଂକୋଚରେ ସୁରେଶ ସମ୍ବନ୍ଧରେ ମତେ ଯାହା କିଛି ପଚାରିପାରନ୍ତି ।

ରେଖା - ଆଚ୍ଛା, ଆପଣ ଦୟାକରି ଟିକିଏ ବସନ୍ତୁ - ବ୍ରଜ ବସିଲା । ରେଖା ଘର ଭିତରୁ ଛବି ଖଣ୍ଡିଏ ଆଣି) ସୁରେଶବାବୁଙ୍କର ଏ ଛବିଟା ମୋ ପାଖରେ ଥିଲା, ଦୟାକରି ଏଇଟା ତାଙ୍କୁ ଦେଇଦେବେ ।

ବ୍ରଜ - ଏ' ଯେ ଶାନ୍ତିର ଛବି ଦେଖୁଛି! ଶାନ୍ତିକୁ ତା'ହେଲେ ଆପଣ ଜାଣନ୍ତି ।

ରେଖା - ହଁ, ତାଙ୍କରି ମୁହଁରୁ ଶୁଣିଛି ତାଙ୍କର କିଏ ଜଣେ ଆତ୍ମୀୟ!

ବ୍ରଜ - ଏତିକି ନା ଆଉ କିଛି ଶୁଣିଛନ୍ତି ?

ରେଖା - ଆଉ କ'ଣ ?

ବ୍ରଜ - ଶାନ୍ତି ହେଉଚି ସୁରେଶର ବାକ୍‌ଦତ୍ତା ।

ରେଖା - ହଁ, କହିଚନ୍ତି ବୋଧହୁଏ; ନା-ନା, ମତେ କହିବାର ଦରକାର କ'ଣ ଥିଲା । ଭାରି ସୁନ୍ଦରୀ ଝିଅ ଏକା ଏଇ ଶାନ୍ତିଟି - ସୁରେଶବାବୁଙ୍କୁ ସୁନ୍ଦର ମାନିବ, ଚମତ୍କାର । ଆପଣ ତାଙ୍କୁ କହିଦେବେ ଯେ ଏ ବିବାହରେ ମୁଁ ଭାରି ଖୁସି- ବୁଝିଲେ-ଆଚ୍ଛା, ଆପଣ ବର୍ତ୍ତମାନ ଯାଆନ୍ତୁ - ନମସ୍କାର । (ବ୍ରଜ କିଛି ନବୁଝିଲାପରି ନମସ୍କାରଟିଏ କରି ଚାଲିଗଲା; କିନ୍ତୁ ରେଖା କହିଚାଲିଥାଏ) ଯେପରି ହଉ ତାଙ୍କୁ କହିବେ ମୁଁ ଭାରି ଖୁସି; କିନ୍ତୁ ନା-ନା, ମୋ ଖୁସିରେ ତାଙ୍କର ଯାଏଆସେ କ'ଣ ? ଆପଣ ତା'ହେଲେ ତାଙ୍କୁ କିଛି କହିବେ ନାହିଁ । ଶୁଣନ୍ତୁ....

ମିନି - ସେ ଚାଲିଗଲେଣି ଅପା !

ରେଖା - ଚାଲିଗଲେଣି - ହଁ ସେ ଚାଲିଗଲେଣି । ସୁରେଶବାବୁ ଚାଲିଗଲେଣି, ପ୍ରଫେସର୍ ଦାସ ଚାଲିଗଲେଣି, ସମସ୍ତେ ଚାଲିଗଲେଣି, ଆଚ୍ଛା, କହିଲୁ ମିନି, ଏମାନେ ନାହାନ୍ତି ବୋଲି ମୁଁ କ'ଣ ଆଜି କାନ୍ଦିବି ?

ମିନି - ବାଃ ରେ, କାନ୍ଦିବୁ କାହିଁକି ? ବାପା ପରା ମନାକରି ଗଲେ କାନ୍ଦିବାକୁ ।

ରେଖା - ଠିକ୍ କହିଚୁ! ମୁଁ ଆଉ କାନ୍ଦିବି ନାଇଁ, କାହିଁକି କାନ୍ଦିବି! ନିଜେ କାନ୍ଦି ନିଜେ ଲୁହପୋଛିବା ଯେ ଗୋଟାଏ ମସ୍ତବଡ଼ ଭୁଲ୍ । ମୁଁ କାନ୍ଦିବି ନାଇଁ - କେବେହେଲେ କାନ୍ଦିବିନାଇଁ ।

## ଦ୍ୱିତୀୟ ଦୃଶ୍ୟ

(ବଲ୍‌ସେଭିକ୍ ମେସ୍‌ର ଗୋଟାଏ ବାରନ୍ଦା । କୌଣସି ଆସବାବପତ୍ର ନାହିଁ, କେବଳ ଗୋଟାଏ ବିଛଣା ବନ୍ଧାହୋଇ ଥୁଆ ହୋଇଛି, ପାଖରେ ଗୋଟାଏ ବଡ଼ ସୁଟ୍‌କେଶ ମଧ୍ୟ ଅଛି । ଭିତରୁ ଆସିଲେ ବିଶ୍ୱନାଥ ଆଉ ସୁର ।)

ବିଶ୍ୱ - Well କମ୍ରେଡ୍, ଗୋଟାଏ କଥା ମୁଁ ତୁମକୁ ପଚାରେ, ଶାନ୍ତି ସହିତ ଘରୁ କଳିକଜିଆ କରି ଏଠିକି ଆସିଲ -ଏଠି ପାଇଲ ମସ୍ତବଡ଼ ଗୋଟାଏ ଧକ୍‌କା; ତା'ପରେ ପ୍ରଳୟ ପୟୋଧି ଜଳେ ଭଗବାନ୍ ଭାସି ବୁଲିଲା ପରି ସେଇ ଭୟଙ୍କର ଝଡ଼ତୋଫାନରେ ତମେ ସାରା ସହରଟା ଘୁରିବୁଲିବାକୁ ଆରମ୍ଭ କଲ । ଯଦି ତମ ମସ୍ତିଷ୍କର ବିକୃତି ଘଟିଛି ବୋଲି ଆଶଙ୍କା କରି ଲାଲବାଗ୍ ପୁଲିସ୍ ତମକୁ ଧରିନେଇ ରାତିଟି ଥାନାରେ ଆଶ୍ରୟ ଦେଇନଥା'ନ୍ତେ, ତେବେ ତମେ କରିଥା'ନ୍ତ କ'ଣ ? ସେଇ ଚିରାଚରିତ ପ୍ରଥା - ନିଶା ଆଉ ନାରୀର ଆଶ୍ରୟ ନେଇଥା'ନ୍ତ ତ ?

ସୁର - କି ଆଶ୍ଚର୍ଯ୍ୟ କଥା ଆପଣ କହୁଚନ୍ତି ! ନାରୀ ଆଉ ନିଶାର ଆଶ୍ରୟ କାହିଁକି ନେଇଥା'ନ୍ତି ?

ବିଶ୍ୱ - ଆଉ ତେବେ କ'ଣ କରିଥା'ନ୍ତ ଶୁଣେ ? ପ୍ରଫେସର୍ ଦାସ୍‌କୁ ଖୁନ୍ କରିଥା'ନ୍ତ ବା ମୀରା ଘରର ବାରିପଟ ବାରଣ୍ଡାରେ ଯାଇ ଆତ୍ମହତ୍ୟା କରିଥା'ନ୍ତ ?

ସୁର - ଖୁନ୍- ଆତ୍ମହତ୍ୟା ! ଏସବୁ ଦରକାର କ'ଣ ଥିଲା ?

ବିଶ୍ୱ - ଖୁବ୍ ଦରକାର ଥିଲା - ତା' ନ ହେଲେ ତମ ଜୀବନର ଗୋଟାଏ ନାଟକୀୟ ପରିଣତି କିମିତି ହୋଇଥା'ନ୍ତା ?

ସୁର - ଜୀବନର ନାଟକୀୟ ପରିଣତି କିପରି ହୁଏ ତା' ଅବଶ୍ୟ ମୁଁ ଜାଣେନା । ମୁଁ କିନ୍ତୁ ସିଧା ମେସ୍‌କୁ ଫେରିଆସି ବାବା ବିଶ୍ୱନାଥଙ୍କ ଆଶ୍ରୟ ଗ୍ରହଣ କରିଥା'ନ୍ତି ।

ବିଶ୍ୱ - Nonsense, ମତେ ତମେ ଗୋଟାଏ ଗଞ୍ଜୋଡ଼ କରିବାର ବ୍ୟବସ୍ଥା କଲଣି ନା କ'ଣ ? ମୋ ପାଖରେ ତୁମେ ଆଶ୍ରୟ ଭରସା କିଛି ପାଇବନାହିଁ । ବର୍ତ୍ତମାନ ତୁମେ ସୁନାପିଲାଟି ପରି ଫେରିଯାଅ ଶାନ୍ତି ପାଖକୁ, ସେଇ ତମକୁ ଆଶ୍ରୟ ଦବ ତମର ସେଇ ଗ୍ରାମୋନ୍ନତି ସଂଘରେ ।

ସୁର - ଫେରି ତ ଯାଉଛି - କିନ୍ତୁ ଜାଣନ୍ତି ବିଶ୍ୱନାଥବାବୁ, ଏଇ ଗ୍ରାମୋଦ୍ୟୋଗ ସଂଘର ସଂପାଦିକା ହେଲାଦିନୁ ଶାନ୍ତିର ମୁହଁ ଯେମିତି ବଢ଼ିଯାଇଚି । ସେ ଖୁବ୍ ଲମ୍ୱା କଥା କହିବାକୁ ଶିଖିଲାଣି ।

ବିଶ୍ୱ - ହଁ, ମୁଁ ତୁମକୁ ସେଦିନ କହିଥିଲି, ଶାନ୍ତି ତୁମକୁ ଏଣିକି ନୀତିଶିକ୍ଷା ଦବ -ଦବା- ଜଗୁର ଦବ । ତମେ ଠିକ୍ ବାଟକୁ ଆସିବାଯାଏ, ସେ ତମକୁ ମଝିରେ ମଝିରେ

ଏମିତି ପାନେ ଔଷଧ ଦେଉଥିବ । (ଭିତରୁ ଆସିଲା ଚାକର)

ଚାକର - ଜାଗା ହେଲାଣି, ଖାଇବେ ଆସନ୍ତୁ ।

ବିଶ୍ୱ - ହଁ ଚାଲ । (ଉଭୟେ ଚାଲିଗଲେ । ଟିକିଏ ପରେ ସେଠିକି ଆସିଲା ଅବିନାଶ । ସେ ଏଣେତେଣେ ଚାହିଁବାକୁ ଲାଗିଲା । ତା'ପରେ ଭିତରେ ଯେପରି ସେ କାହାକୁ ଦେଖିବାକୁ ପାଇଲା ।)

ଅବି - ଆରେ ବାପ୍‌ରେ-ମହାଭାରତ - (ପଳାଇଲା, ଭିତରୁ, ଖୁବ୍ ଜୋର୍‌ରେ ଦୌଡ଼ିଆସିଲା କାଳୀ - ଅବିନାଶକୁ ବାହାରୁ ଟାଣିଟାଣି ଆଣିଲା ।)

କାଳୀ - ହୁଁ, ମି. ହୋପ୍‌ଲେଶ୍ - ଖସିପଳାଉଥିଲ ନା ?

ଅବି - ମାରିବ କି - ବାବୁ, ମାରିବ ନା କ'ଣ ?

କାଳୀ - ପିଲାଖେଳ ହୋଇଚି ନା କ'ଣ, ମାରିବି ?

ଅବି - କାହିଁକି, ମାରୁନା ବାବୁ, ମାର - ତମରି ଯୁଗ ତ ପଡ଼ିଛି, ଥୋଇଦିଅ ଏବେ ଦି'ଟା ।

କାଳୀ - ରଙ୍ଗା-ରଙ୍ଗା- କମ୍ରେଡ୍ ରଙ୍ଗା !

ଅବି - ରଙ୍ଗା ବି ଅଛନ୍ତି ? କି ବେକୁବିଟା କଲିରେ ବାବା !

(ରଙ୍ଗା ଆସିଲେ)

ରଙ୍ଗା - ହ୍ୟାଲୋ ଶ୍ରୀମାନ୍ ଜୀବ ! ଆପଣ ଏଠି ?

ଅବି - ଜୀବହୀନ କରିଦିଅ ବାବା ! ଆଉ ଡେରି କାହିଁକି ?

କାଳୀ - ତୁ ଜଗିଥା ରଙ୍ଗା, ମୁଁ ଭିତରୁ ଆସୁଛି - (ଚାଲିଗଲା)

ଅବି - କ'ଣ ଦା' ହାତୁଡ଼ି ଆଣିବାକୁ ଗଲ ବାବୁ ? ଛେଚିକୁଟି ସାଫ୍ କରିଦେବ ?

ରଙ୍ଗା - Well ମି. ଅବିନାଶ, ଶୁଭାଗମନର କାରଣଟା କ'ଣ ଶୁଣେ ?

ଅବି - ଭୁଲିଗଲିଣି - ଆଗମନ କଥା ଭୁଲିଗଲିଣି - ଖାଲି ବିସର୍ଜନ କଥା ମନେପଡୁଚି । (କାଳୀ ଫେରିଲା, ତା' ହାତରେ ଲାଲ୍‌ରଙ୍ଗର ପତାକା ।)

କାଳୀ - କମ୍ରେଡ୍ ଅବିନାଶ, ଏଇଟା କ'ଣ ?

ଅବି - ସେଇଟା ବାବୁ ଗରୁଡ଼ଧ୍ୱଜା ।

କାଳୀ - ଗରୁଡ଼ଧ୍ୱଜା ?

ଅବି - ତେବେ ଆଉ କ'ଣ ବାବୁ ?

କାଳୀ - ଲାଲଝଣ୍ଡା, ବୁଝିଲ କମ୍ରେଡ୍; ଲାଲଝଣ୍ଡା ଏଇଟା ବର୍ତ୍ତମାନ ତୁମକୁ ଏଠି ଧରିବାକୁ ପଡ଼ିବ । କହ, ଲାଲ ଝଣ୍ଡାକି ଜୟ !

ଅବି - ରହିଥା ବାବୁ ! ରାୟବାହାଦୁରଙ୍କ ଟ୍ରେଜେରୀ ଚାବିଫାବି ଆଣି ଏଠି ଦାଖଲ କରିଦିଏ, ତା'ପରେ ଚିତାଚୈତନ କାଟି ତମ ସାଙ୍ଗରେ ଯା'କୁ ଜୟ ତାକୁ ଜୟ କରି ବୁଲୁଥିବି ।

ରଙ୍ଗା - ଶୁଣନ୍ତୁ, ଅବିନାଶବାବୁ ! ଆମକୁ ଦିନେ ଆପଣ ପରିହାସ କରିଥିଲେ ନା ?

ଅବି - ନକରିଥିଲେ ବାବୁ ତୁମେ ଆଜି ମୋ ନାକରେ ସଣ୍ଢୁଆସି ପୂରେଇ ମତେ ଏମିତି ଭାଲୁ ନଚାଉଥା'ନ୍ତ ?

ରଙ୍ଗା - ଆପଣ ସେଦିନ ଠିକ୍ କରିଥିଲେ ଅବିନାଶବାବୁ!

ଅବି - କ'ଣ କହୁଚ ବାବୁ, ଠିକ୍ କରିଥିଲି ?

ରଙ୍ଗା - ହଁ, ଆମର ବଡ଼ ବଡ଼ ନେତାମାନଙ୍କ ସକାଶେ ଆମକୁ ଲୁଆଚୋରି କରିବାକୁ ପଡ଼ିଥିଲା । କିନ୍ତୁ କମ୍ରେଡ଼୍ ବିଶ୍ୱନାଥଙ୍କୁ ଧନ୍ୟବାଦ, ସେ ତା'ର ନୀତି ବଦଳାଇ ନାହାନ୍ତି ।

ଅବି - ତମେ ଦିହେଁ ପରା ଦଳରୁ ଇସ୍ତଫା ଦେଇଥିଲ ବାବୁ ?

ରଙ୍ଗା - କିଛି ଲାଭହେଲାନାଇଁ - ବୁଝିଲେ ଅବିନାଶ ବାବୁ! ଚଳେଇ ଜାଣିଲେ ଚୋରିଟା ସବୁ ଜାଗାରେ ଚଳିପାରେ । ଚାକିରି, ବ୍ୟବସାୟ, ରାଜନୀତି, ପ୍ରେମ-ଧର୍ମ ଏ ସବୁଥିରେ ଚୋରି ସମ୍ଭବ । କିନ୍ତୁ ଦେଶସେବା କରିବାକୁ ଯାଇ ଚୋରି ଲୁଆଚୋରି ହୋଇପାରେନା । ଆମର ଭୁଲ୍ ଆମେ ବୁଝିପାରି ପୁଣି ଫେରିଆସିଲୁ ଆମର ଏଇ ଦଳକୁ ।

ଅବି - ଆଉ ତ ବାବୁ ସେ ବାୟା ବୁଦ୍ଧି ଧରିବ ନାଇଁ ?

ରଙ୍ଗା - ବର୍ତ୍ତମାନ ଆମ ଦଳର ପ୍ରଥମ ନୀତି ହେଉଚି, ଭାରତର ପୂର୍ଣ୍ଣ ସ୍ୱାଧୀନତା ହାସଲ ।

ଅବି - ଏ ଯେ ବାପ, ଗୋଟାଏ କଥା ପରି କଥା କହିଲ ।

ରଙ୍ଗା - ଭାରତ ପୂର୍ଣ୍ଣ ସ୍ୱାଧୀନ ହେବା ପରେ ଗୋଟାଏ ଦିନ ଆସିବ -ଯେଉଁଦିନ ଆମର ଏ ସାମ୍ୟବାଦ ନୀତିକୁ ଏଠି କେହି ରୋକିପାରିବେ ନାହିଁ ।

ଅବି - ହଉ ବାପା, ତମର ଏମିତି ସୁବୁଦ୍ଧି ହଉ - ଭଗବାନ୍ ତମର ମଙ୍ଗଳ କରନ୍ତୁ! (ଯିବାକୁ ଲାଗିଲା)

କାଳୀ - ଉଁ, ଉଁ, ଲାଲଝଣ୍ଡା ନଧରି ଚାଲିଯାଉଚ ଯେ କମ୍ରେଡ଼୍ -

ଅବି - ଏ ଖାଲି ଲାଲ କାହିଁକି, କଳା-ଧଳା-ନେଳି-ହଳଦୀ, ଯେତେ ରଙ୍ଗର ଝଣ୍ଡା ଦିଅନା ବାବୁ ମୁଁ ଧରୁଚି । ଭାରତର ସ୍ୱାଧୀନତା ନଚାହେଁ କିଏ ? ରାୟବାହାଦୁର ତ ଦି'ଦିନ ଗଲେ ଏଝଣ୍ଡା ଧରିବେ - ମୁଁ ବା କେଉଁ ଛାର! (ଝଣ୍ଡା ଧରି) ହଁ କହିବଟି ବାବୁ, କ'ଣ କହିବି କ'ଣ ଓଁ ସିଦ୍ଧିରସ୍ତୁର ଆରମ୍ଭ କରିବି ?

କାଳୀ - କୁହନ୍ତୁ, 'ବନ୍ଦେ ମାତରଂ' ।

ଅବି - ବନ୍ଦେ ମାତରଂ ।

କାଳୀ - 'ଭାରତ ମାତା କି ଜୟ' !

ଅବି - ଭାରତ ମାତାକି ଜୟ!

କାଳୀ- 'ସାମ୍ରାଜ୍ୟବାଦ ଧ୍ୱଂସ ହେଉ'!

ଅବି - ଏଁ! ବାବୁ ଏ କଥା କହିପାରିବି ନାହିଁ । ତମେ ତ ଲଙ୍ଗଳାପାଙ୍ଗଳା ଲୋକ, ତମର ସିନା ଜେଲ୍‌ଖାନାକୁ ଡରନାହିଁ.....

କାଳୀ - (ରଙ୍ଗାଧରକୁ) କମ୍ରେଡ୍, ଦା'......

ଅବି - ଦା'! (ଭୟଭୀତ ହୋଇ) ଥାଉ ବାବୁ..... ଦା' ଆଉ କ'ଣ ହବ ? ମୁଁ କହୁଛି ପଛେ..... 'ସାମ୍ରାଜ୍ୟବାଦ ଧ୍ୱଂସ ହେଉ'!

କାଳୀ - ପୁଣି କୁହ, 'ପୁଞ୍ଜିବାଦ ଧ୍ୱଂସ ହେଉ'!

ଅବି - ବାବୁ ଚାକିରି ଖଣ୍ଡକ ଯିବା କଥା ସିନା କହୁଚ!

କାଳୀ - (ରଙ୍ଗାଧରକୁ) କମ୍ରେଡ୍, ହାତୁଡ଼ି.....

ଅବି - (ହାତୁଡ଼ି!! ନାଇଁ ବାବୁ କହୁଚି-କହୁଚି- 'ପୁଞ୍ଜିବାଦ ଧ୍ୱଂସ ହେଉ'।

କାଳୀ - 'ଲାଲଝଣ୍ଡାକି ଜୟ'!

ଅବି - ଲାଲଝଣ୍ଡାକି ଜୟ! ଠିକ୍ ହେଲା ତ ବାବୁ ? ଠିକ୍ ହେଲା ତ, କୋଉଠି ମାତ୍ରାଫାତ୍ରା ଭୁଲିଯାଇନାହିଁ ତ ? (ଭିତରୁ ଆସିଲେ ବ୍ରଜ, ସୁର ଓ ବିଶ୍ୱନାଥ)

ସୁର - ଅବିନାଶବାବୁ ଯେ, ଏ କ'ଣ କରୁଛନ୍ତି ?

ଅବି - ବିଦ୍ୟାରମ୍ଭ ହେଉଥିଲା ବାବୁ! ଯୁଗର ଦୋଷ, ମୁଁ କ'ଣ କରିବି ?

ସୁର - ଆପଣ ଆସିଥିଲେ କୁଆଡ଼େ ?

ଅବି - ଦେଖନ୍ତୁ ବାବୁ, ଅସଲ କଥାଟା ଏତେବେଳଯାଏ କହିବାକୁ ଭୁଲିଯାଇଚି । ରେଖା ମା' ଆସିଚନ୍ତି ଆପଣଙ୍କ ପାଖକୁ ।

ସୁର - ରେଖାଦେବୀ ମୋ ପାଖକୁ ଆସିଚନ୍ତି! କାହିଁକି ?

ଅବି - ସେଇ ମୋଡ଼ ଉପରେ ମଟରରେ ଅପେକ୍ଷା କରି ବସିଚନ୍ତି, ଆପଣ ଅନୁମତି ଦେଲେ ଏଠିକି ଆସିବେ ।

ସୁର - ବିଶ୍ୱନାଥବାବୁ.....

ବିଶ୍ୱ - ବୁଝିଚି ଅବିନାଶବାବୁ! ଆପଣ ତାକୁ ଡାକିଦିଅନ୍ତୁ । ନା-ନା, ସୁରେଶ ତୁମେ ନିଜେ ଯାଇ ତାକୁ ଏଠିକି ଡାକିଆଣ ।

ସୁର - ମୁଁ ଯାଇ ତାକୁ ଡାକିଆଣିବି ଏଠିକି ?

ବିଶ୍ୱ - ପିଲାମି କରନାଇଁ ସୁରେଶ, ଯାଅ - (ସୁର ଓ ଅବିନାଶ ଚାଲିଗଲେ)

ବ୍ରଜ - ମୁଁ କିଛି ବୁଝିପାରୁନାହିଁ ବିଶ୍ୱନାଥବାବୁ!

ବିଶ୍ୱ - କିଛି ବୁଝିବା ଦରକାରନାଇଁ। ଆପଣମାନେ ସମସ୍ତେ ଏଠୁ ଚାଲିଆସନ୍ତୁ ।

ବ୍ରଜ - ନା, ବିଶ୍ୱନାଥବାବୁ! ସେଇଟା ଠିକ୍ ହବନାଇଁ ।

ବିଶ୍ୱ - ଦୁଇଟା ମୁକ୍ତାକୁ ଯୁଗ ପରେ ଯୁଗ ଏକାଠି ଯୋଡ଼ି ରଖିଦେଲେ ସେମାନଙ୍କ ଦେହରେ ଏତେଟିକେ କଳଙ୍କ ଲାଗିବ ନାହିଁ - ଆପଣ ଆସନ୍ତୁ।

(ସମସ୍ତେ ଚାଲିଗଲା ପରେ ସେଠାକୁ ଆସିଲେ ସୁର, ରେଖା ଓ ମିନି ।)

ସୁର - ପ୍ର.ଦାସ ତେବେ....

ରେଖା - ହଁ, ସେ ମୀରାକୁ ବିବାହ କରିଚନ୍ତି । ଦେଖିବେ ସୁରେଶବାବୁ, ସେମାନେ ଖୁବ୍ ସୁଖରେ ରହିବେ । ଅବଶ୍ୟ ତାଙ୍କ ଆସୋସିଏସନ୍ ରହୁନାହିଁ ।..... ଏ କ'ଣ, ଆପଣଙ୍କର ବିଛଣାପତ୍ର ବନ୍ଧାବନ୍ଧି ହୋଇଗଲାଣି - ଆପଣ ତା'ହେଲେ ଆଜି ଗାଁକୁ ଫେରିଯାଉଚନ୍ତି ?

ସୁର - ହଁ ।

ରେଖା - କଲେଜପଢ଼ା ଆପଣଙ୍କର ଏଇଠୁ ଶେଷହେଲା ?

ସୁର - ହଁ ।

ରେଖା - ମୋ ମତରେ ଆଉରି ଆଗରୁ ଶେଷହେବା ଉଚିତ୍ ଥିଲା ? କ'ଣ କହୁଚନ୍ତି ? ଆରେ, କିଛି କୁହନ୍ତୁ । ଭାରି ଆଶ୍ଚର୍ଯ୍ୟ ଲୋକ ତ ଆପଣ ! ଏ ଯିବା ଆସିବା ବେଳରେ କିଛି କହିବେ ନାହିଁ, ଏମିତି ଚୁପ୍‌ଚାପ୍ ରହିବେ ?

ସୁର - ରାୟବାହାଦୁର ଭଲଅଛନ୍ତି ?

ରେଖା - ସେଇ ମାମୁଲି କଥା ପଚାରିଲେ ତ ! ଆଚ୍ଛା ସୁରେଶବାବୁ, ଭଲନରହି ତାଙ୍କର ଆଉ ଉପାୟ କ'ଣ ? ଜଣେ ପ୍ରଫେସର୍ ଦାସ ଯାଇଚନ୍ତି - ତାଙ୍କ ଜାଗାରେ ଆଉ ତିନିଜଣ ଆସିବେ । ସେମାନଙ୍କୁ ଚା' ସିଗାରେଟ୍ ଯୋଗାଇବା ପାଇଁ ଟଙ୍କାର ଅଭାବ ତ ଆମର ନାହିଁ ?

ସୁର - ମୁଁ ଜାଣେ, ଆପଣ ଏଇ ସବୁକଥା କହିବେ -

ରେଖା- ଓ, ଭୁଲ୍ ହେଇଗଲା, ଆଉ କହିବି ନାହିଁ । ଆଚ୍ଛା, ଆପଣ ତ ଆଜି ଗାଁକୁ ଫେରିଯାଉଚନ୍ତି, କହନ୍ତୁ, ଶାନ୍ତିକୁ ଯାଇ ମୋ ତରଫରୁ କ'ଣ ଯାଇ କହିବେ ?

ସୁର - ଆପଣ କୁହନ୍ତୁ କ'ଣ ଯାଇ କହିବି ?

ରେଖା - କ'ଣ ବା ଆଉ କହିବେ ? ଆଚ୍ଛା, ଏଇ କଥାଟା ଯାଇ କହନ୍ତୁ ଯେ, ଯଦି ସେ ତା' ବାହାଘରକୁ ମତେ ଗୋଟାଏ ଖବର ଦିଏ - ତେବେ ମୁଁ ଗୋଟାଏ ବାହାଘର ଗୀତ ଲେଖିବି । ଆଉ ଗୀତ ଶେଷକୁ ଭଗବାନ୍‌କୁ ମୁଁ ମୋର ପ୍ରାଣଭରା ମିନତି ଜଣାଇ କହିବି - ହେ ଦେବତା ! ତମେ ଶାନ୍ତି ଓ ସୁରେଶବାବୁଙ୍କ ଜୀବନକୁ ମଙ୍ଗଳମୟ କର - ସେମାନେ ସୁଖରେ ରହନ୍ତୁ । ସେଥିରେ ହିଁ ମୋର ଆନନ୍ଦ- ମୋର ତୃପ୍ତି - ବାସ୍ ଏତିକି କହିବେ । ଆଚ୍ଛା ଆପଣଙ୍କର ଯିବାର ବେଳ ହେଇଗଲାଣି - ଆଉ ଆପଣଙ୍କୁ ବିରକ୍ତ କରିବି ନାହିଁ । ଆସୁଚି, ନମସ୍କାର - (ଚାଲିଯାଉଥିଲା)

ସୁର - ଶୁଣନ୍ତୁ ରେଖା ଦେବୀ ! ଏଇ ପରାଜୟର ମାଳା କ'ଣ ମୋ ଗଳାରେ ପିନ୍ଧାଇଦେବା ପାଇଁ ଏଠିକି ଆସିଥିଲେ ?

ରେଖା - ଦେଖନ୍ତୁ, ସେଦିନ ପ୍ରଫେସର୍ ଦାସ ମତେ କହିଥିଲେ, "ରେଖା, ତମେ ଜିତିଗଲ - ମୁଁ ହାରିଗଲି ।" ଆପଣ ମଧ ଆଜି ସେଇ ପରାଜୟର କଥା କହୁଚନ୍ତି । ତା'ହେଲେ ସୁରେଶବାବୁ, ଆପଣମାନେ ସମସ୍ତେ ହାରିଯାଇଚନ୍ତି; ଆଉ ମୁଁ ଜିତିଚି; ଖୁବ୍ ଜିତିଛି ନା ? କ'ଣ, କହୁନାହାନ୍ତି କାହିଁକି ?

ସୁର - ମୋର ଆଉ କିଛି କହିବାର ନାହିଁ ରେଖାଦେବୀ, ମୁଁ ଖାଲି ଏତିକି ଜାଣିପାରିବି କି ୟା'ପରେ ଆପଣ କରିବେ କ'ଣ ?

ରେଖା - ସେ କଥା ଆପଣ ନଜାଣିଲେ ବି ଚଳିବ ସୁରେଶବାବୁ! ଲକ୍ଷପତି ବାପର ଝିଅ ମୁଁ, କୋଉ କଥାରେ ଜୀବନ କଟାଇପାରିବି ନାହିଁ ? ମୋ ଭବିଷ୍ୟତ୍ ଜୀବନ ନେଇ କିଛି ଚିନ୍ତା କରିବାର ନାହିଁ ସୁରେଶବାବୁ! ମୁଁ ବେଶ୍ ଚଳିଯିବି । (ଚାଲିଗଲା, ମିନି ଚାଲିଯାଉ ଯାଉ ଫେରିଆସି -)

ମିନି - ଆପଣ ଚାଲିଯାଉଚନ୍ତି Sir ?

ସୁର - ହଁରେ ମିନି, ମୁଁ ଯାଉଚି । ଏଣିକି ଯିଏ ନୂଆ ମାଷ୍ଟର ରହିବେ ତାଙ୍କ ସହିତ କୌଣସି ମାୟା-ମମତା ରଖିବ ନାହିଁ ।

ରେଖା - (ବାହାରୁ) ମିନି -

ମିନି - ଯାଉଚି, ଆପଣଙ୍କ ବାହାଘରକୁ ଆମକୁ ଡାକିବେ, Sir!
ମୁଁ ଯାଉଚି । (ଚାଲିଗଲା । ଭିତରୁ ଆସିଲେ ବିଶ୍ୱ ଓ ବ୍ରଜ)

ବିଶ୍ୱ - ରେଖା ଚାଲିଯାଇଚି ସୁରେଶ ?

ସୁର - ହଁ ଚାଲିଯାଇଚି ।

ବିଶ୍ୱ - ଗୋଟାଏ ଉଜ୍ଜ୍ୱଳ ତାରକା ପରି ଜନ୍ମ ତା'ର । ଝଡ଼, ତୋଫାନ, ବର୍ଷା, ବାଦଲ - ଏସବୁର ଭିତରେ ସେ ରହିଯାଇଚି ବିଜୟିନୀ ହୋଇ ।....ହଁ, ବ୍ରଜବାବୁ, ଆପଣମାନେ ଫେରିଯାଉଚନ୍ତି ବୋଲି କାଲି ଶାନ୍ତି ପାଖକୁ ଚିଠି ଲେଖିଚନ୍ତି ନା ?

ବ୍ରଜ - ନଲେଖି ଆଉ ଉପାୟ ଥିଲା! ଯେଉଁ ଅବସ୍ଥାରେ ସେମାନଙ୍କୁ ଦେଖିଆସିଥିଲି - ବିଶେଷତଃ ମାଉସୀଙ୍କର ଯାହା ଅବସ୍ଥା, ଆଜି ଚିଠି ପାଇ ସେମାନେ ଟିକିଏ ନିଶ୍ଚିନ୍ତ ହୋଇଥିବେ । ହଁ ସୁର, ଆଉ ଡେରି କାହିଁକି- ଗାଡ଼ିର ସମୟ ପ୍ରାୟ ହୋଇଆସିଲା-

ବିଶ୍ୱ - ଆଉ ଡେରି କରି ଲାଭନାହିଁ ସୁରେଶ - ଏଥର ବାହାରିପଡ଼ -

ସୁର - (ବିଶ୍ୱନାଥ ପାଖକୁ ଆସି) - ବିଶ୍ୱନାଥବାବୁ......

ବିଶ୍ୱ - ମୁଁ ଆଶୀର୍ବାଦ କରୁଚି ସୁରେଶ ...... ତମର ଏ ଯାତ୍ରା ସଫଳ ହେଉ । ଭାରତ ବର୍ତ୍ତମାନ ସ୍ୱାଧିନ ହେବାକୁ ଯାଉଚି । ଦେଶର ଏଇ ସନ୍ଧିକ୍ଷଣରେ ଆମେ ସବୁ ବାଦ, ସବୁ ବିବାଦ ଭୁଲି ନିଜକୁ ଏମିତି ପ୍ରସ୍ତୁତ କରିବା - ଯାହା ଦ୍ୱାରା ଭାରତର ପୂର୍ଣ୍ଣ ସ୍ୱାଧୀନତା ହାସଲ ନକରି ଆମେ ପଛକୁ ଫେରିବା ନାହିଁ ।

## ତୃତୀୟ ଦୃଶ୍ୟ

(ବିଷ୍ଣୁପୁର ଗ୍ରାମୋନ୍ନତି ସଂଘ । ସ୍କ୍ରିନ ଉଠିନାହିଁ - ଭିତରୁ ଗୀତ ଶୁଭୁଛି । ସେଇ ଅବସ୍ଥାରେ ସ୍କ୍ରିନ୍ ଉଠିଲା । ସଂଘଗୃହଟି ଦୀପାବଳୀ, ଫୁଲ ଓ ତ୍ରିରଙ୍ଗ ପତାକାରେ ଅତି ସୁନ୍ଦର ଭାବରେ ସଜ୍ଜିତ । ସଂଘ ପ୍ରାଙ୍ଗଣରେ ଗ୍ରାମର ଅଧିକାଂଶ ନରନାରୀ ଉପସ୍ଥିତ ଥିଲେ - ସେମାନେ ସମସ୍ତେ ମିଳିତ ସ୍ୱରରେ ଗୀତ ଗାଉଥା'ନ୍ତି ।)

(ଗୀତ)

ଫେରିଆରେ- ଫେରିଆରେ ବାଉଳା -
ଆପଣ ମାଟି ଘରେ ଫେରିଆ-
ନିବୁଜ ତୋ'ର ଅଗନ ଘେରି ନାଚେ ସବୁଜ ମାୟାରେ ।୦ ।
ମାଟି ତଳେ ମାଟି ହୁଏ - ସୁନା ଖଣି ତୋର
ଝାଟି ହେଲୁ ସୁନା ପୁଅରେ-
ଖଟି ପର ବୋଲ -
ଏବେ, ଜୀବନଭରି କର ଉଜାଳା, ତୋ
ଜୀବନ ମୂଳଦୁଆରେ ।୧ ।

(ଏଇ ସମୟରେ ସେଠାକୁ ଆସିଲେ ପଶୁପତି - ଗୀତ ବନ୍ଦ ରହିଲା ।)

ପଶୁ - (ଅନ୍ତରାଳରେ ଥିବା ସୁରକୁ ଉଦ୍ଦେଶ୍ୟ କରି )- ଆ' ବାପ, ଚାଲିଆ - ଚାଲିଆ - ଆରେ ଲାଜ କରୁଚୁ କ'ଣ ବା ! ତୁ ଫେରିଆଉଚୁ ବୋଲି ପରା ଗାଁଯାକ ଲୋକ ତୋ' ବାଟ ଚାହିଁ ଏଠି ଜଗିବସିଚନ୍ତି - ଆ' ଚାଲିଆ -

(ସୁର ଓ ବ୍ରଜ ଆସିଲେ, ତାଙ୍କ ହାତରେ ପୂର୍ବର ସେଇ ସୁଟ୍‌କେଶ୍ ଓ ବିଛଣା ।)

ଆହେ ଦେଖ ହେ, ତମେ ଟୋକାଟୋକୀ ଗୁରାକ ମୁହଁକୁ ମୁହଁ ଅନାଅନି ହେଇ ଠିଆ ହେଇ ରହିଲ କାହିଁକି ? ଗୀତଟା ବୋଲ -

(ସମସ୍ତେ ପୁଣି ଏକସ୍ୱରରେ ଗାଇ ଉଠିଲେ ।)

(ଗୀତ)

ସାଧିବୁ ଯେବେ ତୋ ମନ ସାଧ, ଘେନ ସେ ମାଟି ଚିତା-
ସେଇ ମାଟିରେ ଲଙ୍ଗଳ ମୁନେ ଲାଖିଚି ଭାଗ୍ୟ ସୀତା-
ତା'ଲାଗି ଜାଳି ମାଟି ଦୀପାଳୀ -
ଡାକେ ଶ୍ୟାମଳୀ ମାଆ ରେ ।୨ ।

(ସର୍ବପ୍ରଥମେ କନ ଆଣି ଗୋଟିଏ ଫୁଲମାଳ ସୁର ବେକରେ ଦେଲା - ତା' ପରେ ଆଉ ଗୋଟିଏ ବାଳିକା ମାଳାଟିଏ ଆଣି ଦେଲା ବ୍ରଜ ବେକରେ-

ଏହିପରି ଭାବରେ ତିନି-ଚାରିଜଣ ବାଳିକା ଫୁଲମାଳ ଦେଇଗଲେ - ଶେଷକୁ ଆସିଲା ଶାନ୍ତି - ତା' ହାତରେ ଦୁଇଟି ମାଳା - ଗୋଟିଏ ବ୍ରଜ ବେକରେ ଦେଇ ଆଉ ମାଳାଟିକୁ ହାତରେ ଧରି ତଳକୁ ମୁହଁପୋତି ଠିଆହୋଇ ରହିଲା ।)

ପଶୁ - ଆହେ ଦେଖ ହେ - ମାଳାଟିକୁ ଧରି ଠିଆହେଇ ରହିଲା ।

ଆଲୋ ଦେ ତା' ବେକରେ-

(ଶାନ୍ତି ଲାଜ ଲାଜ ହୋଇ ସୁର ବେକରେ ମାଳା ଦେଇ ପ୍ରଣାମ କଲା ।)

ହୁଁ, ଏଇଥର ଯେ ହେଲା - ଅଗ୍ନିକୁ ବାୟୁ ସହାୟ - ଗାଁ ଏଥର ପଡ଼ିବ ଉଠିବ - ଆରେ କହ ବା ପିଲାଏ - କ'ଣ ତମେ ସବୁ କହ - ସେଇ ବନ୍ଦେ....

ସମସ୍ତେ - ବନ୍ଦେ ମାତରଂ !!!

(ଧୀରେ ଧୀରେ ନାଟକର ଶେଷ ଯବନିକା ନଇଁ ଆସିଲା ।)

---୦---

ଶ୍ରୀମତୀ ବଦଲତା ଦେବୀ, କରକମଳେଷୁ-

କାଗଜ ଓ କଲମ ଉପରେ ତମର କେବେହେଲେ ଭରସା ନଥାଏ ।
ସେଥିପାଇଁ ତମରି ହାତରେ 'ଭରସା' ଦେଇ ମୁଁ ତୃପ୍ତ ।

**ଗୋପାଳ**

# ନିଜକଥା

ରଙ୍ଗମଞ୍ଚ ପାଇଁ ଉଦ୍ଦିଷ୍ଟ ନାଟକରେ ସାହିତ୍ୟର ଏକ ବିଶିଷ୍ଟ ସ୍ଥାନ ଅଛି - ଏଭଳି ନାଟକ ଦର୍ଶକମାନଙ୍କୁ ନିର୍ମଳ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଆର୍ଥିକ ଦିଗରୁ ମଧ୍ୟ ରଙ୍ଗମଞ୍ଚକୁ ବଞ୍ଚାଇ ରଖିପାରେ, ଏ ପ୍ରମାଣ 'ଭରସା' ନାଟକ ଦେଇପାରିଚି । ମୋ ନାଟକ ରଚନାର ସାର୍ଥକତା ଏଇଠି ।

ଏଇ ନାଟକକୁ ଏକାନ୍ତ ସଫଳତା ସହ ମଞ୍ଚସ୍ଥ କରାଇବାରେ ଯେଉଁମାନେ ସାହାଯ୍ୟ କରିଛନ୍ତି, ବିଶେଷତଃ ଜନତା ରଙ୍ଗମଞ୍ଚର ଜେନେରାଲ୍ ମେନେଜର୍ ମୋର ବନ୍ଧୁ ଶ୍ରୀ ନରସିଂହ ମହାପାତ୍ର, ତାଙ୍କ ସହକର୍ମୀ ଶ୍ରୀ ଋଷିଶୃଙ୍ଗ ମିଶ୍ର ଓ ପରିଚାଳକ ଶ୍ରୀ ନିରଞ୍ଜନ ଶତପଥୀଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି । ରଙ୍ଗମଞ୍ଚରେ ଅଭିନୀତ ହେବା ସମୟର ସଙ୍ଗୀତ ସବୁର ରଚନା ଓ ସ୍ୱର ପାଇଁ କିଶୋର କବି ଶ୍ରୀ ଶ୍ୟାମସୁନ୍ଦର ଦାସଙ୍କଠାରେ ମୁଁ ଋଣୀ ।

ଯେଉଁ ସମ୍ବାଦପତ୍ର ଓ ସମାଲୋଚକ ବନ୍ଧୁମାନେ ଏ ନାଟକ ସମ୍ବନ୍ଧରେ ସେମାନଙ୍କର ଅଭିମତ ଦେଇଅଛନ୍ତି ସେମାନଙ୍କ ନିକଟରେ ମୁଁ କୃତଜ୍ଞ ।

କାଳୀଗଳି, କଟକ - ୨

ତା ୧୦।୧୦।୧୯୫୪ ଗୋପାଳ ଛୋଟରାୟ

# ବିଭିନ୍ନ ପତ୍ର-ପତ୍ରିକାର ଅଭିମତ

ଗତକାଲି ସ୍ଥାନୀୟ ଜନତା ରଙ୍ଗମଞ୍ଚରେ 'ଭରସା' ନାଟକର ପ୍ରଥମ ଅଭିନୟ ଆରମ୍ଭ ହେଲା । ସୁପରିଚିତ ନାଟକ ଲେଖକ ଶ୍ରୀ ଗୋପାଳ ଛୋଟରାୟ ଏହି ନାଟକର ସ୍ରଷ୍ଟା । ଜଣେ ଶିଳ୍ପୀର କଳାପ୍ରେମ ଓ ଆଦର୍ଶବାଦ ଉପରେ ନାଟକଟି ରଚିତ ହୋଇ ବହୁ ବିଭିନ୍ନ ଚରିତ୍ର ଓ ଘଟଣାରେ ପୂର୍ଣ୍ଣହୋଇଥିବା ହେତୁ ନାଟକ ଅଭିନୟ ବିଶେଷ ଚିତ୍ତାକର୍ଷକ ହୋଇଥିଲା । ସଂଳାପଗୁଡ଼ିକ ଅତି ଉଚ୍ଚଧରଣର ଓ ସମସ୍ୟାମୂଳକ ଏବଂ ତାହା ଅଭିନେତାମାନଙ୍କ ଯୋଗେ ବିଶେଷ ବୋଧଗମ୍ୟ ଓ ହୃଦୟଗ୍ରାହୀ ହୋଇପାରିଥିଲା । ଏଭଳି ନାଟକ ରଚନା ଓ ଅଭିନୟ ପ୍ରଦର୍ଶନ ଯେକୌଣସି ରଙ୍ଗମଞ୍ଚ ପକ୍ଷରେ ଗର୍ବର ବସ୍ତୁ ହେବ ।

'ସମାଜ' - ତା ୧୮ ।୧୨ ।୫୩

'ଭରସା' ପ୍ରକୃତରେ କଳାକାର, ଅଭିନେତା ତଥା ଦର୍ଶକ ସମସ୍ତଙ୍କୁ ଯେଉଁ ଭରସାର ସୂଚନାଦେଲା, ତହିଁରୁ ଏ ରଙ୍ଗମଞ୍ଚ ହାତରେ ଓଡ଼ିଶୀ ନାଟ୍ୟକଳାର ଭବିଷ୍ୟତ ଉଜ୍ଜ୍ୱଳ ବୋଲି ଆଶା ବିଡ଼ମ୍ବନା ହେବନାହିଁ । 'ମାତୃଭୂମି'- ତା ୧୯୮ ।୧୨ ।୫୩ ତାଙ୍କର 'ଫେରିଆ' ପରେ ଆଜି ଏଇ ଯେଉଁ ନୂତନ ଅର୍ଘ୍ୟଟି ସମର୍ପି ଦେଇଛନ୍ତି ଜନତା ହାତରେ, ଜନତା ତା'ର ଭୂୟସୀ ପ୍ରଶଂସା କରିବ ହିଁ କରିବ । ଶେଷରେ 'ଭରସା'ର ଜନ୍ମଦାତା ଗୋପାଳବାବୁଙ୍କୁ ତାଙ୍କର ସଫଳତା ପାଇଁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ନାଟ୍ୟକାରମାନଙ୍କୁ ଅନୁରୋଧକରୁ ଯେ, ଏହିପରି ଉପାଦେୟ ନାଟକ ପରିବେଷଣ କରି ଦେଶର ତଥା ଜାତିର କଲ୍ୟାଣ ସାଧନ କରନ୍ତୁ ।

'ପ୍ରଜାତନ୍ତ୍ର' - ତା ୨୭ ।୧୨ ।୫୩

ଜନତା ରଙ୍ଗମଞ୍ଚ, କଟକରେ

ପ୍ରଥମ ଅଭିନୟ ରଜନୀ - ତା ୧୬ ।୧୨ ।୧୯୫୩, ବୁଧବାର

# ପରିଚୟ

ମୋହନ - ନିରଞ୍ଜନ
କୁମାର - ନଟବର
ଆନନ୍ଦ - ଦୀନବନ୍ଧୁ (ଟିମ)
କାହ୍ନୁ - ପ୍ରଭାକର
ମଧୁ - ଗୋବର୍ଦ୍ଧନ
ଶଙ୍କରା - ପଙ୍କଜ
ରଘୁ - ବାବ୍‌ଲା
ମହାପାତ୍ର - ବଲାଇ ବାବୁ
ଚରଣ - ଶରତ
ଭୀମ ସିଂ - ସୂର୍ଯ୍ୟ
ରୁଟିବାଲା - ଶ୍ରୀଧର
ନୀଳା - ଲକ୍ଷ୍ମୀପ୍ରିୟା
ମୀର୍ଣ୍ଣା - ମାଧବୀ
ମୁକ୍ତା - କୃଷ୍ଣମଣି
ଶ୍ରୀମତୀ ଦାସ - ପୂର୍ଣ୍ଣଚାନ୍ଦ
ଷୋଡ଼ଶୀ - ହେମ

ମଞ୍ଚ ପରିକଳ୍ପନା : କେ. ଲକ୍ଷ୍ମୀନାରାୟଣ ଆଚାରୀ
ନାଟ୍ୟ ରଚନା : ଗୋପାଳ ଛୋଟରାୟ
ନାଟ୍ୟ ପରିଚାଳନା : ନିରଞ୍ଜନ ଶତପଥୀ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ନାୟକ ମୋହନର ବାସଭବନ । ମୋହନର ବୟସ ପ୍ରାୟ ପଚିଶବର୍ଷ । ସମୟ ରାତି ଏଗାରଟା । ଘରଟିକୁ ଦେଖିଲେ ମନେହୁଏ ଯେପରି ବାହାର ଭଙ୍ଗାଘର ସହିତ ଏହାର ଦାରିଦ୍ର୍ୟର ସମ୍ପର୍କ ଯଥେଷ୍ଟ ରହିଛି । ମୋହନ ଶିଳ୍ପୀ - କୋଠରି ତା'ର 'ଷ୍ଟୁଡ଼ିଓ'; କିନ୍ତୁ 'ଷ୍ଟୁଡ଼ିଓ' କହିଲା ବେଳକୁ ଯେଉଁ ଅନାହୂତ ସୌନ୍ଦର୍ଯ୍ୟର ଛାୟା ଆମ ଆଖିଆଗରେ ଭାସିଉଠେ, ତା'ର ଚିହ୍ନ ବର୍ଣ୍ଣ ଏଠି ନାହିଁ । ଯେ କେତୋଟି ଛବି ଓ ମୂର୍ତ୍ତିରେ ଶିଳ୍ପଚାତୁରୀ ସୌନ୍ଦର୍ଯ୍ୟର ପରିଚୟ ଦେଉଛି, ତାକୁ ଅତି ନିଷ୍ଠୁର ଭାବରେ ହତ୍ୟାକରୁଛି ଭଙ୍ଗା ଚୌକି, ଭଙ୍ଗା ଟେବୁଲ୍ ଓ ଭଙ୍ଗା କାନ୍ଥ । ଏଇ ପରିସ୍ଥିତି ଭିତରେ ମୋହନ ଗୋଟିଏ ଛବିର କାମ କରିଚାଲିଛି । ଠିକ୍ ଏତିକିବେଳେ ଝଡ଼ ବେଗରେ ପଶିଆସିଲା ନୀଳା । ବିବାହବେଦୀକୁ ଯାଉଥିବା କନ୍ୟାର ସମସ୍ତ ଚିହ୍ନ ତା'ଠାରେ ବିଦ୍ୟମାନ । ଆସିବା ସଙ୍ଗେ ସଙ୍ଗେ ସେ ଘରର ଦରଜାଟା ଖୁବ୍ ଜୋର୍‌ରେ ବନ୍ଦ କରିଦେଲା- ଆଉ ସେ ବନ୍ଦ ଦରଜାକୁ ପିଠିକରି ଆଉଜି ଠିଆହୋଇ ଯେପରି ଗୋଟିଏ ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲା - ଆଖି ଦୁଇଟା ତା'ର ଆପେ ଆପେ ବନ୍ଦ ହୋଇଆସିଲା । ଏତେ ଜୋର୍‌ରେ ଦରଜା ବନ୍ଦ ହୋଇଯିବା ଶବ୍ଦରେ ମୋହନ ଚମକି ଉଠିଲା ।)

ମୋହନ - କିଏ ? ନୀଳା ! ! (ନୀଳା କିଛି କହିପାରିଲା ନାହିଁ, ମୁହଁ ତଳକୁ କରି ଠିଆହୋଇରହିଲା ।)

ନୀଳା - (ଧୀରେ ମୁହଁଟେକି ଚାହିଁଲା - ତା' ଆଖିରେ ଲୁହ)

ମୋହନ - କ'ଣ ହେଲା ନୀଳା ?

ନୀଳା - ଅନେକ ଭାବିଚିନ୍ତି ମନର ସମସ୍ତ ବଳକୁ ଏକାଠି କରି ମୁଁ ଆଜି ଏତେବେଳେ ଏ ଅବସ୍ଥାରେ ତୁମ ନିକଟକୁ ପଳାଇ ଆସିଚି ମୋହନ, କେବଳ ତୁମରି ଭରସାରେ ମୁଁ ଏ ଦୁଃସାହସ କରିଚି ।

ମୋହନ - ତୋର ବିବାହ କାହ୍ନୁ ମହାରଣା ପୁଅ ଶଙ୍କର ସାଥିରେ ହେବାର ଥିଲା ନା ?

ନୀଳା - ହଁ....

ମୋହନ - ବିବାହ କାର୍ଯ୍ୟ ଶେଷ ହୋଇଯାଇଚି ?

ନୀଳା - ନା, ଆରମ୍ଭ ହେବା ପୂର୍ବରୁ ମୁଁ ଚାଲିଆସିଚି ।

ମୋହନ - ବିବାହବେଦୀ କନ୍ୟା ତୁ - ଅଥଚ.....

ନୀଳା - ମୁଁ ତ କହିଚି ମୋହନ, କେବଳ ତମରି ଭରସାରେ ମୁଁ ଏ ଦୁଃସାହସ କରିଚି ।

ମୋହନ - ମତେ ଛାଡ଼ି ସ୍ୱୟଂ ଭଗବାନ୍‌ଙ୍କ ଉପରେ ଭରସା ରଖି ତୁ ଯଦି ଏ କାମ କରିଥାଉ, ତାହାହେଲେ ବି ନୀଳା ତୁ ଭୁଲ୍‌କରିଚୁ-

ନୀଳା - ମୋ ଭୁଲ୍‌ର କୈଫିୟତ୍ ତମେ ପରେ ନେବ ମୋହନ ମୋତେ ଆଗେ କୁହ ମୁଁ ଏଠି ଟିକେ ଆଶ୍ରୟ ପାଇବି କି ନା ? (ପୁଲିସ୍ ମୋ ଆସିବାର ଖବର ପାଇଚି । (ଭୟରେ ସେ ଏକାବେଳକେ କାତର ହୋଇପଡ଼ିଲା)

ମୋହନ - ବୁଝିଲି, ଏ ତୋର ଦୁଃସାହସ ନୁହେଁ । ବୁଡ଼ିଗଲା ଲୋକ କୁଟା-ଖିଅକୁ ଆଶ୍ରୟ କଲାଭଳି ତୋ ଅବସ୍ଥା ଆଜି ହୋଇଚି; କିନ୍ତୁ କାହିଁକି ନୀଳା ! ଶଙ୍କରକୁ ବିବାହ କରି -

ନୀଳା - (ଆହତ ଦୃଷ୍ଟିରେ ମୋହନକୁ ଚାହିଁ) ମୋହନ....

ମୋହନ - ମତେ କ୍ଷମାକର ନୀଳା ! ଶଙ୍କରକୁ ଭଲଭାବରେ ଜାଣିବାର ସୁଯୋଗ ମୁଁ ପାଇନାହିଁ ।

ନୀଳା - ସେଥିପାଇଁ ତ ମୋର ଆସିବାଟାକୁ ତୁମେ ଭୁଲ୍ ବୋଲି କହୁଚ ।

ମୋହନ - କିନ୍ତୁ ଜାତି, ଧର୍ମ, ସମାଜର ଶିକୁଳିରେ ବନ୍ଧା ଚିତ୍ରକର ମଧୁମହାରଣାର ଅଠରବର୍ଷର ଝିଅ ରାତି ବାରଟାବେଳେ ବିବାହବେଦୀରୁ ବର ପାଖରୁ ଉଠିଆସି ପର ପାଖରେ ଠିଆହେବ - ଯା'କୁ ମୁଁ ଠିକ୍ ବୋଲି କେଉଁ ସାହସରେ କହିବି ନୀଳା ?

ନୀଳା - ମୋହନ ! ମୁଁ ପୁଣିଥରେ କହୁଚି ମୋହନ, ମୁଁ ଯାହାକିଛି କରିଚି ତୁମରି ଭରସାରେ । ମୋତେ କହିବାର ସୁଯୋଗ ମୁଁ ଆଜି ଅନେକ ଲୋକଙ୍କୁ ଦେଇ ଆସିଚି; କିନ୍ତୁ ମୋ ନିଜ କଥା କହିବାର ସୁଯୋଗ ମୁଁ ପାଇଚି ଏକା ତମରି ପାଖରେ । ତମେ ଶୁଣିବ ନାହିଁ ମୋ କଥା ?

ମୋହନ - ମୋର ସେ ଭଙ୍ଗା ଟ୍ରଙ୍କ୍‌ଟା ଖୋଲି ଦେଖିବୁ ନୀଳା- ମୁଁ ଜାଣେ ଶିଳ୍ପୀ ଆଉ ଚିତ୍ରକର ବୋଲି ସେଥିରେ ଗୋଛା ଗୋଛା ସାର୍ଟିଫିକେଟ୍ ରହିଚି; କିନ୍ତୁ ଆଜିକୁ ଦୁଇଦିନ ହୋଇଗଲା - ପଇସା ଅଭାବରୁ ମୋତେ ଏ ଦୁଇଦିନ ପ୍ରାୟ ଉପବାସରେ କଟେଇବାକୁ ପଡ଼ିଚି । ମୋର ମନେହେଉଚି ତୋ' ବାହାଘରର ଭୋଜି ଖାଇବା ପାଇଁ ଆଜି ସଞ୍ଜବେଳେ ମତେ ଯେପରି ଜଣେ କିଏ ନିମନ୍ତ୍ରଣ କରି ଯାଇଥିଲା; କିନ୍ତୁ ତା' ତ ହୋଇପାରିବ ନାହିଁ ! ବର୍ତ୍ତମାନ ତୋ ଜୀବନର ଲୁହଭରା କାହାଣୀ ତୁ କହିଯା' ନୀଳା - ସେଇଥିରେ ମୋର କ୍ଷୁଧା ମେଣ୍ଟିଯିବ ।

ନୀଳା - ମୋହନ ! (ନୀଳା କାନ୍ଦିପକାଇଲା)

ମୋହନ - ହଁ - ନୀଳା ! ତୁ କହିଯା' - ତୋ କଥା.....

## କ୍ରୋଡ଼ ଦୃଶ୍ୟ

(ଠିକ୍ ଏହି ସମୟରେ ମଞ୍ଚ ଅନ୍ଧକାର ହୋଇଗଲା - କ୍ଷଣକ ପରେ ପୁଣି ଆଲୁଅ ଜଳିଉଠିଲା, ଆଉ ମଞ୍ଚରେ ଦେଖାଗଲା ନୀଳା ଘରର ଗୋଟିଏ ଅଳିନ୍ଦର ଦୃଶ୍ୟ ।)

କାହ୍ନୁ - (ବ୍ୟସ୍ତହୋଇ ପ୍ରବେଶ କରି) ହୋଇଗଲା -ହୋଇଗଲା - ଖୁବ୍ ହୋଇଗଲା, ଢେର-ଢେର- ପୁଅ ବାହାକଲି ମୁଁ, ଶଙ୍କୁ ହେ ଶଙ୍କରା ? ବେହିଆ, ଅଲାଜୁକ- ଉଠିଆସିବାକୁ ସେଠି ବରବେଶ ହୋଇ ବସିଚି ! (ମଧୁ ଆସିଲେ ।)

ମଧୁ - ସମୁଦି-ସମୁଦି - ଶୁଣ ଭଲା ?

କାହ୍ନୁ - ରଖ ହୋ ତୁମର 'ସମୁଦି' । କସିକରି ଗାଲରେ ଛ'ପଟା ଚୂନକଳା ଦେଇ, ଆସିଲେ ପୁଣି ଡାକିବାକୁ ସମୁଦି ! ତେଣେ ଇଷ୍ଟେସନ୍ ଯାଇ ଦେଖ - ତୁମ ପାଠୋଇ ଝିଅ କଲିକତା କି କାଳିମାଟି ଟିକଟ କାଟିବେଣି -

ମଧୁ - ତୁମ ହାତଧରୁଚି ମହାରଣାଏ - ତମେ ଟିକେ ଥୟ ଧରି ବସ । ପିଲାଟା ମନ ଫେରେଇବାକୁ ଏଇ ସାଇରେ କାହା ଘରଆଡ଼େ ଯାଇଥିବ - ମୁଁ ଏଇସାତ୍ ତାକୁ ଧରିଆଣୁଚି-

କାହ୍ନୁ - ମଧୁ ମହରଣା ! ନିଶ ଦି'ପଟା ଦେଖୁଚ ? ଅଠର ବର୍ଷଦିନୁ ରଖିଚି । ସଭାରେ ହାରିଲେ କାହ୍ନୁ ମହାରଣା ନିଶ ପକେଇବ - ଏଇ ପଣକରି ଏ ନିଶ ରଖିଥିଲି । କହିବ ତ ତମରି ଆଗରେ ଏ ନିଶ କାଟି ଦିଆସିଲି ମାରି ଜଳେଇଦେବି, ତା'ସହ - ହେଲେ ନୀଳା ସହିତ ଶଙ୍କରର ବାହାଘର ! ହେଇପାରିବନାହିଁ ମହରଣାଏ, ହେଇପାରିବ ନାହିଁ । ମୁଁ କ'ଣ ଜାଣେନାହିଁ ତୁମ ଝିଅଙ୍କ ଗୁଣ ? ପାଠୋଇ ଝିଅ ତୁମର ଘରଯୋଗା ହେଇ ଛ'ବର୍ଷ କାଳ ଘରେ ରହିଲେ, ଦୁନିଆସାରା ବୁଲି ଆସିଲ, କୋଉଠି ଗୋଟାଏ ବରପାତ୍ର ଜୁଟିଲା ନାହିଁ -

ମଧୁ - ଝୁଅଠେଇଁ ତ ମୋର କିଛି ମାଛିଆପାତକ ହେଇ ନଥିଲା କାହ୍ନୁ - ଦି'ଅକ୍ଷର ପାଠ ପଢ଼ିଥିଲା ବୋଲି ସମସ୍ତେ ମିଳିମିଶି ତାକୁ ବାସନ୍ଦ କରିଦେଲ !

କାହ୍ନୁ - ସେଇ କଥା ତ.... କୂଳରୁ ଝୁଅଟା ଭାସିଯାଉଥିଲା ବୋଲି ତାକୁ ବୋହୂ କରିବାକୁ ରାଜିହେଲି । ବର୍ତ୍ତମାନକୁ ଏବେ ହେଲା କ'ଣ ? ହାତଗଣ୍ଠି ପଡ଼ିବ ବୋଲି ପୁଅ ମୋର ବେଦୀ ଉପରେ ବସିଚି - ଏଣେ ଝୁଅ ଗୁଣମଣି ତୁମର ପଗାର ପାର୍ । ମୁଁ ଜାଣେ - ଜାଣେ ସେଇ ଚଟିମଡ଼ା ଇଙ୍ଗିରେଜି ପଢ଼ାର ଗୁଣ ଇଏ......

ମଧୁ - ସେଇଥିପାଇଁ ତ ଶଙ୍କର ସାଥିରେ ନୀଳାକୁ ବାହା ଦେବାକୁ ମୁଁ ରାଜି ହେଇଥିଲି । ନଇଲେ ଗୋଟାଏ....

କାହ୍ନୁ - କ'ଣ - କ'ଣ କହିଲ ମହାରଣା ? ମୋ ପୁଅ ପୁଣି କ'ଣଟାଏ !

ମଧୁ - ଏ ବାହାଘର କଥା ଉଠିବା ଦିନରୁ ନୀଳା ଆଖିରୁ ଦିନରାତି ଲୁହବହୁଚି ।

କାହ୍ନୁ - ତମେ ଗୋଟେ ଢଙ୍ଗ ବାହାରକରୁଛ କି ମହାରଣାଏ ? ଝିଅ ତୁମର ଘର ଛାଡ଼ି ପଳେଇଲା, ସେଟା ଆଖିକୁ ଦିଶିଲା ନାହିଁ । ଆଉ ମୋ ପୁଅ ପୁଣି ଗୋଟାଏ.....

ଶଙ୍କରା - (ମଦ ଖାଇ ଆସିଚି) ବାପା ଓ ଫାଦର୍......

କାହ୍ନୁ - ଶଙ୍କୁ !

ଶଙ୍କର - (ପିଲାଙ୍କ ପରି କରୁଣ ସ୍ୱରରେ) ଏ ବାହାଘର କୁଆଡ଼େ ହବନାହିଁ ବାପା ? କାହିଁକି ହବନାହିଁ ? ମୁଁ ବି ତ ମାଇନର୍ ପାଶ୍ କରିଚି (ମଧୁର ପାଦ ଧରି) ତମ ପାଦ ଧରୁଚି- ତମେ ତାଙ୍କୁ ଡାକିଆଣ -

ମଧୁ - (ଘୃଣାରେ ପଛକୁ ଘୁଞ୍ଚିଯାଇ) କାହ୍ନୁ ! ପୁଅକୁ ମଦ ଖୁଆଇ ତମେ ବାହା କରେଇବାକୁ ଆଣିଥିଲ । ଛି-ଛି-ଛି, ନୀଳାକୁ ମୁଁ ବିଷଦେଇ ମାରିଦେବି ପଛେ - ଏ ନର୍କ କୁଣ୍ଡକୁ ଠେଲିଦେଇପାରିବି ନାହିଁ । (ଯାଉ ଯାଉ ପୁଣି ଫେରି) ନୀଳା ମୋର ଯୁଆଡ଼େ ଯାଉଚି ଯାଉ - ମୁଁ ଫେରିଲାବେଳକୁ ତୁମେ ସମସ୍ତେ ଏଠୁ ବିଦାହୋଇଥିବ । (ପ୍ରସ୍ଥାନ)

କାହ୍ନୁ - ମଧୁ ଭାଇ ! ଟିକିଏ ଶୁଣି ମଧୁଭାଇ ! (ମଧୁ ପଛେ ପଛେ ଚାଲିଗଲା)

ଶଙ୍କର - (ନିଶାରେ ଅଣଆୟତ୍ତ ହୋଇ) ହେ ମୋର ହେବ କି ନହେବ ଶ୍ୱଶୁର ! ତମେ ଏମିତି ବିଗିଡ଼ି ଯାଅନାହିଁ - ମୋ କୈଫିୟତ୍‌ଟା ଆଗେ ଶୁଣ । କାଲି ବାଇସ୍କୋପ ଦେଖି ଯାଇଥିଲି । ଏମିତି ବେଦୀରୁ କନ୍ୟା ଉଠି ଚାଲିଗଲା ଆଉ ଜଣକ ସାଥିରେ - ବିଚରା ବରର କି ଅବଶୋଷ ! ପକେଟ୍‌ରୁ ଚେପ୍‌ଟା ବୋତଲ ବାହାର କରି ମଦ ଖାଇଲା ଆଉ କହିଲା - ଲଡ଼୍‌କୀ ଭାଗ୍‌ଗୟୀ - ମେଁ ସରାବ ଖାତା ହୁଁ, ଔର ଇସିଲିଏ ଖାତାହୁଁ କି ମେରା ଦିଲ୍ ସେ ଆଗ୍ ବୁଝ୍ ଯାଏ ! ମଦ ଖାଇ ମୁଁ ବାହା ହବାକୁ ଆସିନଥିଲି - ନୀଳା ପଳେଇଲା ବୋଲି ମୁଁ ମଦ ଖାଉଚି - କହିବ ତ ମୁଁ ବି ଭୋ-ଭୋ ହେଇ କାନ୍ଦିବି । (କାନ୍ଦୁଥାଏ ! କାହ୍ନୁ ଆସିଲେ)

କାହ୍ନୁ - ଶଙ୍କୁ - ଏ ଶଙ୍କରା ! ଇଏ କ'ଣ ହଉଚି ? ହଇରେ !

ଶଙ୍କରା - ନୀଳା ମାଟ୍ରିକ୍ ପାସ୍ କରିଚି ନା ବାପା ।

କାହ୍ନୁ - ତୁ ବି ତ କିଛି କମ୍ ପାସ୍ କରିନୁ ! ଛତରା କୁଳାଙ୍ଗାର ! ଏତେ ବଡ଼ ଗୋଟାଏ ମଉକାକୁ ହାତଛଡ଼ା କରିଦେଲୁ ? ତୋ ପାଇଁ କନିଆ ମିଳୁନଥିଲା କି ନୀଳା ପାଇଁ ବର ମିଳୁନଥିଲା, ଧୃତରାଷ୍ଟ୍ର ଗାନ୍ଧାରୀ ପରି ତମ ଦୁହିଁଙ୍କୁ ଜୁଟାଜୁଟି କରି ଦେଉଥିଲି । ବାହାଘର ହୋଇଯାଇଥିଲେ ଅଭଙ୍ଗା କଣ୍ଟେଇ କାରଖାନାରେ ତା' ଚାକିରିଟା ମଧୁ ମହାରଣା ମତେ କରେଇଦବ ବୋଲି କହିଥିଲା । ତୁ ପୋଡ଼ାମୁହାଁଟା - ଏଁ । ଢଙ୍ଗ ଦେଖ - (ଶଙ୍କର ପୁଣି ଟଳିବାକୁ ଲାଗିଲା, କାହ୍ନୁ ତାକୁ ଜୋର୍‌ରେ ହଲାଇଦେଇ) ତୋତେ ନେହୁରା ହେଉଚି ଭଲା - ତୁ ଯା' ମୁହଁ ହାତ ଧୋଇ ପାଟିରେ ଖିଲେ ପାନଜାକି ସେଠି ବସ, ମୁଁ ଏଣେ ଯାଉଚି ମଧୁ ମହାରଣାକୁ ପଟାପଟି କରି ନୀଳାକୁ

ଆଣେ - (ଶଙ୍କର ବାଧହୋଇ ଛୋଟ ଶିଶୁଟି ପରି ଠିଆହେଲା; କିନ୍ତୁ କାହ୍ନୁ ଚାଲିଯିବାର ଦେଖି ହଠାତ୍ ବୁଲିପଡ଼ି)

ଶଙ୍କର - ପାରିବ ନାହିଁ ବାପା ! ତୁମେ ଏକା ପାରିବ ନାହିଁ ! ! ନୀଳାର ଗୋଟାଏ ପାସ୍‌କୁ ମୋର ଗୋଛାଏ ପାସ୍ - ମତେ ସାଙ୍ଗରେ ନିଅ ବାପା - ମୁଁ ତାକୁ ଠିକ୍ ପଟେଇ ଆଣିବି । (କହି କହି ଚାଲିଗଲା)

(ମଞ୍ଚରୁ ଆଲୁଅ ଲିଭିଲା - କ୍ରୋଡ଼ ଦୃଶ୍ୟର ଅବସାନ ଘଟିଲା । ପୁଣି ଆଲୁଅ ଜଳିବା ସଙ୍ଗେ ସଙ୍ଗେ ଦେଖାଗଲା ମୋହନ ଓ ଲୀଳା ସେ ଘରେ ଅଛନ୍ତି । ପୂର୍ବପରି କହିଚାଲିଚି ନୀଳା ତା'ର କାହାଣୀ ।)

ନୀଳା - ମୁଁ ଆଉ ପାରିଲିନାହିଁ ମୋହନ - ସବୁ ନିନ୍ଦା ଅପବାଦକୁ ପଛରେ ପକେଇ ଚାଲିଆସିଛି ତୁମ ପାଖକୁ ।

ମୋହନ - ମୁଁ ବୁଝୁଚି ନୀଳା - ତୋର ଏ ଅବସ୍ଥା ପାଇଁ ବେଶି ଦାୟୀ ମୁଁ । ମୁଁ ତୋତେ ଭରସା ଦଉଚି - ତୋର ଜଣେ ଉପଯୁକ୍ତ ସ୍ୱାମୀ ମୁଁ ଖୋଜି ବାହାର କରିବି । ଆମ କୁଳର ନହେଲା - ତୋ ପରି ଝିଅକୁ ଗ୍ରହଣ କରିବା ପାଇଁ ବ୍ରାହ୍ମଣ, କରଣ କୁଳର ଶିକ୍ଷିତ, ସଚ୍ଚରିତ୍ର ଯୁବକର ଅଭାବ ହେବନାହିଁ ।

ନୀଳା - ଏ ଦେଶର ସବୁ ଝିଅ କ'ଣ ଜନ୍ମ ହୋଇଛନ୍ତି କେବଳ ବିବାହ କରିବା ପାଇଁ ?

ମୋହନ - ଏ ଦେଶରେ ନହୋଇପାରେ ନୀଳା; କିନ୍ତୁ ଆମ କୁଳର ସବୁ ଝିଅ ଯେ, ବିବାହ କରିବାପାଇଁ ଜନ୍ମ ହୋଇଛନ୍ତି । ଏଇ ତ ତୁ ବର୍ତ୍ତମାନ କହିଲୁ ମାଷ୍ଟ୍ରାଣୀ କିମ୍ବା ନର୍ସ ହେବାପାଇଁ ତୋ ବାପା ତୋତେ ଅନୁମତି ଦେଲେନାହିଁ -

ନୀଳା - ଆଜିକୁ ଛ'ବର୍ଷ ତଳର କଥା ମୋହନ, ମୁଁ ସେତେବେଳେ ତୁମକୁ ମନୁଭାଇ ବୋଲି ଡାକୁଥାଏ । ଦିନେ ତୁମେ ମୋତେ କହିଲ....ନୀଳା, ଏଣିକି ତୁ ମତେ ଖାଲି ମୋହନ ବୋଲି ଡାକ୍ । ମନେଅଛି ତୁମର ସେ କଥା ?

ମୋହନ - କିନ୍ତୁ ସେ ଯେ ବହୁ ଅତୀତ ଦିନର କଥା ନୀଳା !

ନୀଳା - ଅତୀତକୁ ତୁମେ ହଜାରେ ନାହିଁ ବୋଲି କହିଲେ ବି ସେ ଅଛି - ବର୍ତ୍ତମାନର ପ୍ରତି ମୁହୂର୍ତ୍ତରେ ସେ ଜୀଇଁ ରହିଚି । ତାକୁ ତୁମେ ଫାଙ୍କି ଦେଇପାରିବନାହିଁ ।

ମୋହନ - ଫାଙ୍କିଦେଇ ନପାରେ ନୀଳା; କିନ୍ତୁ ଡାକିଆଣି ଲାଭ'କ'ଣ ହେବ ।

ନୀଳା   ଯାହାର ଆସିବାର କଥା ସେ ଆସିବ ମୋହନ - କାହା ଡାକକୁ ସେ ଅପେକ୍ଷା କରିବନାହିଁ । ତମେ ତ - ତମେ ତ ମତେ ଏଠିକି ଡାକିଆଣିନଥିଲ-

ମୋହନ - ନୀଳା ! !.....ଆଚ୍ଛା ତୁ ବର୍ତ୍ତମାନ ଚାଲ ମୋ' ସାଙ୍ଗରେ ତମ ଘରକୁ । ଶଙ୍କର ସାଥିରେ ତୋ' ବାହାଘର ହବନାହିଁ, ଏ ଭରସା ମୁଁ ଦଉଚି ।

(ଏତିକିବେଳେ ମଧୁ ମହାରଣାର ପାଟି ଶୁଭିଲା)

ମଧୁ - ମୋହନ, ମୋହନ ! ! (କବାଟ ଖୋଲି ଆସିଲା) ହୁଁ, ପୁଲିସ ତାହା ହେଲେ ଠିକ୍

କଥା କହିଚି ! ନୀଳା, ଏତେ କଥା ଯଦି ତୋ ମନରେ ଥିଲା, ତେବେ ତୁ ଏଠିକି ଆସିବା ପୂର୍ବରୁ ମୋ ପାଟିରେ ବିଷ ଦେଇ ଆସିଲୁନାହିଁ କାହିଁକି ? ମତେ ବିଷ ଦେଇ ତେଣିକି ତୋର ଯାହା ଇଚ୍ଛା ତା କରିଥା'ନ୍ତୁ । ପୋଡ଼ାମୁହିଁ, କି ପାଠପଢ଼ିଲୁ ଯେ, ଆସି ବୁଢ଼ୀଟିଏ ହେଲୁଣି - କପାଳକୁ ବରଟାଏ ବି ଜୁଟିଲାନାହିଁ । ଏ ରାତିଅଧରେ ଘରୁ ଗୋଡ଼ କାଢ଼ି ପଦାକୁ ଚାଲିଆସିଚୁ କୋଉ ମୁହଁରେ ।

କାହ୍ନୁ -(ପ୍ରବେଶ କରି) ଛୁଆଟା ଉପରେ ତୁମେ ମିଛଟାରେ ରାଗୁଚ ମହାରଣାଏ । କଥାର ମଞ୍ଜି ଯାଇ କଉଠି ତା ତମେ ଜମା ବୁଝୁନା । ଆଛା ମହନି - ତୋର ଏଇଟା କି ବୁଦ୍ଧି ? ପାଠଶାଠ ପଢ଼ି ତୋର ଏ କି ଅକଲ ଶୁଣେ ! ଝିଅଟାକୁ ଶିଖେଇ ମଣେଇ ଯେ ବାହାବେଦୀରୁ ଉଠେଇ ଆଣିଲୁ, ଏଇଟା କ'ଣ ଭାରି ଭଲ ହେଲା ?

ମଧୁ - କାହ୍ନୁ, ନୀଳାକୁ ଶିଖେଇ ଆଣିଚି ମୋହନ ?

କାହ୍ନୁ - ତୁମେ ବୁଝୁଛ କ'ଣ ? ଗଙ୍ଗାମନ୍ଦିର ପୋଖରୀକୁ କ'ଣ ପାଣି ଶୁଖିଯାଇଥିଲା ଯେ, ନୀଳା ରାତି ଅଧରେ ଆସିଥା'ନ୍ତା ମୋହନ ପାଖକୁ ?

ଶଙ୍କର - (ଟଳି ଟଳି ଆସିଲା)

ମୋହନ - ମଧୁ ଦାଦା ! ନୀଳାକୁ ସାଥିରେ ନେଇ ତୁମେ ଘରକୁ ଯାଅ; କିନ୍ତୁ ଗୋଟାଏ କଥା ମୁଁ କହି ରଖୁଚି, ଶଙ୍କର ସାଥିରେ ନୀଳାର ବାହାଘର ହେଇପାରିବନି -

ଶଙ୍କର - (ଖୁବ୍ ଗମ୍ଭୀର ହେବାର ଚେଷ୍ଟା କରି) ଶଙ୍କର ସାଥିରେ ନହେଲେ ଧୃତରାଷ୍ଟ୍ର ଗାନ୍ଧାରୀ ଯୋଡ଼ି ଭାଙ୍ଗିଯିବ ଯେ !

ମୋହନ - ଶଙ୍କର !

ଶଙ୍କର - ଟିକେ ଆସ୍ତେ ମହନିଭାଇ -

କାହ୍ନୁ - ଶଙ୍କୁ - (ଶଙ୍କର ଭଲପିଲାଟି ପରି ଠିଆହୋଇ ରହିଲା) ତୁମେ ଚୁପ୍ ହୋଇ ରହିଲ ଯେ, ମହାରଣାଏ ! ନୀଳାକୁ ସାଥିରେ ନେଇ ଏଠାରୁ ଯିବ କି ନାହିଁ ? ତେଣେ ଲଗ୍ନ ଯେ ଗଡ଼ିଯାଉଚି !

ମୋହନ - ଏ କଥାର ଜବାବ ମୁଁ ଦଉଚି ମହାରଣାଏ । ନୀଳା ସାଥିରେ ଶଙ୍କରର ବାହାଘର ହୋଇପାରିବନି ।

କାହ୍ନୁ - ଏ ଜବାବ ଦେବାକୁ ତୁ କିଏ ? ମୁଁ ପଚାରୁଛି ତୁ କିଏ ?

ଶଙ୍କର - କିନ୍ତୁ ବାପା, ତାଙ୍କୁ ଏ କଥା ପଚାରିବାକୁ ତୁମେ କିଏ ?

ମଧୁ - ମୁଁ ତୁମକୁ କହିଦଉଚି କାହ୍ନୁ -ଏ ବାହାଘର ହୋଇପାରିବନି, ତୁମେ ଏଠୁ ଯାଅ ।

କାହ୍ନୁ - ତାହାହେଲେ ଏମିତି କଥା ? ନା ! ସମସ୍ତେ ମିଳିମିଶି ମତେ ଅପମାନ ଦେଉଚ । ହେଲେ ମୁଁ କହିରଖୁଚି ମହାରଣାଏ, ଏ କଥା ଭଲହଉନି ।

ମୋହନ - ଭଲ-ମନ୍ଦ ବିଚାର କରିବାର ଜାଗା ଏଇଟାନୁହେଁ କାହ୍ନୁ ମହାରଣା, ତୁମେ ଏଠୁ ଯାଅ -

କାହ୍ନୁ - ହଁ । ଏଇଟା କାହିଁକି ଭଲ-ମନ୍ଦ ବିଚାର କରିବାର ଜାଗା ହବ! ଏଇଟା ତ ଅଧରାତିରେ ଗୋଟାଏ ଅଭିଆଡ଼ୀ ଝିଅକୁ ନେଇ ତାମସା କରିବା ଜାଗା ।

ମୋହନ - ତୁମେ ଏଠୁ ଯାଉଚ ନା କାହ୍ନୁ ମହାରଣା - ପୁଣି ଦେଖିବ ?

କାହ୍ନୁ - ହଁ ହଁ! ମୁଁ ଏମିତି କେତେ ଦେଖିଚି । ତୁ ମତେ କ'ଣ ଦେଖେଇବୁ? ମୁଁ ବି ଏଇ କଟକ ସହରର ପିଲା । ହଉ, କଥା ରହିଲା, ଦିନେ ଦେଖାଦେଖି ହବା । ଶଙ୍କୁ, ଆ ଚାଲିଆ -

ଶଙ୍କର - ହଁ ଚାଲ ବାପା, ମୁଁ ଟିକେ ନୀଳାଠୁ ବିଦାୟ ନେଇଯାଏଁ । ନୀଳା ଗୁଡ଼୍‌ବାଏ । ମୋହନଭାଇ, ନମସ୍କାର । କବି କହିଛନ୍ତି - "ବର ଛାଡ଼ି ଆଜି ପରପାଶେ ଠିଆ ତରୁଣୀ, ପ୍ରେମ ଲାଗି ସେ ତ ଆଷାଢ଼ ଆକାଶ ମାନୁନି"..... (ଚାଲିଗଲା)

ମଧୁ - ମୋହନ! ବେଦୀରୁ ବର ଛାଡ଼ି ନୀଳା ରାତିଅଧରେ ଚାଲିଆସିଛି ତୋ ପାଖକୁ, ଯା'ର କି କୈଫିୟତ୍ ତୁ ମତେ ଦେବୁ ?

ନୀଳା - ଏ କୈଫିୟତ୍ ତୁମେ ତାଙ୍କୁ ମାଗିପାରିବନି ବାପା!! ସେ ମୋତେ ଏଠିକି ଡାକିଆଣି ନଥିଲେ - ମୁଁ ନିଜେ ଆସିଛି ମୋ ମନକୁ ।

ମୋହନ - କିନ୍ତୁ ଶଙ୍କର ସାଥିରେ ନୀଳାର ବାହାଘର - ଏକଥା ତୁମେ କେମିତି ଭାବୁଛ ମଧୁ ଦାଦା ?

ମଧୁ - ତୁ ବୁଝିପାରିବୁନି ମୋହନ! କି ଦାୟରେ ପଡ଼ି ମୁଁ ନୀଳାର ବାହାଘର ଶଙ୍କର ସାଥିରେ କରାଉଥିଲି! ଚିତ୍ରକର କୁଳରେ ଜନ୍ମ ହେଇ ସେ ଆଉ କେତେଦିନ ଅଭିଆଡ଼ୀ ହୋଇ ରହନ୍ତା! ହେଲେ ଏମିତି ଭାଗ୍ୟ ନେଇ ସେ ଜନ୍ମହୋଇଚି ଯେ, ବେଦୀରେ ବସି ବି ସେ ବାହାହେଇପାରିଲାନାହିଁ ।

ମୋହନ - ବାହାଘରଟା ଯେବେ ତା'ର ବଡ଼ କଥା, ତେବେ ତା ପାଇଁ ବରର ଅଭାବ ହେବନାହିଁ । ତମର ଯଦି ଆପତ୍ତି ନଥାଏ, ତେବେ ମୋ ସାଥିରେ - ହଁ ମଧୁ ଦାଦା - ମୋ ସାଥିରେ ନୀଳାର ବିବାହ....

ମଧୁ - ମୋହନ! ଆଜିକୁ ଛ'ବର୍ଷ ତଳର କଥା, ନୀଳା ସେତେବେଳେ ଘରେ ରହିବା ଝିଅ; କିନ୍ତୁ ତୋ ଶିକ୍ଷାରେ ପଡ଼ି ମୋ ଇଚ୍ଛା ବିରୁଦ୍ଧରେ ରାଗି ରୁଷି ମାଟ୍ରିକ୍ କ୍ଲାସ୍‌ରେ ନାମ ଲେଖାଇଲା, ଆଉ ତୁ ଗଲୁ ବମ୍ବେ । ଛ'ବର୍ଷ ପରେ ଏଇ ମାସେ ହେଲା ତୁ କଟକ ଫେରିଆସିଛୁ । ଆଉ ଆଜି ଏଇ କଥାଟା କହିବା ଆଗରୁ ତୁ ତୋ ନିଜ ଆଡ଼କୁ ଥରେ ଚାହିଁ ଦେଖିଚୁ ତୁ!

ମୋହନ - ତମର ଇଙ୍ଗିତ ମୁଁ ବୁଝୁଚି । ମୁଁ ନିଃସ୍ୱ -ମୁଁ ସଂସ୍ଥାହୀନ- ଏଇ ମୋର ଅବସ୍ଥା - ଏଇ ମୋର ଘରଦ୍ୱାରର ଅବସ୍ଥା ।

ବିବାହ କରିବା ପାଇଁ ନିଜକୁ ପ୍ରସ୍ତୁତ କରିନାହିଁ । ଏଇ କଥା ତୁମେ ମତେ ଚେତେଇ ଦେଉଚ; କିନ୍ତୁ ମୁଁ ନିଃସ୍ୱ - କାଙ୍ଗାଳ ଗରିବ ହେବାଟା ଯେତେବଡ଼ ପାପ ନୁହେଁ,

ସେତେବଡ଼ ପାପ ହଉଚି ନୀଳା ପରି ଝିଅ ଆମ କୁଳରେ ଜନ୍ମ ହେବା ।

ମଧୁ - ଗୋଟିଏ ଅଠର ବର୍ଷର ଯୁବତୀ ଝିଅକୁ ସାମ୍ନାରେ ଠିଆକରେଇ ଖୁବ୍ ବଡ଼ ବଡ଼ କଥା କହିବା, ଆଉ ତାକୁ ବାହା ହେଇ ଘର ସଂସାର କରିବା, ଏ ଦୁଇଟା ଗୋଟାଏ କଥାନୁହେଁ ମୋହନ । ତୁ ମତେ ଭୁଲ୍ ବୁଝିବୁ ନାହିଁ ବାପ! ପାଠଶାଠ ପଢ଼ି ମଣିଷ ହେଇଚୁ - ସେଥିପାଇଁ ମୁଁ ତୋତେ ଏ କଥା କହିଲି । ଶଙ୍କରକୁ ନୀଳା ବାହାହେଇଥିଲେ ନୀଳା ମଲା କି ଗଲା ତା'ର ଖୋଜ ଖବର ମୁଁ ନେଇନଥା'ନ୍ତି । ଆଉ ନୀଳା ଆଜି ତୋ ସ୍ତ୍ରୀ ହବ - ଦାଣ୍ଡରେ ପାଞ୍ଚଜଣଙ୍କ ଆଗରେ ମୁଁ କ'ଣ କହିବି ଜାଣୁ ? ମୁଁ କହିବି ନୀଳା ମୋର ରାଣୀ ହେଇଚି! ଚାଲ ବାପା - ତେଣେ ଜାତି ଭାଇମାନେ କେତେ କ'ଣ କହୁଥିବେ.....

ମୋହନ - ନା ମଧୁ ଦାଦା! ଏ ବାହାଘର ଆଜି ହେଇପାରିବ ନାହିଁ ।

ମଧୁ - ଏ କିମିତି କଥା ମୋହନ ?

ମୋହନ - ସାଇଭାଇଙ୍କ କଥା ରଖିବାକୁ ଯାଇ ମୁଁ ନୀଳାକୁ ବାହା ହଉନାହିଁ । ନୀଳାକୁ ବିବାହ କରିବା ମୋର ଗୋଟାଏ କର୍ତ୍ତବ୍ୟ ବୋଲି ମୁଁ ଧରିନେଇଚି; କିନ୍ତୁ ତା ଆଗରୁ ମୋତେ ମୋର ବାଟ ଖୋଜିବାକୁ ଦିଅ । ଯେଉଁ ନିରାଟ ସତକଥା ତୁମେ ମୋ ଆଖି ଆଗରେ ଥୋଇ ଦେଇଚ, ତାକୁ ତ ମୁଁ ଏଡ଼ିଦେଇପାରିବି ନାହିଁ । ବିବାହ କରି ସ୍ତ୍ରୀକୁ ନେଇ ଘର ସଂସାର କରିବା ଆଗରୁ ମତେ ନିଜକୁ ସେଥିପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ, ଆଉ ସେଥିପାଇଁ ମୁଁ ତୁମଠାରୁ କିଛିଦିନ ସମୟ ଚାହୁଁଛି । ଯେଉଁ ଭରସା ରଖି ନୀଳା ରାତି ବାରଟାରେ ମୋ ପାଖରେ ଠିଆହେଇଚି ଆଉ ଯେଉଁ ଭରସା ରଖି ତୁମେ ମୋ ହାତରେ ନୀଳାକୁ ଦେବାକୁ ଯାଉଚ, ତୁମର ସେ ଭରସାର ମର୍ଯ୍ୟାଦା ଯେମିତି ମୁଁ ରଖେ, ଏଇ ଆଶୀର୍ବାଦ ମତେ ଆଜି କର ।

ମଧୁ - ମୋହନ! ମୋହନ!! ଭଗବାନ୍ ତୋର ମଙ୍ଗଳ କରନ୍ତୁ ।

## ଦ୍ୱିତୀୟ ଦୃଶ୍ୟ

(କାଡଗଡ଼ା ସାହିର ଗଳିରାସ୍ତା - ରାସ୍ତା ମଝିରେ ଗୋଟିଏ ଚାରିକୋଣିଆ ଘର କାଟି ଭିତରେ ଗୋଲି ରଖି ଖେଳୁଛନ୍ତି ଶଙ୍କରା ଓ ରଘୁ - ରଘୁ ଗୋଟିଏ ଗୋଲି ମାରିବାରୁ ସେ ଗୋଲି ବାଜିଲା ଯାଇ ସେ ଆଡ଼କୁ ଆସୁଥିବା ଆନନ୍ଦ ରାଏଙ୍କ ଗୋଡ଼ରେ ।)

ଆନନ୍ଦ - ଓଃ..... ମରିଗଲି ରେ ବାବା, ମରିଗଲି । ଓହୋ - ଗୋଲି ତ ନୁହେଁ - ବୁଲେଟ୍, ସେ ପୁଣି ଯାଇ ବାଜିଛି ଏକଦମ ବଳାଗଣ୍ଠି ହାଡ଼ରେ ।

ଶଙ୍କର - କ'ଣ ହେଲା ବାବୁ ?

ଆନନ୍ଦ - କ'ଣ ହେଲା, ସେ କଥା ବାବୁଙ୍କୁ ନପଚାରି ଯିଏ ଗୋଳି ମାରିଚି ତାକୁ ପଚାରିଲେ ସେ କହିବ! ତା ହାତର ପାୱାରଟା କେତେ ପଚାରିବଟି - ଗୋଡ଼ରୁ ଚମ ଛଡ଼େଇ ଦେଇଚିରେ ବାବା!! ଭାବୁଥିଲିଟି ସୁଟ୍‌ଟା ପିନ୍ଧି ଆସିବି ବୋଲି -

ଶଙ୍କର - ଗୋଳି ଆପଣଙ୍କ ଗୋଡ଼ରେ ଯାଇ ବାଜିଲା ପରା ବାବୁ!

ଆନନ୍ଦ - ଆଉ କ'ଣ ମୋ ଗୋଡ଼ଟା ଆସି ଗୋଳିରେ ବାଜିଗଲା! ଆଚ୍ଛା, କିଏ ଗୋଳି ମାରିଥିଲା ? କିଏ ମାରୁଥିଲା ? ଏଁ! ଆରେ, କିଏ ମାରିଥିଲା ।

ଶଙ୍କର - ବାବୁ ରଘୁଆ ମାରିଥିଲା ।

ଆନନ୍ଦ - ରଘୁଆ ? କିଏ ସେ ରଘୁଆ । କିଏ ସେଇ ଗୋଳିଧାରୀ ରଘୁବୀର ରାମଚନ୍ଦ୍ର - ଡାକ ତାକୁ, ଡାକ ମୋ ସାମ୍‌ନାକୁ..... (ରଘୁକୁ ଶଙ୍କରା ଠେଲିଦେଲା ଆଗକୁ) ରଘୁ ଏକ କିଶୋର ବାଳକ ।

ଆନନ୍ଦ - ହଇରେ, ତୁ ଗୋଳି ମାରିଥିଲୁ ?

ରଘୁ - ହଁ ବାବୁ, ମାରିଥିଲି ତ କ'ଣ ହେଲା ?

ଆନନ୍ଦ -ବେଶ୍ କରିଥିଲୁ । ହଇରେ, ତୋର ସେଟା ହାତ ନା ବନ୍ଧୁକ! ଏଇ ହାତରେ ଛରରା ଫିଙ୍ଗି ମଣିଷକୁ ମାରିଦେବୁ ତ ? ଲାଇସେନ୍‌ସ କର, ତୁ ଚଞ୍ଚଳ ଲାଇସେନ୍‌ସ କର - ବନ୍ଧୁକ ଲାଇସେନ୍‌ସ ପରି ହାତ ଦି'ଟାକୁ ଲାଇସେନ୍‌ସ କର ।

ରଘୁ - ମୁଁ କ'ଣ ଜାଣିଥିଲି ବାବୁ, ଗୋଳିଟା ତୁମ ଗୋଡ଼ରେ ବାଜିବ ବୋଲି - ମୁଁ ତ ଖେଳୁଥିଲି ।

ଆନନ୍ଦ - ଖେଳୁଥିଲୁ । ଆଚ୍ଛା, ଏଟା ମ୍ୟୁନିସିପାଲିଟି ରାସ୍ତା ନା ମହାନଦୀ ପଠା!

ରଘୁ - ତମର ବାବୁ ଗଳି ଭିତରେ ପଶିବା ଭୁଲ୍ ହେଇଚି ?

ଆନନ୍ଦ - ବାସ୍ । ପିଲା ଏକାବେଳକେ ସମାପିକା କ୍ରିୟା ବ୍ୟବହାର କରି କଥା କହିଚି !

ଶଙ୍କର - ନାଇଁବାବୁ, ରଘୁଆ ଏଇୟା କହୁଥିଲା ଯେ, ଆପଣଙ୍କ ପରି ଲୋକ... ଚୌଧୁରୀ ବଜାର, ନୟାସଡ଼କରେ ଚାଲିବା କଥା, ଏ ଗଳିକି ଆସିବା ତ ଆପଣଙ୍କର କଥା ନୁହେଁ। ଏଇ ଦେଖୁନାହାନ୍ତି......ଗଳି ତମାମ ମଇଳା ଜମାହେଇଚି, ନର୍ଦ୍ଦମାସାରା ପାଣି, ପୋକ, ମାଛି.....

ଆନନ୍ଦ - ମଇଳା ଜମିଚି ତ ବାବା ମ୍ୟୁନିସିପାଲିଟି ଚେୟାରମ୍ୟାନ୍ କି ମ୍ୟୁନିସ୍‌ପାଲିଟି ମେହେନ୍ତରକୁ ଯାଇ ଗୋଳି ମାର....ଏ ନିରୀହ ନାଗରିକ ଉପରେ ଏ ଅତ୍ୟାଚାର କାହିଁକି ? ଓଃ; ଏତେବେଳଯାଏ ହାଡ଼ ଭିତରଟା କନ୍‌କନେଇ ଉଠୁଚି ।

ରଘୁ - ବାବୁ, ମାରି ତ ଦେଇଚି ଗୋଳିଟା - କଅଣ ଆଉ କରିବି । ତୁମ ରୁମାଲଟା ଦିଅ, ଭିଜେଇଆଣି ଗୋଡ଼ରେ ପଟି ବାନ୍ଧିଦେବି ।

ଆନନ୍ଦ - ଖାଲି ଅସ୍ତ୍ରଚାଳନା ନୁହେଁ, ଫାଷ୍ଟଏଡ୍ ଜ୍ଞାନ ବି ଟିକିଏ ଅଛି । ଆଚ୍ଛା, ବାବା ରଘୁ,

ତୁମ ଗୋଲିଟା ନିଅ - (ଦେଲେ) ରୁମାଲ ଖଣ୍ଡକ ଉପରେ ଆଉ ଆଖି କାହିଁକି ? କଟକ ସହର ପିଲା ତ - କଥା କହୁ କହୁ ଏକ ସେକେଣ୍ଡ୍‌ରେ କାଠଗଡ଼ା ସାହିରୁ ଯାଇ କାଠୁରିଆ ସାହିରେ ହାଜର ହେଇଥିବୁ - (ଶଙ୍କର ପ୍ରତି) ଆଚ୍ଛା, ତୁମ ନାଁଟି କ'ଣ ?

ଶଙ୍କର - ଶଙ୍କର ।

ଆନନ୍ଦ - ବେଶ୍ ନାଁଟି । ଆଚ୍ଛା ଶଙ୍କର, ଏଠି ମୋହନବାବୁ କେଉଁଠି ରହନ୍ତି କହିପାରିବ ?

ଶଙ୍କର - ମୋହନବାବୁ ମୋହରିର ? ସେ ତ କେଉଟ ସାହି ଗଳିରେ ରହନ୍ତି ।

ଆନନ୍ଦ - ଆରେ ନାଇଁରେ ବାବୁ - ମୁଁ ମୋହନବାବୁ ଶିଳ୍ପୀଙ୍କୁ ଖୋଜୁଚି - ଶିଳ୍ପୀ ମୋହନ, ଯେ ଛବି ଆଙ୍କନ୍ତି -

ରଘୁ - ମହନିଭାଇ....

ଶଙ୍କର - ଆମ ମୋହନଭାଇ କଥା ଆପଣ କହୁଛନ୍ତି ?

ରଘୁ - ମହନିଭାଇ - ନୀଳା ନାନୀକୁ ବାହାହଉଚି ।

ଆନନ୍ଦ - ତାଙ୍କ ବାହାଘରରୁ ମୋତେ କଅଣ ମିଳିବ, ସେ କେଉଁଠି ରହନ୍ତି ମୋତେ କହିଦିଅ ।

ଶଙ୍କର - ମହନିଭାଇକି ଆପଣ କାହିଁକି ଖୋଜୁଛନ୍ତି ବାବୁ ? ସେ ଲୋକ ଭଲ ନୁହେଁ ।

ଆନନ୍ଦ - ଏ ବଡ଼ ମୁସ୍କିଲ୍ କଥା । ମୁଁ କ'ଣ ମୋ ଝିଅ ସକାଶେ ଟ୍ୟୁସନ୍ ମାଷ୍ଟର୍ ଖୋଜୁଚି ? ତାଙ୍କ ଭଲ-ମନ୍ଦରୁ ମୋତେ ମିଳିବ କ'ଣ ?

ରଘୁ - ନାଇଁ ବାବୁ - ଶଙ୍କରାଇ କଥା ଶୁଣନାହିଁ । କହିବି ଶଙ୍କରାଇ ?

ଶଙ୍କର - କ'ଣ କହିବୁ ?

ରଘୁ - ଜାଣିଲେ ବାବୁ! ନୀଳା ନାନୀ ବେଦୀରୁ ଶଙ୍କରାଇକୁ ଛାଡ଼ି ପଳେଇଲା ମହନିଭାଇ ପାଖକୁ ।

ଶଙ୍କର - ଚୁପ୍ ବେ....

ରଘୁ - ଯା'ବେ ଶିଶୁପାଳ! (ନିଜ ନିଜ ଭିତରେ ମାରପିଟ୍ ଆରମ୍ଭ କରିଦେଲେ)

ଆନନ୍ଦ - ଓ-ହୋ ରେ ବାବା । ଏଠି ଯେ ରୀତିମତ ଗୋଟାଏ କଳି କାରଖାନା ଖୋଲିଦେଲେ! ଏ ରଘୁ -ବାବା- ତୁ ଭଲା ମୋତେ ଟିକେ ଘରଟା କହିଦେ' -

ରଘୁ - ଆହୁରି ଆଗକୁ ଯା ବାବୁ! ଗୋଟାଏ ଭଙ୍ଗା ବଡୀଖୁଣ୍ଟ ସାମ୍‌ନାରେ ଯଉ ଭଙ୍ଗା ଘରଟା-ସେଇଠି ମହନି ଭାଇ ରହେ...

ଆନନ୍ଦ - ଭାଙ୍ଗା ବଡିଖୁଣ୍ଟ- ଭଙ୍ଗାଘର, ସବୁ ଭଙ୍ଗା- ଆଚ୍ଛା । ମୋର ଏ ଭଙ୍ଗା ଗୋଡ଼ଟାକୁ ନେଇଯାଇ ଦେଖେ...

(ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

(ମୋହନର ସେଇ ଘର । ଗୋଟିଏ ଖଟିଆ ଉପରେ ମୋହନ ବସିଛି ଚିନ୍ତାମଗ୍ନ ହୋଇ । ଟିକିଏ ପରେ ବାହାରୁ ଆସିଲା ନୀଳା - ଦୁଆର ମୁହଁ ପାଖରୁ ସେ ଅତି ସନ୍ତର୍ପଣରେ ମୋହନର ଅବସ୍ଥାକୁ ଲକ୍ଷ୍ୟକଲା - ତା'ପରେ ସେ ଆଗେଇ ଆସିଲା ମୋହନ ଆଡ଼କୁ ।)

ନୀଳା - ଘର ଗୋଟାକରେ ମଣିଷ ବୋଲି ତ ଜଣେ - ଆଉ ଭାବନା ଯେମିତି ରାଜ୍ୟଯାକର ଲୋକଙ୍କ ପାଇଁ.....

ମୋହନ - ତୁ ଗୋଟାଏ କାମ କରିପାରିବୁ ନୀଳା ? ଏ ଘର ଛାତରେ ଯେତେ ବୁଢ଼ିଆଣୀ ଜାଲ ଅଛି, ସେ ସବୁକୁ ଝାଡ଼ି ପରିଷ୍କାର କରିଦେଇପାରିବୁ ?

ନୀଳା - କାହିଁକି ?

ମୋହନ - ତା'ହେଲେ ମୋର ଏ ଭାବନାଟା ହୁଏତ ଅନେକଟା କମିଯିବ । ଏ ବୁଢ଼ିଆଣୀ ଜାଲକୁ ଚାହିଁ ଚାହିଁ ଭାବିବାଟା ମୋର ଯେମିତି ଗୋଟିଏ ଅଭ୍ୟାସ ହୋଇଉଠିଲାଣି ।

ନୀଳା - ହୁଁ, ତା'ପରେ ଦିନେ ଯେତେବେଳେ ତୁମର ଏ ଭାବନାର ସୁଅ ଘର ଛାଡ଼ି ଏ ଭଙ୍ଗା ଝରକା ବାଟେ ଯାଇ ହାଜର ହେବେ ସେଇ ରାସ୍ତାରେ......

ମୋହନ - ନା ନା ନୀଳା- ରାସ୍ତା ପର୍ଯ୍ୟନ୍ତ ଯିବାକୁ ପଡ଼ିବ ନାହିଁ । ସେତେବେଳକୁ ହୁଏତ କେହି ଜଣେ, ମାନେ କାହାରି ଲୀଳା ଚଞ୍ଚଳ ପାଦ ଦୁଇଟି ଆସି ଏ ଘରେ ସ୍ଥାନ ପାଇଥିବ, ଆଉ ଆଇନ୍ ଅନୁସାରେ ସେ ନେଇଥିବ ମୋ ଭାବନାରୁ ଅଧେ ଭାଗ ।

ନୀଳା - (ନୀଳା ମୁହଁରେ ଫୁଟିଉଠିଲା ଲାଜମିଶା ତୃପ୍ତିର ରେଖା) ବାପା ଆଜି ତୁମ କଥା କହୁଥିଲେ ମୋହନ.....

ମୋହନ - କ'ଣ କହୁଥିଲେ ?

ନୀଳା - କହୁଥିଲେ- ମୋହନ ଚାକିରି କଲାନାହିଁ କାହିଁକି ?

ମୋହନ - ବୁଝିଛି, ଦିନକୁଦିନ ମୋ ଉପରୁ ତାଙ୍କର ବିଶ୍ବାସ କମିଯାଉଚି.....

ନୀଳା - ନାଁ ମୋହନ- ତା' ନୁହେଁ । ଆମ ସାଇଲୋକଙ୍କ କଥା ତ ଜାଣ ? ବାରଆଡୁ ବାର କଥା ଶୁଣି, ବାପା ଯିମିତି ଆଉ ଧୈର୍ଯ୍ୟଧରି ରହିପାରୁନାହାନ୍ତି......

ମୋହନ - କିନ୍ତୁ ନୀଳା, ତୁ ତ ଜାଣୁ - ଚେଷ୍ଟାର ମୋର ଅନ୍ତ ନାହିଁ । ଆଉ କିଛି ନ ହେଉ - ବାହାଘର ଖର୍ଚ୍ଚଟା ତ ମୋତେ ଯୋଗାଡ଼ କରିବାକୁ ହେବ; କିନ୍ତୁ ତା ମୁଁ ପାରୁନାହିଁ । ଏ ତିନି ମାସ ଭିତରେ ମୁଁ ବିକିଚି ଖଣ୍ଡେ ଛବି ! ଲାଭ ଯାହା ପାଇଥିଲି ସେଥିରେ ମୋର ଖାଇବା ଖର୍ଚ୍ଚଟା ଯାହା ଏ ପର୍ଯ୍ୟନ୍ତ ଚଳିଆସିଚି......

ନୀଳା - ପ୍ରତିଦିନ ଯେ ଏତେ ବୁଲୁଚ - କିଛି ହେଲେ କ'ଣ ସୁବିଧା କରିପାରୁନାହଁ ? ତୁମର ଜଣାଶୁଣା ଲୋକ ତ ଏଠି ଅନେକ ଥିବେ ?

ମୋହନ - ହଁ ନୀଳା, ଏ ଭିତରେ ମୁଁ ମୋର ଅନେକ ଜଣା, ଅଜଣା ଲୋକଙ୍କର ଦ୍ୱାରସ୍ଥ ହୋଇଚି । ପ୍ରଥମେ ସୋପାନ ମୋତେ ଖୁବ୍ ପ୍ରଶଂସା କରନ୍ତି । କାରଣ ମୁଁ ଜଣେ ଶିଳ୍ପୀ - ଜାତିର ଗୌରବ..... ତା'ପରେ ମୁଁ ଯେତେବେଳେ ସେମାନଙ୍କୁ ମୋର ଦୁଃଖ ଜଣାଏ - ସେମାନେ ମଧ ଖୁବ୍ ଦୁଃଖ କରନ୍ତି । କହନ୍ତି, "ଦେଖ ମୋହନ - ଏଠି ଛବି ଆଙ୍କି ପେଟ ପୋଷିବା ଗୋଟାଏ କଥାର କଥା ମାତ୍ର । ବିପିନ ଚୌଧୁରୀ ବିଲାତରୁ ଶିଳ୍ପୀ ହୋଇ ଆସି ଏଠି ମୂକ ବଧିର ବିଦ୍ୟାଳୟ ଖୋଲିଲେ - ବର୍ମା ଖୁବ୍ ନାମ କରି ଶେଷରେ ଦେଶବାସୀମାନଙ୍କ ଦୟା ଉପରେ ନିର୍ଭର କରି ବଞ୍ଚିଲେ । ଉପେନ୍ଦ୍ର ମହାରଥି ବିହାରକୁ ପଳାଇ ଯାଇ ବଞ୍ଚିଗଲେ ଆଉ ଗୋପାଳ କାନୁନ୍‌ଗୋ କଲେ ମାଷ୍ଟରୀ ।" ଏହିପରି ସବୁ ଉଦାହରଣ ଦିଅନ୍ତି; କିନ୍ତୁ ଯେତେବେଳେ ମୁଁ ତାଙ୍କୁ କହେ, ଚାକିରି କରିବା ମୋର ନୀତିବିରୁଦ୍ଧ, ସେତେବେଳେ ସେମାନେ ଠିକ୍ ମୋତେ ତାଙ୍କରି ପରି ଆଉ ଜଣେ ଶିଳ୍ପପ୍ରେମୀ ଭଦ୍ରବ୍ୟକ୍ତିଙ୍କ ଠିକଣା ଦେଇ ମୋର ଭବିଷ୍ୟତର ମଙ୍ଗଳ କାମନା କରି ବିଦାୟ ଦିଅନ୍ତି ।

ନୀଳା - ଚାକିରି କରିବାକୁ ମୁଁ ତୁମକୁ କେବେହେଲେ କହିବି ନାହିଁ ମୋହନ; କିନ୍ତୁ ଏଇ ଛବି ଆଙ୍କି ପେଟ ପୋଷିବାର ଭରସା ରଖି କେତେଦିନ ତୁମେ ଏମିତି ଆଶା, ନିରାଶାର ପଛରେ ଧାଇଁବୁଲୁଥିବ ?

ଆନନ୍ଦ - (ବାହାରୁ) ଏଇଟା କ'ଣ ମୋହନବାବୁଙ୍କ ଘର ?

ମୋହନ - (ଇଙ୍ଗିତରେ ନୀଳା ଚାଲିଗଲା) ଭିତରକୁ ଆସନ୍ତୁ ।

ଆନନ୍ଦ - (ଆସି) ଏଇଟା ତା' ହେଲେ ମୋହନବାବୁ ଶିଳ୍ପୀଙ୍କ ଘର ?

ମୋହନ - ହଁ, ମୁଁ ମୋହନ..... ।

ଆନନ୍ଦ - ନମସ୍କାର ବାବୁ, ନମସ୍କାର ! ମଣିଷ ବଞ୍ଚିଗଲାରେ ବାବା - ଇଏ ଯେ ଏକାବେଳକେ ଆଲିବାବା ଓ ଚାଳିଶ ଚୋରଙ୍କ କାହାଣୀ ।

ମୋହନ - କ'ଣ ହେଲା ଯେ ?

ଆନନ୍ଦ - କାହିଁକି କହୁଛନ୍ତି ସେକଥା ? ଗଳି ମୁଣ୍ଡରେ ଗୋଟିଏ ପିଲାକୁ ଆପଣଙ୍କ ଘର ଠିକଣା ପଚାରିଲି - ସେ ମତେ କହିଲା , ଗୋଟାଏ ଭଙ୍ଗା ବତୀଖୁଣ୍ଟ ସାମ୍ନାରେ ଗୋଟିଏ ଭଙ୍ଗା ଘରେ ଆପଣ ରହନ୍ତି; କିନ୍ତୁ କି ମୁସ୍କିଲ୍ କଥା ଦେଖନ୍ତୁ ତ ! ଏ ଗଳିରେ ଯେତେ ବତିଖୁଣ୍ଟ ସବୁ ଭଙ୍ଗା ଆଉ ତା ସାମ୍ନାରେ ଯେତେ ଘର, ସବୁ ଭଙ୍ଗା । ଏତେ ଭଙ୍ଗା ଭିତରେ ଆପଣଙ୍କ ଭଙ୍ଗା ଘର ଖୋଜି ବାହାର କରିବାକୁ ଏ ଗଳି ଭିତରେ ଏ ପାଖ ସେ ପାଖ ହୋଇ ଖୁବ୍ କମ୍‌ରେ ମାଇଲିଏ ବାଟ ମୁଁ ଚାଲିଥିବି -

(ଗୋଟିଏ ଚୌକିରେ ବସିବାକୁ ଯାଉଥିଲେ)

ମୋହନ - ଆହା, ସେ ଚୌକିରେ ବସନ୍ତୁ ନାହିଁ ତା'ର ଗୋଟାଏ ଗୋଡ଼ ଭାଙ୍ଗି ଯାଇଛି ।

ଆନନ୍ଦ - ଏ ବି ଭଙ୍ଗା ? ଆଚ୍ଛା ମୋହନବାବୁ, ଆପଣ ଦୟାକରି ଗୋଟିଏ କାମ କରନ୍ତୁ ।

ଏ ଅଞ୍ଚଳରେ ଯାହା ଯାହା ଭଙ୍ଗା ତା'ର ଗୋଟିଏ ତାଲିକା ମତେ ଦିଅନ୍ତୁ- ତା'ହେଲେ ଟିକେ ସୁବିଧାରେ ବସି ଆପଣଙ୍କ ସହିତ କଥାବାର୍ତ୍ତା ହେବି.....

ମୋହନ - ମୋ ସହିତ କଥାବାର୍ତ୍ତା ? ମୋ ପାଖରେ କ'ଣ କିଛି କାମ ଅଛି ଆପଣଙ୍କର ?

ଆନନ୍ଦ - ତା' ନଥିଲେ ଏ ବିରାଟ ଭଙ୍ଗାଭଙ୍ଗି ଅଞ୍ଚଳରେ ମୁଁ ପଶିଥା'ନ୍ତି କାହିଁକି ?

ମୋହନ - ଆପଣ ତା'ହେଲେ.... ହଁ ଏଇଠି ବସନ୍ତୁ - (ତକ୍ତପୋଷର ଗୋଟାଏ କଣରୁ ବିଛଣା ଉଠାଇ ଦେଲା । ଆନନ୍ଦ ବସିଲେ) ଦୟାକରି ଆପଣଙ୍କ ପରିଚୟଟା -

ଆନନ୍ଦ - ଦେଖନ୍ତୁ, ମୋ ପରିଚୟରେ ଆପଣଙ୍କର ବିଶେଷ କିଛି ଲାଭ ହେବନାହିଁ । ଆଚ୍ଛା, ଏ ଭିତରେ ଆପଣଙ୍କ ଖଣ୍ଡିଏ ଛବି ତ୍ରିପାଠୀ ସାହେବଙ୍କୁ ବିକିଛନ୍ତି ନା ?

ମୋହନ- ହଁ ବିକିଚି ।

ଆନନ୍ଦ - ସେଇ ଛବି ଖଣ୍ଡିକ ଦେଖି କୁମାର ସାହେବ ପାଗଳ -

ମୋହନ - କୁମାର ସାହେବ!!

ଆନନ୍ଦ - କଲିକତାର ଜଣେ ବଡ଼ ଓଡ଼ିଆ ବ୍ୟବସାୟୀ - ବ୍ୟବସାୟ ସମ୍ବନ୍ଧରେ କଟକ ଆସିଛନ୍ତି । ଆପଣଙ୍କ ହାତତିଆରି ଖଣ୍ଡିଏ ଛବି ସେ କିଣିବାକୁ ଚାହାନ୍ତି, ଆଉ ସେଇ ଅର୍ଡ଼ର୍ ଦେବାକୁ ମୁଁ ଆସିଚି ।

ମୋହନ - ଆପଣ ଛବିର ଅର୍ଡ଼ର ଦେବାକୁ ଆସିଛନ୍ତି - ବହୁ ଧନ୍ୟବାଦ୍ ଆପଣଙ୍କୁ! କୁହନ୍ତୁ କି ଧରଣର ଛବି ସେ ଚାହାନ୍ତି ?

ଆନନ୍ଦ - ତାଙ୍କର ବରାଦ ହେଉଚି ଖୁବ୍ ସୁନ୍ଦରୀ ଗୋଟିଏ ଯୁବତୀର ଛବି ।

ମୋହନ - ସୁନ୍ଦରୀ ଯୁବତୀର ଛବି ?

ଆନନ୍ଦ - ହଁ, ଯେମିତି ଛବି ତ୍ରିପାଠୀ ସାହେବଙ୍କୁ ଦେଇଛନ୍ତି - ସେଇ ଧରଣର ।

ମୋହନ - ସେ ଛବି ପାଇଁ ତ ମତେ ମଡ଼େଲ୍‌ର ସାହାଯ୍ୟ ନେବାକୁ ପଡ଼ିଥିଲା ।

ଆନନ୍ଦ - ବେଶ୍, ଏ ଛବି ପାଇଁ ସିମିତି ମଡ଼େଲ୍‌ର ସାହାଯ୍ୟ ନେବେ ।

ମୋହନ - କିନ୍ତୁ ମଡ଼େଲ୍ କ'ଣ ସେ ଯୋଗେଇବେ ?

ଆନନ୍ଦ - ନା-ନା, ସେ ସବୁ ଆପଣ ବନ୍ଦୋବସ୍ତ କରିବେ ।

ମୋହନ - କିନ୍ତୁ ଏମିତି ମଡ଼େଲ୍ ମୁଁ ପାଇବି କେଉଁଠୁ ?

ଆନନ୍ଦ - ସେ ମଡ଼େଲଟି ପୁଣି ପାଇଥିଲେ କେମିତି?

ମୋହନ - ସେ ମଡ଼େଲକୁ ଆପଣ ସୁନ୍ଦର କରିବେ ?

ଆନନ୍ଦ - ମୋ ଆଖିକୁ ବାବୁ ଏ ଦୁନିଆରେ ସବୁ ସୁନ୍ଦର- ସବୁ ଅସୁନ୍ଦର - ମୁଁ ସେ ସବୁକୁ ଧାର ଧାରେନାହିଁ ।

ମୋହନ - ମୁଁ ଅନେକ ଚେଷ୍ଟାକରି ସେ ମଡ଼େଲ୍ ବନ୍ଦୋବସ୍ତ କରିଥିଲି - ଟଙ୍କା ବି କମ୍ ଦେଇନଥିଲି ତାକୁ ।

ଆନନ୍ଦ - ବେଶ୍,ଏଥିପାଇଁ ସେମିତି ଟିକେ ଚେଷ୍ଟା କରିବେ - ଟଙ୍କା ପାଇଁ ଆପଣ ଚିନ୍ତା

କରନ୍ତୁ ନାହିଁ । ହଁ, କୁମାର ସାହେବ ପ୍ରାୟ ଏଠି ଆଉ ପନ୍ଦର ଦିନ ରହିବେ । ଏଇ ପନ୍ଦରଦିନ ଭିତରେ ତାଙ୍କର ଛବିଟା ଦରକାର । ଆପଣ ବର୍ତ୍ତମାନ କିଛି ଏଡ୍‌ଭାନସ୍ ରଖନ୍ତୁ ।

ମୋହନ - ନା, ଏଡ୍‌ଭାନ୍‌ସ କ'ଣ ହେବ ? ମୁଁ ପ୍ରଥମେ ମଡ଼େଲ୍ ବନ୍ଦୋବସ୍ତ କରେ-

ଆନନ୍ଦ - ଆଚ୍ଛା, ମୁଁ ବର୍ତ୍ତମାନ ଆସେ । ଅବସ୍ଥା ଯାହା ଦେଖୁଚି, ସେଥିରେ ଆପଣଙ୍କ ଘରକୁ ମୋର ଆଉ ଦୁଇ ଚାରିଥର ଆସିବା ସୌଭାଗ୍ୟ ଅଛି ମନେହୁଏ । ହଁ, ମୁଁ ଶୁଣିଲି, ଆପଣ କୁଆଡ଼େ ବିବାହ କରୁଛନ୍ତି ଆଉ ସେଇ ବିବାହ ପଛରେ ରହିଛି ଗୋଟାଏ ବିରାଟ ଇତିହାସ । (ମୋହନ ହସିଲା) ହୁଏ , ହୁଏ ବାବୁ ଏମିତି ହୋଇଥାଏ- ଶିଳ୍ପୀ, ସାହିତ୍ୟିକ, ସଂଗୀତଜ୍ଞ, ଏମାନଙ୍କ ଆଡ଼କୁ ସ୍ତ୍ରୀଲୋକମାନେ ଟିକିଏ ବେଶିମାତ୍ରାରେ ଆଉଜି ପଡ଼ିଥା'ନ୍ତି; କିନ୍ତୁ ମୋହନବାବୁ! ଏ ଆପଣ କରୁଛନ୍ତି କ'ଣ ? ବିବାହ କରି ସ୍ତ୍ରୀକୁ ନେଇ ଘର କରିବେ - କିନ୍ତୁ ଘର ଆପଣଙ୍କର କାହିଁ ? ଆପଣଙ୍କ ପରି ଜଣେ ବିଶିଷ୍ଟ ଗୁଣୀଲୋକ ତ ଏ ଘରେ ରହିବା କଥା ନୁହେଁ ।

ମୋହନ - କ'ଣ ଆଉ କରିବି କୁହନ୍ତୁ ? ଦରିଦ୍ର ହେଲେ ଲୋକର ଯାହା ଅବସ୍ଥା ହୋଇଥାଏ -

ଆନନ୍ଦ - ଦେଖନ୍ତୁ, ଆପଣଙ୍କର ଏ କୈଫିୟତ୍ ଏକା ଆପଣଙ୍କ ଛଡ଼ା ଆଉ କାହାରି ମନକୁ ସ୍ପର୍ଶ କରିବ ନାହିଁ । ଆଚ୍ଛା, ମୁଁ ବର୍ତ୍ତମାନ ଆସୁଚି - ନମସ୍କାର! ହଁ, ଏ ଛବିଟା ପନ୍ଦରଦିନ ଭିତରେ ଯେମିତି ହୁଏ - ସେଥିପ୍ରତି ଦୟାକରି ଟିକେ ଦୃଷ୍ଟି ଦେବେ ।

(ଚାଲିଗଲେ, ନୀଳା ଆସିଲା)

ନୀଳା - ମଡ଼େଲ୍! ମଡ଼େଲ୍ ବନ୍ଦୋବସ୍ତ ପୁଣି କ'ଣ କରୁଛ ଶିଳ୍ପୀ ?

ମୋହନ - ନା, ହେଇପାରେନା । ନା ନୀଳା, ଏ କଥା ହେଇପାରେନା-

ନୀଳା - କ'ଣ ହେଇପାରେନା ?

ମୋହନ - ନା, ନୀଳା - ଏଇଟା କଟକ ସହର । ଏଠି ଏମିତି ମଡ଼େଲ୍ -

ନୀଳା - ଠିକ୍ କେମିତିକା ମଡ଼େଲ୍ ସେମାନେ ଚାହାଁନ୍ତି ଟି.... ?

ମୋହନ- ଏତେବେଳଯାଏ ତୁ ଆଉ ବୁଝୁଥିଲୁ କ'ଣ ? ସୁନ୍ଦରୀ ଆଉ ଯୁବତୀ-

ନୀଳା - ମାନେ ?

ମୋହନ - ମାନେ ବି ବୁଝାଇବାକୁ ପଡ଼ିବ ? ସୁନ୍ଦରୀ ଆଉ ଯୁବତୀମାନେ, ଅସୁନ୍ଦରୀ ନୁହେଁ କି ବୁଢ଼ୀ ନୁହେଁ ।

ନୀଳା - ଅର୍ଥାତ୍ ?

ମୋହନ - ଅର୍ଥାତ୍ ଯାହା - ତା ଆଉ ଅଭିଧାନରେ ନାହିଁ! ସୁନ୍ଦରୀ ଯୁବତୀ - ଅର୍ଥାତ୍ ଠିକ୍ ତୋ ପରି ଗୋଟିଏ ସୁନ୍ଦରୀ ଝିଅ, ବୁଝିଲୁ ?

ନୀଳା - ହୁଁ; ମୋ ପରି ଝିଅ! ମୋ ପରି ଝିଅ କ'ଣ ଏ କଟକ ସହରରେ କେହି ନାହାନ୍ତି ?

ମୋହନ - ଏ କଟକ ସହରରେ ଅଧେ ଝିଅ ତୋଠାରୁ ବଳି ଅଧିକ ସୁନ୍ଦରୀ - କିନ୍ତୁ ସେମାନେ ମଡ଼େଲ୍ ହବାକୁ ଆସିବେ କୋଉ ଦୁଃଖରେ ?

ନୀଳା - ଠିକ୍ ତ, ସେମାନଙ୍କର ବା ଦୁଃଖ କ'ଣ ? ଆଚ୍ଛା ମୋହନ, ଏଇଟା ତୁମର ଛବି ଆଙ୍କିବା ଷ୍ଟାଣ୍ଡ୍ - ଆଉ ଏଇଟା ବୋର୍ଡ୍ । (ଗୋଟାଏ ସାଦା ବୋର୍ଡ୍ ଆଣି ଷ୍ଟାଣ୍ଡ୍ ଉପରେ ଥୋଇଲା) ଏଇଟା ତୂଳି (ତୂଳିଟିଏ ମୋହନ ହାତରେ ଧରେଇଦେଲା । ମୋହନ ସେତେବେଳେ ତକ୍ତପୋଷ ଉପରେ ନୀଳାକୁ ପଛ କରି ବସିଥାଏ, ନୀଳା ମୋହନର ଅଲକ୍ଷ୍ୟରେ ତକ୍ତପୋଷ ଉପରେ ଠିଆହେଲା ) ଥରେ ଚେଷ୍ଟା କରି ଦେଖ ତ ମୋହନ, ଠିକ୍ ହଉଚି କି ନାହିଁ ।)

ମୋହନ - (ନୀଳାକୁ ଚାହିଁ ଖୁବ୍ ଜୋର୍‌ରେ ହସିଲା) ଏ କ'ଣ ନୀଳା ?

ନୀଳା - ମଡ଼େଲ୍.....

ମୋହନ - ଚମତ୍କାର ନୀଳା, ଚମତ୍କାର ! ତୋ'ପରି ଗୋଟାଏ ମଡ଼େଲ୍ ପାଇଲେ କୁମାର ସାହେବଙ୍କୁ ଛବିଟା ପାଞ୍ଚ ହଜାର ଟଙ୍କାରୁ ବି କମ୍ ବିକନ୍ତି ନାହିଁ । କିନ୍ତୁ କୁମାର ସାହେବଙ୍କ ଦୁର୍ଭାଗ୍ୟ - ତାଙ୍କର ଛବିର ଅର୍ଡ଼ର୍ ବୋଧହୁଏ ମୁଁ ରଖିପାରୁନାହିଁ । ଆଚ୍ଛା ନୀଳା, ସେ ଖଟ ଉପରୁ ଓହ୍ଲାଇବା ଆଉ ଦରକାର ନାହିଁ । ସେଇଠି ଠିଆହେଇ ତୁ ସେ ବୁଢ଼ିଆଣୀ ଜାଲଗୁଡ଼ାକ ସଫା କରିବାରେ ଲାଗିପଡ଼ - ମୁଁ ମୋର ରୁଟିନ୍ ଅନୁସାରେ ଟିକେ ବାହାରୁ ବୁଲିଆସେ - (ନୀଳାକୁ ଗମ୍ଭୀର ଦେଖି) ଏ କ'ଣ ନୀଳା ? ତୋ ମୁହଁ ଦେଖିଲେ ଜଣାପଡୁଚି- ତୁ ଯେମିତି ଖୁବ୍ ଦୃଢ଼ ଭାବରେ ଗୋଟାଏ କ'ଣ କଥା ଭାବୁଚୁ ?

ନୀଳା - ମୁଁ ମିଛ କହିନାହିଁ ମୋହନ - ମତେଇ ମଡ଼େଲ୍ ରଖି ତୁମକୁ ଛବି ଆଙ୍କିବାକୁ ପଡ଼ିବ ।

ମୋହନ - ଆଙ୍କିବି ନୀଳା - ଆଙ୍କିବି । ଶିଳ୍ପୀ ହୋଇ ତୋ ଛବି ନ ଆଙ୍କିଲେ ମୋର ତୂଳିର ମୂଲ୍ୟ ରହିଲା କେଉଁଠି ? କିନ୍ତୁ ଆଜି ନୁହେଁ, ଯେଉଁଦିନ....

ନୀଳା - ନା, ମୋହନ - ଆଜି, ଏଇ ମୁହୂର୍ତ୍ତରେ ତୁମେ ଆଙ୍କିବ ମୋର ଛବି -

ମୋହନ - କାହିଁକି ?

ନୀଳା - କୁମାର ସାହେବଙ୍କ ପାଇଁ.....

ମୋହନ - ମନସ୍ତତ୍ତ୍ୱ ବିଷୟରେ ଯାହାର ଜ୍ଞାନ ଥିବ - ସେ କହିବ ନୀଳା ତୋର ନିଶ୍ଚୟ ମାନସିକ ବିକାର ଘଟିଚି -

ନୀଳା - (ଖଟରୁ ଓହ୍ଲାଇ) ଥଟ୍ଟା ନୁହେଁ ମୋହନ - ଛବି ଆଙ୍କି ତୁମେ ଯଦି ପଇସା ରୋଜଗାର କରିବାର କଥା.....

ମୋହନ - ଯା ବୋଲି ତୋରି ଛବି ବିକି ମୁଁ ରୋଜଗାର କରିବି ପଇସା - ଦୁନିଆଲୋକେ କ'ଣ କହିବେ ?

ନୀଳା - ଦୁନିଆଲୋକେ କ'ଣ କହିବେ ସେକଥା ଭାବିବସିଲେ ଖାଲି ଭାବ ନାହିଁ ସାର

ହେବ - ଫଳ କିଛି ହବନାହିଁ ।

ମୋହନ - ତୋର ବାପା କ'ଣ କହିବେ - ଦିନେ ହୁଏତ ତୁ ନିଜେ କ'ଣ କହିବୁ ?

ନୀଳା - ମୁଁ ? ଯଦି ମୋର କହିବାର ଦିନ ଆସେ - ସେଦିନ ମୁଁ କହିବି - ମୋତେ ନେଇ ତୁମେ କରିଥିଲ ତୁମର ଭାଗ୍ୟ ପରୀକ୍ଷା - ଆଉ ସେଥିରେ ତୁମେ ଜୟଲାଭ କରିଚ ।

ମୋହନ - ନା-ନା, ଏ ଖାଲି ଗୋଟାଏ କଥାର କଥା, ଗୋଟାଏ ମନରଖା ଯୁକ୍ତି ।

ନୀଳା - ତୁମେ ବୁଝିପାରୁନା ମୋହନ- ମୁଁ କାହିଁକି ଏକଥା କହୁଛି । ସାଇଲୋକଙ୍କ କଥା ତ ଜାଣ - ବାପା ଦିନକୁ ଦିନ ଭାଙ୍ଗିପଡୁଛନ୍ତି । ଏସବୁ ଭିତରେ ମୋର ଆଉ - ହଁ ମୋହନ, ମୋର ଆଉ ଠିଆ ହୋଇ ରହିବାର ଶକ୍ତିନାହିଁ ।

ମୋହନ - ସେଦିନ ତୋ ବାପାଙ୍କୁ ମୁଁ କହିଥିଲି, ଗୋଟାଏ କର୍ତ୍ତବ୍ୟ ରକ୍ଷାକରିବାକୁ ଯାଇ ମୁଁ ତୋତେ ବିବାହ କରୁଚି; କିନ୍ତୁ ନୀଳା, ସେଇ କର୍ତ୍ତବ୍ୟ ଭିତରେ ତୋ ପ୍ରତି ଆଜି ଜାଗିଉଠିଛି ଅସୀମ ସ୍ନେହ, ମମତା, ପ୍ରେମ । ଏ ଦୀର୍ଘ ଛ'ବର୍ଷ ଭିତରେ ସେ ସବୁର ଗୋଟାଏ କ୍ଷୀଣଧାରା ଲୁଚିରହିଥିଲା, ଅନ୍ତଃସଲିଳା ଫଲଗୁ ପରି; କିନ୍ତୁ ଆଜି ତାହା ମୋର ଅନ୍ତର ବାହାର ସବୁଠି ଦେଖାଦେଇଚି ପରିପୂର୍ଣ୍ଣ ଭାବରେ । ସେ ସବୁକୁ ମୁଁ ଅସ୍ୱୀକାର କରିପାରିବି ନାହିଁ । ଦରିଦ୍ର ଜାଣି ସୁଦ୍ଧା, ମୁଁ ତୋତେ ଭଲପାଇ ଯଦି ଭୁଲ୍ କରିଥାଏଁ - ତାହାହେଲେ ସେ ଭୁଲ୍‌ର ନିର୍ମମ ସଂଶୋଧନ ମୁଁ କରିପାରିବି ନାହିଁ । ମୋର ଭଲପାଇବାର ମହତ୍ତ୍ୱକୁ ପଦଦଳିତ କରି.....

ନୀଳା - ତୁମେ ଖୁବ୍ ଉତ୍ତେଜିତ ହେଇପଡ଼ିଚ ମୋହନ । ଗୋଟେ କଥା ମୁଁ ତୁମକୁ କହୁଚି - ଯାହାକୁ ନେଇ ତୁମର ଏ ଉତ୍ତେଜନା, ସେ ହେଉଚି ମୋର ଖଣ୍ଡେ ନିର୍ଜୀବ ପ୍ରାଣହୀନ ଛବି - ଆମ ବାସ୍ତବ ଜୀବନ ସହିତ ତା'ର କୌଣସି ସମ୍ପର୍କ ନାହିଁ । ମୋର ସେହି ପ୍ରାଣହୀନ ଛବି ଖଣ୍ଡିକ ତୁମେ ବିକିବ; ଆଉ ତା' ବଦଳରେ ତୁମେ ପାଇବ ମୋତେ - ମୋର ଏଇ ଜୀଅନ୍ତା ଛବିଟାକୁ ।

ମୋହନ - ତେବେ ନୀଳା ତୁ କହିବାକୁ ଚାହୁଁ, ମୋର ସବୁ ପ୍ରେମ, ସବୁ ମମତା ଆବଦ୍ଧ ରହିଚି ତୋର ଏଇ ରକ୍ତମାଂସରେ ଗଢ଼ା ଦେହଟା ଭିତରେ !

ନୀଳା - ତୁମେ ପୁଣି ସେହି ବହିପଢ଼ା କଥା କହିଲ ମୋହନ ! ନୀଳାକୁ ପାଇବନାହିଁ - କିନ୍ତୁ ପାଇବ ତା'ର ପ୍ରେମ ! କଥାଟାର ମନଭୁଲାଣିଆ ନିଶା ଅଛି; କିନ୍ତୁ ଦୁଇଟା ଜୀବନ ବଞ୍ଚିରହିବା ପାଇଁ କୌଣସି ପେଶା, କୌଣସି ଅବଲମ୍ବନ ନାହିଁ -

ମୋହନ - ତୋ କଥାଗୁଡ଼ାକ ଏକାବେଳେ ଅସଙ୍ଗତ ହୋଇପଡୁଚି ନୀଳା !

ନୀଳା - କିନ୍ତୁ ମିଛ ତ ନୁହେଁ । ମୁଁ ଯାହା କହୁଚି, ତା'ଏକାବେଳେ ସତ । ତୁମେ ଆଉ ଅବୁଝା ହୁଅନାହିଁ । ଆସ, ଆଜିଠୁ ଆମ ଛବିର କାମ ଆରମ୍ଭ କର- କହିଚ ତ ମୋତେ ନେଇ ହେଉ ତୁମ ଶିଳ୍ପୀ ଜୀବନର ଭାଗ୍ୟ ପରୀକ୍ଷା....(କଥାଗୁଡ଼ାକ ମୋହନ ଯେପରି ଖୁବ୍ ମନଦେଇ ଶୁଣୁଥିଲା, ଆଉ ଶୁଣିବା ସଙ୍ଗେ ସଙ୍ଗେ ତା'ର ମୁହଁର ରେଖାସବୁ ପରିବର୍ତ୍ତିତ ହେଉଥିଲା; ବୁଝାଯାଉଥିଲା ଯେମିତି ସେ ଗୋଟାଏ ଦ୍ୱନ୍ଦ୍ୱରେ

ପଡ଼ିଚି- କ'ଣ କରିବ ନ କରିବ କିଛି ଠିକ୍ କରିପାରୁନି । ଠିକ୍ ଏତିକିବେଳେ ମଞ୍ଚ ଅନ୍ଧାର ହୋଇଗଲା । ଆଉ ସଙ୍ଗେ ସଙ୍ଗେ ଭିତରୁ ଭାସିଆସିଲା ଗୋଟାଏ ଉଦ୍‌ବୋଧନମୂଳକ ସଙ୍ଗୀତ । ସେହିପରି ସଙ୍ଗୀତ ଚାଲିଥାଏ - ପୁଣି ମଞ୍ଚରେ ଆଲୋକ ଜଳିଉଠିଲା - ଧୀରେ ଧୀରେ ଯନ୍ତ୍ରସଙ୍ଗୀତର ଶେଷ ସ୍ୱର ଟିକକ ଉଭେଇଗଲା । ମଞ୍ଚରେ ମୋହନର ସେଇ କୋଠରିର ଦୃଶ୍ୟ । ଷ୍ଟାଣ୍ଡ୍ ଉପରେ ନୀଳାର ପ୍ରତିକୃତିଟି ରଖାହୋଇଚି - ଟିକେ ଦୂରରେ ରହିଚନ୍ତି ମୋହନ ଆଉ ନୀଳା - ଏକ ଦୃଷ୍ଟିରେ ଚାହିଁଛନ୍ତି ସେଇ ପ୍ରତିକୃତିଟକୁ ।)

ମୋହନ - ମୁଁ ବିଶ୍ୱାସ କରିପାରୁନାହିଁ ଯେ ନୀଳା, ଏ ଛବି ମୁଁ ଆଙ୍କିଚି ! ଓଠରେ ମୋନାଲିସାର ହସ..... ଆଖିରେ ମିସେସ୍ ସ୍କଟ୍‌ଙ୍କ ଚାହାଣି-

ନୀଳା - ପ୍ରଶଂସା ଥାଉ - ଦାମ୍ କେତେ ହବ ଆଗ କୁହ ତ !

ମୋହନ - ଓଃ-ତୁ ଦାମ୍‌ର କଥା ପଚାରୁଚୁ; କିନ୍ତୁ ନୀଳା ମୋ ଛଡ଼ା ଦୁନିଆରେ କେହି ଏ ଛବିର ଠିକ୍ ଦାମ୍ ଦେଇପାରିବେ ନାହିଁ ।

ନୀଳା - ତେବେ ଲୋ ମା ହେଇଚି ଯଥା ପୂର୍ବ ତଥା ପର- ପୁଣି ସେମିତି ଭୋକଉପାସରେ ଦିନ କାଟିବାକୁ ପଡ଼ିବ ! (ଏତିକିବେଳେ ବାହାରୁ ପାଟି ଶୁଭିଲା)

ଆନନ୍ଦ - (ବାହାରୁ) ମୋହନବାବୁ ଭିତରେ ଅଛନ୍ତି ? (ମୋହନ ନୀଳାକୁ ଇଙ୍ଗିତ ଦେଲା - ନୀଳା ଭିତରକୁ ଚାଲିଗଲା ।)

ମୋହନ - ଆସନ୍ତୁ, ଦରଜା ଖୋଲା ଅଛି-

ଆନନ୍ଦ - (ଆସି) ନମସ୍କାର । ଏ ଭିତରେ ଯେତେଥର ଆସିଚି, ସବୁଥର ଦରଜା ବନ୍ଦ ଥାଏ - ଆଜି ଖୋଲା । କଥା କ'ଣ କୁହନ୍ତୁ ତ ! ଛବିର କାମ ବୋଧହୁଏ ଶେଷହୋଇଯାଇଚି ।

ମୋହନ - ହଁ....

ଆନନ୍ଦ - ତା'ହେଲେ ଧନ୍ୟବାଦର ବିରାଟ ଗୋଳା ମୁଁ ଏଇଠି ଖୋଲିଦେଲି । ହଁ, ସ୍ୱୟଂ କୁମାର ସାହେବ ବି ଆସିଛନ୍ତି ।

ମୋହନ - କୁମାର ସାହେବ ? କାହାନ୍ତି ?

ଆନନ୍ଦ - ବାହାରେ ମଟରରେ - ଆପଣ ଦୟାକରି ଛବିଟା ନେଇ ଚାଲନ୍ତୁ ତାଙ୍କ ପାଖକୁ । (ମୋହନ ଛବିଟାକୁ ଷ୍ଟାଣ୍ଡ୍‌ରୁ ନେଇ ଯିବାକୁ ବାହାରିଚି, ଏଇ ସମୟରେ ନିଜେ କୁମାର ସାହେବ ଆସିଲେ । ତାଙ୍କର ପରିଧାନ ଧୋତି ଆଉ ପଞ୍ଜାବି)

ଆନନ୍ଦ - ଏଇ ତ କୁମାର ସାହେବ ନିଜେ ଆସିଲେ.... (ମୋହନକୁ ଚାହିଁ) ଏ ହେଉଚନ୍ତି ଶିଳ୍ପୀ ମୋହନ ମହାପାତ୍ର । (ମୋହନ କୁମାର ସାହେବଙ୍କୁ ଦେଖି ଯେମିତି ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲା - ସେଇ ଅବସ୍ଥାରେ ସେ କୁମାର ସାହେବଙ୍କୁ ନମସ୍କାର କଲା, କୁମାର ସାହେବ ମଧ୍ୟ ପ୍ରତି ନମସ୍କାର କଲେ ।)

କୁମାର - ବମ୍ବେ ଅ'ର୍ଟ୍ ସ୍କୁଲ୍‌ରେ ଆପଣ ଛାତ୍ର ଥିବାବେଳେ ଆପଣଙ୍କର ଖ୍ୟାତି ମୁଁ ଶୁଣିଚି । ଏ ସାକ୍ଷାତରେ ମୁଁ ଖୁବ୍ ଖୁସି । ହଁ, ଛବିଟା କିପରି ହେଇଚି ?

ମୋହନ - କିନ୍ତୁ ଆପଣ ଏମିତି ଠିଆହେଇ ରହିଲେ ?

ଆନନ୍ଦ - ଏ ବିରାଟ ଭଙ୍ଗା ମହାଦେଶରେ ବସିବାର ସୁବିଧା ନାହିଁ । ଏଥିପାଇଁ କିନ୍ତୁ ଆପଣ ଦାୟୀ ନୁହଁନ୍ତି - ଦେଶର ବଡ଼ ବଡ଼ ଲୋକ ଏମାନେ - ଏମାନେ ତ ଆପଣଙ୍କୁ ଏଇ ଅବସ୍ଥାରେ ରଖିଛନ୍ତି.... ଘର ଭଙ୍ଗା....ଚୌକି ଭଙ୍ଗା.... (ମୋହନ ଛବିଟା କୁମାର ସାହେବଙ୍କ ହାତକୁ ବଢ଼େଇଦେଲା । ଛବିଟା ଦେଖିବା ମାତ୍ରେ ବିସ୍ମୟରେ କୁମାରଙ୍କ ଭ୍ରୂ ଦି'ଟା ଯେତେପାରେ ଉପରକୁ ଉଠିଗଲା - ଖୁବ୍ ମୁଗ୍ଧ ଦୃଷ୍ଟିରେ ଛବିଟାକୁ ଦେଖିବାକୁ ଲାଗିଲେ ।)

କୁମାର - ଚମତ୍କାର ! ଏ ମଡ଼େଲ୍ ଆପଣ ପାଇଲେ କେଉଁଠୁ ? (ମଡ଼େଲ୍ କଥାଟା ଶୁଣିଲା ମାତ୍ରେ ମୋହନ ଯେପରି ଶିହରିଉଠିଲା । କୁମାର ପୁଣି ଛବିରେ ମନୋନିବେଶ କଲେ - ତାଙ୍କ ମୁହଁ ଦେଖିଲେ ଜଣାପଡୁଥାଇ ଯେପରି ଛବି ବଦଳରେ ଛବିର ମଡ଼େଲ୍‌ଟା ସେ ହାତରେ ଧରିଛନ୍ତି । ମୋହନ ତାଙ୍କର ଏଇ ଭାବକୁ ଲକ୍ଷ୍ୟ କରୁଥାଏ । ପଚାରିଥିବା ପ୍ରଶ୍ନର ଉତ୍ତର ଆଶାରେ ସେ ମୋହନକୁ ଲକ୍ଷ୍ୟ କରୁଥା'ନ୍ତି ।)

ମୋହନ - ମଡ଼େଲ୍.... (ଆଉ କିଛି କହିପାରିଲା ନାହିଁ)

କୁମାର - ଆଚ୍ଛା, ବର୍ତ୍ତମାନ ଆପଣ କୁହନ୍ତୁ ଛବିଟାର ଦାମ୍ କ'ଣ ନେବେ ?

ମୋହନ - ଦାମ୍ ? କିନ୍ତୁ (ରହି ରହି) ଛବିଟା ଯେ ପୂରାପୂରି ଶେଷ ହେଇନି ।

ଆନନ୍ଦ - ଶେଷ ହେଇନି - ଆହୁରି ଅଛି ?

କୁମାର - କିନ୍ତୁ କିଛି ବାକି ଥିଲାପରି ତ ମତେ ଜଣାପଡୁନାହିଁ !

ମୋହନ - ତା' ଆପଣ ବୁଝିପାରିବେ ନାହିଁ....

ଆନନ୍ଦ - ତେବେ ଉପାୟ ?

ମୋହନ - ଆପଣ ବର୍ତ୍ତମାନ ଯାଆନ୍ତୁ - ମୁଁ ଠିକ୍ ଦୁଇଘଣ୍ଟା ପରେ ଛବିଟା ନେଇ କୋଠିରେ ପହଞ୍ଚାଇଦେଇ ଆସିବି ।

କୁମାର - ବେଶ୍, ତାହା ହିଁ ହେଉ, କିନ୍ତୁ ଠିକ୍ ଦୁଇଘଣ୍ଟା ପରେ ଛବିଟା ଯେମିତି ମୁଁ ପାଇବି -

(କୁମାର ସାହେବ ଓ ଆନନ୍ଦ ଚାଲିଗଲେ । ସଙ୍ଗେ ସଙ୍ଗେ ଆସିଲା ନୀଳା । ନୀଳା କିଛି କହିବା ପୂର୍ବରୁ କୁମାର ସାହେବ ପୁଣି ଫେରିଲେ - ତାଙ୍କ ପଛେ ପଛେ ଆନନ୍ଦ । କିଛି କହିବା ପୂର୍ବରୁ ତାଙ୍କ ଆଖି ନୀଳା ଉପରେ - ନୀଳାକୁ ଦେଖି ସେ ଯେପରି ଟିକେ ବିବ୍ରତ ହେଇପଡ଼ିଲେ । ତାଙ୍କର ଆଉ ବୁଝିବାକୁ ବାକି ରହିଲାନାହିଁ ଯେ, ଏ ବାଳିକାଟି ହେଉଚି ଛବିର ମଡ଼େଲ୍ । ମୁହୂର୍ତ୍ତକ ପାଇଁ ନୀଳା ଉପରେ ତାଙ୍କର ଲୁବ୍ଧ ଆଖି ଦୁଇଟା ଲାଖି ରହିଲା; କିନ୍ତୁ ସଙ୍ଗେ ସଙ୍ଗେ ସେ ମୁହଁର ଭାବ ପରିବର୍ତ୍ତନ କରାଇ ନିଜକୁ ସହଜ ଅବସ୍ଥାକୁ ଘେନି ଆସିଲେ । ନୀଳା ସେତେବେଳକୁ ଆଶ୍ରୟ ନେଇଥିଲା ମୋହନର ପଛଆଡ଼େ ।)

କୁମାର - ଦେଖନ୍ତୁ ମୋହନବାବୁ - ଏ ଛବିଟା ପାଇଁ ମୁଁ ପାଞ୍ଚ ହଜାର ଟଙ୍କା ଦେବାକୁ ପ୍ରସ୍ତୁତ - ବୁଝିଲେ, ମୁଁ କୋଠିରେ ଅପେକ୍ଷା କରୁଚି - ଠିକ୍ ଦୁଇଘଣ୍ଟା ଭିତରେ ଆପଣ ଛବିଟା ନେଇ ଆସନ୍ତୁ -

(ଦୁହିଁଙ୍କର ପ୍ରସ୍ଥାନ)

(କିଛି ସମୟପାଇଁ ନୀଳା ଓ ମୋହନ ଦୁଇଜଣଙ୍କ ମୁହଁରୁ କିଛି କଥା ବାହାରିଲାନାହିଁ ।)

ମୋହନ - କୁମାର ସାହେବ ବୁଝିପାରିଛନ୍ତି ଯେ, ଛବିର ମଡ଼େଲ୍ ତୁ ।

ନୀଳା - କିନ୍ତୁ ତମେ ମିଛ କଥା କହିଲ କାହିଁକି ?

ମୋହନ - ସତ କଥାଟା କହିବାକୁ ମୋ ଗଳାକୁ ଯେମିତି କିଏ ଚାପିଧରିଲା ନୀଳା । କାମ ଶେଷ ହେଇଯାଇଚି କହିଥିଲେ ହୁଏତ ସେ ଦାମ୍ ଦେଇ ଛବିଟା ସଙ୍ଗେ ସଙ୍ଗେ ନେଇଯାଇଥା'ନ୍ତେ ।

ନୀଳା - ମୁଁ ବୁଝିପାରୁନାହିଁ ମୋହନ - ଦିନକୁ ଦିନ ତୁମର ଏ ବଦ୍‌ଖିଆଲ ବଢ଼ୁଛି କାହିଁକି ?

ମୋହନ -ବାସ୍ତବିକ, ତୁ ବୁଝିପାରିବୁନାହିଁ ନୀଳା - ମୋର ପୁରୁଷାକାର ପ୍ରତି ଏ କେଡେବଡ଼ ଗୋଟାଏ ଅପମାନ ! ଛବିଟା ଦେଖୁ ଦେଖୁ କୁମାର ସାହେବଙ୍କ ଲୋଭୀ ଆଖି ଦୁଇଟା ଯେମିତି ସେଥିରୁ କ'ଣ ଖୋଜି ବୁଲିଲା - ସଙ୍ଗେ ସଙ୍ଗେ ସେ ପଚାରି ବସିଲେ ଛବିର ମଡ଼େଲ୍ କିଏ ? ତା'ପରେ ସେ ଦେଖିଲେ ତୋତେ - ବର୍ତ୍ତମାନ ତୋ ବିଷୟରେ କେତେ କ'ଣ କୁତ୍ସିତ କଳ୍ପନା ହୁଏତ ତାଙ୍କ ମନ ଭିତରେ ସ୍ଥାନ ପାଇଥିବ ।

ନୀଳା - ତାଙ୍କର କୁତ୍ସିତ କଳ୍ପନା ନେଇ ସେ ରହନ୍ତୁ ମୋହନ - ସେଥିରେ ଆମ ଦୁହିଁଙ୍କର ଜୀବନଯାତ୍ରା କେବେହେଲେ କୁତ୍ସିତ ହେବନାହିଁ । ଛବିଟାର ଦାମ୍ ସେ ପାଞ୍ଚ ହଜାର ଟଙ୍କା ଦେବାକୁ ରାଜି ହେଇଚନ୍ତି !

ମୋହନ - ଏଇଟା ଛବିର ଦାମ୍ ନୁହେଁ ନୀଳା - ଏଇ ଛବି ଭିତରେ ଯେଉଁ ନୀଳା ଆତ୍ମଗୋପନ କରିଚି ଏ ତା'ର ଦାମ୍ । ଶିଳ୍ପୀ ଦୃଷ୍ଟିରୁ ଛବିଟାର ଦାମ୍ କ'ଣ ତା କୁମାର ସାହେବ ଆଦୌ ଜାଣନ୍ତି ନାହିଁ ।

ନୀଳା - ତାଙ୍କ ଜାଣିବା ନଜାଣିବାରେ ତମର କିଛି ଯାଏ ଆସେ ନ ମୋହନ । ଛବିଟା ତୁମେ ଆଙ୍କିଚ, ତାଙ୍କ ଆଖିକୁ ଭଲଲାଗିଚି, ତାଙ୍କର ଛବି ଦରକାର - ତମର ଟଙ୍କା ଦରକାର । ବାସ୍ ଏତିକିରେ ତମ ସହିତ ତାଙ୍କର ସବୁ ସମ୍ପର୍କ ଶେଷ । ତମେ ଯାଅ ମୋହନ - ଆଉ ଏ ଦୁର୍ବଳତାକୁ ମନରେ ସ୍ଥାନ ଦିଅ ନାହିଁ - ବର୍ତ୍ତମାନ ଛବିଟାକୁ ନେଇ ତୁମେ କୁମାର ସାହେବଙ୍କ ପାଖକୁ ଯାଅ - (ଛବିଟି ଆଣି ମୋହନ ହାତରେ ଦେଲା) ଯଦି ସେ ମଡେଲ୍ କଥା ପଚାରନ୍ତି, ତା'ହେଲେ ତାଙ୍କୁ ଭଲରୂପେ ଶୁଣେଇଦେବ ଯେ, ଓଡ଼ିଆ ଶିଳ୍ପୀ ବଞ୍ଚି ରହିବା ପାଇଁ ବିକୁଚି ଆଜି ତା'ର ସ୍ତ୍ରୀର ଛବି ! ହଁ, ଠିକ୍ ଏଇକଥା ତାଙ୍କୁ କହିବ । ଦେଖିବ ଏଇ କଥା ଶୁଣି ସେ ସନ୍ତୁଷ୍ଟ ହୋଇ ରହିବେ ।

ତୁମେ ଯାଅ ମୋହନ । ଟଙ୍କାର ବନ୍ଦୋବସ୍ତ ହୋଇସାରିଚି ବୋଲି ବାପା ଜାଣିଛନ୍ତି । ଆଉ ସେଥିପାଇଁ ବିବାହର ଦିନ ପର୍ଯ୍ୟନ୍ତ ଠିକ୍ କରି ସାରିଚନ୍ତି - ଆଉ ବେଳନାହିଁ ମୋହନ, ତୁମେ ଯାଅ-ଯାଅ ! (ମୋହନ ଶିଶୁଟି ପରି ଚାଲିଗଲା) ପାଞ୍ଚ ହଜାର, ତିନି ହଜାର - ପାଞ୍ଚଶ ତିନିଶ ଯା ହେବ, ଛବିଟା ବିକିକରି ଆସିବ - ତୁମେ ଫେରିବା ଯାଏ ମୁଁ ଏଠି ରହିଲି ।

(ମୋହନ ଯିବାପଥକୁ ନୀଳା ଚାହିଁ ଦରଜା ବନ୍ଦ କରିଦେଲା । ସେ ବନ୍ଦ ଦରଜାକୁ ପିଠିକରି ଠିଆହୋଇ ସ୍ୱସ୍ତିରେ ନିଶ୍ୱାସ ମାରିଲା - ଆଖି ଦୁଇଟା ତା'ର ଆପେ ଆପେ ବନ୍ଦ ହୋଇଆସିଲା ।)

ବାପାଙ୍କୁ ତୁମେ କଥାଦେଇଚ ମୋହନ, ସେକଥା ତୁମକୁ ରଖିବାକୁ ହେବ ।

## ଚତୁର୍ଥ ଦୃଶ୍ୟ

(କାଠଗଡ଼ା ସାହିର ସେହି ଗଳି ରାସ୍ତା - ଶଙ୍କର ଖଣ୍ଡିଏ ଚିଠି ମନେମନେ ପଢ଼ି ପ୍ରବେଶ କଲା - ଏଣେତେଣେ ଚାହିଁ ଆଖିପଡ଼ିଲା ରଘୁଆ ଉପରେ ।)

ଶଙ୍କର - ରଘୁଆ, ରଘୁଆ ! ଆବେ ହେ ରଘୁଆ - ଶୁଣ୍ ।

ରଘୁ - (ପ୍ରବେଶି) କ'ଣ କିରେ ଶଙ୍କରାଇ ?

ଶଙ୍କର - ରଘୁ ! ଏ ଚିଠି ଖଣ୍ଡିକ ନେଇ ଯା, ନୀଳାକୁ ଦେବୁ......

ରଘୁ - ତୁ କାହିଁକି ଏମିତି ବେଇଜ୍ଜତ କାମ କରୁଛୁ କହିଲୁ ଶଙ୍କରାଇ ? ନୀଳାନାନୀ ଘରେ ତିନିଯୋଡ଼ା ଚପଲ ଅଛି ଜାଣୁ ? ତୋଠୁଁ ପୁଣି ସେ ଚିଠି ନେବ !

ଶଙ୍କର - ମୁଁ କାହିଁକି ତା ପାଖକୁ ଚିଠି ଦେବି ! ଏ ଚିଠି ମୋହନ ଭାଇ ନୀଳା ପାଖକୁ ଦେଇଚି ଡାକରେ - ପିଅନ ଆଣୁଥିଲା - ତା'ଠୁ ମୁଁ ରଖିନେଇଚି.....

ରଘୁ - ମୋହନଭାଇ ଡାକରେ ଚିଠି ଦେଇଚି କାହିଁକି ? ଆଉ ଆଠଦିନ ଗଲେ ତାଙ୍କର ବାହାଘର.....

ଶଙ୍କର - ରଖ୍ ତୋ ବାହାଘର । ଆଉ ବାହାଘର ! ! ବଇଁଶି ଅଛି ଯେ ବାଂଶରୀ ବାଜିବ.... । ମୋହନ ଭାଇ ଦେ ଚଲ୍-

କାହ୍ନୁ - (ପ୍ରବେଶି) ହଇରେ ଶଙ୍କରା - କ'ଣ ହଉଚି ଇଏ ?
ଏଇଠି କଣ୍ଢେଇ ଗଢୁଚୁ ?

ଶଙ୍କର - ଶୁଣ ବାପା । ସେ ଭଙ୍ଗା କଣ୍ଢେଇ କଥା ଛାଡ଼ି - ଅଭଙ୍ଗା କଣ୍ଢେଇ ପୁଣି ଆସିଗଲା -

କାହ୍ନୁ - ଏଁ କ'ଣ କହୁଚୁ - ଫିଟେଇ କରି କହ ।

ଶଙ୍କର - ବାପା ତୁମେ ଏମିତି ବିଗିଡ଼ି ଯାଉଚ କାହିଁକି ? କଥାଟା ଆଗେ ଶୁଣ । ମୋହନଭାଇ ଭାଗା.....

କାହ୍ନୁ - ଭାଗା - କୁଆଡ଼େ ଭାଗା ?

ଶଙ୍କର - ସେଇଆ ତ କହୁଚି - କଟକ ଷ୍ଟେସନ୍‌ରୁ ନୀଳା ପାଖକୁ ଖଣ୍ଡେ ଚିଠି ଲେଖିଦେଇ କୁଆଡ଼େ ପଳେଇଚି - ଏଇ ଚିଠିଟା ମୁଁ ପଢୁଚି ଶୁଣ - (ପଢ଼ିଲା) ନୀଳା ! ମୁଁ ପାରିଲିନାହିଁ -

କାହ୍ନୁ - କ'ଣ ପାରିଲାନାହିଁ କିରେ ?

ଶଙ୍କର - ତୁମେ ଶୁଣନା ଆଗେ - (ପୁଣି ପଢ଼ିଲା) ତୁ ମତେ କହିଥିଲୁ - ତୋ ନିର୍ଜୀବ ଛବିଟାକୁ ବିକି ତା ବଦଳରେ ପାଇବି ତୋର ଜୀଅନ୍ତା ଛବିଟାକୁ । କିନ୍ତୁ ଅନେକ ଭାବିଚିନ୍ତି ଶେଷକୁ ତୋର ଏ ଯୁକ୍ତି ମାନିନେଇ ପାରିଲିନାହିଁ । କନା ଆଉ ରଙ୍ଗରେ ତୋର ଏଇ ମଲା ଛବିଟାରେ ମୁଁ କରିବି ପ୍ରାଣପ୍ରତିଷ୍ଠା । ସେଥିପାଇଁ ଛବିଟାକୁ ବିକିପାରିଲିନାହିଁ ? ଶେଷ ସମ୍ବଳ ଏଇ ଛବିଟାକୁ ସାଙ୍ଗରେ ନେଇ ମୁଁ ଆଜି ଯାଉଚି - କୁଆଡ଼େ ଯାଉଚି ଶୁଣି ତୋର ଲାଭନାହିଁ । ମଣିଷ ପରି ବଞ୍ଚିବାର ଅଧିକାର ନେଇ ଫେରିବି - ଏଇ ଆଶାରେ ଯାଉଚି -

କାହ୍ନୁ - ବୁଝିଲି, ମହନି ପଳେଇଲା । ତୁ କ'ଣ କହୁଚୁ ?

ଶଙ୍କର - ମହନିଭାଇ ସାଙ୍ଗରେ ଆଉ ନୀଳାର ବାହାଘର ହୋଇପାରିବନି ।

କାହ୍ନୁ - ମାନିଲି, ହେଲେ ତୁ କ'ଣ କହୁଚୁ ?

ଶଙ୍କର - କୋଉ କଥା ?

କାହ୍ନୁ - ଶୁଣିବଟି - କହିନାହିଁ ଯେ ପୁଣି କହିବି, କାଲି ଛାଡ଼ି ପହରିଦିନ ସେମାନଙ୍କୁ ଜବାବ ଦେବାର କଥା ।

ଶଙ୍କର - ମୁଁ ସେ ମଫସଲରେ ବାହାହୋଇପାରିବିନାହିଁ ।

(ଚାଲିଯାଉଥିଲା)

କାହ୍ନୁ - ଛତରା, କୁଳାଙ୍ଗାର - କହୁଚି କ'ଣ ନା ମଫସଲ ଜାଗା ! ହଇରେ ହେ ସହରି, ମଦୁଆ, ଜୁଆଡ଼ି, ହେଲୁ ବୋଲି ତୁ ଏଠି କେହି ଝିଅ ଦେବାକୁ ରାଜି ହେଲେନି । ତୋରି ପାଇଁ ମଧୁ ମହାରଣା ପାଖରେ ମୁଁ ଥରକୁ ପାଞ୍ଚଥର ବେଇଜ୍ଜତ ହେଲି, ତେବେ ବି ସେ ଟୋକୀ ପଟିଲାନାହିଁ -

ଶଙ୍କର - ଆଚ୍ଛା ବାପା, ତୁମେ ପରା ଏ ସାଇରେ କୁଆଡ଼େ ଜଣେ ଭାରି ବଡ଼ ମାମଲତ୍‌କାର ?

କାହ୍ନୁ - କ'ଣ ଆଜି ନୂଆ ଦେଖିଲୁ କି ?

ଶଙ୍କର - ନାଇଁ - ନାଇଁ, ବାପା ତ ଏମିତି ମାମଲତ୍‌କାର - ଆଉ ପୁଅ ଯେ ବେଦୀ ଉପରୁ ଶିଶୁପାଳ ବନି ଫେରିଲା - ସେଥିକି ତମେ କ'ଣ କରିଚ ଶୁଣେ ?

କାହ୍ନୁ - ଆଚ୍ଛା ନୀଳା ଯଦି ତେତେ ରାଜି ନ ହେଲା - ସେ ଦୋଷଟା କ'ଣ ମୋର ?

ଶଙ୍କର - ମୋ ଉପରେ ଦୋଷଟା ଲଦିଦେବାକୁ ତମେ ଖୁବ୍ ଜାଣ ! ନୀଳା ରାଜି ହୋଇଥିଲେ ତମ ମାମଲତ୍‌କାରୀକୁ କିଏ ପଚାରୁଥିଲା ? (ଯିବାକୁ ଲାଗିଲା)

କାହ୍ନୁ - ଆରେ ତୁ ଚାଲିଯାଉଚୁ ଯେ, ମୋତେ କ'ଣ ଜବାବ ଦେଇ ଯା' ।

ଶଙ୍କର - କି ଜବାବ ?

କାହ୍ନୁ - ଶୁଣିବଟି !

ଶଙ୍କର - ସତେ ବାପା ! ତମେ ଭାରି ମୁସିବତ୍‌ରେ ମୋତେ ପକଉଚ । ତୁମକୁ ମୁଁ ସଫା ଫିଟେଇ କହିଦେଉଚି - ନୀଳା ଛଡ଼ା ଆଉ କାହାରିକି ବାହା ହେବିନି - କାରଣ ମୁଁ ନୀଳାକୁ ଭଲପାଏ ।

କାହ୍ନୁ - ଏଃ - ଭଲପାଉ ! ଆରେ ତୁ ତାକୁ ଭଲ ପାଇବାକୁ କିଏ ? ଅଭଙ୍ଗା କଣେଇ କାରଖାନା ଚାକିରି କଥା ନଥିଲେ, ମୁଁ ମଧୁ ମହାରଣା ଦୁଆରମୁହଁ ମାଡ଼ିଥା'ନ୍ତି ? ଏ ପୁଣି ଗେଲେଇ ହେଇ କହିଲା କ'ଣ ନା- ମୁଁ ତାକୁ ଭଲପାଏଁ ! ବେହିୟା - ଅଲାଜୁକ । କ'ଣ ଆଉ କହିବି ? ଶଙ୍କରା ଯଦି ଭଲଦଶା ଅଛି, ତେବେ ସୁନା ପୁଅଟି ପରି ମୋ କଥା ମାନି ସେ ଦିଆନି ପାଟଣାରେ ବାହା ହୋଇପଡ଼ -

ଶଙ୍କର - ହମ୍ - ହମ୍ ସାଦି ନହିଁ କରେଙ୍ଗେ ।

କାହ୍ନୁ - ଶଙ୍କୁ !

ଶଙ୍କର - ମୁଁ କହୁଚି ବାପା - ହମ୍ ସାଦି ନେହିଁ କରେଙ୍ଗେ - ନେହିଁ କରେଙ୍ଗେ ।

କାହ୍ନୁ - ନହିଁ କରେଙ୍ଗେ, ତୋ କ୍ୟା ସାଧୁ ବନେଙ୍ଗେ - ସାଧୁ ! ! ଶଙ୍କରା - ହେ ଶଙ୍କରା ! (ଶଙ୍କର ବାହାରକୁ ଚାଲିଗଲା)

## ପଞ୍ଚମ ଦୃଶ୍ୟ

(ମଧୁ ମହାରଣା ଘର । ମୋହନ କଟକ ଛାଡ଼ିଯିବାର ତିନିମାସ ପରର କଥା । ମଧୁ ବସିଚି ଗୋଟାଏ ମୋଡ଼ା ଉପରେ; ତାକୁ ଦେଖିଲେ ମନେହୁଏ ଯେପରି ସେ ଏଇ ତିନିମାସ ଭିତରେ ଆହୁରି ଦଶବର୍ଷ ବଢ଼ିଯାଇଚି । ଭିତରୁ ଆସିଲା ନୀଳା ତା'ଚେହେରାରେ ମଧ୍ୟ ସେହିପରି ଗୋଟାଏ କାରୁଣ୍ୟର ଛାୟା । ନୀଳା ହାତରେ ଖଣ୍ଡିଏ ଚିଠି ।)

ନୀଳା - ବାପା - ବାପା ! (ମଧୁ ଥରୁଟିଏ ନୀଳା ଆଡ଼କୁ ଚାହିଁ ମୁହଁ ଫେରେଇ ଆଣିଲା- ନୀଳା ଧୀରେ ଧୀରେ ଆଗେଇ ଆସିଲା ମଧୁ ପାଖକୁ ।) ବାପା....

ମଧୁ - ବାପା ବୋଲି ନ ଡାକି ଯାହା କହିବାର କଥା କହିଲେ ମୁଁ ଶୁଣିବି ଯେ ! ଝିଅ ଜନ୍ମ ତ ଦେଇଚି - ଯେତେ ଅବସ୍ଥା ହେଲେ ବି କ'ଣ ତୋ କଥା ଶୁଣିବିନାହିଁ ? ଶୁଣିବି । କି କଥା ଆଉ କହିବୁ ଯେ ? ମୋହନ କେତେଦିନ ହେଲା କଟକ ଛାଡ଼ି ଗଲା, ତା'ରି ହିସାବ ଦବାକୁ ଆସିଚୁ ? ମୁଁ ବି ସେ ହିସାବ ରଖିଚି - ସେ ଯିବାର ଆଜିକୁ ହେଲା ତିନିମାସ ଏଗାର ଦିନ, ବୁଝିଲୁ - ଏଥର ଯା !

ନୀଳା - ଏଇ ଚିଠି ଆସିଚି ବାପା ।

ମଧୁ - ଚିଠି ? କିଏ ଦେଇଚି - ମୋହନ ? ମୋହନ ଚିଠି ଦେଇଚି ? ଏ କଥା ତୁ ଏତେବେଳଯାଏ କହିନୁ କାହିଁକି ? ମୁଁ ଜାଣେ ପାଠଶାଠ ପଢ଼ି ସେ ଏମିତି ବେଇମାନି

କାମ କରିପାରିବନାହିଁ । ହଁ - ପଢ଼ିବୁଟି - ପଢ଼, ସେ କ'ଣ ଲେଖିଚି - (ପୁଣି ମୋଡ଼ା ଉପରେ ବସିଲା)

ନୀଳା - ନାଇଁ ବାପା, ସେ ଏ ଚିଠି ଦେଇନାହାନ୍ତି....

ମଧୁ - ସେ ଦେଇନାହିଁ, ଆଉ ପୁଣି କିଏ ଦେଇଚି.... କିଏ ତୋ ପାଖକୁ ଚିଠିଦେଇଚି ?

ନୀଳା - ଚାକିରି ପାଇଁ ଦରଖାସ୍ତ କରିଥିଲି - ଚାକିରି ହେଇଚି ବୋଲି ଚିଠି ଆସିଚି ।

ମଧୁ - ଚାକିରି ! କି ଚାକିରି ? ସେଇ ଯେଉଁ ମାଷ୍ଟ୍ରାଣୀ ଚାକିରି କଥା ତୁ ମତେ କହୁଥିଲୁ ?

ନୀଳା - ହଁ....

ମଧୁ - ମୁଁ ପରା ମନା କରିଥିଲି ତୋତେ ଚାକିରିପାଇଁ ଦରଖାସ୍ତ କରିବାକୁ ।

ନୀଳା - ପାଇବି ବୋଲି ତ ଆଶା ନଥିଲା- କ'ଣ ମନ ହେଲା କେଜାଣି ଦରଖାସ୍ତ ଖଣ୍ଡେ ପକେଇ ଦେଇଥିଲି ।

ମଧୁ - ଭଲ କରିଥିଲୁ - ଭଲ କରିଥିଲୁ ଲୋ ! ଚିତ୍ରକର କୁଳରେ ଜନ୍ମହୋଇ ମୋ ଇଜ୍ଜତମହତକୁ ମାଟିରେ ମିଶାଇଦେଇ ପର ଘରେ ଚାକିରି କରି ପେଟ ପୋଷିବାକୁ ପୁଣି ତୋ ଭାଗ୍ୟରେ ଥିଲା ! ମୁଁ ତୋତେ ପଚାରେ ନୀଳା, ମାଇକିନିଆ ଝିଅ ଜନ୍ମ ହୋଇ ଯଦି ଘରଦ୍ୱାର କରିନପାରିଲୁ - ତେବେ ତୋର ଏ ଦୁନିଆରେ ବଞ୍ଚି ରହି ଲାଭ କ'ଣ ? ସେଇ ଅନ୍ତୁଡ଼ିଶାଳରେ ତୋ ମା' ସାଙ୍ଗରେ ନମରି ବଞ୍ଚିଲୁ କାହିଁକି ? (କଥାଗୁଡ଼ାକ କହି ନିଜେ କାନ୍ଦି ପକେଇଲା)

ନୀଳା - ତମ କଥାର ଉତ୍ତର ଏ ଦୁନିଆରେ ଆଜି କେହି ଦେଇପାରିବେ ନାହିଁ ବାପା ! ମରିବାକୁ ହଜାରେ ଚେଷ୍ଟା କରିଚି; କିନ୍ତୁ ପାରିନି । ଯେତେଥର ମରିବି ବୋଲି ଭାବିଚି - ସେତେଥର ବଞ୍ଚିବାର ଇଚ୍ଛା ମୋର ଅଧିକରୁ ଅଧିକ ହୋଇଉଠିଛି । ମୁଁ ଆଜି ଚାକିରି କରୁଚି ଦୁନିଆରେ ବଞ୍ଚିରହିବା ପାଇଁ - ମୋର ଏଇ ବଞ୍ଚି ରହିବାର ଲୋଭ ଯଦି ମତେ ମରଣ ମୁହଁକୁ ଠେଲିଦିଏ, ତା'ମୁଁ ହସି ହସି ସହିଯିବି - କିନ୍ତୁ ବାପା ! ତମର ପାଦଛୁଇଁ ମୁଁ ଆଜି ନିୟମ କରିଯାଉଚି (ଅତି ଅସହାୟ ଭାବରେ ମଧୁର ପାଦ ପାଖରେ ବସିପଡ଼ିଲା) ତମ ମାନ, ଇଜ୍ଜତକୁ ମୁଁ କେତେବେଳେ ହେଲେ ତଳେ ପକାଇବି ନାହିଁ । ତମର ନୀଳାକୁ ତ ତମେ ଜାଣ ବାପା ! ସେ ଅଲକ୍ଷ୍ମୀ ହୋଇପାରେ, ଭାଗ୍ୟହୀନା ହୋଇପାରେ କିନ୍ତୁ....

ମଧୁ - ମୋହନ କ'ଣ ଆଉ ସତରେ ଫେରିବନାହିଁ ?

ନୀଳା - (ଦୃଢ଼ ଗଳାରେ) ତାଙ୍କର ଫେରିବା ନଫେରିବାରେ କାହାର କିଛି ଯାଏ ଆସେ ନା ବାପା -

ମଧୁ - ହଁ ମା, ତୁ ଠିକ୍ କହିଚୁ, ତିନିମାସ ଏଗାର ଦିନ ହୋଇଗଲା - ଖଣ୍ଡେ ଚିଠି ଦେବାକୁ ଯାହାର ମନ ବଳିଲା ନାହିଁ - ତା ସାଙ୍ଗରେ ଆମର ଆଉ ସମ୍ପର୍କ କ'ଣ ? ତା ନାଁ ମୁଁ ଆଉ ମୁହଁରେ ଧରିବି ନାହିଁ । ସେଇଟା ମଣିଷ ନୁହେଁ - ତା'ର ହିମ୍ମତ ନାହିଁ । ଦି'ଟା ପେଟ ପୋଷିପାରିବେ ନାହିଁ ବୋଲି ଯିଏ ଘରଛାଡ଼ି ପଳେଇଗଲା - ତାକୁ ମୁଁ ମରଦ ପୁଅ

ବୋଲି କହିବିନାହିଁ । ନହେଲା, ଚାକିରି ନକଲୁ, ଛବିକାମ ନପୋଷେଇଲା - ଚିତ୍ରକର ଘରର ପୁଅ - ମାଟି ଚକଟିଥିଲେ ତ ପେଟ ଅପୋଷା ରହିନଥା'ନ୍ତା । ଘରୁ ଡରିକରି ପଳେଇଗଲୁ କାହିଁକି ? ବେଶ୍ ଯାଇଚୁ ତ ଯା - ଭାବିଚୁ ନୀଳା ତୋ ପାଇଁ ଜାଗର ଜାଳି ବସିବ ! ସେ କଥା ହେଇପାରିବ ନାହିଁ - ସେ ବି ତା ବାଟ ଠିକ୍ କରିନେଲାଣି । ହଁ ତୁ - ଆଜିଠୁ ସେଇଠି ଯାଇ ରହିବୁ ତ ମା ?

ନୀଳା - ହଁ....

ମଧୁ - ବେଶ୍ ତୁ ଯା - ତୋ ଲୁଗାପଟା ଦି'ଖଣ୍ଡ ସଜାଡ଼ି ନେ - ମୁଁ ଯାଉଚି ଖଣ୍ଡେ ରିକ୍ସା ଡାକିଆଣିବି । ତାଙ୍କ କୋଠିଟା ତୁଳସୀପୁରରେ ତ ?

ନୀଳା - ହଁ.... (ନୀଳା ଚାଲିଗଲା - ତା ପରେ ଆସିଲା କାହ୍ନୁ)

କାହ୍ନୁ – ମୋ ସଂସାର ଉଚ୍ଛନ୍ନ ହେଇଗଲା ମଧୁଭାଇ, ତମ ହାତ ଧରୁଚି, ତମେ ମତେ ଏଇ ବିପଦରୁ ବଞ୍ଚାଅ -

ମଧୁ - କ'ଣ ହେଲା କାହ୍ନୁ ?

କାହ୍ନୁ - ଶଙ୍କୁ କହୁଚି କଲିକତା ପଳେଇବ । ନୀଳାକୁ ବାହହେଇପାରିଲା ନାହିଁ ବୋଲି ସେ ଏକରକମ ପାଗଳ ହେଇଗଲାଣି -

ମଧୁ - କାହ୍ନୁ! ମୋହନ ଗଲାଦିନୁ ଏଠି କେତେ ବଡ଼ ଘଟଣା ହେଇନଯାଇଚି । ମୋ ଦୁଆରକୁ ଟେକା, ପଥର ଫୋପଡ଼ା ହେଇଚି - ନୀଳା ନାଁରେ କେତେ ରକମ ବେନାମୀ ଚିଠି ଆସିଚି - ତେବେ ବି ନୀଳା ମନ ଟଳିନାହିଁ । ଶଙ୍କରକୁ ସେ ବାହା ହବନାହିଁ, ଏକଥା ବି ସେ ନିଜେ ମୁହଁ ଫିଟେଇ କହିଦେଇଚି - ଆଜି ପୁଣି କାହିଁକି ଆସିଚ ? ବୁଝିଲ କାହ୍ନୁ, ନୀଳାକୁ ବୋହୂ କରିବା ଆଶା ଛାଡ଼ିଦିଅ - ତା ବାଟ ସେ ଧରିନେଲାଣି - ସେ ଗୋଟିଏ ଚାକିରି ପାଇଚି ।

କାହ୍ନୁ - ଚାକିରି ! !

ମଧୁ - ହଁ, ଜଣେ ଖୁବ୍ ପଇସାବାଲା ବିଧବା ସ୍ତ୍ରୀ । ତିନିକୁଳରେ ଆଉ କେହି ନାହାନ୍ତି - ଗୋଟିଏ ବୋଲି ଝିଅ । ତାଙ୍କରି ଘରେ ରହି ସେ ଝିଅକୁ ନୀଳା ପଢ଼େଇବ ।

କାହ୍ନୁ - ଏଇଟା କ'ଣ ଠିକ୍ ହେଲା ମଧୁଭାଇ । ଚିତ୍ରକର ଘରର ଝିଅହେଇ ପର ଘରେ ଯାଇ ନୀଳା ଚାକିରି କରିବ - ଏଇଟା ତମକୁ ସୁନ୍ଦର ଦିଶିଲା ?

ମଧୁ - ତୁମକୁ ଯେବେ ଅସୁନ୍ଦର ଦିଶୁଚି ତମ ଆଖି ଦି'ଟା ବନ୍ଦ କରିଦିଅ । ମୋ ଭଲମନ୍ଦରେ ଭଲଲୋକି କରିବାକୁ ତମକୁ କିଏ ଏଠିକି ଖୋସାମତ କରି ଡାକୁଚି ? ମୁଁ ତୁମକୁ କହୁଚି କାହ୍ନୁ, ଏଣିକି ତୁମେ ମୋ ଦୁଆର ମାଡ଼ିବନାହିଁ.... ତୁମେ ଗଲ ଏଠୁ - ଯାଅ- ଯାଅ କହୁଚି..... (କାହ୍ନୁ ଚାଲିଗଲା) ନୀଳା ନୀଳା.... (ନୀଳା ଆସିଲା) ତୁ ଚଞ୍ଚଳ ତୋ ଲୁଗାପଟା ଦି'ଖଣ୍ଡ ସଜାଡ଼ି ନେ - ଏ ସାଇ ଛାଡ଼ି ତୁ ଚଞ୍ଚଳ ପଳା- ଏମାନେ ତୋତେ ଆଉ ଏଠି ରଖେଇ ଦେବେ ନାହିଁ.... ତୁ ଚଞ୍ଚଳ ଏଠୁ ପଳା - ଚଞ୍ଚଳ ।

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(କଲିକତା ସହର - ରାସ୍ତାରୋଡ଼ ସଂଯୁକ୍ତ ଗୋଟିଏ ଗଳି- ରାସ୍ତା ଉପରେ ଅବସ୍ଥିତ ଗୋଟିଏ ଛୋଟ ଏକମହଲା କୋଠାଘରର ବୈଠକଖାନା । - ସାଜସଜ୍ଜାରେ ନିଷ୍ପ୍ରଭ ଆଭିଜାତ୍ୟର ପରିଚୟ ମିଳେ । ଡ୍ରେସିଂଟେବୁଲ୍, ଟି'ପୟ, ଆଲ୍‌ମାରି, ଚୌକି- ସବୁ ମେହଗାନୀ କାଠରେ ତିଆରି - ଖୁବ୍ ମଜବୁତ୍; କିନ୍ତୁ ବାର୍ନିସ୍‌ର ତେଜ ଯେପରି ମଉଳିଯାଇଛି - ତଥାପି ସମୁଦାୟ କକ୍ଷଟି ପ୍ରତି ତୀକ୍ଷ୍ଣ ଦୃଷ୍ଟିପାତ କଲେ ସ୍ପଷ୍ଟ ଜଣାଯାଏ ଯେ, କାହାର କର୍ମନିପୁଣ କଳାକୁଶଳ ହାତ ଦୁଇଟି କକ୍ଷଟିର ଶ୍ରୀବର୍ଦ୍ଧନ ଲାଗି ନିତ୍ୟନିୟତ ଲାଗିରହିଚି ।

ଏ ଘରେ ବାସକରନ୍ତି ତିନୋଟି ପ୍ରାଣୀ - ପ୍ରଥମ ମୀର୍ଣ୍ଣା, କୋଡ଼ିଏ ଏକୋଇଶି ବର୍ଷର ତରୁଣୀ । ମୀର୍ଣ୍ଣାକୁ ଦେଖିଲେ ମନେହୁଏ - ଏ କକ୍ଷଟି ସହିତ ତା'ର ଯେପରି ପରିପୂର୍ଣ୍ଣ ସାମଞ୍ଜସ୍ୟ ରହିଚି । ଆଭିଜାତ୍ୟର ଚାକଚକ୍ୟ ତା'ଠାରୁ ଉଡ଼ିଯାଇଚି; କିନ୍ତୁ ରହିଯାଇଚି ଗୋଟିଏ ଲାବଣ୍ୟଭରା ତନୁର ଛାପ । ତା'ର ଚରିତ୍ରର ବିଶେଷତ୍ୱ ହେଉଚି ଏଇ ଯେ, ସେ ଅସୀମ ଦୁଃଖର ବୋଝ ବହନ କରି ମଧ୍ୟ ସୀମାହୀନ ଧୈର୍ଯ୍ୟର ସହିତ ତା'ର ସଂସାରଟି ଚଳେଇନେଇ ପାରୁଚି । ଦ୍ୱିତୀୟ ଶ୍ରୀଯୁକ୍ତ ଭବାନୀ ଶଙ୍କର ମହାପାତ୍ର- ସାଧାରଣତଃ ମିଃ. ମହାପାତ୍ର ନାମରେ ପରିଚିତ- ମୀର୍ଣ୍ଣାର ବାପ- ସେ ବିକୃତ ମସ୍ତିଷ୍କ ବୃଦ୍ଧ- ବୃଦ୍ଧ ଏହି ଦୃଷ୍ଟିରୁ ଯେ, ଉପସ୍ଥିତ ତାଙ୍କର ବୟସ ପଚାଶର ପାଖାପାଖି ହେଲେ ସୁଦ୍ଧା ତାଙ୍କର ଭାରାକ୍ରାନ୍ତ ଜୀବନ ତାଙ୍କୁ ବୃଦ୍ଧାବସ୍ଥାକୁ ଟାଣିନେଉଚି । ତୃତୀୟ - ଗୃହର ପୁରାତନ ଭୃତ୍ୟ ବିଶି - ଯେପରି ହବାର କଥା !)

(ଦୃଶ୍ୟ ଆରମ୍ଭରେ ଦେଖାଗଲା ମୀର୍ଣ୍ଣା ଗୃହସ୍ଥଳୀର କାର୍ଯ୍ୟ କରିଚାଲିଛି - ଏତିକିବେଳେ ଭୀତତ୍ରସ୍ତ ଅବସ୍ଥାରେ ମୋହନ କବାଟ ପେଲି ପ୍ରବେଶ କଲା - କିନ୍ତୁ ମୀର୍ଣ୍ଣାକୁ ଦେଖିଲାମାତ୍ରେ ସେ ସଙ୍କୁଚିତ ହେଇପଡ଼ିଲା ?)

ମୀର୍ଣ୍ଣା - କିଏ, କିଏ ଆପଣ ?

ମୋହନ - ମୁଁ (ମୁଣ୍ଡର ପଛପଟେ ଗୋଟାଏ ସ୍ଥାନ ଚିପି ଧରିଥାଏ, ତା ମୁହଁରେ ଯନ୍ତ୍ରଣାର ସ୍ପଷ୍ଟ ଆଭାସ ।)

ମୀର୍ଣ୍ଣା କୁହନ୍ତୁ; କିଏ ଆପଣ - ବିଶି -ବିଶି-ବିଶି ?

(ଜଣେ ଅପରିଚିତ ପୁରୁଷକୁ ଏ ଅବସ୍ଥାରେ ଦେଖି ମୀର୍ଣ୍ଣା ମନରେ ସାମାନ୍ୟ ଭୟର ସଞ୍ଚାର ହେଇଚି ।)

ମୋହନ - କ୍ଷମା କରନ୍ତୁ - ଟିକିଏ ଆଶ୍ରୟ ଭରସାରେ ଏଠିକି ପଶିଆସିଥିଲି - ବର୍ତ୍ତମାନ ଫେରିଯାଉଚି । (ଯିବାକୁ ଉଦ୍ୟତ ହେଲା)

ମୀର୍ଣ୍ଣା - ଶୁଣନ୍ତୁ ! ଆପଣଙ୍କ ମୁଣ୍ଡରୁ ବୋଧହୁଏ ରକ୍ତ ବାହାରୁଚି - କ'ଣ ହେଲା- ଏକ୍‌ସିଡେଣ୍ଟ୍ ?

ମୋହନ - ନା ।

ମୀର୍ଣ୍ଣା - ତେବେ ?

ମୋହନ - ବାହାରେ ସଦର ରାସ୍ତା ଉପରେ ଗଣ୍ଡଗୋଳ ଆରମ୍ଭ ହୋଇଯାଇଚି- ନିଜକୁ ବଞ୍ଚାଇବା ପାଇଁ ଆପଣଙ୍କ ଫାଟକ ଭିତରକୁ ପଶିଆସିଲି - ତଥାପି ମୋ ପାଖରୁ କିଛି ଦୂରରେ ଗୋଟାଏ ହାତବୋମା ଫୁଟିଲା - ତା'ରି ଫଳ ଭୋଗୁଚି - ଆଉ ସେଇ ଭୟରେ ଏଠିକି ପଶିଆସିଥିଲି - ଫେରିଯାଉଚି.....

ମୀର୍ଣ୍ଣା - କିନ୍ତୁ ଏ ଆଘାତ ନେଇ ଆପଣ ଯିବେ କେମିତି ?

ମୋହନ - ନା, ସେ କିଛିନୁହେଁ - ବେଶି ଆଘାତ ଲାଗିନି ?

ମୀର୍ଣ୍ଣା - ତଥାପି ରକ୍ତ ବାହାରୁଚି ତ ! ଦେଖି ହାତଟା ଉଠାନ୍ତୁ ତ - ଆଃ ଉଠାନ୍ତୁ ନା ! (ମୋହନ ହାତ ଉଠାଇଲା - ମୀର୍ଣ୍ଣା ନିଜ ହାତରେ କ୍ଷତସ୍ଥାନକୁ ଟିକେ ପରୀକ୍ଷା କଲା ।)

ଇସ୍ ଚମେଡ଼ାଟା କଟିଯାଇଛି - ଆଚ୍ଛା, ଆପଣ ବସନ୍ତୁ ଏଠି (ମୋହନ ଗୋଟାଏ ଇଜିଚେୟାର ପାଖକୁ ଆଗେଇଗଲା - କିନ୍ତୁ ବସିବାକୁ ସଙ୍କୋଚ କରୁଥାଏ ।) ହଁ ବସନ୍ତୁ - (ମୋହନ ବସିଲା । ଇତି ମଧ୍ୟରେ ବିଶି ଆସିଯାଇଥାଏ) ବିଶି, ତୁ ଯା (ଟିକିଏ ଭାବି) ହଁ ଟିକେ ପୋଡ଼ାକନା ଆଣ ଯା -(ବିଶି ଚାଲିଗଲା) ଦେଖନ୍ତୁ, ଫାଷ୍ଟଏଡ୍ ବକ୍‌ସ ମୋ ପାଖରେ ନାହିଁ, ପୋଡ଼ାକନାରେ ହିଁ କାମ ଚଳେଇବାକୁ ହେବ - କଲିକତା ସହରକୁ ଏଇଟା ବୋଧହୁଏ ଖାପ ଖାଉନାହିଁ - କିନ୍ତୁ ଏ କ'ଣ, ଆପଣ ଏମିତି ଦଣ୍ଡପାଇଲା ଭଳି ବସିଛନ୍ତି କାହିଁକି ? ଟିକେ ଆରାମରେ ବସନ୍ତୁ ।

(କଥା କହୁଁ କହୁଁ ମୀର୍ଣ୍ଣା ମୋହନର କ୍ଷତସ୍ଥଳକୁ ପୋଛୁଥାଏ ଗୋଟାଏ ରୁମାଲ ସାହାଯ୍ୟରେ)

ଆପଣ ଶୁଣିଥିବେ - କଲିକତାରେ ଗଲା କେତେଦିନ ଧରି ଗୋଟାଏ ବିପ୍ଳବୀ ଦଳ ଆଉ ପୁଲିସ୍ ମଧ୍ୟରେ ସଂଘର୍ଷ ଲାଗିରହିଚି - କିନ୍ତୁ ଏପର୍ଯ୍ୟନ୍ତ ଆମ ଅଞ୍ଚଳରେ କିଛିନଥିଲା । (ମୋହନର ମୁହଁକୁ କିଛି ସମୟ ଚାହିଁ) କିଛି ମନେକରିବେ ନାହିଁ । ଆପଣ କ'ଣ କୌଣସି ରାଜନୈତିକ ଦଳର ଲୋକ ?

ମୋହନ - ନା, ମୋଟେନୁହେଁ ।

ମୀର୍ଣ୍ଣା - ଆପଣଙ୍କୁ ଦେଖିଲେ ତା' ଜଣାଯାଏ - (ବିଶି ପୋଡ଼ାକନା ଦେଇଗଲା - ମୀର୍ଣ୍ଣା କ୍ଷତସ୍ଥାନରେ ପୋଡ଼ାକନା ଦେବାରେ ଲାଗିଲା ।)

ମୋହନ - କିନ୍ତୁ ଆପଣ କ'ଣ ରାଜନୈତିକ ଦଳର ଲୋକଙ୍କୁ ଭୟ କରନ୍ତି ?

ମୀର୍ଣ୍ଣା - ନା, ଭୟ ମୋର ନାହିଁ - ଭୟ ଆପଣଙ୍କର ! ଆପଣ ଯଦି ଗୋଟାଏ ଦଳରେ ଯୋଗଦେଲେଣି - କାଲି ଆଉ ଗୋଟାଏ ଦଳ ଆପଣଙ୍କର ଶତ୍ରୁ ହେଇଉଠିବ- (ଠିକ୍

ଏତିକିବେଳେ ଭିତରୁ ଖଣ୍ଡେ ବହି ପଢ଼ି ପଢ଼ି ଆସିଲେ ମହାପାତ୍ର ।)

ମହାପାତ୍ର - "ଶତ୍ରୁ କି ଆସିଚି ତା'ର ଜୟମାଲ୍ୟ ଦେବାକୁ ମୋ ଗଳେ, ଉପହାସ ଛଳେ ?" (ମୋହନକୁ ଦେଖି) କିନ୍ତୁ ଏ କ'ଣ ମୀର୍ଣ୍ଣା - ଶତ୍ରୁ ଯେ ଆହତ, ଚିକିତ୍ସା - (ତାଙ୍କର ଏ ପାଗଳାମିରେ ମୋହନ ଯେପରି ବିସ୍ମିତ ହେଲା - ମୀର୍ଣ୍ଣା ଚୁପ୍ ରହିବାପାଇଁ ଇଙ୍ଗିତ କଲା ।)

ମୀର୍ଣ୍ଣା - ଚିକିତ୍ସା ତ ମୁଁ କରୁଚି ବାପା !

ମହାପାତ୍ର - ତୁ କି ଚିକିତ୍ସା କରିବୁ ମୀର୍ଣ୍ଣା ! ମୋ ଛାତି ଭିତର ଘା'ଟାକୁ ତ ଆଜିଯାକେ ଶୁଖେଇପାରିଲୁ ନାହିଁ । ତୁ ପାରିବୁନାହିଁ । ଡାକ୍ତର ଦରକାର ଡାକ୍ତର- ଫୋନ୍, ଫୋନ୍ କାହିଁ ? (ଏଣେତେଣେ ଖୋଜିବାକୁ ଲାଗିଲେ) କି ଆଶ୍ଚର୍ଯ୍ୟ ମୀର୍ଣ୍ଣା ! ମୋ ଘରେ ଫୋନ୍ ନାହିଁ ? ମୀର୍ଣ୍ଣା ଏଇଟା କ'ଣ ମୋ ଖିଦିରପୁରରୁ ତିନି ମହଲା କୋଠା.... ?

ମୀର୍ଣ୍ଣା - ନାଇଁ ବାବା ଏ'ଟା ପରା ଆମ ରସା ରୋଡ୍‌ର ଛୋଟ ଏକମହଲା କୋଠା.... ।

ମହାପାତ୍ର - ରସା ରୋଡ୍..... !!

ମୀର୍ଣ୍ଣା - ହଁ ଆମ ଖିଦିରପୁର କୋଠାରେ ସମ୍ବଲପୁରି ମଠା କାରଖାନା ଖୋଲାହେଇଚି ।

ମହାପାତ୍ର - କିନ୍ତୁ ମା ! ଡାକ୍ତର ଡାକିବା ଯେ ନିହାତି ଦରକାର, କିଏ ଅଛି - ଏ ବିଶି ? ତୁ ଯା ଡାକ୍ତର ଡାକିଆଣ - ଗାଡ଼ି ନେଇ ଯା' - କୋଉ ଗାଡ଼ିଟା ନବୁ ? 'ପ୍ଲାଇ ମାଉଥ୍', 'ହିଲ୍ ମାନ' ନା ନା - 'କ୍ରାଇସେଲାର' ସେଇ ବଡ଼ 'କ୍ରାଇସେଲାର' ଗାଡ଼ିଟା ନେଇଯା' । ଆଉ ତାଙ୍କ ଫିସ୍ ମଧ ନେଇଯା' - ଚଉଷଠି ଟଙ୍କା - ମୋ ଚେକ୍ ବହି - ମୋ ଚେକ୍ ବହି କାହିଁ ? ମୀର୍ଣ୍ଣା ମୋ ଚେକ୍ ବହି ?

ମୀର୍ଣ୍ଣା - ଚେକ୍ ବହି ମୋ ହାତ ବାକ୍ସରେ ଅଛି ବାପା । ତମେ ଯାଅ, ମୁଁ ପଠେଇଦଉଚି.....

ମହାପାତ୍ର - ହଁ ମା' ମୁଁ ଯାଉଚି - ତୁ ପଠେଇ ଦେ - ଚେକ୍ ବହି, କ୍ରାଇସେଲାର ଗାଡ଼ି - ହାଃ, ହାଃ, ହାଃ ।

(ପ୍ରସ୍ଥାନ)

ମୋହନ - ଗାଡ଼ି- ଫୋନ୍ -ଲକ୍ଷ ଲକ୍ଷ ଟଙ୍କା ।

ମୀର୍ଣ୍ଣା - (ମ୍ଳାନ ହସି) କିଛିନାହିଁ ।

ମୋହନ - କିନ୍ତୁ ଏଇ ଯେ କହିଲେ, ଚେକ୍ ବହିଟା ହାତ ବାକ୍ସରେ ଅଛି - ଆଉ ଖିଦିରପୁର କୋଠାରେ ଖୋଲାହେଇଚି ମଠା କାରଖାନା ।

ମୀର୍ଣ୍ଣା - ସବୁ ମିଛ । ସେ ଭାବନ୍ତି ତାଙ୍କର ସବୁ ଅଛି, ନାହିଁ କରିଦେଲେ ତାଙ୍କୁ ସମ୍ଭାଳିବା କଷ୍ଟ । ଏମିତି ଅନେକ ମିଛକଥା କହି ତାଙ୍କୁ ବୋଧ ଦେବାକୁ ହୁଏ......

ମୋହନ - (ରହିରହି) ପାଗଳ ହେଇଯାଇଛନ୍ତି ?

ମୀର୍ଣ୍ଣା - ପାଗଳ ! ହଁ, ପାଗଳନୁହେଁ ତ ଆଉ କ'ଣ, ତେବେ ସବୁକଥା ମନେଥାଏ - ପୁଣି କିଛି ମନେ ନଥାଏ ।

ମୋହନ - କାହିଁକି ଏ ଦୁରବସ୍ଥା ହେଲା ?

ମୀର୍ଣ୍ଣା - ସେ ଅନେକ କଥା, ଆପଣ ଟିକେ ଆରାମରେ ଶୁଅନ୍ତୁ.....ବିଶି, ବିଶି-ଟିକିଏ ଗରମ ଦୁଧ ଆଣିଲୁ ?

ମହାପାତ୍ର - (ପ୍ରବେଶି) ଏ ଘରେ ତୁ ଆଜି କାହାକୁ ସ୍ଥାନ ଦେଇଛୁ ମୀର୍ଣ୍ଣା ?

ମୀର୍ଣ୍ଣା - ତାଙ୍କୁ ତ ନଦେଖି ଚାଲିଗଲ - ଆସି ଦେଖନା ଜଣେ ଭଦ୍ରଲୋକ ।

ମହାପାତ୍ର - ଓ, ଭଦ୍ରଲୋକ ! ସେ ତେବେ ଚୋର ନୁହଁନ୍ତୁ - ଡକାୟତ ନୁହଁନ୍ତି । ଅସଭ୍ୟ, ବର୍ବର ଓ ଆତତାୟୀ ନୁହନ୍ତି । ସେ ଜଣେ ସଭ୍ୟ-ଶିକ୍ଷିତ, ସଂଭ୍ରମଶୀଳ, ଭଦ୍ରଲୋକ; କିନ୍ତୁ ସେ ଜଣେ ମଣିଷ ମୀର୍ଣ୍ଣା, ଆଉ ତୁ କ'ଣ ଜାଣୁନା ଏଇ ମଣିଷକୁ ଆହୁରି ବେଶି ଭୟକରେ, ବାଘର ଅଛି ଗୋଟାଏ ପ୍ରକାର କ୍ଷୁଧା, ତା ପେଟ ପୂରିଗଲେ ସେ ଆଉ ଫେରିଚାହଁନା; କିନ୍ତୁ ଏଇ ମଣିଷ, ଅସୀମ କ୍ଷୁଧା ନେଇ ସେ ଜନ୍ମିଚି ! ପ୍ରେମ, ଧର୍ମ, ଆଦର୍ଶ, ଶିକ୍ଷା, ସଭ୍ୟତା, ଧନଦୌଲତ, ସେ ସବୁକୁ ବଞ୍ଚାଇ ରଖିବା ପାଇଁ ମାତ୍ର ଗୋଟିଏ ମଣିଷ ଏ ସମୁଦାୟ ପୃଥିବୀର ଯାହା କ୍ଷତି କରିପାରେ - ତା ଲକ୍ଷଲକ୍ଷ ମାଂସଲୋଲୁପୀ ବ୍ୟାଘ୍ର କରିପାରେନା । ଏମିତି ଗୋଟାଏ ସର୍ବଗ୍ରାସୀ କ୍ଷୁଧା ନେଇ ସେ ଆସିଥିଲା - ସବୁ ଶେଷ କରିଦେଇ ଚାଲିଯାଇଚି - ଆଉ କିଛିନାହିଁ ମୀର୍ଣ୍ଣା, ଆଉ କିଛିନାହିଁ । ତୁ ତାକୁ ଚଞ୍ଚଳ ବିଦାୟ କର - ଚଞ୍ଚଳ ବିଦାୟ କର ।

(ପ୍ରସ୍ଥାନ)

ମୋହନ - ମୁଁ ଆସୁଛି ମୀର୍ଣ୍ଣା ଦେବୀ ! ମୋର ଉପସ୍ଥିତି ହୁଏତ ତାଙ୍କ ଭଙ୍ଗା ମନରେ ଆହୁରି ବେଶି ଆଘାତ ଦେଇପାରେ -

(ଉଠି ଠିଆହେଲା)

ମୀର୍ଣ୍ଣା ଆଉ ଏମିତି ହୁଏ ତ ହେଇପାରେ ଯେ, ପରମୁହୂର୍ତ୍ତରେ ସେ ଆପଣଙ୍କୁ ନିଜର କରିନେବେ ।

ମୋହନ - ବୁଝିଲି । ତେବେ ମୋର - ହଁ, ମୋର ଆଉ ଏଠି ରହିବା ଦରକାର କ'ଣ ? ଅଯାଚିତ ଭାବରେ ଆପଣ ମୋ ପ୍ରତି ଯେଉଁ ଦୟା ଦେଖାଇଛନ୍ତି.....

ମୀର୍ଣ୍ଣା - ଆହା ! ଏତେଟା ଲୌକିକତାର ପ୍ରୟୋଜନ ନାହିଁ.....

(ମୋହନର ନାଁ ଜାଣିନଥିବାରୁ ଅଟକିଗଲା ।)

ମୋହନ - ମୋହନ । ମୋ ନାଁ ମୋହନ - ମୋହନ ମହାପାତ୍ର, ଘର ଅର୍ଥାତ୍ ଜନ୍ମସ୍ଥାନ କଟକ । ଜାତି....

ମୀର୍ଣ୍ଣା - ହେଇଚି, ହେଇଚି, ଆଉ ପରିଚୟ ଦରକାରନାହିଁ..... ଯୋଗାଯୋଗ ଦେଖିଲ ତ ?

ମୋହନ - ମାନେ ?

ମୀର୍ଣ୍ଣା - ଓଡ଼ିଆ ଆପଣ - ଆହତ ଶରୀର ଘେନି ହଠାତ୍ ଆସି ପହଞ୍ଚିଲେ ଜଣେ ଓଡ଼ିଆ

ଘରେ । (ବିଶି ଦୁଧ ଆଣିଦେଲା, ମାର୍ଣ୍ଣା ନେଉ ନେଉ) ଆଉ ବିଶି ଟିକିଏ ଗରମ ଦୁଧ ଆଣୁଆଣୁ, ଆପଣ ଫାଙ୍କିଫୁଙ୍କି ଦେଇ ଖସିଯାଇ ଗାଇବୁଲିବେ - କଲିକତାରେ ଓଡ଼ିଆମାନେ ଆଉ ଓଡ଼ିଆ ହୋଇନାହାନ୍ତି - ରସା ଗୋଡ଼ ଓଡ଼ିଆଙ୍କ କଥା ଛାଡ଼ । ସେମାନେ ତ ଏକାବେଳେକେ ରାସାୟାନ୍ ହେଇଗଲେଣି -

ମୋହନ - ଦେଖନ୍ତୁ ! ଆପଣଙ୍କ ଅଭିଯୋଗକୁ ହଜମ କରିବାର ଶକ୍ତି ମୋର ନାହିଁ; ବରଂ ଦୁଧ ଗ୍ଲାସ୍‌ଟା ଦିଅନ୍ତୁ, ଚଞ୍ଚଳ ପିଇଦିଏ ।

## ଦ୍ୱିତୀୟ ଦୃଶ୍ୟ

(କଲିକତା ସହରର ଗୋଟିଏ ଅପ୍ରଶସ୍ତ ଗଳି । ସେଇ ଗଳିକୁ ଆସିଲେ ଚରଣ ଆଉ ମୁକ୍ତା । ରାସ୍ତାରେ, ବସ୍ତିରେ ଗୀତ ଗାଇ ନାଚି ପଇସା ରୋଜଗାର କରିବା ହେଲା ଏମାନଙ୍କର ଜୀବିକା ଉପାର୍ଜନର ଉପାୟ । ମୁକ୍ତା ସୁନ୍ଦରୀ, ତରୁଣୀ । ଚରଣ ଯୁବକ - ଟିକିଏ ଶୀର୍ଣ୍ଣ କିନ୍ତୁ ସଦା -ପ୍ରଫୁଲ୍ଲ । ଶଙ୍କର ସେଠିକି ଆସିଲା ।)

ମୁକ୍ତା - ଶଙ୍କରଭାଇ, ତୁମେ ଏଠି ?

ଶଙ୍କର - ଏଠି ଆଉ କ'ଣ । ଏଇଟା ତ କଲିକତା ବାହାର ଜାଗା ନୁହେଁ ।

ଚରଣ - ନାଇଁ । କୋରାନୀ ବାଗାନ୍‌ର ଲୋକ ସାର୍ପେଟାଇନ୍ ଲେନ୍‌ରେ କାହିଁକି ?

ମୁକ୍ତା - ସକାଳୁ ଉଠି ରାତି ବାରଟାଯାଏ ନବୁଲିଲେ ଶଙ୍କର ଭାଇର ଭାତ ହଜମ ହୁଏନାହିଁ ନା ଶଙ୍କରଭାଇ !

ଶଙ୍କର - ଆରେ ନ ବୁଲିଲେ ଭାତ ମିଳିବ କଉଠୁ ଯେ, ହଜମ ହବ - ବୁଲିବାଟା ତ ହେଲା ମୋର ପେଶା । ସତ କହୁଚି ମୁକ୍ତା, ସାତ ବରଷ ଏଇ କଲିକତା ସହରରେ କଟେଇଚି - ହେଲେ ଏଥର ମୋତେ କଲିକତା ସହର ଯେମିତି ଏକଦମ୍ ନୂଆ ଲାଗୁଚି-

ମୁକ୍ତା - ତୁମେ ନିଜେ ନୂଆ ହୋଇଯାଇନା ତ ?

ଶଙ୍କର - ଠିକ୍ କହିଚୁ ମୁକ୍ତା - ଏଇ ଦି'ମାସ ହେଲା ଏଠିକି ଆସି ମୁଁ ନିଜେ ଯେମିତି ବଦଳିଯାଇଚି - କଟକୀ ଶଙ୍କରା ଆଉ କଲିକତା ଶଙ୍କରା ଦୁହେଁ ଫରକ - ଆଉ କଟକ ଫେରିବିନାହିଁ ।

ମୁକ୍ତା - ହଉ କଟକ ତ ଫେରିବନାହିଁ - ଏହିକ୍ଷଣି ବସାକୁ ଫେରିବ ତ ?

ଶଙ୍କର - ହଁ, ଫେରୁଚି - କାହିଁକି ?

ମୁକ୍ତା - ମୋ ଘର ସୁରେଇରେ ମୁଁ ପାଣି ରଖିନାହିଁ..... ଭୁଲିଯାଇଚି, ତୁମେ ଚାବିଟା ନେଇଯାଅ -

ଶଙ୍କର - ହଉ ଦେ! ଆରବେଳାକୁ ମୋତେ ପୁଣି ଯିବାକୁ ହବ ମାଟିଆବୁରୁଜ ଅଞ୍ଚଳ -

ମୁକ୍ତା - କାହିଁକି ?

ଶଙ୍କର - କାହିଁକି ଆଉ କ'ଣ, ତୁ କ'ଣ ଜାଣୁନା - ଏଥର କଲିକତା ଆସିବା ଦିନଠୁଁ ଏଠାକାର ଓଡ଼ିଆମାନଙ୍କ ପାଇଁ ମନ, ପ୍ରାଣ, ଜୀବନ ଢାଳିଦେଇଚି; କିନ୍ତୁ ଖାଲି ମନ, ପ୍ରାଣ, ଜୀବନରେ ତ କାମ ଚଳିବ ନାହିଁ - ଏଥିପାଇଁ ଚାନ୍ଦା ଦରକାର - ଚାନ୍ଦା ।

ମୁକ୍ତା - ସେଇ ଚାନ୍ଦା ଅସୁଲ କରିବାପାଇଁ କ'ଣ ଏ ଆଡ଼େ ଆସିଥିଲ ?

ଶଙ୍କର - ଆରେ ନା ମ, ଚାନ୍ଦା ସଙ୍ଗେ ସଙ୍ଗେ ସି.ଆଇ.ଡ଼ି. ବ୍ୟବସାୟ ବି ଚଳେଇଚି । ଡରିଯାଅନା । ସର୍କାରୀ ସି.ଆଇ.ଡ଼ି. ନୁହେଁ, ମୋ ନିଜ କାମର ସି.ଆଇ.ଡ଼ି. । ଏ କଲିକତା ସହର ଗଳିକନ୍ଦି ମୋ ନଖ ଦର୍ପଣରେ - ହେଲେ ଗୋଟିଏ ଲୋକର ଖୁଜ୍ ମୁଁ ପାଇଲିନାହିଁ । (ଏତିକିବେଳେ ଦୁଇଜଣ ସ୍ତ୍ରୀଲୋକ ଶଙ୍କର ଅଲକ୍ଷ୍ୟରେ ସେଇ ରାସ୍ତାରେ ଚାଲିଯାଉଥିଲେ - ଶଙ୍କର ତାଙ୍କୁ ଦେଖିପାରି ହଠାତ୍ ଚମକି ଉଠିଲା)

ଶଙ୍କର - ନୀଳା!!! (ଶଙ୍କର କିନ୍ତୁ ନିରୁତ୍ତର - ଟିକିଏ ପରେ ସ୍ତ୍ରୀଲୋକ ଦୁଇଟି ହସାହସି ହୋଇ ଚାଲିଗଲେ । ମନକୁ ମନ ଶଙ୍କର ପାଟିରୁ ବାହାରିପଡ଼ିଲା) ନାଃ....

ଚରଣ - କାହାର ଖୋଜ୍ ନଉଚ ଶଙ୍କରଭାଇ ?

ଶଙ୍କର - ତୁ ପିଲାଲୋକ ଚରଣ । ସେଥିରୁ କ'ଣ ପାଇବୁ ।

ଆଚ୍ଛା, ମୁଁ ଯାଉଚି - ତମର ତ ଫେରିବାକୁ ଡେରି ହବ - (ଚାଲିଗଲା)

ଚରଣ - ଶଙ୍କରଭାଇ ଲୋକଟା ଗୋଟାଏ କିସମର- ଆମ ପାଇଁ ସେ ଖୁବ୍ କରିଚି....

ମୁକ୍ତା - ଏକ ନମ୍ବର ସୈତାନ - ତମେ ତାକୁ ଚିହ୍ନିନ; କିନ୍ତୁ ମତେ ସେ ଭାରି ଖାତିର କରେ ।

ଚରଣ - (ହସି) ପଡ଼ାଟାଯାକ ଲୋକେ ତୋତେ କିଏ ଖାତିର ନକରେ ଯେ....

(ମୋହନ ଆସିଚି)

ମୋହନ - ଫେର୍ କ'ଣ ତମର ବ୍ୟବସାୟ ?

ଚରଣ - ଆପଣ ବିଶ୍ୱାସ କରୁନାହାନ୍ତି କାହିଁକି ?

ମୋହନ - ତମେ ମୋତେ ଭୁଲ୍ ବୁଝିଲ ବୋଧହୁଏ ? ମୁଁ ଜାଣିବାକୁ ଚାହିଁଥିଲି ଯେ, ଏଇଥିରୁ କ'ଣ ତମର ସବୁ ଚଳିଯାଉଚି ।

ଚରଣ - ଦି'ଟା ପେଟ ପୋଷିବା ପାଇଁ ଯାହା ଦରକାର, ତା'ଠୁ ବେଶି ମିଳୁଚି ପଛେ କମ୍ ନୁହେଁ.....

ମୋହନ - ତୁମେମାନେ ରୁହ କେଉଁଠି ?

ଚରଣ - କେରାନୀ ବାଗାନ୍ ।

ମୋହନ - ତୁମର ଆଉ ଅଛି କିଏ ?

ମୁକ୍ତା - ଦିନେ ସମସ୍ତେ ଥିଲେ - ଧନ, ସମ୍ପତ୍ତି ଯାହା ଥିଲା ବସି ଖାଉଥିଲେ ବି ସରିନଥାନ୍ତା.....

ମୋହନ - କ'ଣ ହେଲା ଯେ..... ?

ଚରଣ - କଲିକତାରେ ଏଇ ଯେଉଁ ଗଣ୍ଡଗୋଳ ହେଇଥିଲା, ସେଇଥିରେ ସବୁ ଶେଷହୋଇଗଲା.........

ମୋହନ - ତା'ପରେ ?

ଚରଣ - ତା'ପରେ ମୁକ୍ତା ଆସି ଠିଆହେଲା ମୋ ପରି ଜଣେ ଗୋଷ୍ଠୀଛଡ଼ା ବାରବୁଲା ଲୋକ ପାଖରେ । ଆଗପଛ କିଛି ନବିଚାରି ମୁଁ ମୁକ୍ତାକୁ ଭରସା ଦେଇ କହିଲି- କିଛି ଚିନ୍ତାନାହିଁ ମୁକ୍ତା ! ଆଜିଠୁଁ ତୋ ଧନ୍ଦା ମୋତେ ଲାଗିଲା । ମୁକ୍ତା ନାଚି ଗାଇ ଜାଣେ - ଭଗବାନ୍ ମତେ ବି ଟିକିଏ ସେ ବିଦ୍ୟା ଦେଇଛନ୍ତି । ବେଶ୍, ସେଇଦିନୁ ଏମିତି ଚଳିଯାଉଚୁ । ବେଳେବେଳେ ମନଟା କିନ୍ତୁ ଭାଙ୍ଗିପଡ଼େ - ହେଲେ ବାବୁ ମୁକ୍ତା ମୋତେ କ'ଣ କହେ ଜାଣନ୍ତି ?

ମୁକ୍ତା - ଏକା ମୁକ୍ତା କହେ - ଆଉ କହନ୍ତାନାହିଁ ପରା ? ଆଚ୍ଛା ବାବୁ, ଆପଣ କୁହନ୍ତୁ - ପୁରୁଷ ପୁଅହେଇ ଯଦି ଦି'ଟା ପେଟ ନପୋଷିପାରିଲା - ତେବେ ତା'ର ଏ ଦୁନିଆରେ ଜନ୍ମ ହେଇ ଲାଭ କ'ଣ ? ମତେ ଚାହିଁ କିଏ ହସିଲା - କିଏ ଆଖିମାରିଲା, ଯା ବାଲି କ'ଣ ଆମେ ଦୁନିଆ ବାହାର ଜାଗାରେ ରହିବୁ ? ସେ ତା'ର ହସୁ, ଆମେ ଆମ ବାଟରେ ଠିକ୍ ଚାଲିଥିବୁ - କ'ଣ କହୁଚନ୍ତି ବାବୁ ?

(ମୁକ୍ତାର କଥା ଶୁଣି ମୋହନ ବିଚଳିତ ହେଇପଡ଼ିଲା ।)

ମୋହନ - ତମେ ଠିକ୍ କହିଚ ମୁକ୍ତା ! ତମେ ଠିକ୍ କହିଚ..... ଆଚ୍ଛା ମୁଁ ଯାଉଚି, (ଯାଉ ଯାଉ) ଦେଖ, ମୋ ପାଖରେ ମାନେ ତୁମକୁ କିଛି ଦେବା ଭଳି ଅବସ୍ଥା ବର୍ତ୍ତମାନ ମୋର ନାହିଁ । - ମୁଁ ଯାଉଚି । (ପ୍ରସ୍ଥାନ)

ଚରଣ - ଖାସା ଲୋକ ତ ! ଦେଖିଲୁନା- କେମିତି ପାର୍ ।

ମୁକ୍ତା - ନା-ନା । ପାଖରେ ଥାଇ ନଦବା ଲୋକ ଭଳିଆ ଜଣାପଡୁନାହାନ୍ତି ହେଲେ ମୋ କଥାଗୁଡ଼ାକ ତାଙ୍କ ମନକୁ ଖୁବ୍‌ପାଇଚି......

ଚରଣ - ତୋ କଥା ଯେତେବେଳେ ସେ ପୁଣି କାହା ମନକୁ ନପାଇବ-

ମୁକ୍ତା - ଫେର୍.....

## ତୃତୀୟ ଦୃଶ୍ୟ

(କୁମାର ସାହେବଙ୍କ କଲିକତାସ୍ଥ ବାସଭବନର ତଳ ମହଲାରେ ଥିବା ଗୋଟିଏ ବଡ଼ କକ୍ଷ - ତାଙ୍କର ଅବସ୍ଥା ଦୃଷ୍ଟିରୁ ଯେପରି ସଜ୍ଜିତ ହେବାର କଥା ସେପରି ହେଇଚି । ଏହି କକ୍ଷକୁ ବାହାରୁ ଆସିଲେ ଭୀମ ସିଂ ଓ ଆନନ୍ଦ - ଭୀମ ସିଂ ହେଉଚି- ଜଣେ ଉର୍ଦ୍ଦି ପିନ୍ଧା ଦରଓ୍ବାନ୍ ଶ୍ରେଣୀର ଲୋକ ।)

ଭୀମ ସିଂ - ଇହିଁ ତସ୍‌ରିପ୍ ଲିଜିଏ ବାବୁଜୀ - (ଗୋଟିଏ କାଉଚ୍ ଦେଖାଇଲା)
ଆନନ୍ଦ - କୁମାର ସାହେବ..... ?
ଭୀମ ସିଂ - ଓ ସାୟଦ ଉପର୍ ମେଁ ହୋଙ୍ଗେ....
ଆନନ୍ଦ - ତେବେ ମେଁ ଉପରକୁ ଯାଉଁଗା ?
ଭୀମ ସିଂ - ଆପ ଯାଏଙ୍ଗେ, ଲେକିନ୍..... (ଇତସ୍ତତଃ ହେଲା)
ଆନନ୍ଦ - ମେଁ କୁମାର ସାହେବ୍ କା ନିଜକା ଲୋକ ହୁଁ.... ମାନେ ଫ୍ରେଣ୍ଡ୍ - ମାନେ ?
ଭୀମ ସିଂ - ମୁଝେ ମାଲୁମ୍ ହେ - ଦୋସ୍ତ୍ !
ଆନନ୍ଦ - ଇଏସ୍ -ଇଏସ୍ । ଦୋସ୍ତ - ଖୁବ୍ ଜବରଦସ୍ତ ଇଣ୍ଟିମେଟ୍ ଦୋସ୍ତ୍ ।
ଭୀମ ସିଂ - ମୈ ମଜବୁର ହୁଁ ସରକାର - କୋଇ କି ଆଦମିକୋ ଉପର ଯାନେକୋ ହୁକୁମ ନେହିଁ । ଆପ୍ ଦୁସରାୱାଲା କମରା ମଁ ଆରାମ କିଯିଏ - ମୈ ଚାୟ ଭେଜୱା ଦେତା ହୁଁ - (ସଲାମ କରି ପ୍ରସ୍ଥାନ)
ଆନନ୍ଦ - କିଛି ବୁଝିପାରିଲି ନାହିଁ ତୁମେ କ'ଣ କହିଗଲ ।

(ଟିକିଏ ସମୟ କକ୍ଷରେ ଏଣେତେଣେ ପଦକ୍ଷେପ କଲେ, ଉପରକୁ ଯିବେ କି ନ ଯିବେ ଭାବୁଛନ୍ତି - ଏହି ସମୟରେ ଜଣେ ମଧ୍ୟବୟସ୍କା ନାରୀ ସିଢ଼ି ଉପରୁ ଓହ୍ଲାଇ ଆସିଲେ । ଆକାର ପ୍ରକାରରୁ ଶିକ୍ଷିତା ଓ ଆଧୁନିକା ବୋଲି ଜଣାଯାଏ । ତାଙ୍କ ନାମ ଶ୍ରୀମତୀ ଚନ୍ଦ୍ରାବତୀ ଦାସ । ଆନନ୍ଦ ଓ ଚନ୍ଦ୍ରାବତୀ ଦାସଙ୍କ ଦୃଷ୍ଟି ବଳେବଳେ ପରସ୍ପର ପ୍ରତି ଅକୃଷ୍ଟ ହେଲା - ଶ୍ରୀମତୀ ଦାସ ଏପରି ଦୃଷ୍ଟିରେ ଆନନ୍ଦଙ୍କୁ ଚାହିଁଲେ ଯେ, ତାଙ୍କର ସ୍ଥାନ ଯେପରି ଏଠିନାହିଁ - ଆଉ ଆନନ୍ଦ ଏପରି ଭାବରେ ଚାହିଁଲେ ଯେମିତି ଶ୍ରୀମତୀ ଦାସ ଏକ ଅଜ୍ଞ ଅପରିପକ୍ୱା ବାଳିକା । କିଛି ସମୟ ଦୁହେଁ ଦୁହିଁଙ୍କୁ ଏହିପରି ଭାବରେ ଚାହିଁ ରହିଲେ ।)

ଚନ୍ଦ୍ରା - ମେ ଆଇ....
ଆନନ୍ଦ - ଦାୟାକରି ଓଡ଼ିଆରେ କୁହନ୍ତୁ - (ଚନ୍ଦ୍ରାବତୀ ବିରକ୍ତ ହୋଇ ଉଠିଲେ)
ଚନ୍ଦ୍ରା - ଆପଣ ନିଶ୍ଚୟ ଏଠାକାର ନୁହଁନ୍ତି ?
ଆନନ୍ଦ - ଆପଣ ନିଶ୍ଚୟ ଏଠାକାର ନୁହଁନ୍ତି ?
ଚନ୍ଦ୍ରା - (ଆହୁରି ବିରକ୍ତ ହୋଇ) ମାନେ ?......
ଆନନ୍ଦ - ମାନେଟା ଆଗେ ଆପଣ କୁହନ୍ତୁ - ଏଠାକାର ବୋଇଲେ ଆପଣ କ'ଣ ମନେକରନ୍ତି ?
ଚନ୍ଦ୍ରା - କଲିକତା ! ଆପଣ ନିଶ୍ଚୟ କଲିକତାର ଲୋକ ନୁହଁନ୍ତି -
ଆନନ୍ଦ - ମୁଁ କହୁଚି - ଆପଣ ନିଶ୍ଚୟ ଏଠାରେ ମାନେ କୁମାରସାହେବଙ୍କ ଘରର କେହି ନୁହଁନ୍ତି.....
ଚନ୍ଦ୍ରା - ଆପଣ କେମିତି ଜାଣିଲେ ?
ଆନନ୍ଦ - ଅପଣଙ୍କ ବୋକାମିରୁ - (ସିଢ଼ି ଉପରକୁ ଯିବାବେଳେ)

ଚନ୍ଦ୍ରା - ଶୁଣନ୍ତୁ ।

ଆନନ୍ଦ - (ଉଠୁଉଠୁ) ହୁଁ - କୁହନ୍ତୁ - କୁହନ୍ତୁ । ମୁଁ ନିଶ୍ଚୟ ଶୁଣିପାରିବି ।

ଚନ୍ଦ୍ରା - ଆପଣ - କୁଆଡ଼େ ଯାଉଛନ୍ତି ?

ଆନନ୍ଦ - ସ୍ୱର୍ଗକୁ ନିଶ୍ଚୟ ନୁହେଁ....

ଚନ୍ଦ୍ରା - ଫେରିଆସନ୍ତୁ କହୁଚି - ଉପରେ ସିଡ଼ି ଦରଜା ବନ୍ଦ ଅଛି ।

ଆନନ୍ଦ - ଓ -(ଓହ୍ଲାଇଆସି) ସଦର ଦରଜା ଖୋଲାଅଛି ତ ?

ଚନ୍ଦ୍ରା - ଏତେ ଚଞ୍ଚଳ ଫେରିଯିବେ....

ଆନନ୍ଦ - ମୁଁ ନୁହେଁ - ଆପଣ....

ଚନ୍ଦ୍ରା - ଆପଣ ଟିକେ ମାର୍ଜିତ ରୁଚିନେଇ କଥାବାର୍ତ୍ତା କରନ୍ତୁ...

ଆନନ୍ଦ - ଆପଣଙ୍କ ସାଥିରେ ? (କାଉଚ୍‌ରେ ବସିଲେ - ଚନ୍ଦ୍ରା କିଛି ସମୟ ଇତସ୍ତତଃ ହେଇ ଶେଷରେ ଆଉ ଗୋଟିଏ କାଉଚ୍‌ରେ ବସିଲେ । ତାଙ୍କର ରାଗ ବଢ଼ିଯାଇଚି - ପରାଜୟ ଭାବ ସୁସ୍ପଷ୍ଟ ।)

ଚନ୍ଦ୍ରା - ଆପଣ....

ଆନନ୍ଦ - ହଁ କୁହନ୍ତୁ ।

ଚନ୍ଦ୍ରା - ଆପଣ କୁମାର ସାହେବଙ୍କ.....

ଆନନ୍ଦ - ହଁ, କୁହନ୍ତୁ, କୁହନ୍ତୁ -

ଚନ୍ଦ୍ରା - ବନ୍ଧୁ ।

ଆନନ୍ଦ - ଆଜ୍ଞା -

ଚନ୍ଦ୍ରା - ମୁଁ ତ ଯା ପୂର୍ବରୁ ଆପଣଙ୍କୁ ଦେଖିଲା ପରି ମନେହେଉନି....

ଆନନ୍ଦ - ଆପଣ ତାଙ୍କୁ ମଧ ଦେଖିନାହାନ୍ତି ।

ଚନ୍ଦ୍ରା - କାହାକୁ ?

ଆନନ୍ଦ - ଉନା-ରାଭେନା ମାନା ଉନା, ସୁନା, ପାନା ଲେଟୁ ମାନାନା ଚେଟିଯାରଙ୍କୁ -

ଚନ୍ଦ୍ରା - ସେ କିଏ ?

ଆନନ୍ଦ - (ବିରକ୍ତ ହେଇ ) ଆପଣ ଏ ପୃଥିବୀରେ ଅନେକ ଲୋକଙ୍କୁ ଦେଖିନାହାନ୍ତି କି ଜାଣିନାହାନ୍ତି - ଅଥଚ ମୋ ସକାଶେ ଆପଣଙ୍କ ମୁଣ୍ଡ ଏମିତି ବଥଉଚି କାହିଁକି ?

ଚନ୍ଦ୍ରା - ମୁଁ କୁମାର ସାହେବଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ।

ଆନନ୍ଦ - ଆପଣଙ୍କ ପରି ମୁଁ କିନ୍ତୁ ତାଙ୍କ ପ୍ରାଇଭେଟ୍ ତାଲିକାରେ ନାହିଁ । (କିଛି ସମୟ ଦୁଇଜଣ ନୀରବ ରହିଲେ ।)

ଚନ୍ଦ୍ରା - ଆପଣ କେଉଁଠୁ ଆସିଲେ ?

ଆନନ୍ଦ - ବଡ଼ ଆଶ୍ଚର୍ଯ୍ୟ କଥା...

ଚନ୍ଦ୍ରା - ଆଶ୍ଚର୍ଯ୍ୟ ଆଉ କ'ଣ ? ଗୋଟାଏ ସାଧାରଣ ପ୍ରଶ୍ନର ଉତ୍ତର ଆପଣ ଦେବେନି ?

ଆନନ୍ଦ - କାହିଁକି ?

ଚନ୍ଦ୍ରା - ଏଠାକାର ବ୍ୟବସ୍ଥା ଦୃଷ୍ଟିରୁ....

ଆନନ୍ଦ - ଅର୍ଥାତ୍, ଏଠାକାର ସବୁ ବ୍ୟବସ୍ଥା ଆପଣ କରନ୍ତି..... ଅଥଚ ମୁଁ କେଉଁଠୁ ଆସିଲି ଆପଣ ଜାଣନ୍ତି ନାହିଁ!

ଚନ୍ଦ୍ରା - ସେଥିପାଇଁ ତ ପଚାରୁଚି କୁହନ୍ତୁ କେଉଁଠୁ ଆସିଲେ ?

ଆନନ୍ଦ - ଉତ୍କଳରୁ ।

ଚନ୍ଦ୍ରା - ଟ୍ରେନ୍‌ରେ ଆସିଲୋ ନା, ପ୍ଲେନ୍‌ରେ ?

ଆନନ୍ଦ - ବେଲୁନ୍‌ରେ ଭର୍ତ୍ତିହୋଇ ଆସିଲି - ବେଲୁନ୍‌ରେ....

ଚନ୍ଦ୍ରା - ଆପଣ ଯେ କ'ଣ ମୁଁ କିଛି ଭାବିପାରୁନାହିଁ..... ଜଣେ ସ୍ତ୍ରୀଲୋକ ସହିତ କିମିତି କଥାବାର୍ତ୍ତା କରିବାକୁ ହୁଏ........

ଆନନ୍ଦ - ସେ କଥା ମୁଁ ପାରସ୍ୟର ଉପନ୍ୟାସରୁ ବେଶ୍ ଶିଖିଚି । ସମ୍ରାଟ୍ ଶରିୟାରଙ୍କ ଗପ ଶୁଣିଚନ୍ତି ତ ? ପ୍ରତିଦିନ ସକାଳୁ ଯିଏ ଗୋଟିଏ ଲେଖାଏଁ ସ୍ତ୍ରୀ ହତ୍ୟା କରୁଥିଲେ ?

ଚନ୍ଦ୍ରା - ଆପଣ ମତେ ହତ୍ୟା କରିବେ ?

କୁମାର - (ଉପରୁ ଆସିଲେ) ଆରେ ଆନନ୍ଦ ଯେ, କେତେବେଳୁ ଆସିଲଣି - କ୍ଷମାକର ଭାଇ (ନମସ୍କାର କରି) ମୋର ଆସିବାକୁ ଟିକେ ଡେରି ହୋଇଗଲା ଏଠି ଏକା ଏକା ଚୁପ୍‌ହୋଇ ବସିରହିଥିଲ ତ ?

ଆନନ୍ଦ - ଏକା ତ ନଥିଲି - ଚୁପ୍ ହେଇ ମଧ ବସିନଥିଲି ।

କୁମାର - ଓ, ଶ୍ରୀମତୀ ଦାସଙ୍କ ସହିତ ତା'ହେଲେ ଆଳାପ ହେଇଯାଇଚି!

ଚନ୍ଦ୍ରା - ନା...ଆଳାପ ହେଲା କେଉଁଠି ?

ଆନନ୍ଦ - ହୁଁ - ଆଳାପ ଆଉ ହେଇନାହିଁ - ବିଳାପ ହୋଇଚି....

କୁମାର - ବିଳାପ ?

ଚନ୍ଦ୍ରା - ସେ କିଛି ନୁହେଁ କୁମାର ସାହେବ! ଦୟାକରି ଆମର ପରିଚୟ କରାଇଦିଅନ୍ତୁ....

କୁମାର - ଏ ହେଉଛନ୍ତି ମୋର ବନ୍ଧୁ ଆନନ୍ଦ ଚନ୍ଦ୍ର ରାଏ । ଏଥର କଟକ ଫେରି ମୁଁ ଯାଙ୍କରି କଥା ଆପଣଙ୍କୁ କହୁଥିଲି, ଆଉ ଏ ହେଉଛନ୍ତି ଶ୍ରୀମତୀ ଚନ୍ଦ୍ରାବତୀ ଦାସ - ମୋ ବନ୍ଧୁ - ଶୁଭାକାଂକ୍ଷୀ- ଆଉ.....

ଆନନ୍ଦ - ପ୍ରାଇଭେଟ୍ ସେକ୍ରେଟାରୀ ?

କୁମାର - ତୁମେ ତ ଜାଣିଚ ଦେଖୁଚି ?

ଚନ୍ଦ୍ରା - ଏ ସାକ୍ଷାତରେ ମୁଁ ଖୁବ୍ ଖୁସି ଶ୍ରୀଯୁକ୍ତ ରାଏ ।

ଆନନ୍ଦ - ମୁଁ କିନ୍ତୁ ଆଦୌ ଖୁସିନୁହେଁ -

କୁମାର - (ହସି) କାହିଁକି ଆନନ୍ଦ - କଥା କ'ଣ ?

ଆନନ୍ଦ - ଖୁସି ହେବି କାହିଁକି ? ଜଣେ ଲୋକକୁ ଦେଖିଲା ମାତ୍ରେ ଖୁସିହେଇଯିବି ଯାର

ମାନେ କ'ଣ ? ମନରକ୍ଷା କରି ସେ ଗୋଟାଏ ନିରାଟ ମିଛ କଥା କହିଛନ୍ତି - ଆଉ ମୁଁ ଠିକ୍ ତା'ର ଓଲଟା ଗୋଟାଏ ସତକଥା କହିଚି....

ଚନ୍ଦ୍ରା - ସତ, ଆପଣଙ୍କ କଥା ଶୁଣି ଯେକେହି ଲୋକ ଆପଣଙ୍କ ପ୍ରତି ଆକୃଷ୍ଟ ହେଇଯିବ....

କୁମାର - ଠିକ୍ କହିଚନ୍ତି ଚନ୍ଦ୍ରାବତୀ ଦେବୀ - ଠିକ୍ ଏଇ କାରଣରୁ ତାଙ୍କ ସହିତ ମୋର ବନ୍ଧୁତାର ସୂତ୍ରପାତ । ଆପଣ ଦେଖିବେ, ଦିନ କେଇଟାରେ ସେ ଆପଣଙ୍କୁ ଏକାବେଳକେ ନିଜର କରିନେବେ.....

ଆନନ୍ଦ - ମୋଟେନୁହେଁ, ମୋଟେନୁହେଁ - ମୋର ନିଜର ସଂସାର ବର୍ତ୍ତମାନ ଏତେ ବଢ଼ିଗଲାଣି ଯେ, ଆଉ କାହାରିକୁ ନିଜର କରିନେବା ମୋ ପକ୍ଷେ ଆଦୌ ସମ୍ଭବ ନୁହେଁ....

(କୁମାର, ଚନ୍ଦ୍ରା ହସିଉଠିଲେ ।)

ଭୀମ ସିଂ - (ପ୍ରବେଶ, କୁର୍ଣ୍ଣିଶ୍ କରି) ସାହେବ କା ଗୋସଲକା ସବ୍ ଇନ୍ତିଜାମ୍ ହୋଗୟା-

ଆନନ୍ଦ - କ'ଣ ହୋଗୟା ?

କୁମାର - ତୁମ ଗାଧୋଇବାର ସବୁ ବନ୍ଦୋବସ୍ତ ହୋଇଯାଇଚି -

ଆନନ୍ଦ - ନାଃ - ବଡ଼ଲୋକ ଢଙ୍ଗରେ ଚଳିବାକୁ ହେଲେ ନିହାତି ହିନ୍ଦୀ ଭାଷାଟା ଶିଖିବା ଦରକାର - ଚାଲ ଭୀମ ସିଂ ।

ଭୀମ ସିଂ - ଆଇୟେ ସାହେବ୍ (କୁର୍ଣ୍ଣିଶ କରି ପ୍ରସ୍ଥାନ)

ଆନନ୍ଦ - (ଯାଉ ଯାଉ ଫେରି) ଆଚ୍ଛା ମୋ ଟେକ୍‌ସି - ଏ ଗୋଳମାଳ ଭିତରେ ମୋର ସବୁ ଓଲଟପାଲଟ ହେଇଗଲାଣି -

କୁମାର - ବାଧହେଇ ତୁମକୁ ଆଜି ଟେକ୍‌ସିରେ ଆସିବାକୁ ହେଲା - ମୋର ତିନିଟାଯାକ ଗାଡ଼ି ଆଜି ଏନ୍‌ଗେଜଡ୍ ।

ଆନନ୍ଦ - କିନ୍ତୁ ଟେକ୍‌ସି କାହିଁ - ଟେକ୍‌ସି ଯେ 'ଗନ୍' ।

କୁମାର - ଆଉ ରୁହନ୍ତା କାହିଁକି, ଚାଲିଯିବଣି ।

ଆନନ୍ଦ - ତେବେ ତା' ସଙ୍ଗେ ସଙ୍ଗେ ମୋ ବିଛଣାପତ୍ର ବି 'ଗନ୍' ?

କୁମାର - ନା, ବିଛଣାପତ୍ର କାହିଁକି ଯିବ - ଭୀମ ସିଂ ତା'ର ବ୍ୟବସ୍ଥା କରିଥିବ....

ଆନନ୍ଦ - ଆଚ୍ଛା, ତୁମର ଏଇ ଭୀମ ସିଂଟି କି ପଦାର୍ଥ କୁହ ତ ? ଘଣ୍ଟାର ପେଣ୍ଡୁଲମ୍ ପରି ସଦସର୍ବଦା ତା'ର ହାତଟା ସଲାମ କରି ଚାଲିଚି.... ହାଓଡ଼ାରୁ ଏପର୍ଯ୍ୟନ୍ତ ମୋତେ ଛ'ଥର ସଲାମ କଲାଣି....

ଚନ୍ଦ୍ରା - ତା'ନକଲେ ହୁଏତ - ତା'ଚାକିରିଟା ଚାଲିଯିବ -

ଆନନ୍ଦ - ହୁଁ! ଯୁଗର ଲକ୍ଷଣ, ଚାକିରି ବଜାୟ ରଖିବାପାଇଁ ଏଇ ଗୋଟିଏ ଗୁଣ ଥିଲେ ହେଲା - କୁଆଡ଼େ ଗଲ ଭୀମ ସିଂ-

ଭୀମ ସିଂ - (ସଲାମ କରି) ଆଇୟେ ହଜୁର ।

ଆନନ୍ଦ - ଥାଉ ବାବା ଥାଉ - ସ୍ନାନଯାତ୍ରା ପାଇଁ ଆଉ ଏତେ ଆଦର ଅଭ୍ୟର୍ଥନା କାହିଁକି ?

(ଉଭୟଙ୍କର ପ୍ରସ୍ଥାନ)

ଚନ୍ଦ୍ରା - ବେଶ୍ ଲୋକ ତ ?

କୁମାର - ଉପରେ ଯାହା ଦେଖୁଚନ୍ତି - ଭିତରଟା ତା'ଠୁଁ ଆହୁରି ଭଲ ?

ଚନ୍ଦ୍ରା - ଏତେ ଭଲ ଯିଏ, ହଠାତ୍ ତା' ଉପରେ ଶୁଭଦୃଷ୍ଟି ପଡ଼ିଲା କାହିଁକି ?

କୁମାର - ଆମେ ଦୁହେଁ ସ୍କୁଲ୍‌ରେ ଏକାସାଥିରେ ପଢୁଥିଲୁ । ତା'ପରେ ଅନେକ ଦିନ ଧରି କେହି କାହାରି ଖବର ରଖିନୁ । ଏଇଥର କଟକରେ ଦେଖାହେଲା - ଫଳରେ ଆମ ବନ୍ଧୁତାର ହେଲା ପୁନରୁଦ୍ଧାର । ଏଠିକି ଡକାଇ ଆଣିଚି - ଉଦ୍ଦେଶ୍ୟ ଆଉ କିଛି ନୁହେଁ - କେବଳ ସେ ଏଠି କିଛିଦିନ ରହନ୍ତୁ - ଏତିକି ମୁଁ ଚାହେଁ ।

ଚନ୍ଦ୍ରା - ବୁଝିଲି - କିନ୍ତୁ ସେ ଏଠି ଚଳିପାରିବେ ତ ?

କୁମାର - କାହିଁକି ?

ଚନ୍ଦ୍ରା -ଭିତରେ ବାହାରେ ଏତେ ସଦ୍‌ଗୁଣର ନାମାବଳି ନେଇ ତାଙ୍କର ଅବସ୍ଥା ହୁଏତ ଏଠି ହେଇ ଉଠିବ, "ବକ ମଧ୍ୟେ ହଂସ ଯଥା ।"

କୁମାର - ଦୁନିଆର ଭଲ ବାଟରୁ ତାହାହେଲେ ଆମେ ଖୁବ୍ ଦୂରେଇ ଯାଇଛୁ ଶ୍ରୀମତୀ ଦାସ ?

ଚନ୍ଦ୍ରା - ସେ ସବୁ ତତ୍ତ୍ୱ କଥା ବର୍ତ୍ତମାନ କାହିଁକି ?

କୁମାର - ଠିକ୍ କଥା - କାମର କଥା କୁହନ୍ତୁ ?

ଚନ୍ଦ୍ରା - ମୁଁ ସେଇ ଅରୁଣା କଥା କହୁଥିଲି ?

କୁମାର - ଅରୁଣା ! ସେ ତ ମ୍ୟାଟରନିଟ୍ ହୋମ୍‌ରେ ଭର୍ତ୍ତି ହୋଇଯାଇଛି ?

ଚନ୍ଦ୍ରା - ଆଜି ଖବର ପାଇଲି - ତା'ର ଗୋଟିଏ ପିଲା ଜନ୍ମ ହେଇଚି ?

କୁମାର - ମଲା ପିଲା - ବିଚାରୀ ତା'ହେଲେ ଖୁବ୍ ବଞ୍ଚିଯାଇଚି - ବର୍ତ୍ତମାନ ତା' ପାଇଁ କିଛି ଟଙ୍କା ଦରକାର ଅଛି ?

ଚନ୍ଦ୍ରା - ହଁ, ମୁଁ ଭାବୁଚି - ଏ ଭିତରେ ତାକୁ କିଛିଦିନ ପାଇଁ ପୁରୀ କିମ୍ବା ଦାର୍ଜିଲିଂ ଏମିତି କୌଣସି ଗୋଟିଏ ଜାଗାକୁ ପଠାଇଦେବାପାଇଁ ?

କୁମାର - ବେଶ୍-ବେଶ୍ । ସେ ବନ୍ଦୋବସ୍ତ ଆପଣ କରନ୍ତୁ - ଯାହା ଟଙ୍କା ଲାଗିବ ମୁଁ ଦେବି । ହଁ ଆଉ ଗୋଟେ କଥା - ଅରୁଣାର ବିବାହ ପାଇଁ ଆପଣ ଗୋଟିଏ ସୁନ୍ଦର, ସୁଦର୍ଶନ ଯୁବକ ଖୋଜି ବାହାର କରନ୍ତୁ - ଯାହାକୁ ପାଇଲେ ଅରୁଣା ଅନ୍ତତଃ ଖୁସି ହୋଇପାରିବ । ବିବାହର ସମସ୍ତ ଖର୍ଚ୍ଚ ମୁଁ ବହନ କରିବି ।

ଚନ୍ଦ୍ରା - ସେଥିରେ ଆପଣଙ୍କର ଲାଭ ?

କୁମାର - ସବୁଥିରୁ ଲାଭ ଖାଇ ମୁଁ ବଞ୍ଚିପାରିବି ନାହିଁ ମିସେସ୍ ଦାସ ! ଏଥିରେ ମୋର ଲାଭ ଥାଇନପାରେ- କିନ୍ତୁ ଦୁନିଆରେ ଆଉ ଜଣେ କେହି ପୁରୁଷର ତ ଲାଭ ରହିବ ।

ଚନ୍ଦ୍ରା - ବିଚାରୀ ଅରୁଣାର ସୌଭାଗ୍ୟ - ତା'ର ବିବାହ କଥା ଆପଣ ଚିନ୍ତାକରୁଛନ୍ତି । ହଁ, ସେ ଆପଣଙ୍କ ସଙ୍ଗେ ଥରେ ଦେଖାକରିବାକୁ ଚାହେଁ ?

କୁମାର - ତା'ଦ୍ୱାରା ସେ ଏକ ମହାଭୁଲ୍ କରିବସିବ । ତାକୁ କହିଦେବେ, ଲହରୀ ବକ୍ଷରେ ଯେତେଥର ସେ ଝାମ୍ପ ଦେବ, ସେତେଥର ସେ ତାକୁ ଆଣି କୂଳରେ ଫିଙ୍ଗିଦେବ । ଆଶ୍ରୟର ସ୍ଥାନ ସେଠିନାହିଁ । ମୋର ପ୍ରାପ୍ୟ ମୁଁ ତା'ଠାରୁ ପାଇଛି । ଏଣିକି ମୋ ସହିତ ଦେଖାନକରି, ଏପରିକି ମୋ କଥା ଜୀବନରେ କ୍ଷଣକପାଇଁ ସୁଦ୍ଧା ନଭାବି ମୋଠାରୁ ସେ ତା'ର ପ୍ରାପ୍ୟ ପାଇପାରିବ - ଏ ପ୍ରତିଶ୍ରୁତି ମୁଁ ଦେଉଚି ?

ଚନ୍ଦ୍ରା - ବେଶ୍, ଏକଥା ମୁଁ ତାକୁ କହିଦେବି - ବର୍ତ୍ତମାନ ତା'ହେଲେ ମୁଁ ଆସୁଛି !

କୁମାର - ଶୁଣନ୍ତୁ ! (ଚନ୍ଦ୍ରା ଫେରିଲେ - କୁମାର କିଛି ନକହି ବୁଲିବାକୁ ଲାଗିଲେ, ତା'ପରେ ଗୋଟାଏ ସ୍ଥାନରେ ଠିଆହୋଇ ଚନ୍ଦ୍ରାଦେବୀଙ୍କୁ ଏପରି ଦୃଷ୍ଟିରେ ଚାହିଁଲେ, ଯାହାର ଅର୍ଥ ଚନ୍ଦ୍ରା ବେଶ୍ ବୁଝିପାରିଲେ ।)

ଚନ୍ଦ୍ରା - ଯୁବରାଣୀ ସାହେବାଙ୍କ କଥା ତ ?

କୁମାର - କିଛି ନକହି ଆପଣ ତ ଚାଲିଯାଇଥିଲେ ।

ଚନ୍ଦ୍ରା - କହିବି ଆଉ କ'ଣ । ଆଜି ତ ଦେଖାହୋଇପାରିଲା ନାହିଁ ।

କୁମାର - କାହିଁକି । ଏତେ ସମୟ ତ ଉପରେ ଥିଲେ -

ଚନ୍ଦ୍ରା - ତଥାପି ସେ ପୂଜାରୁ ଉଠିଲେ ନାହିଁ । ଶୁଣିଲି ଆଜି ଦୁଇଟା ପର୍ଯ୍ୟନ୍ତ ସେ ପୂଜାରେ ବସିବେ -

କୁମାର - ହୁଁ, ଆଚ୍ଛା ଚନ୍ଦ୍ରା ଦେବୀ ! ଯେତେ ଆଧୁନିକା ବା ପ୍ରଗତିଶୀଳା ହୁଅନ୍ତୁ, ଆପଣ କହିପାରିବେ ଏ ପୂଜାପାର୍ବଣ ମୂଳରେ କିଛି ଆରାଧନା ଅଛି କି ନାହିଁ !

ଚନ୍ଦ୍ରା - ନିଶ୍ଚୟ ଅଛି -

କୁମାର - ଏହାର ଶେଷ କେଉଁଠି ?

ଚନ୍ଦ୍ରା - ସିଦ୍ଧିଲାଭରେ -

କୁମାର - କ'ଣ ସେ ସିଦ୍ଧି ?

ଚନ୍ଦ୍ରା - ଆପଣ ଜାଣନ୍ତିନାହିଁ ?

କୁମାର - ଯଦି ମୁଁ ଜାଣିନଥାଏ - ତେବେ ଜାଣିବା ନିଶ୍ଚୟ ଉଚିତ୍ - କ'ଣ କହୁଛନ୍ତି ?

ଚନ୍ଦ୍ରା - କିନ୍ତୁ କେତେଦିନ ଧରି ଆପଣ ଦୁହେଁ ଏମିତି ଦୁଇଟି ସମାନ୍ତରାଳ ରେଖା ଟାଣିଟାଣି ଚାଲିଥିବେ ? ତାଙ୍କର ବାଟରେ ସେ ଆଉ ଆପଣଙ୍କ ବାଟରେ ଆପଣ... ?

କୁମାର - ଏଇ ଜ୍ୟାମିତିକ କଥାଟାରେ ଯଦି କୌଣସି ସତ୍ୟତା ଥାଏ, ତା'ହେଲେ ଆପଣଙ୍କ ପ୍ରଶ୍ନଟା ହିଁ ଆପଣଙ୍କର ଉତ୍ତର । ଦୁଇଟି ସମାନ୍ତରାଳ ରେଖାର ମିଳନ ତ କେବେ ସମ୍ଭବ ନୁହେଁ ।

(କୁମାର ଉଠି ଚାଲିଗଲେ - ଚନ୍ଦ୍ରା ମଧ ବିଦାୟ ନେଲେ । ଟିକିଏ ପରେ ସେଠାକୁ ଆସିଲେ ଆନନ୍ଦ । ସେ ସ୍ନାନ ସାରି କୁମାର ସାହେବଙ୍କୁ ଭେଟିବା ପାଇଁ ଆସିଥିଲେ । କିନ୍ତୁ କାହାକୁ ନଦେଖି ଟେବୁଲ୍ ଉପରୁ ଖଣ୍ଡିଏ ବହି ଆଣି ପଢ଼ିଲେ ।)

କୁମାର - (ପ୍ରବେଶି) ଏଇ ତ ଆନନ୍ଦ - ଚା' ଖିଆ ହେଲାଣି ?

ଆନନ୍ଦ - ହଁ ।

କୁମାର - ବେଶ୍ ଭଲକରି ଖାଇଚ ତ ! ଦୁଇଟା ପୂର୍ବରୁ ଲଞ୍ଚ୍ ହେଇପାରିବ ନାହିଁ ।

ଆନନ୍ଦ - ସେ ଲଞ୍ଚ୍- ଫଞ୍ଚ୍ ମୋତେ ପୋଷେଇବ ନାହିଁ ବାବୁ ! ବାରଟା ବେଳକୁ ଦୁଇଟି ଉଷୁନା ଚାଉଳର ଭାତ ମୋର ଦରକାର - ଭାତ ମିଳିବଟି ଏଠି ?

କୁମାର - ମିଳିବ, ମିଳିବ - ବ୍ୟସ୍ତ କାହିଁକି । ଆଜି ଲଞ୍ଚ୍ ଖାଇଥାଅ, କାଲିଠାରୁ ଅନ୍ୟ ବ୍ୟବସ୍ଥା କରାଯିବ-

ଆନନ୍ଦ - ଆଚ୍ଛା, ବର୍ତ୍ତମାନ ଶ୍ରୀମୁଖରୁ ଶୁଣେ - ତାର ଉପରେ ତାର କରି ଫାଷ୍ଟକ୍ଲାସ୍ ବର୍ଥ ପର୍ଯ୍ୟନ୍ତ ରିଜର୍ଭ କରି କାହିଁକି ମୋତେ ଏଠିକି ଅଣାଯାଇଛି । ହଜାରେ କାମ ଥିଲେ ସୁଦ୍ଧା ଏ ବିରାଟ କୌମାରିକ ଆମନ୍ତ୍ରଣକୁ ରକ୍ଷାନକରି ମୁଁ ରହିପାରିଲିନାହିଁ - କଥାଟା କ'ଣ ଶୁଣେ ?

କୁମାର - କିଛିନାହିଁ; ଏଇ କିଛିଦିନ ବନ୍ଧୁଘରେ ଅବସ୍ଥାନ - ଏତିକି ।

ଆନନ୍ଦ - ଆଚ୍ଛା ସେ ଗଲେଣି ?

କୁମାର - କିଏ ?

ଆନନ୍ଦ - ତୁମର ସେଇ କର୍ମଧାରାୟ ?

କୁମାର - ଓ. ମିସେସ୍ ଦାସ - ହଁ ଗଲେଣି । ଭାରି କାମିକା ଲୋକ ।

ଆନନ୍ଦ - ହୋଇପାରନ୍ତି ।

କୁମାର - ଆଚ୍ଛା, ରାଏ - ସେଇ ଯେ ମୋହନ - ଛବି ଆଙ୍କେ, କାହିଁକି ସେ ଛବିଟା ମୋତେ ବିକିଲାନାହିଁ କହିପାରିବ ?

ଆନନ୍ଦ - ଏ ବିଷୟରେ ସମସ୍ତ ତଥ୍ୟ ମୁଁ ଗବେଷଣା କରିବାର ସୁବିଧା ସୁଯୋଗ ପାଇନାହିଁ.... ତେବେ ନିଜ ବାଗ୍‌ଦତ୍ତା ସ୍ତ୍ରୀର ଛବି ବିକିବାକୁ ତା'ର ଆତ୍ମସମ୍ମାନରେ ବାଧା ଆସିଲା - ଏତିକି ମୁଁ ଜାଣେ ।

କୁମାର - ମୁଁ ବୁଝିପାରୁନାହିଁ ରାଏ... ଏ ସବୁ ଲୋକଙ୍କର ଏ ପାଗଳାମି ହୁଏ କାହିଁକି ? ଛବିଟା ବିକିଥିଲେ - ହୁଏତ ତା ନିଜର କିଛି ସୁବିଧା କରିପାରିଥାନ୍ତା..... ।

ଆନନ୍ଦ - ତା କଥା ଥାଉ..... ତୁମ କଥା କୁହ ?

କୁମାର - ମୋ କଥା ?

ଆନନ୍ଦ - ତୁମର ହାଲଚାଲ୍ - ଏ ବିରାଟ ଏଫେୟାର୍ସ୍‌ରୁ ମୁଁ କିଛି କଳ୍ପନା କରିପାରୁନାହିଁ ।

କୁମାର - ସତେ ! ତେବେ ଚାଲ- ଆଗେ ଅଫିସ୍ ଆଡ଼େ ଟିକିଏ ବୁଲିଆସିବା । ଭୀମ ସିଂ - (ଭୀମ ପ୍ରବେଶ ) ଗାଡ଼ି ସବୁ ଆସିଯାଇଛି ?

ଭୀମ ସିଂ - ଜି ହଜୁର....

କୁମାର - କେଉଁ ଗାଡ଼ିରେ ଯିବା ? ଆଚ୍ଛା;

ଆନନ୍ଦ - ସେ ଗାଡ଼ିସବୁ ଏକ୍‌ସିଡେଣ୍ଟ ପ୍ରୁଫ୍ ତ ?

କୁମାର - ଜୀବନରେ ମୋର ବହୁତ ଏକ୍‌ସିଡେଣ୍ଟ ହେଇଯାଇଚି ଆନନ୍ଦ, ଆଉ ବୋଧହୁଏ ହବନି..... ଆସ ।

## ଚତୁର୍ଥ ଦୃଶ୍ୟ

(ମଧୁ ମହାରଣା ଘରର ଅଳିନ୍ଦ - ଭିତରୁ ଆସିଲା ତା'ର ଚାଲିବାର ଶକ୍ତି ଯେମିତି କମି ଆସିଲାଣି ।)

କାହ୍ନୁ - (ବାହାରୁ) ମଧୁଭାଇ ଘରେ ଅଛ..... (ଭିତରୁ ଆସିଲା) ।

ମଧୁ - କାହ୍ନୁ, ଆସ ଆସ, ତମର ତ କାହିଁ ଦେଖାନଥିଲା କାହ୍ନୁ ?

କାହ୍ନୁ - ଶଙ୍କରା କଲିକତା ପଳେଇଲା - ଘରେ ଆଉ ମନ ଲାଗିଲା ନାହିଁ । ପୁରୀ, ଭୁବନେଶ୍ୱର, ଗଞ୍ଜାମ, ବରହମ୍ପୁର - ଏମିତି ବୁଲି ବୁଲି ଆସି ପହଞ୍ଚି ଘରେ ଗୋଡ଼ ଦେଇଚି କି ନାହିଁ ମନେପଡ଼ିଗଲା ତମକଥା - କହିଲି ଭାଇଙ୍କି ମୋର ଯାଇଁ ଟିକେ ଦେଖିଆସେ .... ।

ମଧୁ - ହଁ କାହ୍ନୁ - ତୁମେ ଜାଗାକୁ ପାଞ୍ଚ ଜାଗା ବୁଲୁଚ - ନୀଳା ଖବର ତମେ କିଛି କହିପାରିବ ?

କାହ୍ନୁ - ନୀଳା ଖବର ମୁଁ କହିବି ? ତୁମେ ଥଟ୍ଟା କରୁନ ତ ମଧୁଭାଇ !

ମଧୁ - ଥଟ୍ଟା କାହିଁକି କରିବି କାହ୍ନୁ ! ମୋର ଭାଗ୍ୟ ସେ - ନଇଲେ ନୀଳା ପରିକା ଝିଅ....

କାହ୍ନୁ - କଥାଟା କ'ଣ ମୋତେ ଖୋଲି କହିବଟି ମଧୁ ଭାଇ ! ମୁଁ ଆଗ ଶୁଣିଯାଏ କ'ଣ ହେଇଚି ?

ମଧୁ - କଥା ଆଉ କ'ଣ କାହ୍ନୁ ! ସେଦିନ ମୁଁ ନିଜେ ରିକ୍‌ସା କରି ନେଇ ତାକୁ ତୁଳସୀପୁରରେ ଛାଡ଼ିଦେଇ ଆସିଲି । ତା'ର ମାଲିକାଣୀ- ଇମିତି ଭଲ ମଣିଷ କାହୁ ନାହିଁ ନଥିବ । ମତେ ବୁଝେଇ ଶୁଝେଇ ବହୁତ କଥା କହିଲେ । ମୁଁ ଫେରିଆସିଲି । ପନ୍ଦରଦିନ ପରେ ନୀଳା ଆସି କହିଲା, ସେମାନେ ସବୁ କଲିକତା ଯିବେ - ମନା କରିପାରିଲି ନାହିଁ....

କାହ୍ନୁ - ତା'ପରେ..... ?

ମଧୁ - ତା'ପରେ ସେଇ ଯେ ନୀଳା ଯାଇଚି- ଯାଇଚି । ଆଉ କିଛି ଖବର ନାହିଁ । ପୂରା ଛ'ମାସ ହୋଇଗଲା କାହ୍ନୁ, ଖଣ୍ଡେ ଚିଠି ଏଯାଏ ମୁଁ ତା'ଠୁଁ ପାଇଲି ନାହିଁ ।

କାହ୍ନୁ - ଏଥିପାଇଁ ତମେ ଇମିତି ପସ୍ତେଇ ହଉଚ ? ବଡ଼ଲୋକିଆ କାରଖାନା, କଉଁଠି ବୁଲୁଚନ୍ତି ତ ବୁଲୁଚନ୍ତି - ଚିଠି ଦବାକୁ ଫୁରୁସତ୍ ନାହିଁ.....

ମଧୁ - ଚିଠି ଦେବାକୁ ତ ଫୁରୁସତ୍ ନାହିଁ ଆଉ ମାସକୁ ମାସ ଶହଶହ ଟଙ୍କା ପଠେଇ ଦବାକୁ କିମିତି ଫୁରୁସତ୍ ହେଉଚି କହିଲ ?

କାହ୍ନୁ - ଟଙ୍କା ? କିଏ ପଠଉଚି, ନୀଳା ?

ମଧୁ - କିମିତି ଜାଣିବି ? ମନିଅର୍ଡ୍ର ହେଇ ମୋ ପାଖକୁ ଟଙ୍କା ଆସୁଚି । କୋଉ ମାସ ଶହେ - କୋଉ ମାସ ଦୁଇ ଶହ- ମନିଅର୍ଡ୍ର ଫାରମ୍‌ରେ ନୀଳାର ନାଁ ଗନ୍ଧ ନାଇଁ....

କାହ୍ନୁ - କିଏ ପୁଣି ଟଙ୍କା ପଠଉଚି ? ଫାର୍ମରେ ତ କାହାରି ହେଲେ ନାଁ ଥିବ ?

ମଧୁ - ତା'ର କିଛି ଠିକଣା ନାହିଁ । କିଏ ଟଙ୍କା ପଠାଉଚି - କଉଁଠୁ ଟଙ୍କା ଆସୁଚି - ଏ ମାସରେ ଗୋଟାଏ ନାଁ ତ ଆର ମାସରେ ଗୋଟାଏ ନାଁ । ନୀଳା ଭଲ ଅଛି ଏତିକି ଖାଲି କୁପନ୍‌ରେ ଲେଖାଥାଏ -

କାହ୍ନୁ - ବୁଝିଲି- ମୁଁ ସବୁ ବୁଝିଗଲି । ମୋତେ ଠିକ୍ ପତ୍ତା ମିଳିଗଲା । ଏ ସବୁ ସେଇ ମହନିର କାମ । ସେହି ମହନି - ହଁ, ମହନି ତମ ନୀଳାକୁ ନେଇ କୋଉଠି ବିକିଚି -

ମଧୁ - (ଶିହରି ଉଠି) କାହ୍ନୁ.....

କାହ୍ନୁ - ତମେ ଯାହା କହ ମଧୁଭାଇ - ଏ ଠିକ୍ ସେଇ ମହନିର କାମ । ଏଠୁ ଆଗେ ଖସିଯାଇ ପଛରେ ନୀଳାକୁ ଖସେଇ ନେଇଯାଇଚି- ଆଉ କୋଉଠି ଗୋଟିଏ ବଡ଼ଲୋକିଆ ମୁଣ୍ଡ ଦେଖି, ନୀଳାକୁ ତା' ପାଖରେ ହାବୁଡ଼େଇ ଦେଇଚି । ନଇଲେ କୋଉ ବେଶ୍ୟା ଘରେ -

ମଧୁ - କାହ୍ନୁ ! ତମେ ଚାଲିଯାଅ ଏଠୁ ! ଚାଲିଯାଅ କହୁଚି - ମୁଁ ଏସବୁ ଶୁଣିବି ନାହିଁ - ଏ ସବୁ ତୁମର ମନଗଢ଼ା କଥା । ନୀଳା ମୋର ଏମିତି ହୋଇପାରେନା କାହ୍ନୁ, ତୁମକୁ ହାତ ଯୋଡୁଚି ତମେ ଆଉ ମତେ ଏଗୁଡ଼ାକ ଶୁଣାଅନାହିଁ....

କାହ୍ନୁ - ମୁଁ କାହିଁକି ଶୁଣେଇବି... ତମ ଝିଅ ଗୁଣମଣି ତୁମକୁ ଶୁଣାଉଚନ୍ତି । ଆଉ ମଧୁଭାଇ, ତମେ ବି କେମିତି ? ଚାକିରି ଛାଡ଼ିଲ ବୋଲି ଗୋଟାଏ ପେଟପାଇଁ ତମେ ସେହି ଟଙ୍କାରେ....

ମଧୁ - କାହ୍ନୁ....

କାହ୍ନୁ - (ଯାଉ ଯାଉ) ନା - ମଧୁଭାଇ ! ଆତ୍ମା ଛାଡ଼ିଗଲା - ଆଜିଠୁଁ ଏ ଘରୁ ମୋ ଆତ୍ମା ଛାଡ଼ିଗଲା-

ମଧୁ - ତୁମେ ଶୁଣିଯାଅ କାହ୍ନୁ - ଶୁଣିଯାଅ !

କାହ୍ନୁ - କ'ଣ ଆଉ କହୁଚ ?

ମଧୁ - ମୁଁ ଆଜି ବୁଝିପାରୁଚି କାହ୍ନୁ - ଚାକିରି ନାଁରେ ଗୋଟାଏ ଚକ୍ରାନ୍ତ କରି ସେମାନେ ନୀଳାକୁ ଏଠୁ ନେଇ ଯାଇଚନ୍ତି - ଚାକିରି ପାଇଁ କେତେ ଲୋକ ଦରଖାସ୍ତ କରିଥିଲେ । ନୀଳାକୁ ସଙ୍ଗେ ସଙ୍ଗେ ମିଳିଗଲା କେମିତି ? ପୁଣି ଦୁଇମାସ ଦରମା ଆଗତୁରା....

କାହ୍ନୁ - ପୁଲିସ୍‌ରେ ଗୋଟିଏ ଏତଲା ଦଉନ....

ମଧୁ - ପୁଲିସ୍ ! କ'ଣ ଏତଲା ଦେବି - କହିବି ଝିଅ ମୋର -

(ଆଉ କହିପାରିଲା ନାହିଁ)

କାହ୍ନୁ - ହଁ, ସେ ବି ତ ଗୋଟାଏ କଥା - ଖୋଜାଖୋଜି କରି ପୁଲିସ୍ ନୀଳାକୁ ବାହାର କରିବ- ହେଲେ ସେ ଖାଲି ନର୍କ ଘାଣ୍ଟିବା ସହ ସମାନ ହବ । ନାଃ, ଯାହା କହିଚି - ଏ ଘରୁ ମୋ ଆତ୍ମା ଛାଡ଼ିଗଲା ।

ମଧୁ - ଶୁଣ କାହ୍ନୁ ! ସେଇ ଟଙ୍କା ଯାକ ମୁଁ ସେମିତି ରଖିଚି - ସେଥିରେ ହାତ ମାରିନି - ତମେ ଦେଖିବ ଆସ-

କାହ୍ନୁ - ମତେ ସେଥିରୁ କ'ଣ ମିଳିବ - ମୁଁ କାହିଁକି ତମ ଟଙ୍କା ଦେଖିବାକୁ ଯିବି ? ତମର ସେ ପାପ -ଅର୍ଜିତ ଧନ-

ମଧୁ - ତା' ହେଲେ ତମେ ଏଇଠି ବସ - ଗୋଛାଯାକ ନୋଟ୍ ମୁଁ ଆଣୁଚି - ତମରି ଆଗରେ ଏଇଠି ପୋଡ଼ିଜାଳିଦେବି ।

କାହ୍ନୁ - ଆହା, ମଧୁଭାଇ ! ତମେ ପାଗଳ ହୋଇଗଲ ନା କ'ଣ ? ଟଙ୍କାଗୁଡ଼ା କି ଦୋଷ କଲା ?

ମଧୁ - ନା କାହ୍ନୁ ! ସେ ଟଙ୍କା ମୁହଁ ଆଉ ଚାହିଁବି ନାହିଁ - ସେ ଟଙ୍କା ମୁଁ ରଖିଥିଲି ନୀଳା ପାଇଁ - ଆଜିଠୁ ନୀଳା ମୋ ଲେଖାରେ ମଲାଣି । ସେ ଟଙ୍କା ମୋର ଆଉ କ'ଣ ହେବ ?

କାହ୍ନୁ - ମୁଁ ତୁମକୁ ଗୋଟେ କଥା କହୁଚି ମଧୁଭାଇ - ଏ ଟଙ୍କାକୁ ତମେ ଗୋଟିଏ ସତ୍‌କାମରେ ଲଗେଇ ଦିଅ ।

ମଧୁ - ବେଶ୍ ବେଶ୍ କାହ୍ନୁ - ଭଲ କଥା । ସେଇୟା ହବ - କ'ଣ ତମେ କହୁଚ କହିଲ ?

କାହ୍ନୁ - ଏଇ କଲିକତାରେ ଓଡ଼ିଆମାନଙ୍କ ମଙ୍ଗଳପାଇଁ ଗୋଟାଏ ପାଣ୍ଠି ଖୋଲାହେଇଚି - ଏ ଟଙ୍କା ତମେ ସେଇ ପାଣ୍ଠିକି ପଠାଇଦିଅ ।

ମଧୁ - ଭଲ କଥା କାହ୍ନୁ - ଏଇକ୍ଷଣି ତା'ହେଲେ ତମେ ଟଙ୍କାତକ ନେଇ ପଠେଇଦିଅ....

କାହ୍ନୁ - ମତେ ପୁଣି କାହିଁକି ଆଉ ସେ ହେଙ୍ଗାମାରେ ପୂରେଇବ -

ମଧୁ - ମନାକର ନାହିଁ କାହ୍ନୁ - ତମେ ଆସ, ଆଜିଠୁ ନୀଳାର ମଧୁ ମହାରଣା ବୋଲି କେହିନାହିଁ ଦୁହିଁଙ୍କ ପାଖରେ ଦୁହେଁ ମରିଚନ୍ତି । ତମେ ଆସ କାହ୍ନୁ ଆସ ମୋ ସାଥିରେ -

## ପଞ୍ଚମ ଦୃଶ୍ୟ

(ମୀର୍ଣ୍ଣାର କକ୍ଷ - ମୀର୍ଣ୍ଣା ଖୁବ୍ ମନୋଯୋଗ ସହକାରେ ଗୋଟିଏ ସିଲାଇ କାମ କରୁଛି । ତା'ର ଅଲକ୍ଷ୍ୟରେ ଆସିଲେ ମି. ମହାପାତ୍ର । ଧୀରେ ଧୀରେ ସେ ଆସି ମୀର୍ଣ୍ଣା ନିକଟରେ କିଛି ସମୟ ଠିଆହେଲେ ।

ମହାପାତ୍ର - (ଧୀର ଗଳାରେ) ମୀର୍ଣ୍ଣା - ସେ ଆସିନାହିଁ ?

ମୀର୍ଣ୍ଣା - ତମେ ପୁଣି ଏଠିକି ଆସିଲ ? ଯେତେ ମନାକଲେ ବି ମାନୁନ - ଚାଲ, ଶୋଇବ ଚାଲ-

ମହାପାତ୍ର - କିନ୍ତୁ ସେ କାହିଁ.... ?

ମୀର୍ଣ୍ଣା - କିଏ ?

ମହାପାତ୍ର - ନା, ତା'ର ତ ଆସିବାର କଥା - (ବାହାରେ କବାଟରେ ଶବ୍ଦ ହେଲା) ଏଇ - ହୁଏତ ଆସିଲା - ହଁ ମୁଁ କହୁଚି । ରହ, ମୁଁ ଦରଜା ଖୋଲେ - (ଦରଜା ଖୋଲି ରୁଟିବାଲାକୁ ଦେଖି, ମହାପାତ୍ର ତାକୁ ଚିହ୍ନି ନ ଚିହ୍ନିଲାପରି ଚାହିଁ ଚାହିଁ ପଛକୁ ଫେରିଆସିଲେ ।)

ମହାପାତ୍ର - ଏ ତ ସେ ନୁହେଁ ମୀର୍ଣ୍ଣା ?

ମୀର୍ଣ୍ଣା - ଏ ପରା ରୁଟିବାଲା.....

ମହାପାତ୍ର - ଓଃ - ମାନ୍ୟବର ଖାଦ୍ୟମନ୍ତ୍ରୀ - ତାଙ୍କୁ ଅଭ୍ୟର୍ଥନା କରି ଡାକିଆଣ ମୀର୍ଣ୍ଣା ।

ମୀର୍ଣ୍ଣା - ଆଃ - କ'ଣ ତୁମେ କହୁଚ ବାପା - ଚାଲ ଶୋଇବ ।

ମହାପାତ୍ର - ନା -ନା - ମୀର୍ଣ୍ଣା ! ମୁଁ ତାଙ୍କୁ ତ କିଛି କହିନାହିଁ, ସେ ମୋର ଉପକାରୀ ବନ୍ଧୁ - ମୋର ଜୀବନରକ୍ଷା ସେ କରୁଛନ୍ତି - ତୁ ଜାଣୁ, ଗୋଟାଏ କଥା ଅଛି- "The best doctors in the world are the doctor diet and the doctor quiet" ରୁଟି ଖାଇ ଚୁପ୍ ହେଇ ଶୋଇବି ।

ମୀର୍ଣ୍ଣା - ହଁ, ଚାଲ ଶୋଇବ -

ମହାପାତ୍ର - ତୁ କିନ୍ତୁ ଚଞ୍ଚଳ ବିଦାୟ କର ମା ! ସେ ଯେ ମଣିଷ - ଆଜି ସେ ରୁଟି ଦେବାକୁ ଆସିଚି - କାଲି ହୁଏତ ସେ ମୋ ମୁହଁରୁ ରୁଟି କାଢ଼ିନେବ । ମୀର୍ଣ୍ଣା ! ତୁ ତାକୁ ବିଦାୟ କର- (ଚାଲିଗଲେ)

ମୀର୍ଣ୍ଣା - ଆଜି କେତେଟା ରୁଟି ଦେଇଚ ?

ରୁଟିବାଲା - ଦୁଇଟା -

ମୀର୍ଣ୍ଣା - ଆଚ୍ଛା, ଅପେକ୍ଷା କର - (ଖଣ୍ଡିଏ ଜାମା ଆଣି) ଏଇ ନିଅ, ପସନ୍ଦ ହଉଚି ତ ?

ରୁଟିବାଲା - ବେଶ୍ ହେଇଚି ମା ! ତମ ହାତ ଜାମା (ଏତିକିବେଳେ ମୋହନ ଆସୁଥିବାର

ମୀର୍ଣ୍ଣା ଦେଖିଲା ।)

ମୀର୍ଣ୍ଣା - ଆସନ୍ତୁ ମୋହନବାବୁ, ଆସନ୍ତୁ - (ମୋହନ ଆସିଲା)

ଗୁଟିବାଲା - ମା' ହିସାବଟା -

ମୀର୍ଣ୍ଣା - ହିସାବ, ତୁମେ ଆଉ ଦୁଇଦିନ ଗୁଟି ଦେଲେ ଜାମାର ଦାମ୍ ମୁଁ ପାଇଯିବି । ବୁଝିଲ ?

ଗୁଟିବାଲା - ହଁ, ମା' ! (ଚାଲିଗଲା)

ମୋହନ - ମୁଁ କିଛି ବୁଝିପାରୁନାହିଁ ମୀର୍ଣ୍ଣା ଦେବୀ - ଏଇ ଗୁଟି ଆଉ ଜାମାର କାରବାର -

ମୀର୍ଣ୍ଣା - ଆପଣ ଇତିହାସ ପଢ଼ିନାହାନ୍ତି - ସେଇ ଆଦିମ ଯୁଗର କଥା - ଟଙ୍କା ପଇସାର ପ୍ରଚଳନ ଯେତେବେଳେ ନଥିଲା । ମୁଁ ସେଇ ଯୁଗକୁ ଫେରିଯାଇଚି - ଜାମା ତିଆରି କରି ତା ବଦଳରେ ଗୁଟି ଆଉ ଦୁଧ କିଣୁଚି -

ମୋହନ - (ସ୍ତବ୍ଧ ହେଇ ମୀର୍ଣ୍ଣା ମୁହଁକୁ ଚାହିଁ ରହିଲା) ଆପଣଙ୍କ ଗଙ୍ଗାକୂଳ ବଗିଚା କିମିତି ଚାଲିଚି ?

ମୀର୍ଣ୍ଣା - ଅନ୍ୟ ଉପରେ ନିର୍ଭର କଲେ ଯାହା ହୁଏ । ନିଜେ ତ ଦେଖାଶୁଣା କରିବାର ଉପାୟ ନାହିଁ - ବାପାଙ୍କୁ ଛାଡ଼ି ଯିବି କିମିତି ! ତଥାପି ସେଇଥିରୁ ସବୁ ଚଳିଯାଉଚି ।

ମୋହନ - ବାପା କେମିତି ଅଛନ୍ତି ?

ମୀର୍ଣ୍ଣା - କେମିତି ଆଉ ରହିବେ କୁହନ୍ତୁ - ପରିବର୍ତ୍ତନର ତ କୌଣସି କାରଣ ନାହିଁ ।

ମୋହନ - ତାଙ୍କର ଅତ୍ୟାଚାର ମୁଣ୍ଡରେ ବହି ଏ କଲିକତା ସହରରେ ଏ ଅବସ୍ଥାରେ ଆପଣ ରହିପାରିଛନ୍ତି କିମିତି ?

ମୀର୍ଣ୍ଣା - ଆପଣଙ୍କର ହିଂସା ହେଉଚି ବୋଧହୁଏ ।

ମୋହନ - ହିଂସା !

ମୀର୍ଣ୍ଣା - ହଁ, ମୋ' ପରି ଜଣେ ଅସହାୟା ଓଡ଼ିଆ ଘର ସ୍ତ୍ରୀ ଏ କଲିକତା ସହରରେ ମୁଣ୍ଡ ଟେକି ଠିଆ ହେଇ ପାରିଚି ଆଉ ଆପଣ ଜଣେ ପୁରୁଷ ହେଇ ଜୀବନ ସଂଗ୍ରାମକୁ ଡରି ପଳେଇଆସିଲେ । କ'ଣ ଭାବୁଛନ୍ତି ? ଆଚ୍ଛା, ନୀଳା କଥା କୁହନ୍ତୁ.....କେମିତି ଅଛି ସେ, କିଛି ଖବର ପାଇଛନ୍ତି....

ମୋହନ - ପାଇଚି ।

ମୀର୍ଣ୍ଣା - କେମିତି ଅଛି ସେ, ଭଲଅଛି ତ ?

ମୋହନ - (ନୀରବ)

ମୀର୍ଣ୍ଣା - ବାଃ, କହୁନାହାନ୍ତି କାହିଁକି ? ....ଓଃ...ତା' କଥା ମୋତେ ଜଣେଇବେ ନାହିଁ ପରା.... ?

ମୋହନ - ଜଣେଇବାର ବିଶେଷ କିଛି ନାହିଁ......ସେ ଚାକିରି କରୁଚି....

ମୀର୍ଣ୍ଣା - ଚାକିରି...କି ଚାକିରି, କେଉଁଠି ?

ମୋହନ - କହିପାରିବିନି - ତେବେ ଏତିକି ଜାଣେ ସେ କଟକ ଛାଡ଼ି ଚାଲି ଆସିଚି ।

ମୀର୍ଣ୍ଣା - ହୁଁ..... ଏ ଆଶଙ୍କା ମୁଁ ମଧ କରୁଥିଲି.....

ମୋହନ - କାହିଁକି ?

ମୀର୍ଣ୍ଣା – କାରଣ ତା ଜୀବନର ମୂଲ୍ୟ ସେ ବୁଝିଚି.... । ଜୀବନଟା କ'ଣ ? ପ୍ରକୃତିର ଏକ ବିରାଟ ଶକ୍ତି ତା'ର ପରିଚୟ ସେ ପାଇଚି । ତା ଜୀବନର ବ୍ୟର୍ଥତାକୁ ଘେନି ନୀଳା ଆଜି ବଞ୍ଚି ରହିଚି । କାରଣ ତା ନିକଟରେ ତା ଜୀବନଟା ବଡ଼ ଆଉ ବ୍ୟର୍ଥତା ତୁଚ୍ଛ । ଜୀବନ ଶକ୍ତିର ଏ ସନ୍ଧାନ ତାକୁ ବଞ୍ଚି ରହିବାର ଅଧିକାର ଦେଇଚି.....

ମୋହନ – କିନ୍ତୁ ଏପରି ବଞ୍ଚି ରହିବାଟା କ'ଣ ବିପଜ୍ଜନକ ନୁହେଁ ? ଏଥିରେ କ'ଣ ବିପଦ ନାହିଁ ?

ମୀର୍ଣ୍ଣା – ଯୁଗ ଯୁଗ ଧରି ଅପେକ୍ଷା କଲେ ମଧ ପୃଥିବୀ ତା'ର ସୁଖସମ୍ଭାର ଆଣି ଆପଣଙ୍କ ପାଦତଳେ ଅଜାଡ଼ି ଦେଇ ଯିବନି । ବିପଦର ଦ୍ୱାହି ଦେଇ ପଳେଇଗଲେ.... ଆପଣ କ'ଣ ସମ୍ପଦର ସମ୍ମୁଖୀନ ହେବେ ?

ମୋହନ – କିନ୍ତୁ ସମ୍ପଦ ତ ମୋ ଜୀବନର ଲକ୍ଷ୍ୟ ନୁହେଁ.....

ମୀର୍ଣ୍ଣା – ଆପଣ ଭାରି ଗୋଳମାଳିଆ କଥା କହୁଛନ୍ତି ମୋହନ ବାବୁ ! କ'ଣ ଯେ ଆପଣଙ୍କ ଜୀବନର ଲକ୍ଷ୍ୟ, ଆପଣ ନିଜେ ହୁଏତ ତା ଜାଣନ୍ତି ନାହିଁ । ଛବି ଆଙ୍କି ପେଟ ପୋଷିବା ଥିଲା ଆପଣଙ୍କର ଲକ୍ଷ୍ୟ.... ଅଥଚ ନୀଳାର ଛବିକୁ ଆପଣ ବିକିଲେ ନାହିଁ । ନୀଳାକୁ ବିବାହ କରିବାକୁ ଆପଣ ଚାହାନ୍ତି, ଅଥଚ ନିଜର ଦାରିଦ୍ର୍ୟର ଦ୍ୱାହି ଦେଇ ଘରଦ୍ୱାର, ନୀଳା ସମସ୍ତଙ୍କୁ ଛାଡ଼ି କଲିକତା ପଳେଇଆସିଲେ - ବର୍ତ୍ତମାନ କହୁଚନ୍ତି ସମ୍ପଦ ଆପଣଙ୍କର ଜୀବନର ଲକ୍ଷ୍ୟ ନୁହେଁ.... ତେବେ ସେ ବଞ୍ଚିରହିବାର ଅଧିକାରର ଅର୍ଥ କ'ଣ ? କହୁନାହାନ୍ତି ? କୁହନ୍ତୁ ! (ମୋହନ କିଛି କହିପାରିଲା ନାହିଁ, ମୀର୍ଣ୍ଣାର କଥାରେ ଆହତ ହୋଇ ତା ମୁହଁକୁ ସୁଦ୍ଧା ଚାହିଁପାରିଲାନାହିଁ) କ୍ଷମା କରନ୍ତୁ ମୋହନବାବୁ..... ଏସବୁ କଥା କହି ମୁଁ ଆପଣଙ୍କୁ ଖୁବ୍ ଆଘାତ ଦେଇଚି.....

ମୋହନ - ଆଘାତ ମୁଁ ପାଇଚି ସତ ମୀର୍ଣ୍ଣା ଦେବୀ ! କିନ୍ତୁ ଏ ଆଘାତ ପାଇଁ ମୁଁ ଆପଣଙ୍କଠାରେ କୃତଜ୍ଞ; ଜୀବନରେ କେବଳ ଗୋଟାଏ ନିଷ୍ଫଳ ସ୍ୱପ୍ନ ଦେଖିବା ଛଡ଼ା ବଞ୍ଚିବାର କୌଣସି ନିର୍ଦ୍ଦିଷ୍ଟ ପନ୍ଥା ଖୋଜି ବାହାର କରିବାର ଚେଷ୍ଟା କରିପାରିନି..... ଆଜି ଆପଣଙ୍କର ଏ କଥା ଶୁଣି ମୋର ଭୁଲ୍ ମୁଁ ସ୍ୱୀକାର କରୁଚି.....

ମୀର୍ଣ୍ଣା - (ଆଶ୍ୱସ୍ତ ହୋଇ) ମୁଁ ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା କରୁଚି ମୋହନବାବୁ - ଆପଣ ବଞ୍ଚିରହନ୍ତୁ..... ଆପଣଙ୍କର ଆଦର୍ଶ ବଞ୍ଚି ରହୁ । ନୀଳାପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ..... ନାରୀ ତା'ର ପ୍ରିୟତମ ପୁରୁଷ ପାଇଁ ଯୁଗ ଯୁଗ ଧରି ଅପେକ୍ଷା କରି

ରହିପାରେ - ଏ ଦୃଷ୍ଟାନ୍ତ ସବୁଦିନ ସବୁଠାରେ ଥିଲା, ଆଜି ବି ରହିଚି..... । ଆଚ୍ଛା, ମୋର ଗୋଟାଏ ଅନୁରୋଧ, ଆଜି ଆପଣ ଆମ ଘରେ ଖାଇବେ....

ମୋହନ - କାହିଁକି ?

ମାର୍ଣ୍ଣା - ମୁଁ ଖୁବ୍ ବଡ଼ ଚିଙ୍ଗୁଡ଼ି ମାଛର କାଲିଆ କରିଚି । (ମୋହନ ବିସ୍ମିତ ହୋଇ ମାର୍ଣ୍ଣା ମୁହଁକୁ ଚାହିଁରହିଲା) କ'ଣ ବିଶ୍ୱାସ କରୁନାହାଁନ୍ତି ? ଓ, ଜାମା ବିକି ରୁଟି ଦୁଧ କିଣିଚି ବୋଲି! କିନ୍ତୁ ମୋ ବେକର ଏ ହାରଟା ଦେଖୁଛନ୍ତି....ବହୁତ ବେଶି ଦାମ୍!

ମୋହନ - ମୁଁ ଆପଣଙ୍କୁ ମୋଟେ ଚିହ୍ନିପାରିଲି ନାହିଁ ମାର୍ଣ୍ଣା ଦେବୀ! ଦିନକୁ ଦିନ ଆପଣ ମୋ ନିକଟରେ ଯେମିତି ଏକ ପ୍ରହେଳିକା ହୋଇ ଉଠୁଛନ୍ତି.....

ମାର୍ଣ୍ଣା - (ହସି) ନିଜକୁ ତ ନିଜେ ଚିହ୍ନି ପାରୁନାହାନ୍ତି, ମୋତେ ଚିହ୍ନିବେ କ'ଣ ?

ମୋହନ - ଏକଥା କହି ମତେ ଭୁଲେଇଦେବେ ?

ମାର୍ଣ୍ଣା - ଆଚ୍ଛା ଆପଣ କୁହନ୍ତୁ....ଏ ପଡ଼ାର ବାସିନ୍ଦାମାନଙ୍କର ମୋ ସମ୍ବନ୍ଧରେ ଧାରଣ କ'ଣ ?

ମୋହନ - ମୁଁ ଭଲଭାବେ ଜାଣେ ଆପଣଙ୍କର ସାଧାରଣ ପରିଚୟ ପାଇବାର ସୁଯୋଗ ସୁଦ୍ଧା ଆପଣ ସେମାନଙ୍କୁ ଦେଇନାହାନ୍ତି.... ।

ମାର୍ଣ୍ଣା - ଆପଣଙ୍କୁ ତ ଦେଇଚି.... ଜଣେ ତା'ହେଲେ ମୋତେ ଭଲଭାବେ ଚିହ୍ନିପାରୁନାହାନ୍ତି କାହିଁକି ?

ମୋହନ - ମୁଁ ଆପଣଙ୍କୁ ଯେତିକି ଜାଣେ ସେଇ ଯଥେଷ୍ଟ.... ଆଉ ଜାଣିବାର ଆଗ୍ରହ ମୋର ନରହୁ ।

ମାର୍ଣ୍ଣା - କାରଣ ମୋ ବୟସର, ମୋ ଅବସ୍ଥାର ଜଣେ ଭଦ୍ର ମହିଳାଙ୍କ ସମ୍ବନ୍ଧରେ ସବୁ କିଛି ଜାଣିବାର ଆଗ୍ରହ ଦେଖାଇବା ଯେକୌଣସି ପୁରୁଷ ପକ୍ଷେ ଆଦୌ ସୁନ୍ଦର ନୁହେଁ ଏଇୟା ନା ? ଆଚ୍ଛା ବର୍ତ୍ତମାନ ଆପଣ କୁହନ୍ତୁ, ଆପଣ ମୋ' ନିମନ୍ତ୍ରଣ ରକ୍ଷା କରୁଛନ୍ତି ତ ?

ମହାପାତ୍ର - (ପ୍ରବେଶି) କାହାକୁ ତୁ ନିମନ୍ତ୍ରଣ କରୁଚୁ ମାର୍ଣ୍ଣା - ଓଃ, ମୋହନ! ତୁମେ ଆସିଚ ? ପଚାର ମାର୍ଣ୍ଣାକୁ ପଚାର । ମାର୍ଣ୍ଣା ସାକ୍ଷୀ - କେତେଥର ମୁଁ ତୁମକୁ ଖୋଜିଗଲିଣି । ମୁଁ ଜାଣେ ? ମାର୍ଣ୍ଣା ଆଜି ଗୋଟିଏ ପାଟି ଦଉଚି, ସେ ନିଶ୍ଚୟ ତୁମକୁ ନିମନ୍ତ୍ରଣ କରିଥିବ । ଅନ୍ୟମାନେ କାହାନ୍ତି ମାର୍ଣ୍ଣା! ଓଃ, ହଲ୍‌ରେ । ଆଚ୍ଛା, ମୁଁ ହଲ୍‌କୁ ଯାଉଛି (ଯାଉଁ ଯାଉଁ ପୁଣି ଫେରି) ଆଚ୍ଛା ମୋହନ, ତମେ କାହିଁକି ଏଠିକି ଆସ - କ'ଣ କାମ ତମର ଏଠି ?

ମାର୍ଣ୍ଣା - ସେ ପରା ମୋର ଗୋଟେ ଛବି ଆଙ୍କିଦେବେ.......

ମହାପାତ୍ର - ଓଃ, ଛବି ଆଙ୍କିବ - ମାର୍ଣ୍ଣାର ଛବି ଆଙ୍କିବ ମୋହନ!

- ମୀର୍ଜା This colourless girl! ଏଇ ରଙ୍ଗହୀନ ପ୍ରତିମାର ପ୍ରାଣହୀନ ଛବି ଆଙ୍କିବ ମୋହନ। ବାଃ ବାଃ, ବେଶ୍ ହେବ.... ବେଶ୍ ହେବ! କିନ୍ତୁ ତୁ ତାକୁ ଚଞ୍ଚଳ ବିଦାୟ କର...ସେ ଶିଳ୍ପୀ ହେଲେ ବି ମଣିଷ.... ତୂଳିର ଗୋଟାଏ ଗାରରେ ସେ ତୋ ମୁହଁରେ ହସ ଫୁଟେଇଦେଇ ଆଉ ଗୋଟିଏ ଗାରରେ ସେ ତୋ ଆଖିରୁ ଲୁହ ଝରାଇଦେବ.... ତୁ ତାକୁ ଚଞ୍ଚଳ ବିଦାୟ କର.... ଚଞ୍ଚଳ......

## ଷଷ୍ଠ ଦୃଶ୍ୟ

(କୁମାର ସାହେବଙ୍କ ବାସଭବନରେ ଗୋଟାଏ କୋଠରି - ସାଜସଜ୍ଜା କିଛିନାହିଁ କହିଲେ ଚଳେ - ଚଟାଣ ଉପରେ ଗୋଟାଏ ମୃଗ ଛାଲ ବିଛାଇ ବସିଛି ନୀଳା - ତା'ର ପରିଧାନ ସାଧା ସୂତାର ଶାଢ଼ି । ଟିକିଏ ପରେ ଘରକୁ ଅତି ସନ୍ତର୍ପଣ ଭାବରେ ଆସିଲେ କୁମାର - ନୀଳାକୁ ଏ ଅବସ୍ଥାରେ ଦେଖିବାକୁ ସେ ଯେପରି ଆଗରୁ ପ୍ରସ୍ତୁତ ଥିଲେ । ନୀଳା ଭଗବାନ୍‌ଙ୍କୁ ପ୍ରାର୍ଥନା କରି ଗୀତଟି ଗାଉଥାଏ । ଗୀତ ଶେଷରେ କୁମାରଙ୍କୁ ଦେଖି ସେ ଟିକିଏ ସଙ୍କୁଚିତ ହୋଇପଡ଼ିଲା ! କିନ୍ତୁ ପରେ ପରେ ନିଜକୁ ପ୍ରକୃତିସ୍ଥ କରିନେଲା ।)

ନୀଳା - ଆପଣ ଅନ୍ୟାୟ କରିଚନ୍ତି ! (କୁମାର ସ୍ଥିରଦୃଷ୍ଟିରେ ନୀଳା ଆଡ଼େ ଚାହିଁ ରହିଲେ) ମୋର ଅନୁମତି ନ ନେଇ ଆପଣ ଏ ଘର ଭିତରକୁ ଆସିଚନ୍ତି -

କୁମାର - ଆଉ କିଛି କହିବ ?

ନୀଳା - ଯା କହିଚି ତା'ଯଥେଷ୍ଟ ନୁହେଁ ?

କୁମାର - ହୁଁ, କିନ୍ତୁ ଏମିତି ଅନୁମତି ଦେବାପାଇଁ ସ୍ୱାଧୀନତା ତୁମକୁ ଦେଇଥିଲା କିଏ ?

ନୀଳା - ସ୍ୱାଧୀନତା ନୁହେଁ, ସର୍ତ୍ତ ! ଯେକୌଣସି ଅବସ୍ଥାରେ ହେଉନା କାହିଁକି ମୋର ବିନା ଅନୁମତିରେ ଆପଣ ମୋ ସହିତ ଦେଖାକରିପାରିବେ ନାହିଁ; ଏହି ସର୍ତ୍ତ ଆପଣଙ୍କ ସହିତ ମୋର ହୋଇଥିଲାନା ?

କୁମାର - ସେ ସର୍ତ୍ତକୁ ମୁଁ ଅସ୍ୱୀକାର କରେ !

ନୀଳା - ଅସ୍ୱୀକାର ତ କରିସାରିଛନ୍ତି.....

କୁମାର - ନୀଳା !

ନୀଳା - କେତେଥର ମୁଁ ଆପଣଙ୍କୁ କହିଚି..... ଆପଣ ମୋତେ ନୀଳା ବୋଲି ଡାକିବେ ନାହିଁ.....

କୁମାର - ମୁଁ ପୁଣି କହୁଚି ନୀଳା, ଜୀବନଟା ଫାଙ୍କିଫୁଙ୍କି ଉଡ଼େଇ ଦବାର ଜିନିଷନୁହେଁ - ଜୀବନର ତମର ମୂଲ୍ୟ ଅଛି ।

ନୀଳା - ଜୀବନର ମୂଲ୍ୟ ଏ ଜୀବଜଗତରେ ସମସ୍ତଙ୍କର ଅଛି କୁମାର ସାହେବ; କିନ୍ତୁ ସେ ମୂଲ୍ୟ ଦବାର ଅଧିକାର ତ ସମସ୍ତଙ୍କର ନାହିଁ ।

କୁମାର - ଯୁକ୍ତିର ଆଶ୍ରୟ ନେଇ ତୁମେ ଆଉ ବଙ୍କାବାଟରେ ଯାଅନାହିଁ ନୀଳା !

ନୀଳା - ମତେ ବାଟ ଦେଖାଇବା ପାଇଁ ଆପଣଙ୍କର ସାହାଯ୍ୟ ତ ମୁଁ କେବେ ଚାହିଁନାହିଁ ।

କୁମାର - ମୋ ସାହାଯ୍ୟ ତୁମେ ନଚାହିଁପାର; କିନ୍ତୁ ତୁମ ପ୍ରତି ଯେ ମୋର ଗୋଟାଏ ବଡ଼ କର୍ତ୍ତବ୍ୟ ଅଛି - ଏ କଥା ତ ତୁମେ ଅସ୍ୱୀକାର କରିପାରିବ ନାହିଁ ।

ନୀଳା - ଶୁଣିଥିଲି, ଆପଣଙ୍କର ମୋ ପ୍ରତି ସ୍ନେହ ଅଛି, ପ୍ରେମ ଅଛି, ଦୟା, ମାୟା, ମମତା ସବୁ ଅଛି - କିନ୍ତୁ ଆଜି ଏଇ ପ୍ରଥମ ଥର ପାଇଁ ଶୁଣିଲି ଯେ, ମୋ ପ୍ରତି ଆପଣଙ୍କର କର୍ତ୍ତବ୍ୟ ମଧ ରହିଚି -

କୁମାର - ତୁମେ ତ ଜାଣ, ଏଠିକାର ସମସ୍ତେ ଜାଣନ୍ତି ଯେ, ତୁମେ....ତୁମେ.... ମୋର...

ନୀଳା - ଯୁବରାଣୀ ସାହେବା- ଏଇୟାନା ? କିନ୍ତୁ ଏଠାକାର ସମସ୍ତେ ଯାହା ଜାଣନ୍ତି.... ସେ କଥାଟା ଆପଣ ନିଜେ ନିଜ ମୁହଁରେ ଉଚ୍ଚାରଣ କରିପାରିଲେ ନାହିଁ କାହିଁକି ? କିଏ ବାଧାଦେଲା ? କୁହନ୍ତୁ - (କୁମାର ନିରୁତ୍ତର) ଆପଣଙ୍କର ବିବେକ, ଆପଣଙ୍କର ମନୁଷ୍ୟତ୍ୱ ଆପଣଙ୍କୁ ବାଧାଦେଇଚି -

କୁମାର - ମୋ ଭିତରେ ମନୁଷ୍ୟତ୍ୱର ସୃଷ୍ଟି କରି, ତୁମେ ଜୋର୍‌କରି ତୁମ ନିଜ ପକ୍ଷ ସମର୍ଥନ କରୁଚ ଏ ଗୋଟାଏ ତୁମର କେବଳ ଆଶ୍ୱାସନା-

ନୀଳା - ନା - ଆତ୍ମବିଶ୍ୱାସ ।

କୁମାର - ତମେ ମତେ ଚିହ୍ନିନାହଁ ନୀଳା ।

ନୀଳା - ମୁଁ ନିଜକୁ ମୁଁ ଚିହ୍ନିଚି ।

କୁମାର - ନା, ମୋର ଲକ୍ଷ୍ୟ ସାଧନବେଳେ ମୁଁ ଯେତେବେଳେ ନିର୍ମମ ହେବି, ନିଷ୍ଠୁର ହେବି, ଲୁହାର ମଣିଷ ପରି କଠୋର ହେବି - ସେତେବେଳେ ତୁମେ -

ନୀଳା - ମୁଁ ହେବି ଜଳନ୍ତା ନିଆଁ । ମୋ ନିକଟରେ ଆପଣଙ୍କର କୌଣସି ଅସ୍ତିତ୍ୱ ସୁଦ୍ଧା ରହିବ ନାହିଁ ।

କୁମାର - ତମର ଏ ଦୁଃସାହସ ଦେଖି ମୋର ଦୁଃଖ ହେଉଛି ନୀଳା -

ନୀଳା - କାହିଁକି ? ଆପଣଙ୍କ ଘରେ ଆପଣଙ୍କର ବନ୍ଦିନୀ ହୋଇ ରହିଚି ବୋଲି ?

କୁମାର - ଥରକୁ ଥର ମୁଁ ଏଠିକି ଆସିଚି - ଆଉ ଫେରିଚି ଏହିପରି ରୂଢ଼ ଆଘାତ ଘେନି, ଆଜି କିନ୍ତୁ -

ନୀଳା - କୁହନ୍ତୁ, କ'ଣ କରିବାକୁ ଚାହାଁନ୍ତି ?

କୁମାର - ଆଜି ଆଜି, ନା ନୀଳା । ଆଜି ମଧ ମୁଁ ଫେରିଯାଉଚି-

(ପ୍ରସ୍ଥାନୋଦ୍ୟତ)

ନୀଳା - ଶୁଣନ୍ତୁ ! ମୋହନ ଛବି ଖଣ୍ଡିକ ବିକିଥିଲେ ଆଜି ଏ ଅବସ୍ଥା ହେଇନଥାନ୍ତା-

କୁମାର - ଛବିଟା ନବିକି ସେ କ'ଣ ଭୁଲ୍ କରିନାହିଁ ?

ନୀଳା - ଅତି ନିର୍ବୋଧ ଶିଶୁ ଭଳି ସେ ଭୁଲ୍ କରିଛି, ଆଉ ତା'ର ସେ ଭୁଲ୍‌ର ସୁଯୋଗ ନେଇ ଆପଣ କରିଚନ୍ତି ଆଉ ଏକ ମହାଭୁଲ୍ ।

କୁମାର - କ'ଣ ତମେ କହିବାକୁ ଚାହିଁ ?

ନୀଳା - କାରଣ ଜଣେ ସାଧାରଣ ଚୋର ଡକାୟତ ଭଳି ନ ଆଣି ଗୋଟାଏ ଚମତ୍କାର ବୈଜ୍ଞାନିକ ପ୍ରଣାଳୀରେ ମତେ ଆପଣ ଚୋରିକରି ଏଠାକୁ ଆଣିଚନ୍ତି ।

କୁମାର - ବାସ୍ତବିକ ନୀଳା - ତମର ଶିକ୍ଷା ହିଁ ତମର କାଳ ହେଉଚି । ନହେଲେ ଗୋଟାଏ ସାଧାରଣ ଜିନିଷକୁ ତମେ ଏପରି ରଙ୍ଗଦେଇ ଦେଖନ୍ତ କାହିଁକି । ମୋହନ ଚାଲିଗଲା ପରେ ତମେ ଯେତେବେଳେ ଅତି ନିରାଶ୍ରୟା ହୋଇପଡ଼ିଥିଲ - ସେତେବେଳେ ତମେ ଏଠିକି ଆସିଚ, ଏଠି ଆଉ କିଛି ନହେଉ ତମେ ସାମାନ୍ୟ ଆଶ୍ରୟ ତ ପାଇଚ ସାମାନ୍ୟ ଭରସା-

ନୀଳା - ଓଃ....ଆପଣ ଚୁପ୍ କରନ୍ତୁ! ଆଶ୍ରୟ -ଭରସା !! ଜଣେ ଅସହାୟା ନାରୀର ବୋଧହୁଏ ଯା'ଠାରୁ ବଳି ବଡ଼ ଶତ୍ରୁ ଆଉ କେହି ନାହିଁ -

କୁମାର - ତୁମେ ଭୁଲ୍ ବୁଝୁଛ ନୀଳା । ଗୋଟାଏ କଥା ଚିନ୍ତା କରି ଦେଖ - ଜଣେ ଭାଗ୍ୟବାନ୍ ପୁରୁଷର ଯାହାକିଛି ପ୍ରାପ୍ୟ ସେ ସମସ୍ତ ମୋର ଥାଉଥାଉ ମୁଁ କାହିଁକି ତମଠାରେ ନିଜକୁ ଇମିତି ନିଃସହାୟ ଭାବରେ ଅର୍ପଣ କରୁଚି ।

ନୀଳା - ଏ ପ୍ରଶ୍ନର ଉତ୍ତର ମୋଠାରେ ନାହିଁ । ମୁଁ ଖାଲି ଏତିକି ଜାଣେ ଯେ, ଗୋଟାଏ ଅଶୁଭ ମୁହୂର୍ତ୍ତରେ ମୋତେ ଦେଖି ଆପଣଙ୍କ ମନରେ ଯେଉଁ ବିକାର ଜନ୍ମିଥିଲା- ତା'ର ଫଳ ଆଜି ମୁଁ ଭୋଗ କରୁଛି ।

କୁମାର - ତେବେ ତମ ପ୍ରତି ମୋ ମନରେ କୌଣସି କୋମଳ ଅନୁଭୂତିକୁ ତମେ ସ୍ୱୀକାର କରିବନାହିଁ ?

ନୀଳା - ନା!

କୁମାର - ନୀଳା, ତମେ ବିଶ୍ୱାସକର ନୀଳା - ମୋର ଏ କଥାରେ ଆଦୌ ଛଳନାର ସ୍ଥାନ ନାହିଁ । ମୁଁ ସତ୍ୟ-ସତ୍ୟରେ ତମକୁ ମୁଁ ଭଲପାଏ ।

ନୀଳା - ନିର୍ବୋଧତାର ଗୋଟାଏ ସୀମା ଅଛି କୁମାର ସାହେବ! ଏଇ ଗୋଟାଏ କଥା ଆପଣ ମନେରଖନ୍ତୁ ଯେ, ଯେଉଁ ନାରୀ ଆପଣଙ୍କ ଜୀବନକୁ ଧନ୍ୟ କରିବ - ସେ ନାରୀ ମୁଁ ନୁହେଁ - କି ଯେଉଁ ପୁରୁଷ ମୋ ଜୀବନକୁ ଧନ୍ୟ କରିବ - ସେ ପୁରୁଷ ଆପଣ ନୁହଁନ୍ତି ।

କୁମାର - ଅତି ସ୍ପଷ୍ଟଭାବେ ତମର ମନ କଥା ତମେ ଆଜି ଜଣେଇ ଦେଇପାରିଚ ନୀଳା । ତା'ହେଲେ ଆଉ ଟିକେ ସ୍ପଷ୍ଟ କରି କୁହ କ'ଣ ତମେ ଚାହଁ ? କୁହ ଯଦି ତମେ ମୁକ୍ତି

ଚାହଁ ।

ନୀଳା - ମୁକ୍ତି !

କୁମାର - ହଁ ମୁକ୍ତି; ମୁଁ ଜାଣେ ତୁମକୁ ଏଠୁ ମୁକ୍ତ କରିଦେଲେ ମତେ ହୁଏତ ବିପଦର ସମ୍ମୁଖୀନ ହେବାକୁ ପଡ଼ିବ - ତଥାପି ମୁଁ ପ୍ରସ୍ତୁତ ଅଛି ନୀଳା ! କୁହ, ଯଦି ତୁମେ ମୁକ୍ତି ଚାହଁ - (ଏତିକିବେଳେ ନୀଳାର ଅଲକ୍ଷ୍ୟରେ ସେଠାକୁ ଆସିଲେ ଶ୍ରୀମତୀ ଦାସ, କୁମାରଙ୍କ କଥାରେ ତାଙ୍କ ମୁହଁରେ ବିସ୍ମୟର ଛାୟା ।)

ନୀଳା - ମୁକ୍ତି ! ଏଠୁ ମୁଁ ମୁକ୍ତହେବି । ନା-ନା-ନା, ଏଠୁଯାଇ ମୁଁ ପୁଣି ହେବି ନିରାଶ୍ରୟା - ତା'ପରେ ଠିକ୍ ଆପଣଙ୍କ ପରି କେହି ମତେ ଦେବ ଆଶ୍ରୟ, ଏମିତି ଭରସା, ତା'ପରେ ନା-ନା କୁମାର ସାହେବ ! ମୁଁ ମୁକ୍ତି ଚାହେଁନା, ମୁଁ ଚାହେଁନା - ମୁଁ ବୁଝିପାରୁନାହିଁ କ'ଣ ଆଜି ମୋର କାମ୍ୟ - କ'ଣ ମୋର ସମ୍ବଳ -

(କହୁ କହୁ ନୀଳା କାନ୍ଦୁଥିଲା - ଏଇ ସୁଯୋଗରେ ଶ୍ରୀମତୀ ଦାସ ତା'ନିକଟକୁ ଆଗେଇ ଆସି ଅତି ଆଦର ଭଙ୍ଗୀରେ ତାକୁ ନିଜ ଆଡ଼କୁ ଆଉଜାଇ ଆଣିଲେନ - କୁମାର ସେ ଘରୁ ଚାଲିଗଲେ ଶ୍ରୀମତୀ ଦାସଙ୍କ ଇଙ୍ଗିତରେ ।)

ଶ୍ରୀମତୀ - ଏ ପୃଥିବୀରେ ପାଦଟିଏ ଚାଲିବାକୁ ହେଲେ ନାରୀର ପ୍ରଥମ ସମ୍ବଳ ହେଉଚି ପୁରୁଷର ଆଶ୍ରୟ, ପୁରୁଷର ବାହୁଛାୟା (ନୀଳା ନିଜକୁ ତାଙ୍କଠାରୁ ମୁକ୍ତ କରି ଆଣିଲା ।)

ନୀଳା - ଓଃ, ଆପଣ -

ଶ୍ରୀମତୀ - ତମେ ଯେଉଁଠିକି ଯାଅ - ଯେଉଁ ଅବସ୍ଥାରେ ରୁହନା କାହିଁକି, ତମ ଜୀବନର ପୂର୍ଣ୍ଣତା ଆଣିଦେବ ଏକମାତ୍ର ପୁରୁଷ, ସେ କୁମାର ସାହେବ ହୁଅନ୍ତୁ ବା ମୋହନବାବୁ ହୁଅନ୍ତୁ -

ନୀଳା - ସେଦିନ ଆପଣଙ୍କ ଗୋଡ଼ତଳେ ପଡ଼ି କହିଥିଲିନା, ଆଉ ଆପଣ ଏଠିକି ଆସିବେ ନାହିଁ ବୋଲି ?

ଶ୍ରୀମତୀ - ତମେ ମତେ ବିଶ୍ୱାସକର ନୀଳା, ମୁଁ ସବୁବେଳେ ତମର ଶୁଭକାମନା କରିଆସିଚି ।

ନୀଳା - ବଡ଼ଲୋକର ବିଧବା ବୋହୂ ସାଜି ଯେଉଁଦିନ ଆପଣ ମତେ ଆଶ୍ରୟ ଦେଇଥିଲେ, ଭବିଷ୍ୟତ ପାଇଁ ଭରସା ଦେଇଥିଲେ, ସେଦିନ ଏ ସଂସାରରେ ଏକା ଆପଣଙ୍କୁ ହିଁ ମୁଁ ବିଶ୍ୱାସ କରିଥିଲି; କିନ୍ତୁ ଆପଣ କଲେ କ'ଣ ? ଆପଣ ଭଦ୍ରଘରର ସ୍ତ୍ରୀ, ଆପଣଙ୍କର ଶିକ୍ଷା ଅଛି - ସ୍ୱାମୀ ସନ୍ତାନ ନେଇ ଆପଣ ଘର କରୁଚନ୍ତି - ଅଥଚ ଜଣେ ମଦାନ୍ଧ ପୁରୁଷର ଇଙ୍ଗିତରେ ଆପଣ ଆପଣଙ୍କର ନାରୀ ଧର୍ମକୁ ଜଳାଞ୍ଜଳି ଦେଇଦେଲେ କିପରି ? ମୋ ପାଇଁ ଫାନ୍ଦ ପାତିଲାବେଳେ ଆପଣଙ୍କର ସେଇ ନ'ବର୍ଷର ଝିଅଟି କଥା ମନେପଡ଼ିଲା ନାହିଁ । ଛି-ଛି-ଛି ।

(ନୀଳା ଚାଲିଗଲା । ଶ୍ରୀମତୀ ଦାସ ସ୍ତବ୍ଧ ହୋଇ ଠିଆହୋଇଥା'ନ୍ତି । ନୀଳା ଚାଲିଗଲା ପରେ ତାଙ୍କ ଓଠରେ ତାଚ୍ଛଲ୍ୟର ହସ ଖେଳିଗଲା । ଟିକିଏ ପରେ ପୁଣି ଆସିଲେ

କୁମାର - ସେ ଶ୍ରୀମତୀ ଦାସଙ୍କ ଅବସ୍ଥା ଦେଖି କିଛି ନକହି କେବଳ ପଦଚାରଣ କରିବାକୁ ଲାଗିଲେ ।)

ଶ୍ରୀମତୀ - ମୋହନର ଚିନ୍ତା ଏ ପର୍ଯ୍ୟନ୍ତ ଛାଡ଼ିନି ।

କୁମାର - କେବେ ଯେ ଛାଡ଼ିବ ଏ ଆଶା ଆପଣଙ୍କର ଅଛି ?

ଶ୍ରୀମତୀ - କିଏ ଜାଣେ, ପୁରାଣରେ ପଞ୍ଚ ସତୀଙ୍କ କଥା ପଢ଼ିଛି - ଏ ହୁଏତ ଷଷ୍ଠ ସତୀ ହୋଇ ଜନ୍ମ ହୋଇଥିବ; କିନ୍ତୁ କୁମାର ସାହେବ ! ଆପଣଙ୍କର ହେଲା କ'ଣ ? ନୀଳା ନିକଟରେ ଆପଣ ଇମିତି ଦୁର୍ବଳ ହେଇପଡୁଚନ୍ତି କାହିଁକି ?

କୁମାର - ଠିକ୍ ଏଇ ପ୍ରଶ୍ନ ଆପଣଙ୍କୁ ମୁଁ ପଚାରିବି ବୋଲି ଭାବିଥିଲି, କାହିଁକି ମୁଁ ଦୁର୍ବଳ ହେଇପଡୁଚି ? ସେକ୍ସପିଅରଙ୍କ ନାଟକରେ ଜୁଲିଏଟ୍‌କୁ ଲକ୍ଷ୍ୟ କରି ରୋମିଓ କହିଥିଲେ - "The beauty hath made me effiminate"- ମତେ ଏଠି ଦୁର୍ବଳ କରୁଚି କିଏ ? ନୀଳାର ସୌନ୍ଦର୍ଯ୍ୟ ନା ତା'ର ବ୍ୟକ୍ତିତ୍ୱ ?

ଶ୍ରୀମତୀ - କିନ୍ତୁ, ଏଣିକି ଆପଣଙ୍କୁ କଠୋର ହେବାକୁ ପଡ଼ିବ ।

କୁମାର - ୟେ' ଏକାବେଳକେ ପିଲାଖେଳ ପରି କଥା ହେଉଚି ଶ୍ରୀମତୀ ଦାସ - ମୁଁ ବୁଝିପାରୁନାହିଁ, ମୁଁ କିମିତି କ'ଣ କଠୋର ହେବି ?

ଶ୍ରୀମତୀ ଦାସ - ହାତରେ ଚାବୁକ୍ ଧରିବା ପର୍ଯ୍ୟନ୍ତ ଆପଣଙ୍କୁ ଯିବାକୁ ପଡ଼ିବ ।

କୁମାର - ଚାବୁକ୍ । ହାତରେ ଚାବୁକ୍ କରି ମୁଁ ନୀଳାର ମନ ଜୟ କରିବି ?

ଶ୍ରୀମତୀ - ନାରୀ ଚରିତ୍ରର ବିଶେଷତ୍ୱ ତ ସେଇଠି ।

କୁମାର - ଧନ୍ୟ‌ ନାରୀ ଆପଣ; ତୁଳସୀପୁର କୋଠି କଥା ଆପଣଙ୍କର ମନେଅଛି ତ ? ବିଜ୍ଞାପନରେ ଭୁଲି ଆପଣଙ୍କର ଝିଅର ଗୃହଶିକ୍ଷୟିତ୍ରୀ ହେବାପାଇଁ ନୀଳା ଆପଣଙ୍କ ନିକଟକୁ ଆସିଲା - ମାସକୁ ମାତ୍ର ଶହେଟି ଟଙ୍କା ଦରମାରେ ସେ ଆପଣଙ୍କ ଘରେ ରହିବ- ଏତିକିରେ ସେ ଆପଣଙ୍କୁ କୃତଜ୍ଞତା ଜଣାଇବାର ଭାଷା ଖୋଜି ପାଇନଥିଲା । କିନ୍ତୁ ସେଇ ଝିଅ ନୀଳା... ଆଜି ଏଠି ନିର୍ବିକାର ଭାବରେ ଲକ୍ଷ ଲକ୍ଷ ଟଙ୍କାର ମୋହକୁ ପାଦରେ ଏଡ଼ାଇ ଦେଇ ଯାଉଚି । ....ତା'ପ୍‌ରେ ନୀଳା ଜାଣେ, ଏଠି ସେ ବନ୍ଦିନୀ ସେ ଜାଣେ, ଯୁଗଯୁଗାନ୍ତ ବିତିଗଲେ ସୁଦ୍ଧା ତା ନିଜ ଚେଷ୍ଟାରେ ଏଠୁ ସେ ମୁକ୍ତି ପାଇପାରିବ ନାହିଁ । ତଥାପି ସେ ଏଠୁ ମୁକ୍ତି ଚାହେଁନା, ଅଥଚ ଏଠି ମୋରି ଆଶ୍ରୟରେ ରହି ମତେ ଭର୍ତ୍ସନା କରିବାକୁ, ମତେ ଲାଞ୍ଛିତ, ଅପମାନିତ କରିବାକୁ ସେ ଟିକିଏ ସୁଦ୍ଧା କୁଣ୍ଠାବୋଧ କରେନା । ଏହାହିଁ ବୋଧହୁଏ 'ନାରୀ ଚରିତ୍ରର ବିଶେଷତ୍ୱ !'

ଶ୍ରୀମତୀ - ବୁଝିଲି । ତା'ହେଲେ ନୀଳାକୁ ପାଇବାର ଆଶା ସଂପୂର୍ଣ୍ଣରୂପେ ଛାଡ଼ିଦିଅନ୍ତୁ -

କୁମାର - ଏ କଥା ନିଷ୍ପତ୍ତି କରିବା ପୂର୍ବରୁ ମତେ ପୁରୁଷ ଚରିତ୍ର ସମ୍ବନ୍ଧରେ ଆପଣଙ୍କୁ ବୁଝେଇବାକୁ ପଡ଼ିବ - ଆପଣ ଆସନ୍ତୁ । (ଯିବାକୁ ଅଗ୍ରସର ହେଲେ)

ଶ୍ରୀମତୀ - କୁମାର ସାହେବ !

କୁମାର - ନୀଳାର କଥା ଅପେକ୍ଷା ମୋ କଥା ତ ବେଶି କଟୁ ନୁହେଁ ଶ୍ରୀମତୀ ଦାସ, ଯେଉଁ ବାଟରେ ଆପଣ ପାଦ ଦେଇଛନ୍ତି, ସେଥିରେ ଏମିତି କଥା ଶୁଣିବାକୁ ହୁଏ ।

ଶ୍ରୀମତୀ - ଆପଣ ମୋ ପ୍ରତି ଅବିଚାର କରୁଛନ୍ତି କୁମାର ସାହେବ । କେବଳ ମୋ'ରି ସ୍ୱାର୍ଥପାଇଁ କ'ଣ ମୁଁ ଏ ବାଟରେ ପାଦଦେଇଚି ? ଆଉ ସବୁ ଘଟଣା ଥାଉ - ଏଇ ନୀଳା ପାଇଁ ଆପଣଙ୍କ ପ୍ରରୋଚନାରେ ମୁଁ କଟକ ଗଲି । ବହୁ ଚେଷ୍ଟାରେ ଜାଣିପାରିଲି ଯେ, ସେ ଚାକିରି ଚାହେଁ । ତା'ପରେ ମୋ ନିଜ ଦାୟିତ୍ୱରେ ମୁଁ ତାକୁ ଏଠାକୁ ଆଣିଲି... ଅଥଚ ଆଜି ଆପଣ...

କୁମାର - ମତେ କ୍ଷମା କରନ୍ତୁ ଶ୍ରୀମତୀ ଦାସ - ସେଇ ନୀଳାର ଚିନ୍ତାରେ ମୁଁ ଆଜି ସ୍ଥିର ରହିପାରୁନାହିଁ ।

ଶ୍ରୀମତୀ - ସେଇଥିପାଇଁ ମୁଁ କହୁଚି - ନୀଳାର ଔଦ୍ଧତ୍ୟକୁ ଭାଙ୍ଗି ଚୁରମାର କରିଦିଅନ୍ତୁ କିମ୍ବା ଭଲ ପିଲାଟି ପରି ତାକୁ ମୁକ୍ତିଦେଇ ସ୍ୱସ୍ତିରେ ନିଶ୍ୱାସ ମାରନ୍ତୁ.....

କୁମାର - ଆପଣଙ୍କର ଏ ଦୁଇଟା କଥାରୁ ମୁଁ କୌଣସିଟା ରଖିପାରୁନି ଶ୍ରୀମତୀ ଦାସ, ମୋ ଜୀବନର ଏଇ ଅବସ୍ଥାରେ ନୀଳା ହଉଚି ଏକମାତ୍ର ନାରୀ - ଯିଏ ମୋର କାମ୍ୟ ।

ଶ୍ରୀମତୀ - ଓଃ - ଏ ସବୁର ମୂଳରେ ତା'ହେଲେ ସେଇ ନୀଳା ? ଆଉ ଆପଣ ନୀଳାକୁ ପ୍ରକୃତରେ ଭଲପା'ନ୍ତି ?

କୁମାର - ଭଲପାଇବା କଥାଟାର କୌଣସି ମୂଲ୍ୟ ଆପଣଙ୍କ ପାଖରେ ନାହିଁ - ମୁହଁ ଖୋଲି ଏ କଥାଟା କହିବାର ପ୍ରୟୋଜନ ବା କ'ଣ ? ଆପଣ ଏତିକି ଜାଣିରଖନ୍ତୁ - ନୀଳାପାଇଁ ମୁଁ ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିବି ।

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(କଲିକତାରେ ଶଙ୍କରର ରହିବା ଘର - ଗୋଟିଏ ମଧ୍ୟମ ଆକାରର କୋଠରି - ବିଶେଷ ସାବଧାନତା ସହ କୋଠରିଟିକୁ ପରିଷ୍କାର ପରିଚ୍ଛନ୍ନ କରି ରଖିବାର ଚେଷ୍ଟା କରାଯାଇଚି ବୋଲି ଜଣାଯାଉଚି; କିନ୍ତୁ ସମସ୍ତ କୋଠରିରେ ଗୋଟିଏ ବେତର ମୋଢ଼ା ବ୍ୟତୀତ ଅନ୍ୟ କୌଣସି ଉପକରଣ ନାହିଁ । କାନ୍ଥରେ ଗୋଟାଏ ସ୍ଥାନରେ ଭଲ ଫ୍ରେମ୍‌ରେ ବନ୍ଧା ଜଗନ୍ନାଥଙ୍କ ଛବି ଓ କାଳୀଙ୍କ ଛବି ଝୁଲୁଚି । ବେଶ୍ ତତ୍ପରତା ସହିତ ଶଙ୍କର ସେ ଘର ଭିତରକୁ ଆସିଲା ।)

ଶଙ୍କର - (ଅନ୍ତରାଳରେ ଥିବା ଜଣେ ଆଗନ୍ତୁକ ପ୍ରତି ଅଭ୍ୟର୍ଥନା ଭଙ୍ଗୀରେ) ଆସନ୍ତୁ ସାର୍, ଆସନ୍ତୁ - ଟିକିଏ ନଇଁପଡ଼ି - ଆହା ହା - ବାଜିଲା ତ ? (ମଥା ଉପର ଆଉଁସି ଆଉଁସି ଆସିଲେ ଆନନ୍ଦ - ଶଙ୍କର ଖୁବ୍ ବ୍ୟସ୍ତ ହୋଇପଡ଼ିଲା ।) ଏ ଘରବାଲାଠାରୁ ହଜାର ଥର ଶୁଣିଚି ସାର୍ - ଚାରିମହଲା କୋଠା ତିଆରିପାଇଁ ଏ ଘର ନିଅଁ ଦିଆହୋଇଥିଲା-

ଆନନ୍ଦ - ତା'ପରେ ? ଚାରିଫୁଟିଆ ଦରଜା ତିଆରି କରି ସେ ଚାରିମହଲା କଥା ଏକାବେଳକେ ଭୁଲିଗଲା ! ଓଃ - ଏଇଟା ଦରଜା, ନା ପାରାଭାଡ଼ି ମୁହଁ ?

ଶଙ୍କର - ମୁଁ ଭାରି ଦୁଃଖିତ ସାର୍ ! ଖୁବ୍ ଜୋର୍‌ରେ ବାଜିଚି ?

ଆନନ୍ଦ - ଶୁଣ ଶଙ୍କର ! ତୁମର ଏ ଗଳିକୁ ଆସିଲାବେଳେ ମୋର ସେଇ କାଠଗଡ଼ା ସାହି ଗଳିକଥା ମନେପଡୁଥିଲା । ସେଠି ସେଇ ରଘୁବୀର ରାମଚନ୍ଦ୍ରଙ୍କ ଦୟାରୁ ଗୋଡ଼ରେ ଗୋଳି ବାଜିଥିଲା - ଏଠି ଘରବାଲା ଦୟାରୁ ମୁଣ୍ଡରେ ଚୌକାଠ ବାଜିଲା । ଆଚ୍ଛା ଶଙ୍କର, ତୁମ ରାଶି ଆଉ ମୋ ରାଶି ଭିତରେ ଏମିତି କିଛି ଗୋଟାଏ ଯୋଗାଯୋଗ ଅଛି ଯେ, ଯେତେବେଳେ ମୁଁ ତମ ଗଳିକି ଆସିବି ସେତେବେଳେ ମୋ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ କିଛି ନା କିଛି ଗୋଟେ ବାଜିବ -

ଶଙ୍କର - ଆଉ ଲଜ୍ଜା ଦିଅନ୍ତୁ ନାହିଁ ସାର୍ ! ସେଦିନ ଯୋଗକୁ ଆପଣଙ୍କ ସହିତ ପାର୍କରେ ଦେଖାହୋଇଥିଲା ସିନା; କିନ୍ତୁ ଆପଣ ଯେ ଏତେ କଷ୍ଟ କରି ଏ ସନ୍ତସନ୍ତିଆ ଗଳିକୁ ବାଟ ପଚାରି ପଚାରି ଆସିବେ ଏ ଭରସା ମୋର ନଥିଲା । ଆସି ପୁଣି ଏ ଦୁର୍ଯୋଗ...

ଆନନ୍ଦ - ମୋ ଦୁର୍ଯୋଗ କଥା ଭୁଲିଯାଅ ଶଙ୍କର, ତମ ଖବର କୁହ - ଏଇଠି ତା'ହେଲେ ତମର ଆସ୍ଥାନ ?

ଶଙ୍କର - ହଁ ଆଜ୍ଞା ! ଏଇଟା ମୋର ଖାସ୍ କାମେରା ।

ଆନନ୍ଦ - କାମେରା ?

ଶଙ୍କର - କ୍ୟାମେରା କୁହନ୍ତୁ, ଫ୍ଲାଟ୍ କୁହନ୍ତୁ, କୋଠରି କୁହନ୍ତୁ - ସବୁ ମୋର ଏଇ । ଜିନିଷପତ୍ର କିଛିନାହିଁ ବୋଲି ଭାବୁଛନ୍ତି ? ଭର୍ତ୍ତି ଥିଲା ସାର୍ - ଭର୍ତ୍ତି ଥିଲା । ସବୁ ଖାଲିକରି ଦେଇଚି କେବଳ ଆପଣ ଆସିବେ ବୋଲି....

ଆନନ୍ଦ - ମୁଁ ଆସିବି ବୋଲି ?

ଶଙ୍କର - ଦେହରୁ ସବୁକିଛି ବାଦ୍ ଦେଇ ଖାଲି ଫର୍ଦ୍ଦି ଶାଢ଼ି ଖଣ୍ଡିକରେ ଯେପରି ଆଜିକାଲି ଫେସନ୍ ବଢ଼ି ଚାଲିଚି....

ଆନନ୍ଦ - (ବସି) ସେମିତି ଖାଲି ମୋଡ଼ା ଖଣ୍ଡିକରେ ଫେସନ୍ କରି ତୁମେ ମୋ ପାଇଁ ଘର ସଜାଇଚ, ଖୁବ୍ ଭଲ କାମ କରିଚ । ବସିବାକୁ ଭାରି ଆରାମ ଲାଗୁଚି, ଆଚ୍ଛା, ଏ ଝରକାଟା ଖୋଲିବାରେ କିଛି ଆପତ୍ତି ଅଛି ?

ଶଙ୍କର - ନାଇଁ ଆଜ୍ଞା, ଖୋଲି ଦଉଚି । (ଝରକା ଖୋଲିଲା)

ଆନନ୍ଦ - (ଝରକାବାଟେ ଚାହିଁ) ବାଃ, ବାଃ, ଏ ତ ଖାଲି କୋଠରି ଉପରେ କୋଠରି ।

ଶଙ୍କର - ଏ ଏରିୟା - ମାନେ ୩୩ ନମ୍ବର କେରାନୀ ବାଗାନରେ ସର୍ବମୋଟ୍ ପଚିଶଟି କୋଠରି ଅଛି -

ଆନନ୍ଦ - କେବଳ ଓଡ଼ିଆ ବସ୍ତି ?

ଶଙ୍କର - ତା'ହେଲେ ଏଇଟା କଲିକତା ସହର ହବ କିମିତି ? ଆପଣ ହିସାବ କରନ୍ତୁ ମୁଁ କହୁଚି, ପାଞ୍ଚଘର ଓଡ଼ିଆ - ପାଞ୍ଚ ଘର ତେଲୁଗୁ - ପାଞ୍ଚ ଘର ନେପାଳୀ - ପାଞ୍ଚଘର ଭୋଜପୁରୀ - ପାଞ୍ଚ ଘର ଚାଇନା, ଗାଏମୋଟ୍ ପଚିଶଟା ଘର ।

ଆନନ୍ଦ - ଭାଷାସୂତ୍ରେ ପ୍ରଦେଶ ଗଠନର କାର୍ଯ୍ୟ ତ ଏଇଠୁ ଶିଖିବା ଉଚିତ୍ । ଏମିତି ଭାଗବାଣ୍ଟ କରି ରହିଚ କେମିତି ?

ଶଙ୍କର - ଏଠି ସମସ୍ତେ ହୁସିଆର ସାର୍ - ଜଣେ କେହି ଘର ଛାଡ଼ିଲେ, ତା' ଜାତି ଭିତରୁ ଗୋଟିଏ ଆଣି ରଖେଇ ଦେଇଯିବ ।

ଆନନ୍ଦ - ବୁଝିଲି -କିନ୍ତୁ ଏଇ ଯେ ପଞ୍ଚଭାଷୀ, ପଞ୍ଚାଏତ ମେଳା ଏଠି ଚାଲିଚି - କେବେ କେମିତି କଳିତକରାଳ....

ଶଙ୍କର - ହୁଏ - ହୁଏ -ଖୁବ୍ ହୁଏ ସାର୍ । ସମସ୍ତେ ଏକ ଲାଉର ମଞ୍ଜି । ମଣିଷ ଛୁଆ ତ, କଳି ନକଲେ ବଞ୍ଚିବେ କେମିତି ? ହେଲେ ଆମ ଭିତରେ ଗୋଟିଏ ରାଜିନାମା ହେଇଯାଇଚି -

ଆନନ୍ଦ - ରାଜିନାମା ?

ଶଙ୍କର - କଳିହେଲେ - ନିଜ ନିଜ ମାତୃଭାଷାରେ କଳି କରିବାକୁ ହେବ ।

ଆନନ୍ଦ - ବୁଝିପାରିଲି ନାହିଁ!

ଶଙ୍କର - ଧରନ୍ତୁ, ଜଣେ ଓଡ଼ିଆ ଆଉ ଜଣେ ଚାଇନା ଭିତରେ କଳି ହେଲା - ଓଡ଼ିଆ ଓଡ଼ିଆରେ ଗାଳିଦବ - ତେଲୁଗୁ ତେଲୁଗୁରେ ଗାଳିଦେବ । ନିଜ ମନର ଓର୍‌ମାନ

ମେଣ୍ଟାଲ ମନଇଚ୍ଛା ଦୁହେଁ ଦୁହିଁଙ୍କୁ ଗାଳିଦେବେ କିନ୍ତୁ କେହି କାହା କଥା ବୁଝିପାରିବେ ନାହିଁ - ଫଳରେ କଳି ବେଶି ଦୂର ନ ଆଗେଇ ଆପେ ଆପେ ଭାଙ୍ଗିଯିବ ।

ଆନନ୍ଦ - ମୁଁ ଆଶ୍ଚର୍ଯ୍ୟ ହେଉଚି ଶଙ୍କର, ପୃଥିବୀ ପଞ୍ଚାଏତ ତୁମର ଏ ବ୍ୟବସ୍ଥା ଅନୁକରଣ ନକରୁଚି କାହିଁକି ? ତମେ ଗୋଟାଏ କାମ କର - ବ୍ୟବସ୍ଥାର ଗୋଟାଏ ନକଲ ତମେ ଜାତିସଂଘ ଅଫିସ୍‌କୁ ପଠେଇଦିଅ, ସେଠି ଇଏ ଖୁବ୍ କାମ ଦେବ ।

ଶଙ୍କର - ମା' କାଳୀଙ୍କ ଦୟା.....

ଆନନ୍ଦ - ହଁ - ସବୁତ ହଉଚି- ତମ ନିଜ ଖବର କ'ଣ ?ମାନେ କଲିକତାରେ ରହି ତମେ କ'ଣ କରୁଚ ?

ଶଙ୍କର - ଶୁଣନ୍ତୁ ଆଜ୍ଞା, କଲିକତାରେ ରହି କିଏ କ'ଣ କରୁଚି ନକରୁଚି - ଏକଥା ପଚାରିବାଟା.....

ଆନନ୍ଦ - ଗୋଟାଏ ବୋକାମି ! !

ଶଙ୍କର - ଆପଣ ବୁଝୁନାହାନ୍ତି ସାର୍.....

ଆନନ୍ଦ - ମୁଁ ଠିକ୍ ବୁଝିଛି ଶଙ୍କର - କୁହ, ଆଜିକାର ଏ ବ୍ୟବସ୍ଥା କ'ଣ ?

ଶଙ୍କର - ଗୋଟାଏ 'ଭେରାଇଟି ସୋ'ର ବ୍ୟବସ୍ଥା କରୁଚି ।

ଆନନ୍ଦ - କ'ଣ ଚାଇନାଠାରୁ ଆରମ୍ଭ କରି ଭୋଜପୁରୀ ପର୍ଯ୍ୟନ୍ତ ସବୁ ଭେରାଇଟିର ଲୋକଙ୍କୁ ନେଇ ?

ଶଙ୍କର - ନାଇଁ ସାର୍, ଏଇଟା ଆମର ନିଜର - ଏଇ ଶନିବାର ଦିନ 'ସୋ' ଦିଆଯିବ - ପାଣ୍ଠି ଯାହା ଉଠିବ.....

ଆନନ୍ଦ - ନିଶ୍ଚୟ କୌଣସି ମହତ୍ କାର୍ଯ୍ୟରେ ଲାଗିବ - ଏଇୟା ନା ?

ଶଙ୍କର- ସେଇ ଟଙ୍କାତୋଳାଙ୍କର ଯାହା ଇଚ୍ଛା । ଆପଣ....

ଆନନ୍ଦ - ମୁଁ ନିଶ୍ଚୟ ଆସିବି - ଯଦି ସୁବିଧା ହେବ ସାଥିରେ କୁମାର ସାହେବଙ୍କୁ ମଧ ନେଇଆସିବି - ତାଙ୍କୁ ତ ତମେ ଜାଣ ?

ଶଙ୍କର - ନାଁ ଶୁଣିଚି, କେବେ ଦେଖିନି - କ'ଣ କରନ୍ତି ସେ ଏଠି ?

ଆନନ୍ଦ - ତମ ନିଜ କଥା ତମେ ଭୁଲିଯାଉଚ ଶଙ୍କର - ଏଇଟା କଲିକତା ସହର....

ଶଙ୍କର - ଭୁଲ୍ ହୋଇଗଲା ସାର୍ !

ଆନନ୍ଦ - ଆଚ୍ଛା; ମୁଁ ତା'ହେଲେ ଆସେ -

ଶଙ୍କର - କୁଆଡ଼େ ଆଜ୍ଞା ?

ଆନନ୍ଦ - ଆଉ ପୁଣି କ'ଣ ?

ଶଙ୍କର - ସେଦିନ ତ ଦେଖିବେ ଆଜି ଟିକେ ରିହାରସେଲ୍‌ଟା ଦେଖିଯାଆନ୍ତୁ ।

ଆନନ୍ଦ - କ'ଣ ଏଇଠି ?

ଶଙ୍କର- ହଁ, ଟିକିଏ ବସନ୍ତୁ - ମୁଁ ଆସୁଚି, (ଶଙ୍କର ଚାଲିଗଲା - ଆନନ୍ଦ ଝରକା ପାଖରେ

ଠିଆହୋଇଥା'ନ୍ତି - କିଛି ସମୟ ପରେ ଶଙ୍କର ଫେରିଆସିଲା) ସବୁ ପ୍ରସ୍ତୁତ ସାର୍...

ଆନନ୍ଦ - ଗୁହ ଶଙ୍କର - ମୁଁ ଏଠି ଗନ୍ଧ ଉପଭୋଗ କରୁଚି -

ଶଙ୍କର - ଗନ୍ଧ.....

ଆନନ୍ଦ - ତୁମ ଭେରାଇଟି ସୋ ଦେଖିବା ପୂର୍ବରୁ ମୁଁ ଭେରାଇଟି ଗନ୍ଧ ଆଘ୍ରାଣ କରୁଚି । ସଢ଼ା ଇଲିସି ମାଛର ଗନ୍ଧ, ପୋଡ଼ା ଶୁଖୁଆର ଗନ୍ଧ - ମଦ ଗନ୍ଧ, ଅତର ଗନ୍ଧ, ଦୁର୍ଗନ୍ଧ ଗନ୍ଧ, ସୁଗନ୍ଧ ସବୁ କିଛିର ସମାହାର ହେଇଚି ଏଠି - ଆଖି, କାନ, ନାକ, ସମସ୍ତଙ୍କ ପାଇଁ ତୁମେ ଆହାର ସଂଗ୍ରହ କରିପାରିଚ ଶଙ୍କର; ତମକୁ ଧନ୍ୟବାଦ ।

(ନୃତ୍ୟ ଗୀତ ଆରମ୍ଭ ହୋଇ କିଛି ସମୟ ପରେ ଶେଷ ହେଲା - ଶସ୍ତା, ସିନେମାସୁଲଭ; କିନ୍ତୁ ଚିତ୍ତାକର୍ଷକ ନୃତ୍ୟ ଗୀତ । ଶଙ୍କର ବ୍ୟତୀତ ଅନ୍ୟମାନେ ଚାଲିଗଲେ ।)

ଶଙ୍କର - କେମିତି ଦେଖିଲେ ସାର୍ ?

ଆନନ୍ଦ - ଯେମିତି ଦେଖିବାର ଆଶା ନେଇ ଦେଖୁଥିଲି ଠିକ୍ ସେମିତି ଦେଖିଲି ।

ଶଙ୍କର - ତା' ହେଲେ ମନ ମାନିଲା କି ନାହିଁ କୁହନ୍ତୁ ?

ଆନନ୍ଦ - ମନ ଯାଇଁ କେଉଁ ଅତଳ ଗହ୍ୱରରେ - ତା' ପାଇଁ ତୁମେ ବ୍ୟସ୍ତ କାହିଁକି ? ଭାନୁମତୀର କୁହୁକ ଆଣି ଦେଖଣାହାରୀଙ୍କ ଆଖିରେ ଅଞ୍ଜନ ଲଗାଇ ଛାଡ଼ିଦିଅ - ସେଥିରେ ସେମାନେ କୃତାର୍ଥ - ଆଉ ତମ ବାକ୍ସ ଭର୍ତ୍ତି ।

ଶଙ୍କର - ଆପଣ ନମ୍ବର ୱାନ୍ କଥା କହୁଚନ୍ତି ସାର୍ !

ଆନନ୍ଦ - ଆଚ୍ଛା, ବିଦାୟ ନେବା ଆଗରୁ ତୁମକୁ ଆଉ ଥରେ ଧନ୍ୟବାଦ ଜଣାଉଚି ଶଙ୍କର । ହଁ, ତୁମ ମୋହନର ଖବର କ'ଣ - କେଉଁଠି ରହୁଚି ସେ ?

ଶଙ୍କର - କଲିକତାରେ ରହୁଚି; କିନ୍ତୁ ତା କଥା ମତେ ପଚାରନ୍ତୁ ନାହିଁ ସାର୍ - ସେଇଟା ଗୋଟାଏ ଭାଗାବଣ୍ଡ୍ । ଭଗବାନ୍ ସେଇଟାକୁ କାହିଁକି ମଣିଷ ଜନ୍ମ ଦେଇଥିଲେ କେଜାଣି । ନୀଳା ପରି ଝିଅକୁ ସେ ଛାଡ଼ି ପଳେଇ ଆସିପାରିଲା ?

ଆନନ୍ଦ - ନୀଳା କାହିଁ....

ଶଙ୍କର - ନୀଳା ! (ଛଳଛଳ ଆଖିରେ ଆନନ୍ଦଙ୍କୁ ଚାହିଁ ହଠାତ୍ ଉଚ୍ଛ୍ୱସିତ ହେଇପଡ଼ିଲା) ଆପଣଙ୍କ ପାଦଛୁଇଁ ନିୟମ କରୁଚି ସାର୍, ନୀଳାପାଇଁ ଏପର୍ଯ୍ୟନ୍ତ ମୋର ହାର୍ଟ୍‌ରେ.... ମୋର ଏଇ ହାର୍ଟ୍‌ରେ ଆସନ ଖାଲିପଡ଼ିଛି - କିନ୍ତୁ ସେ କାହିଁ ? ଏଥର କଟକ ଯାଇ ଯାହା ଶୁଣିଆସିଲି !! ଓଃ ସେଇ ଭାଗାବଣ୍ଡ ମୋହନ ଭାଇଟାପାଇଁ.... ସିନା !! (ତା କଣ୍ଠ ରୁଦ୍ଧ ହେଇଆସିଲା)

ଆନନ୍ଦ - (ଶଙ୍କର କାନ୍ଧରେ ହାତରଖି) ନୀଳାପାଇଁ ତମେ ଖୁବ୍ ଚିନ୍ତା କରୁଚ ଶଙ୍କର -

ଶଙ୍କର - (କିଛି କହିପାରିଲା ନାହିଁ - ଖାଲି ବୋକାଙ୍କ ଭଳି ଆନନ୍ଦ ମୁହଁକୁ ଚାହିଁ ରହିଲା ।)

ଆନନ୍ଦ - ଆଚ୍ଛା, ମୁଁ ତାହାହେଲେ ଆସୁଚି - (ଆନନ୍ଦ ବିଦାୟ ନେଲେ - ଶଙ୍କର ଅନ୍ୟମନସ୍କ ଭାବରେ ତାଙ୍କୁ ନମସ୍କାର କଲା ।)

## ଦ୍ୱିତୀୟ ଦୃଶ୍ୟ

(କୁମାର ସାହେବଙ୍କ ବୈଠକଖାନା - କୁମାର ଫୋନ୍ ଧରି ଠିଆହୋଇଛନ୍ତି)

କୁମାର - କୁମାର ସ୍ପିକିଙ୍ଗ୍ - କିଏ ? ଅରୁଣା ! ଅନେକ ଦିନପରେ ଯେ ? ନମସ୍କାର - ନମସ୍କାର ! ବିବାହ କରି ଏକାବେଳକେ ଭୁଲିଯାଇଥିଲା ନା ? ହଁ ହଁ, ତା ହବାର କଥା...ଆଉ ଖବର କ'ଣ (ଅସ୍ଥିର ହୋଇ) ଏଁ ତୁମର ସ୍ୱାମୀ ? କେବେ ? ମୁଁ ବିଶ୍ୱାସ କରିପାରୁନାହିଁ । ହଁ, ହଁ, ମିସେସ୍ ଦାସଙ୍କ ଘରକୁ ଯାଉଚ ? ଆଚ୍ଛା ତୁମେ ବର୍ତ୍ତମାନ ରହୁଚ କେଉଁଠି ? ଫୁଟପାଥ୍‌ରେ.....(ବାହାରୁ ଆସିଲେ ଆନନ୍ଦ)

ଆନନ୍ଦ - ଫୁଟ୍‌ପାଥ୍ - ଫୁଟ୍‌ପାଥ୍....ଏ କଲିକତାର ଲୋକଙ୍କୁ ଫୁଟ୍‌ପାଥ୍ ହିଁ ବଞ୍ଚାଇ ରଖିଚି........

କୁମାର - ଫୁଟ୍‌ପାଥ୍ ସମ୍ବନ୍ଧରେ ହଠାତ୍ ତଥ୍ୟ କାହିଁକି ?

ଆନନ୍ଦ - ଘରୁ ବାହାରି ଫୁଟ୍‌ପାଥ୍‌ରେ ଗୋଡ଼ ଦେଲାକ୍ଷଣି ସତେଯେପରି ସେମାନଙ୍କ ଦେହରେ ନୂଆ ଜୀବନ ଖେଳିଯାଉଚି..... ଚାଲିବାର ତ କାହାରିକୁ ମୁଁ ଦେଖୁନି.... ଉନ୍ମାଦ ପରି ସମସ୍ତେ ଖାଲି ଧାଇଁଚନ୍ତି, ତାହାରି ଭିତରେ କିଣାବିକା ବି ଚାଲିଚି..... ଖିଆପିଆ ବି ଚାଲିଚି....ପକେଟ୍ ଖାଲି ହେଉଛି ସେଇଠି, ପକେଟ୍ ଭର୍ତ୍ତି ହେଉଚି ସେଇଠି । ଫୁଟ୍‌ପାଥ୍‌ରେ ଚାଲୁ ଚାଲୁ ପ୍ରେମରେ ପଡୁଛନ୍ତି.... ପ୍ରେମରୁ ତଡ଼ାଖାଇ ପୁଣି ଆସି ହାଜର ହେଇଚନ୍ତି ସେଇ ଫୁଟ୍‌ପାଥ୍‌ରେ....

କୁମାର - ଫୁଟ୍‌ପାଥ୍‌ର ତା'ହେଲେ ଏ ମହାତ୍ମ୍ୟ ?

ଆନନ୍ଦ - ଫୁଟ୍‌ପାଥ୍‌ରେ ନଥିଲେ ଏସବୁ ସମ୍ଭବ ହୁଅନ୍ତା କିପରି ? ସମସ୍ତେ ତ ଟ୍ରାମ୍ ତଳେ, ମଟର ତଳେ ଚାପାପଡ଼ି ମରନ୍ତେ । ଫୁଟ୍‌ପାଥ୍ ହିଁ ଏମାନଙ୍କୁ ବଞ୍ଚାଇ ରଖିଚି - ହଁ, କୁମାର ସାହେବ, ଆଜି ତମର ସେଇ ମୋହନ ସାଙ୍ଗରେ ଦେଖାହୋଇଗଲା-

କୁମାର - (ଟିକିଏ ଉଦ୍‌ବିଗ୍ନ ହେଲାପରି) କେଉଁଠି ?

ଆନନ୍ଦ - ଆଉ କେଉଁଠି ? ସେଇ ଫୁଟ୍‌ପାଥ୍‌ରେ !..... ଏଠିକି ଡାକିଲି, ଆସିଲାନାହିଁ ?

କୁମାର - ସେ ଛବିଟା ?

ଆନନ୍ଦ - ସେଇ ପୁରୁଣା କଥା - ଛବିଟା ବିକିବ କାହିଁକି ?

କୁମାର - କାହିଁକି ? ସେ ଝିଅଟାପାଇଁ ତ ?

ଆନନ୍ଦ - ହଁ, ଅଥଚ ସେ ଯାଇଁ କେଉଁଠି ଚାକିରି କଲାଣି ।

କୁମାର - କିଏ ମୋହନ କହୁଥିଲା ?

ଆନନ୍ଦ - ହଁ.... ।

କୁମାର - ତେବେ ବି ସେ ଛବିଟା ବିକିବ ନାହିଁ ?

ଆନନ୍ଦ - ନା.... ।

କୁମାର - ମୋହନ ତା'ହେଲେ ଏଇ କଲିକତାରେ ରହୁଚି ?

ଆନନ୍ଦ - ହଁ.... ।

କୁମାର - ତା ବସା ଠିକଣା ତୁମେ ଜାଣ ?

ଆନନ୍ଦ - ନା ।

କୁମାର - ଗୋଟାଏ ଛବି ପାଇଁ.... ଗୋଟାଏ ଲୋକ ଏପରି ପାଗଳ ହୋଇଯାଇପାରେ ।

ଆନନ୍ଦ - କାହା କଥା ତୁମେ କହୁଚ ? ଛବି ପାଇଁ ତୁମେ ପାଗଳ ନା ମୋହନ ପାଗଳ ?

କୁମାର - ଛବିଟାପାଇଁ ମୁଁ ଅର୍ଡ଼ର ଦେଇଥିଲି.....ଛବିଟା ମୋର ହବାର କଥା, ମୁଁ ସେଇ ମୋହନ କଥା କହୁଥିଲି.....

ଆନନ୍ଦ - ବ୍ୟବସାୟ, ବାଣିଜ୍ୟ, ସେୟାର୍ ମାର୍କେଟ୍, ଟଙ୍କା ପଇସା, କ୍ଲବ୍, ହୋଟେଲ୍ ଏସବୁରେ ଚବିଶ ଘଣ୍ଟା ବୁଡ଼ିରହି ତୁମକୁ ବେଳ ମିଳୁଛି କିମିତି ଏସବୁ କଥା ଭାବିବା ପାଇଁ ?

(କୁମାର ଯିବାକୁ ଉଦ୍ୟତ ହେଲେ) ଏ କ'ଣ ?

କୁମାର - ମୁଁ ଏଇ ଅଳ୍ପ ସମୟ ଭିତରେ ଫେରିବି - ହଁ, ସେମାନଙ୍କୁ ତୁମେ ଆଜି ଆସିବାପାଇଁ କହିଚନା ?

ଆନନ୍ଦ - ସମୟ ତ ହୋଇଗଲା ପ୍ରାୟ !

କୁମାର - ଆସିଲେ ସେମାନଙ୍କୁ ଉପରକୁ ପଠାଇଦେବ - ସବୁ ବନ୍ଦୋବସ୍ତ ହୋଇଚି....

(କୁମାର ଚାଲିଯିବା ପରେ ଆନନ୍ଦ ଯେପରି ମହାଅଡୁଆରେ ପଡ଼ିଲେ, କାରଣ, କରିବାଭଳି କାମ ହାତରେ କିଛିନାହିଁ । ହଠାତ୍ ତାଙ୍କର ଦୃଷ୍ଟିପଡ଼ିଲା ଷ୍ଟାଣ୍ଡ ଉପରେ ଥୁଆହୋଇଥିବା ମୁଗୁନିପଥରରେ ତିଆରି ଗୋଟିଏ ବିବସନା ନାରୀର ଛୋଟ ମୂର୍ତ୍ତି ଉପରେ - ମୂର୍ତ୍ତିଟି ଉଠାଇଆଣି କିଛି ସମୟ ଦେଖିଲେ ।)

ଆନନ୍ଦ - (ନାଟକୀୟ ଭଙ୍ଗୀରେ) ତନ୍ୱୀ, ଶ୍ୟାମା, ଶିଖରୀଦର୍ଶନା - କିଏ ତୁମେ ପାଷାଣୀ ଷୋଡ଼ଶୀ ?

(ପାଖ ବାରଣ୍ଡାରେ ଚାଲିଯାଉଥିବା ଜଣେ ଦାସୀ ଆନନ୍ଦ କଥା ଶୁଣି ପରଦା ଆଡ଼େଇ ଆସିଲା - ତା' ନାଁ ଷୋଡ଼ଶୀ । ନାମ ସହିତ ବୟସର ସାମଞ୍ଜସ୍ୟ ରହୁଚି..... ବେଶଭୂଷା ବେଶ୍ ପରିଷ୍କାର ।)

ଷୋଡ଼ଶୀ - ମତେ ଡାକିଲେ ?

ଆନନ୍ଦ - (ଚମକି) ଏଁ....

ଷୋଡ଼ଶୀ - ମୋ ନାଁ ଷୋଡ଼ଶୀ, ମତେ ଡାକିଲେ ?

ଆନନ୍ଦ - (ଆନନ୍ଦ ବିସ୍ମୟାଭିଭୂତ ହେଲାପରି ଥରେ ମୂର୍ତ୍ତିଟିକୁ ଓ ଥରେ ଷୋଡ଼ଶୀକୁ ତୁଳନାତ୍ମକ ଦୃଷ୍ଟିରେ ଚାହିଁଥା'ନ୍ତି)

ନା-ନା-ତୁମକୁ ମୁଁ ଡାକିନାହିଁ; କିନ୍ତୁ ଡାକିବା କଥା ଯେବେ କହୁଚ- ମୁଁ ଡାକିଚି ଏଇ ପଥର ପ୍ରତିମାଟିକୁ, ମାତ୍ର ତୁମେ !

ଷୋଡ଼ଶୀ - ମୁଁ ଏଠାକାର ଜଣେ ଦାସୀ ।

ଆନନ୍ଦ - ଦାସୀ ? ନା ମୁଁ ତୁମକୁ ଡାକିନାହିଁ ।

ଷୋଡ଼ଶୀ - ମତେ ଯେମିତି ଜଣାଗଲା..... (ଚାଲି ଯାଉଥିଲା)

ଆନନ୍ଦ - ଆଚ୍ଛା ଶୁଣ! ତୁମେ ଗୋଟିଏ କାମ କରିପାରିବ ?

ଷୋଡ଼ଶୀ - କହନ୍ତୁ ?

ଆନନ୍ଦ - ତୁମେ ଟିକେ ଉପରକୁ ଯାଅ!

ଷୋଡ଼ଶୀ - ଉପରକୁ ?

ଆନନ୍ଦ - ହଁ ।

ଷୋଡ଼ଶୀ - ହୁକୁମ୍ ନାହିଁ ।

ଆନନ୍ଦ - ତମେ ଏଠାକାର ଦାସୀ ପରା!

ଷୋଡ଼ଶୀ - ମୁଁ ଏ ମହଲାର ଦାସୀ, ଉପର ମହଲା ଯିବାକୁ ମୋର ହୁକୁମ ନାହିଁ ।

ଆନନ୍ଦ - କାହାର ହୁକୁମ ?

ଷୋଡ଼ଶୀ - ଜାଣେନା ?

ଆନନ୍ଦ - ଉପର ମହଲାରେ କିଏ ରହନ୍ତି ଜାଣ ?

ଷୋଡ଼ଶୀ - ନା, ଜାଣେନା ।

ଆନନ୍ଦ - ବେଶ୍ ଏକ ଅଜଣା ରାଜ୍ୟରେ ତ ଅଛ! କି କି କାମ ଏଠି କର ?

ଷୋଡ଼ଶୀ - କାମ ? କି କାମ ? ଖାଏ, ପିଏ, ଶୁଏ, ତାସ୍ ଖେଳେ.....

ଆନନ୍ଦ - ଅଥଚ ତୁମେ ଗୋଟିଏ ଦାସୀ ?

ଷୋଡ଼ଶୀ - ବାଃ, ମାସକୁ ଦରମା ନଉଚି, ଦାସୀ ନୁହେଁ ? କୁହନ୍ତୁ ଆପଣଙ୍କର କି କାମ ଅଛି କରିଦେବି ।

ଆନନ୍ଦ - ତମ କଥା ଶୁଣି ମୁଁ ମୋ କଥା ଭୁଲିସାରିଲିଣି - ତୁମେ ଯାଅ- ହଁ ଶୁଣ, ହାତରେ ସେଇଟି କ'ଣ ?

ଷୋଡ଼ଶୀ - ତାସ୍!

ଆନନ୍ଦ - ବାସ୍ - ସେଇ କାମଟି କର । ତାସ୍ ମୁଠାଟି ଦେଇଦିଅ, ଯାଅ -(ତାସ୍ ମୁଠାଟି ଦେଇ ଷୋଡ଼ଶୀ ଚାଲିଗଲା) ଏ ତ ଏକ ବିରାଟ ନୋ ନଟ୍ (know not) ରାଜ୍ୟ ମୁଁ ଦେଖୁଛି । ଏଠି ସମସ୍ତେ ଅଛନ୍ତି କିନ୍ତୁ କେହି କିଛି ଜାଣନ୍ତି ନାହିଁ ।

(ବିରକ୍ତ ହୋଇ କିଛି ସମୟ ପରେ ବସି ତାସ୍ ଖେଳିଲେ, ଏତିକିବେଳେ ଆସିଲେ ଶ୍ରୀମତୀ ଦାସ । ଆନନ୍ଦ ତାଙ୍କୁ ଦେଖି ନଦେଖିଲା ପରି ଖେଳୁଥା'ନ୍ତି ।)

ଶ୍ରୀମତୀ - ମୁଁ ଜାଣେ ପରା ?

ଆନନ୍ଦ - କ'ଣ ଜାଣନ୍ତି ଆଜ୍ଞା ? ନାଟିସ୍ ନା ଗୋଲାମଚୋରୀ!

ଶ୍ରୀମତୀ- (କେବଳ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହିଲେ)

ଆନନ୍ଦ - ଓଃ, ଆପଣ ତା'ହେଲେ ଫ୍ଲାସ୍ ଜାଣନ୍ତି - ନ ହେଲେ ପୋକାର୍ ?
ଶ୍ରୀମତୀ - ମୁଁ ଜାଣେ, ମୁଁ ଏଠିକି ଆସିଲେ ଆପଣ ଏମିତି ସବୁ ଉଦ୍ଭଟ କଥା କହିବେ ।
ଆନନ୍ଦ - ତା'ହେଲେ ଏଠିକି ଆସିବା ବନ୍ଦ କରିଦିଅନ୍ତୁ ।
ଶ୍ରୀମତୀ - ତା' ପୂର୍ବରୁ ଆପଣ ଦୟାକରି ଏ ତାସ୍ ଖେଳଟା ବନ୍ଦ କରିଦେବେ କି ?
ଆନନ୍ଦ - କାହିଁକି ଆଜ୍ଞା, ଯେଉଁ ଘରେ ତାସ୍ ଖେଳି ଖେଳି ଦାସୀ ଚାକରମାନେ ମାସକୁ ମାସ ଦରମା ନିଅନ୍ତି, ମୁଁ ସେଠି ଯଦି ବିନା ପାରିଶ୍ରମିକରେ ତାସ୍ ଖେଳେ....
ଶ୍ରୀମତୀ - କରନ୍ତୁ ଆପଣଙ୍କର ଯାହା ଇଚ୍ଛା - ମୋର କ'ଣ ଅଛି ? (ଉପରକୁ ଚାଲିଯାଉଥିଲେ)
ଆନନ୍ଦ - ଆପଣ ଉପରକୁ ଯାଉଛନ୍ତି ।
ଶ୍ରୀମତୀ - ହଁ.....
ଆନନ୍ଦ - ଦୟାକରି ଦେଖିବେ ଉପରେ ସବୁ ବ୍ୟବସ୍ଥା ହେଇଚି କି ନାହିଁ ?
ଶ୍ରୀମତୀ - ବ୍ୟବସ୍ଥା- କି ବ୍ୟବସ୍ଥା ?
ଶ୍ରୀମତୀ - ନାଚ !
ଶ୍ରୀମତୀ - ନାଚ - କିଏ ନାଚିବେ ।
ଆନନ୍ଦ - ଶ୍ରୀମାନ୍ ଅରୁଣ ଆଉ ଆଉ ଶ୍ରୀମତୀ ମୁକ୍ତା, ସୁନ୍ଦର ଯୋଗଯୋଗ ହେଇଚି ସେ ଦୁହିଁଙ୍କର । କଲିକତାର ରାସ୍ତାରେ ବୁଲି ସେ ଝିଅଟି ଯେଉଁ ନାଚ ନାଚେ- ଓଃ- ଅପୂର୍ବ, ଅପୂର୍ବ - ସେମାନଙ୍କୁ ନିମନ୍ତ୍ରଣ କରିଚି ନାଚିବାପାଇଁ । ଏଇ ବର୍ତ୍ତମାନ ଆସି ପହଞ୍ଚିଯିବେ ।
ଶ୍ରୀମତୀ - ଓଃ, ସେଇ ଦୁହେଁ ତେବେ ନାଚିବେ ।
ଆନନ୍ଦ - ହଁ.....
ଶ୍ରୀମତୀ - କାହିଁକି ?
ଆନନ୍ଦ - ନାଚି ଜାଣନ୍ତି ନାଚିବେ - ଏଥିରେ କାହିଁକି ଆଉ କ'ଣ ?
ଶ୍ରୀମତୀ - ନାଚି ଜାଣନ୍ତି କି ନାଚ ? କଥକଲି, ଭାରତନାଟ୍ୟମ, ମଣିପୁରୀ ନା ଫକ୍ସଟଟ୍ ?
ଆନନ୍ଦ - ଫକ୍ସଟଟ୍ - ଜ୍ୟାକେଲଟ୍ରଟ୍ - ଡଗଗ୍ରଟ୍ - ମଣିପୁରୀ - ଛାଣିପୁରୀ, ଏସବୁ ମିଶାଇଲେ ଯେଉଁ ନାଚ ହେବ, ସେଇ ନାଚ ସେ ଜାଣନ୍ତି । ବୁଝିଲେ ?
ଶ୍ରୀମତୀ - ବାସ୍ତବିକ୍ ମୁଁ ବୁଝିପାରୁନାହିଁ ଆପଣ କ'ଣ ଚାହାନ୍ତି ?
ଉପରେ ନାଚ ଦେଖିବ କିଏ ?
ଆନନ୍ଦ - କିଏ ଆଉ ଦେଖନ୍ତା ?
ଶ୍ରୀମତୀ - କୁମାର ସାହେବ କାହାନ୍ତି ? କିଏ ବ୍ୟବସ୍ଥା କରିଚି ?
ଆନନ୍ଦ - ଏ ବ୍ୟବସ୍ଥା ଯିଏ କରିବାର କଥା କରିଚି - ଯାହାପାଇଁ ହବାର କଥା ହେଇଚି- ଏଥିରେ ତୃତୀୟ ପୁରୁଷର ସ୍ଥାନ ନାହିଁ । (କୁମାର ସାହେବ ଆସିଲେ)
କୁମାର - ରାୟ - ମିସେସ୍ ଦାସଙ୍କ ସହିତ ମୋର କେତେଟା କଥା ଅଛି....

ଆନନ୍ଦ - ନିଶ୍ଚୟ- ନିଶ୍ଚୟ । ମୋର ଏଠି ଆଉ ରହିବା ଆଦୌ ଦର୍କାର ନାହିଁ - (ଉପରକୁ ଗଲେ)

ଶ୍ରୀମତୀ - କ'ଣ କଥା ଥିଲା ପରା ?

କୁମାର - ଅରୁଣାର ଖବର କ'ଣ ?

ଶ୍ରୀମତୀ - ଅରୁଣା ? (ମନେ ମନେ ଆତଙ୍କିତା ହୋଇଉଠିଲେ)

କୁମାର - ତା' ସ୍ୱାମୀ କାହିଁ ?

ଶ୍ରୀମତୀ - ମୁଁ ଜାଣେନା ତ....

କୁମାର - କାଲି ରାତିରେ ଅରୁଣାର ସମସ୍ତ ଅଳଙ୍କାରପତ୍ର ଆଉ ଟଙ୍କାପଇସା ଧରି ତା'ର ସ୍ୱାମୀ କଲିକତା ଛାଡ଼ି ଚାଲିଯାଇଛି, ଏକଥା ଆପଣ ଜାଣନ୍ତି ନାହିଁ ?

ଶ୍ରୀମତୀ - ନା ।

କୁମାର - ଅରୁଣାର ସ୍ୱାମୀର ପ୍ରକୃତ ନାଁ 'ଜଗଦୀଶ' ନୁହେଁ - 'ରାମନାରାୟଣ' । ଅରୁଣାକୁ ବିବାହ କରିବା ପୂର୍ବରୁ ସେ ବିବାହ କରିଥିଲା - ତା'ର ପ୍ରଥମ ସ୍ତ୍ରୀ ବର୍ଦ୍ଧମାନରେ ଅଛି; ଏ କଥା ଆପଣ.....

ଶ୍ରୀମତୀ - ମୁଁ.....!!

କୁମାର - ଆପଣ ସମସ୍ତ ଜାଣିଶୁଣି ଏ ବିବାହ କରାଇଚନ୍ତି । ଅରୁଣାକୁ ମୁଁ ଯୌତୁକ ରୂପେ ଦେଇଥିବା ଟଙ୍କାରୁ ଆପଣ ଅଧେ ନେବେ - ବାକି ଅଧେ ଟଙ୍କା ରାମନାରାୟଣ ଆତ୍ମସାତ୍ କରି ଅରୁଣାକୁ ତ୍ୟାଗ କରିବ - ଏଇ ସର୍ତ୍ତରେ ଏ ବିବାହ ହେଇଥିଲା ?

ଶ୍ରୀମତୀ - ନା-ନା....

କୁମାର - ମିସେସ୍ ଦାସ ! ଅନେକ ଟଙ୍କା ମୁଁ ଆପଣଙ୍କୁ ଦେଇଚି - ଏବେ ମଧ୍ୟ ଦଉଚି । ଏ ସାମାନ୍ୟ କେତେ ହଜାର ଟଙ୍କା ପାଇଁ ଆପଣ ଏ ହୀନ ପ୍ରକୃତିକୁ ପ୍ରଶ୍ରୟ ଦେଲେ କିପରି ? ଗୋଟାଏ ଅସହାୟ ବାଳିକାର ଭାଗ୍ୟ ସହିତ ଆପଣ ଏ ଖେଳ ଖେଳିଲେ କାହିଁକି ?

ଶ୍ରୀମତୀ - ଆପଣ ଅତି ନିଷ୍ଠୁର ଭାବରେ ମୋ ପ୍ରତି ଅଭିଯୋଗ କରୁଚନ୍ତି । ଅରୁଣାର ଦୁର୍ଭାଗ୍ୟ ପାଇଁ କ'ଣ ଏକା ମୁଁ ଦାୟୀ ?

କୁମାର - ମୁଁ ଜାଣେ, ଆପଣ ମୋ'ରି ଅସ୍ତ୍ର ମୋ ପ୍ରତି ପ୍ରୟୋଗ କରିବେ ।

ଶ୍ରୀମତୀ - ଜାଣି ସୁଦ୍ଧା ପଦେ ପଦେ ଭୁଲ୍ କରି ଚାଲିଛନ୍ତି, (କୁମାର ତୀକ୍ଷ୍ଣ ଦୃଷ୍ଟିରେ ଶ୍ରୀମତୀକୁ ଚାହିଁଲେ) କେବଳ ନୀଳା ପାଇଁ ଆଜି ଆପଣ ଆପଣଙ୍କ ଅତୀତ ଜୀବନଠାରୁ ନିଜକୁ ଦୂରେଇ ରଖିବାକୁ ଚାହାଁନ୍ତି; କିନ୍ତୁ ମୁଁ ଜାଣେ- ଯେତେବେଳେ ନୀଳାର ସମସ୍ତ ହିସାବ ନିକାଶ ହୋଇଯିବ....

କୁମାର - ଥାଉ ଶ୍ରୀମତୀ ଦାସ । ଏ ଆଲୋଚନା ବନ୍ଦ କରନ୍ତୁ ।

ଶ୍ରୀମତୀ - ଓଃ, ନୀଳା ସମ୍ବନ୍ଧରେ ପଦେ କଥା ସୁଦ୍ଧା ମୁଁ କହିପାରିବି ନି!!! ଆପଣଙ୍କର ଏ ପରିବର୍ତ୍ତନର ପରିଣତି କେଉଁଠି ଅବଶ୍ୟ ମୁଁ ଜାଣେନା; କିନ୍ତୁ ଏହାର ସୂଚନା ମୁଁ ଖୁବ୍ ଆଗରୁ ପାଇଥିଲି । ଆଉ ଏଥିପାଇଁ....

କୁମାର - କୁହନ୍ତୁ ।

ଶ୍ରୀମତୀ - ମୁଁ ନିଜକୁ ପ୍ରସ୍ତୁତ କରି ରଖିଛି ।

କୁମାର - ଆପଣ ମୋତେ ଭୟ ଦେଖାଉଚନ୍ତି ?

ଶ୍ରୀମତୀ - ଆପଣଙ୍କୁ ଭୟ ଦେଖାଇବା ପାଇଁ ଅସ୍ତ୍ର କ'ଣ ମୋ ପାଖରେ ନାହିଁ ?

କୁମାର - (ହସି) କିନ୍ତୁ ସେଥିରେ ଭୀତ ହେବା ଭଳି ଦୁର୍ବଳତା ମୋଠାରେ ନାହିଁ । ଆପଣ ବର୍ତ୍ତମାନ ଯାଆନ୍ତୁ ! ଆରେ ନା - ଏ ଘରୁ ମୁଁ ଆପଣଙ୍କୁ ତଡ଼ିଦେଉନି । ଏ ଘରର ସଦର ଦରଜା ଏପର୍ଯ୍ୟନ୍ତ ଆପଣଙ୍କ ପାଇଁ ଖୋଲା ଅଛି - ଆପଣ ବର୍ତ୍ତମାନ ଅରୁଣା ନିକଟକୁ ଯାଆନ୍ତୁ - ସେ ଆପଣଙ୍କୁ ଅପେକ୍ଷା କରିଛି ।

ଶ୍ରୀମତୀ - କେଉଁଠି ?

କୁମାର - ଆପଣଙ୍କ ଘରେ ?

ଶ୍ରୀମତୀ - ମୋ ଘରେ ? କାହିଁକି ?

କୁମାର - ଏ ଉତ୍ତର କ'ଣ ଆପଣ ତା'ଠାରୁ ପାଇପାରିବେ ନାହିଁ । ଆପଣ ଯାଆନ୍ତୁ । (ନିଜେ ଉପରକୁ ଗଲେ)

ଶ୍ରୀମତୀ - ଆଚ୍ଛା ! (ରାଗି ଚାଲିଗଲେ)

(ଟିକିଏ ପରେ ଆସିଲେ ଆନନ୍ଦ । କିଛିଟା ଅନ୍ୟମନସ୍କ ହୋଇ, କିଛିକ୍ଷଣ ବୁଲାଚଲା କରି ସେ ଆସନ ଗ୍ରହଣ କଲାବେଳକୁ ତାଙ୍କ ଦୃଷ୍ଟିପଡ଼ିଲା ଗୋଟାଏ କୋଣରେ ଥୁଆହୋଇଥିବା ଗୋଟାଏ ହାତବ୍ୟାଗ୍ ଉପରେ । କୌତୂହଳୀ ହୋଇ ବ୍ୟାଗ୍‌ଟି ଉଠାଇନେଇ ଅନଭ୍ୟସ୍ତ ହାତରେ ସେଇଟାକୁ ଖୋଲୁ ଖୋଲୁ ଗୋଟାଏ ଛୋଟ ଆକାରର ଡାଏରୀ ତଳେ ପଡ଼ିଗଲା - ଡାଏରୀରେ ଗୋଟାଏ ସ୍ଥାନରେ ଚିହ୍ନ ଦିଆହୋଇଥିଲା - ସେଇ ସ୍ଥାନଟି ଖୋଲି ଆନନ୍ଦ ପଢ଼ିଲେ ।)

"ରୂପକଥାର ସେଇ ରାଜକୁମାର ନାପିତୁଣୀ ସାହାଯ୍ୟରେ ସାଧବାଣୀ ଲୀଳାକୁ ଚୋରାଇ ଆଣି ନିଜର ରାଣୀ କରି ରଖିଲା ଭଳି ଏ ଯୁଗର ଏ କୁମାର ସାହେବ ମୋ ସାହାଯ୍ୟରେ ଚିତ୍ରକର କନ୍ୟା ନୀଳାକୁ ଚୋରାଇଆଣି ମନ, ପ୍ରାଣ, ହୃଦୟ ସବୁ ତା'ଠାରେ ଢାଳି ଦେବାକୁ ଚାହୁଁଚନ୍ତି । ଦିନେ ହୁଏତ ସେ ନୀଳାକୁ ବିବାହ କରି ଏକ ସୁନ୍ଦର ଜୀବନ ଯାପନ କରିବେ, ସବୁ ପାପ ବ୍ୟଭିଚାରଠାରୁ ସେ ଦୂରେଇଯିବେ । ମୁଁ କିନ୍ତୁ ଯାକୁ ବରଦାସ୍ତ କରିପାରିବି ନାହିଁ । ଏହା ଯେପରି ମୋର ସ୍ୱଭାବବିରୁଦ୍ଧ । ଦିନକୁ ଦିନ ପୁଣି କୁମାର ସାହେବଙ୍କର ବ୍ୟବହାର ମୋ ପ୍ରତି ଅସହ୍ୟ ହୋଇଉଠୁଚି । କାହିଁକି ? ମୁଁ କ'ଣ ଏହାର ପ୍ରତିଶୋଧ ନେଇପାରିବି ନାହିଁ - ହୁଏତ ପାରିବି, ମୁଁ ଯଦି....ନା ଥାଉ - ଆଜି କିଛି

ଲେଖିପାରୁନି" ‐ ଏତକ ପଢ଼ିସାରି ଆନନ୍ଦଙ୍କର ବିସ୍ମୟର ସୀମା ନଥାଏ.... ବ୍ୟାଗ୍‌ଟି ତା'ପରେ ନେଇ ଯଥାସ୍ଥାନରେ ରଖିଦେଲେ – ଡାଏରୀଟା ତାଙ୍କ ହାତରେ ଥାଏ । କୁମାର ଉପରୁ ଆସିଲେ ।

କୁମାର – ସେଇଟା କ'ଣ ରାୟ ! ଡାଏରୀ ? ତୁମେ ତା'ହେଲେ ଡାଏରୀ ଲେଖ ? ଶ୍ରୀମତୀ ଦାସ ମଧ ଲେଖନ୍ତି । ମୋ ଦ୍ୱାରା କିନ୍ତୁ ହୋଇପାରିଲା ନାହିଁ । ଡାଏରୀରେ ତୁମେ ମୋ କଥା କ'ଣ ଲେଖୁଥିବ ମୁଁ ଜାଣେ – ଲେଖୁଥିବ (ରସିକତା କରି ) ବନ୍ଧୁ ଭାବରେ କୁମାରଙ୍କର ଅତିଥି ହେଲି – କିନ୍ତୁ ତାଙ୍କର ବନ୍ଧୁତା ପାଇପାରିଲିନାହିଁ, ସାତଦିନରେ ଥରେ ଦେଖାମିଳିବା ତ ମୁସ୍କିଲ୍ । କଟକ ଫେରିଯିବାପାଇଁ ପ୍ରାଣ ଅସ୍ଥିର ହୋଇଉଠିଲାଣି, ସେଠି ମୋର ପ୍ରିୟତମା ପତ୍ନୀ, ମୋର ଆତ୍ମୀୟ-ସ୍ୱଜନ- ମୋର ସୁନାର ସଂସାର – (କୁମାର ହଠାତ୍ ଟିକିଏ ଚିନ୍ତିତ ହୋଇଉଠିଲେ) ବାସ୍ତବିକ୍ ରାୟ, ନିଜର ସଂସାର – ନିଜର ପରିବାର – ଏହାଠାରୁ ବଳି.....

ଆନନ୍ଦ – କୁହ କୁମାର, ଯାହା ତୁମେ କହୁଥିଲ.... ତମର ସଂସାର, ତମର ପାରିବାରିକ ଜୀବନ – ଏ ସବୁ କ'ଣ ସୁଖମୟ ହୋଇପାରିଚି ?

କୁମାର – (ନିଜ ଭିତର ଅବସ୍ଥାକୁ ଲୁଚେଇବା ପାଇଁ ଜୋର୍ କରି ମୁହଁରେ ହସ ଟାଣି) ହଁ ରାୟ.... ମୋ ସଂସାର ସୁନାର ସଂସାର, ଆଉ ମୁଁ ସୁଖୀ.....

ଆନନ୍ଦ – ତୁମ ମୁହଁରେ ଏ 'ହଁ'ଟା ତୁମ ଭିତରର 'ନାଁ'ଟାକୁ ଜୋର୍ କରି ଚାପି ଦଉଚି କୁମାର !

କୁମାର – ତୁମେ ଭୁଲ୍ ବୁଝୁଚ ଆନନ୍ଦ । ଏ ମହାନଗରୀର ବ୍ୟଭିଚାର ଆଡ଼କୁ ତୁମେ ଫେରିଚାହଁନା, ତୁମେ ଚାହଁ ମତେ – ମୋର ଏଇ ଶତସ୍ମୃତି ବିଜଡ଼ିତ, ମୋର ସମସ୍ତ ଆଶା ଭରସାର ସ୍ଥଳ, ଏଇ ତ୍ରିତଳ ପ୍ରାସାଦ ବ୍ଲୁ ଭିଲ୍ଲାକୁ; ଏଠି ମୁଁ ସୁଖୀ- ଏଠି ମୋର କୌଣସି ଅଭାବ ନାହିଁ –

ଆନନ୍ଦ – ମୁଁ ଜାଣେ କୁମାର, ତୁମେ କର୍ମୀ – ତୁମେ ବୁଦ୍ଧିମାନ- ତୁମେ ଉଦ୍‌ଯୋଗୀ ପୁରୁଷ । ଏ କଲିକତା ପରି ସହରରେ ମଧ ତୁମର ପ୍ରତିପତ୍ତି ରହିଚି, କିନ୍ତୁ ତୁମେ ନିଜେ ଜାଣନା ତୁମର କ'ଣ ଅଭାବ – (ଟିକିଏ ରହି) ହୁଏତ ମୁଁ ଗୋଟାଏ ଅତି ପୁରୁଣା କଥା କହୁଚି – ମୋ କଥା ତୁମକୁ ଅସଙ୍ଗତ ବୋଧ ହୋଇପାରେ – କିନ୍ତୁ ମୁଁ କହିବି କୁମାର – ତୁମର ଈଶ୍ୱର ଭୟନାହିଁ ।

କୁମାର – ଆନନ୍ଦ ! ! !

ଆନନ୍ଦ – ହଁ କୁମାର । ତୁମେ ଈଶ୍ୱରଙ୍କୁ ଭୟକରନା ଆଉ ସେ ଭୟ ତମର ନାହିଁ ବୋଲି, ତମର ସବୁ ଥାଇ ମଧ କିଛିନାହିଁ ।

କୁମାର – (ଆହତ ହୋଇ) ଯେ କ'ଣ ତୁମେ କହୁଚ ରାୟ । ଜଣେ ସାଧାରଣ ସଂସାରୀ ମୁଁ

-ଏ ନିଷ୍ଠୁର ଅଗ୍ନି ପରୀକ୍ଷା ଭିତରକୁ ତୁମେ ମତେ ଠେଲିଦେଉଚ କାହିଁକି ? (କଥା ଶେଷକୁ ତାଙ୍କ କଣ୍ଠ ଧୀରେ ଧୀରେ କ୍ଷୀଣ ହୋଇ ଆସୁଥିଲା) - ସେ ଗୋଟାଏ ସୋଫାରେ ବସିଲେ ।

ଆନନ୍ଦ - କୁମାର ସାହେବ.....

କୁମାର - ଟିକେ ନିରୋଳାରେ ରହିବି ରାୟ ।

ଆନନ୍ଦ - ଉପରକୁ ଯିବ ?

କୁମାର - ନାଁ - ଏଇଠି ।

ଆନନ୍ଦ - ଆଚ୍ଛା ।

(ଚାଲିଗଲେ - ସଙ୍ଗେ ସଙ୍ଗେ ଆସିଲେ ଶ୍ରୀମତୀ ଦାସ - କୁମାରଙ୍କୁ ଏପରି ଅବସ୍ଥାରେ ଦେଖି ସେ ଦ୍ୱାରଦେଶରେ ଅଟକି ରହିଲେ ।)

କୁମାର - (ଉତ୍‌କ୍ଷିପ୍ତ ହେଲା ପରି) Who is there ? ଆପଣ ? ଆପଣ ଅରୁଣା ନିକଟକୁ ଯାଇନାହାନ୍ତି ?

ଶ୍ରୀମତୀ - ଯାଉ ଯାଉ ବାଟରୁ ଫେରିଆସିଲି -

କୁମାର - କାହିଁକି ?

ଶ୍ରୀମତୀ - (ବ୍ୟାଗ୍‌ଟା ଉଠାଇ ) ଏ ବ୍ୟାଗ୍‌ଟା ପାଇଁ...

କୁମାର - ଏଇ ସାମାନ୍ୟ ବ୍ୟାଗ୍‌ଟା ପାଇଁ...

ଶ୍ରୀମତୀ - ମୋ ପକ୍ଷେ ଏ ବ୍ୟାଗ୍‌ଟା ସାମାନ୍ୟ ନୁହେଁ -

(ଖୋଲିବାକୁ ଯାଉଥିଲେ - କୁମାରଙ୍କ କଥାରେ ଅଟକିଗଲେ ।)

କୁମାର - Dam it! (ଡ୍ୟାମ୍ ଇଟ୍) ବ୍ୟାଗ୍‌ଟା ନେଇ ଆପଣ ଯାଆନ୍ତୁ - ଯା'ନ୍ତୁ କହୁଚି ।

(ଶ୍ରୀମତୀ ଦାସ ଅଗ୍ରସର ହେଲେ - କୁମାର ବାହୁ ଉପରେ ମଥାରଖି ବସିରହିଲେ - ତାଙ୍କ ଆଖି ମୁଦିହୋଇ ଆସିଲା - ଦ୍ୱାରଦେଶରୁ ଶ୍ରୀମତୀ ଦାସ କୁମାରଙ୍କ ଅବସ୍ଥା ଦେଖି ଫେରିଆସି କୁମାରଙ୍କ ପଛଆଡ଼େ ଠିଆହେଲେ.... ତା'ପରେ ଧୀରେ ଧୀରେ କୁମାରଙ୍କ ମଥା ଆଉଁସିବାକୁ ଲାଗିଲେ ।)

ଶ୍ରୀମତୀ - କୁମାର ସାହେବ....

କୁମାର - (ଶାନ୍ତ ଗଳାରେ) କିଏ ? (ଶ୍ରୀମତୀ ଦାସଙ୍କୁ ଦେଖି ଉଠି ସିଧାହୋଇ ବସିଲେ ।)

ଶ୍ରୀମତୀ - ବହୁ ସାଧ ସାଧନା କରି ମଣିଷ ପାହାଡ଼ ଉପରକୁ ଉଠୁଥାଏ, ଓହ୍ଲାଇବାକୁ ହେଲେ....ସେହିପରି ଧୈର୍ଯ୍ୟ ଆଉ ସାଧନା ଦରକାର । ଏପରି ଅଧୀର ହେଲେ..... ଗୋଡ଼ହାତ ଭାଙ୍ଗିବା ସାର ହେବ ସିନା ! (କୁମାର ସ୍ଥିର ଦୃଷ୍ଟିରେ କେବଳ ଚାହିଁରହିଥା'ନ୍ତି) ମୁଁ ଯାଉଚି କୁମାର ସାହେବ - ଅରୁଣା ନିକଟକୁ ହିଁ ଯାଉଚି.... (ଚାଲିଗଲେ) ।

## ତୃତୀୟ ଦୃଶ୍ୟ

(କଲିକତାରେ ଗୋଟିଏ ଅପ୍ରଶସ୍ତ ଗଳି । ସେ ରାସ୍ତାରେ ମୋହନ ଚାଲିଛି.... ଭିତରୁ ଆନନ୍ଦଙ୍କର ଉଚ୍ଚସ୍ୱର ଶୁଣାଗଲା ।)

ଆନନ୍ଦ - (ଦୂରରୁ ଖୁବ୍ ବଡ଼ପାଟିରେ) ମୋହନବାବୁ ଓ ମୋହନବାବୁ । (ସ୍ୱର ନିକଟ ହୋଇଆସିଲା - ମୋହନ ଶୁଣିପାରି ଠିଆହୋଇ ରହିଲା । ଟିକେ ପରେ ଆନନ୍ଦ ଆସି ପହଞ୍ଚିଲେ - ତାଙ୍କ ପାଦରେ ଆଘାତ ଲାଗିଚି ।)

ମୋହନ - ଆପଣ ! ନମସ୍କାର !

ଆନନ୍ଦ - ନମସ୍କାର ।

ମୋହନ - ଆପଣ ଏଠି ?

ଆନନ୍ଦ - ଟିକେ ଅପେକ୍ଷା କରନ୍ତୁ- ଏ ଭିତରେ ଯାହା ଯାହା ଘଟିଗଲା- ସେଗୁଡ଼ିକୁ ଟିକେ ବିଶ୍ଳେଷଣ କରିନିଏଁ । ଟ୍ରାମ୍‌ରେ ଯାଉଥିଲି, ଦେଖିଲି ଆପଣ ଏ ଗଳି ଭିତରକୁ ପଶିଲେ - ଏକରକମ ଚଳନ୍ତା ଟ୍ରାମ୍‌ରୁ ଡେଇଁଚି । ଫଳରେ ପାଦ ମକଚି ହୋଇଗଲା । ମନେଅଛି ? ଆପଣଙ୍କ କାଠଗଡ଼ାସାଇ ଘରକୁ ଏମିତି ଭଙ୍ଗାଗୋଡ଼ ନେଇ ଯାଇଥିଲି । ତା'ପରେ ଏଇଟା କଲିକତା ସହର । ଏଠି ସମସ୍ତ ଗଣ୍ଡଗୋଳ ଭିତରେ ଆପଣଙ୍କୁ ଚୁପ୍ ରହିବାକୁ ପଡ଼ିବ । ମୁଁ ଆପଣଙ୍କୁ ଏଡ଼େ ବଡ଼ ପାଟିରେ ଡାକିଲି ବୋଲି ଏଇ ଦେଖନ୍ତୁ, କୋଡ଼ିଏ କି ପଚିଶ ଯୋଡ଼ା ଆଖି ମତେ ଖାଇ ଗୋଡ଼େଇଚନ୍ତି । ଓଃ, କେଡେବଡ଼ ଅଭଦ୍ରଟାଏ ମୁଁ ସତେ !

ମୋହନ - କିନ୍ତୁ କାହିଁକି ଆପଣ....

ଆନନ୍ଦ - ଆଗେ ଆପଣ କୁହନ୍ତୁ - କାହିଁକି ଆପଣ ବରାବର ଏମିତି ଗଳିକନ୍ଦିରେ ଲୁଚି ଲୁଚି ବୁଲୁଛନ୍ତି । କେତେଦିନ ଏମିତି ଦୁନିଆ ଆଖିରୁ ନିଜକୁ ବଞ୍ଚାଇ ରଖିବେ ? କୁଆଡ଼େ ଚାଲିଛନ୍ତି ଏଣେ ?

ମୋହନ - ଯାଉଚି ଜଣେ ବନ୍ଧୁ ଘରକୁ ।

ଆନନ୍ଦ - ଖୁବ୍ ବ୍ୟସ୍ତ ଥିଲା ପରି ତ ଜଣାଯାଉଚନ୍ତି ।

ମୋହନ - ହଁ ଗୋଟାଏ ଏକ୍‌ଜିବିସନ୍ ?

Fine art. (ଫାଇନ୍ ଆର୍ଟ)

ଆନନ୍ଦ - ମାନେ ? ଏଇ ଆପଣଙ୍କର ଛବି ଆଉ ଚିତ୍ରର କାରବାର ?

ମୋହନ - ହଁ ।

ଆନନ୍ଦ - ଆପଣ ଏକ୍‌ଜିବିସନ୍‌କୁ ଛବି ଦେଉଚନ୍ତି ତ ?

ମୋହନ - ଦଉଚି ।

ଆନନ୍ଦ - ନୀଳାର ସେ ଛବିଟା ନିଶ୍ଚୟ ଦଉଚନ୍ତି ?

ମୋହନ - ହଁ ।

ଆନନ୍ଦ - ବିକ୍ରିପାଇଁ ବୋଧହୁଏ ନୁହେଁ ?
ମୋହନ - ନାଁ ।
ଆନନ୍ଦ - ବାସ୍ ? ଏକ୍‌ଜିବିସନ୍‌ରେ ନୀଳାର ଛବି ସଜାଇ ଆପଣ ଧନ୍ୟ, ନୀଳା ମଧ ଧନ୍ୟା । ରାଗିବେ ନାହିଁ, ମୁଁ ମୂଳରୁ ଆପଣଙ୍କୁ ଏପରି କଥା କହିଆସିଚି । କ'ଣ ସାରା ଜୀବନଟା ଏମିତି ବଡ଼ ବଡ଼ ଆଦର୍ଶ ପଛରେ ଧାଇଁ ବୁଲୁଥିବେ - ନା -
ମୋହନ - ଏ ଏକ୍‌ଜିବିସନ୍ ପରେ କଟକ ଫେରିଯାଉଚି ।
ଆନନ୍ଦ - ସତେ ? ତା'ପରେ ? (ମୋହନ ମୁହଁ ପୋତି ହସୁଥାଏ) କ'ଣ ନୀଳା ସହିତ ବିବାହ ?
ମୋହନ - ହଁ.....
ଆନନ୍ଦ - ବେଶ୍ ବେଶ୍ (ହଠାତ୍ ସ୍ୱର ପରିବର୍ତ୍ତନ କରି) କିନ୍ତୁ ନୀଳା ? ସେ ପରା ଚାକିରି କରୁଚି ?
ମୋହନ - ମୁଁ ଫେରିଯାଉଛି ଶୁଣିଲେ....
ଆନନ୍ଦ - କିନ୍ତୁ ସେ ଯଦି ନ ଫେରେ ?
ମୋହନ - ସେ ଭରସା ମୋର ଅଛି ।
ଆନନ୍ଦ - ଆପଣ କିନ୍ତୁ ତା ପ୍ରତି ଘୋର ଅନ୍ୟାୟ କରିଚନ୍ତି ।
ମୋହନ - ସେଇ ପ୍ରାୟଶ୍ଚିତ କରିବାକୁ ଯାଉଚି ।
ଆନନ୍ଦ - ଆଚ୍ଛା ଯାଆନ୍ତୁ, ପ୍ରାୟଶ୍ଚିତ କରନ୍ତୁ - ହଁ ଆପଣ କେଉଁଠି ରହୁଚନ୍ତି ?
ମୋହନ - ବହୁବଜାର ଅଞ୍ଚଳ - ଆରପୁଲୀ ଲେନ୍ ।
ଆନନ୍ଦ - ପୂରା ଠିକଣା କୁହନ୍ତୁ ।
ମୋହନ - ୩୧ ନମ୍ବର ଆରପୁଲୀ ଲେନ୍ ।
ଆନନ୍ଦ - (ନିଜ ପକେଟ୍ ଖୋଜି) ମୁଁ ଏକ କଥାକୁହା ପ୍ରାଣୀ - କାଗଜ କଲମ ସହିତ ମୋର ସମ୍ପର୍କ ନଥାଏ - ଟିକିଏ ସାହାଯ୍ୟ କରିବେ କି ? (ମୋହନ ପକେଟ୍‌ରୁ ଖଣ୍ଡେ କାଗଜ ଗୋଟିଏ ପେନ୍‌ସିଲ ବାହାର କରି ଦେଲା ।)

ହଁ କୁହନ୍ତୁ (ଲେଖିବାକୁ ଯାଇ) ଯେ କ'ଣ! ପେନ୍‌ସିଲ୍ ମୁନ ଯେ ଭଙ୍ଗା! ଆହା, ମୋହନ ବାବୁ, ସେଇ ବିରାଟ ଭଙ୍ଗା ମହାଦେଶରୁ ଆପଣଙ୍କର କ'ଣ କେବେହେଲେ ମୁକ୍ତିନାହିଁ ? ବୁଝିଲେ, ସବୁ ପଛେ ଭାଙ୍ଗୁ - ଆପଣଙ୍କ ମନ ଯେମିତି ଭାଙ୍ଗିନଯାଏ! ହଁ ଠିକଣାଟା କ'ଣ କହିଲେ, ଘୋଷିବାକୁ ପଡ଼ିବ ଦେଖୁଚି....୩୧ ନମ୍ବର ସରପୁଲୀ ଲେନ୍ ।
ମୋହନ - ସରପୁଲୀ ନୁହେଁ..... ଆରପୁଲୀ ଲେନ୍......
ଆନନ୍ଦ - ସେଇ ସରପୁଲୀ ମନେ ରଖିଲି - ଆରପୁଲୀ ଧରାପଡ଼ିବ... ଆଚ୍ଛା ମୁଁ ଯାଏଁ - ନମସ୍କାର ! ଏଇ ବସ୍ ବୋଧହୁଏ ଆସିଗଲା, (ବଡ଼ପାଟିରେ) ରୋକ୍‌କେ ସର୍ଦ୍ଦାରଜୀ....

(ଚାଲିଗଲେ)

## ଚତୁର୍ଥ ଦୃଶ୍ୟ

(କୁମାରଙ୍କ କକ୍ଷ । ଦୃଶ୍ୟ ଆରମ୍ଭରେ ଦେଖାଗଲା କୁମାର ଗୋଟାଏ ଟେବୁଲ୍‌ରେ ହାତଭରାରଖି ଠିଆ ହୋଇଛନ୍ତି । କୌଣସି ଏକ ବିଷୟର ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ଯେପରି ସେ ଚେଷ୍ଟାକରୁଥା'ନ୍ତି । ଟିକିଏ ପରେ ଉପରକୁ ଉଠି ଯାଉ ଯାଉ ସିଡ଼ି ମଝିରେ ଅଟକି ଗଲେ ।)

କୁମାର – ଭୀମ ସିଂ ! (ଭୀମ ସିଂ ପ୍ରବେଶ କଲା) ରାୟ ସାହେବ ?

ଭୀମ ସିଂ – ମାଲୁମ୍ ନାହିଁ ହଜୁର !

କୁମାର – ଆଚ୍ଛା – (କୁମାର ସିଡ଼ି ଉପରେ ଅଦୃଶ୍ୟ ହୋଇଗଲେ; ପ୍ରାୟ ପରେ ପରେ ଫୋନ୍ ବାଜିଉଠିଲା । ଭୀମ ସିଂ ଫୋନ୍ ଧରିଲା ।)

ଭୀମ ସିଂ – ଯେ ହାୟ ବ୍ଲୁ ଭିଲ୍ଲା ଜୀ ? କୁମାର ସାହେବ ? ଜୀ ହାଁ – ଉପର ମେଁ । ଆପ୍ କାହାଁ ସେ ବୋଲରହେଁ ? ହାସ୍‌ପାତାଲ ସେ । ଆଚ୍ଛା ! (ଫୋନ୍ ରଖିଦେଇ ଭୀମ ସିଂ ଚାଲିଗଲା) ଟିକିଏ ପରେ କୁମାର ଆସି ସିଡ଼ିର ପାଦଦେଶରେ ଠିଆହେଲେ । ଲକ୍ଷ୍ୟ ତାଙ୍କର ସିଡ଼ିର ଉପର ଭାଗରେ ।)

କୁମାର – ଆସ, ସଙ୍କୋଚ କରିବାର ଏଠି କିଛିନାହିଁ ନୀଳା ! ଓହ୍ଲାଇ ଆସ – (ଧୀରେ ଧୀରେ ନୀଳା ତଳକୁ ଆସିଲା – ଏପରି ଅବସ୍ଥାରେ ଯେ ଯେପରି ନିଜକୁ ନିଜେ ବିଶ୍ୱାସ କରିପାରୁ ନ ଥାଏ ।)

କୁମାର – ବ୍ଲୁ ଭିଲ୍ଲାକୁ ଆସିବା ପରେ ଏଇ ପ୍ରଥମେ ତୁମେ ଏଠିକି ଆସିଲ – କ'ଣ ଦେଖୁଚ ଏଠି ? ଏ କକ୍ଷର ବୈଭବ ଦେଖାଇବା ପାଇଁ ତୁମକୁ ଏଠିକି ଡାକିନି – ଏଠି ତୁମେ ଯାହା ଦେଖିବ ହୁଏତ ନିଜ ଆଖିକୁ ନିଜେ ବିଶ୍ୱାସ କରିପାରିବନାହିଁ ! (ନୀଳା ଚକିତ ଦୃଷ୍ଟିରେ କୁମାରଙ୍କ ଆଡ଼କୁ ଫେରିଚାହିଁଲା ।) ଭୟ ନାହିଁ ନୀଳା । ମୁଁ ଯାଦୁକର ନୁହେଁ – ମୁଁ ମନ୍ତ୍ର ଜାଣେନା – ସାଧାରଣ ମଣିଷ ଦ୍ୱାରା ଯାହା ସମ୍ଭବ ଆଜି ତାହାହିଁ ଘଟିଛି । (କହୁ କହୁ ଗୋଟିଏ ଟେବୁଲ୍ ଉପରେ ରଖାହୋଇଥିବା ଗୋଟିଏ ବଡ଼ ଛବି ଉପରୁ ସୁନ୍ଦର ସିଲ୍‌କର ଘୋଡ଼ଣୀ ଉଠାଇଦେଲେ । ଛବିଟି ହେଉଚି ନୀଳାର ସେଇ ଛବି । ଛବିଟିକୁ ଦେଖି ନୀଳା ଏକାବେଳକେ ସ୍ତମ୍ଭୀଭୂତ ହୋଇଗଲା) ଏ ଘରେ ବର୍ତ୍ତମାନ ତୁମର ଉପସ୍ଥିତି ପରି ଏ ଏକାବେଳକେ ନିର୍ଭୁଲ୍ ନୀଳା ! ଏ ତମର ସେଇ ଛବି – ଯାହାକୁ ମୋହନ ତା' ଶିଳ୍ପୀ ଜୀବନର ସମସ୍ତ କୌଶଳ ପ୍ରୟୋଗ କରି ଆଙ୍କିଥିଲା, ଆଉ ପ୍ରାଣଦେଇ ଭଲପାଇଥିଲା । ଏଇ ଛବିକୁ ବିକି ନ ପାରି ମୋହନ ଏତେଦିନଯାଏ କଲିକତାର ରାଜପଥରେ ଉଦ୍‌ଭ୍ରାନ୍ତ ପରି ବୁଲି ବୁଲି ଦିନ କାଟୁଚି ଆଉ ତୁମେ ହୋଇଚ ବ୍ଲୁ ଭିଲ୍ଲାରେ ବନ୍ଦିନୀ ! ଭଲ କରି ଚାହିଁ ଦେଖ ନୀଳା – ତୁମ ପ୍ରିୟ ମୋହନର ଏ ସେଇ ଅତି ପ୍ରିୟ ଛବି । ବହୁ ସାଧ ସାଧନା କରି ଯାହାକୁ ମୁଁ

ଦିନେ ପାଇନଥିଲି, ଆଜି ସେ ମୋ ହାତକୁ ଆସିଚି - ତା' ସଙ୍ଗେ ତୁମର, ମୋର ଓ ମୋହନ ଜୀବନର ଏକ ନୂତନ ଅଧ୍ୟାୟ ସୂତ୍ରପାତ ମଧ୍ୟ ଘଟିଚି । (ନୀଳା ଆଖିରୁ ଧାର ଧାର ଲୁହ ବହିଯାଉଥାଏ) ଛବିର ଦାମ୍ ନେବାପାଇଁ ଆଉ ଟିକିଏ ପରେ ବୋଧହୁଏ ମୋହନ ଆସିବ । ଛବିଟାର ଦାମ୍ ପାଞ୍ଚହଜାର ଟଙ୍କା - ସେଇ ଟଙ୍କାରେ ତୁମ ଦୁହିଁଙ୍କର ଜୀବନ ଯାତ୍ରା ଆରମ୍ଭ ହେବ । ମୁଁ ଆଜି ମୁକ୍ତ କଣ୍ଠରେ କହୁଚି ନୀଳା ତୁମେ ଫେରିଯିବା ପାଇଁ ବ୍ଲୁ ଭିଲ୍ଲାର ଦ୍ୱାର ମୁଁ ସସମ୍ମାନରେ ଖୋଲିଦେବି । ତୁମେ ମୋହନକୁ ବିବାହ କରି....

ନୀଳା - (ବାଧାଦେଇ) କୁମାର ସାହେବ! (ଟିକିଏ ରହି) ସବୁ ଦୁର୍ଭାଗ୍ୟ ଆଉ ଦୁର୍ଦ୍ଦିନ ମଧ୍ୟରେ ମୋର ଏକମାତ୍ର ଗର୍ବ ଥିଲା ମୋହନ ମୋର ଛବିଟା ବିକିନାହିଁ ବା ବିକିପାରିବ ନାହିଁ । କାରଣ ସେ ମତେ.....ରୁଦ୍ଧକଣ୍ଠକୁ ପୁଣି ଯେତେପାରେ ସହଜ ଅବସ୍ଥାକୁ ଆଣି, କିନ୍ତୁ ଆଜି ମୋର ସେ ଗର୍ବ ଭାଙ୍ଗି ଚୂନା ହୋଇଯାଇଚି । ଦୁନିଆ ଯେତେ ଭୁଲ୍ ବୋଲି କହିଲେ ସୁଦ୍ଧା, ତା'ର ପୌରୁଷର ଇଙ୍ଗିତରେ ମୋହନ ଯେଉଁ ବାଟ ବାଛି ନେଇଥିଲା ସେ ବାଟକୁ ଆଜି ଭୁଲିଛି ଏ ଛବିକୁ ବିକିବା ସଙ୍ଗେ ସଙ୍ଗେ ସେ ନୀଳାକୁ ମଧ୍ୟ ବିକି ଦେଇଛି । କାଠଗଡ଼ା ସାହିର ନୀଳା ଆଜି ମରି ଜନ୍ମ ନେଇଚି ଏଇଠି, ଏଇ ବ୍ଲୁ ଭିଲ୍ଲାରେ ।

କୁମାର - ନୀଳା!! (କୁମାରଙ୍କ କଥାକୁ ଅପେକ୍ଷା ନକରି ସେ ସଙ୍ଗେ ସଙ୍ଗେ କ୍ଷିପ୍ରଗତିରେ ଉଠିଯାଇଚି ଉପରକୁ । ଏ ଘଟଣା ଘଟିଯିବା ପରେ କୁମାରଙ୍କ ଜୀବନରେ ଯେପରି ଏକ ପରାଜୟ ଘଟିଯାଇଛି । ଅଥଚ ଏଇ ପରାଜୟ ହିଁ ତାଙ୍କର କାମ୍ୟ, କୁମାରଙ୍କ ଅବସ୍ଥାରୁ ଏଇ ଆଭାସ ମିଳେ ।)

କୁମାର - ଭୀମ ସିଂ! (ଭୀମ ସିଂ ପ୍ରବେଶ) କୋଇ ଆନେସେ ଯହିଁ ବୈଠାଓ ।

ଭୀମ ସିଂ - ଜୀ ହଜୁର । (ନୀଳାର ଛବି ଉପରେ ପୁନର୍ବାର ପରଦାକୁ ଟାଣିନେଇ କୁମାର ଉପରକୁ ଉଠିଗଲେ । ବାହାରୁ ଘଣ୍ଟିହେଲା, ଭୀମ ସିଂ ଯାଇ ଦରଜା ଖୋଲିଦେଲା । ଆଗନ୍ତୁକ ହେଉଚି ମୋହନ । ତାକୁ ଦେଖିଲେ ମନେହୁଏ ଯେପରି ତା'ର ସର୍ବସ୍ୱ ଅପହୃତ ହୋଇଯାଇଚି, ଆଉ ସେଇଥିପାଇଁ ସେ ହେଇଚି ଡେସ୍‌ପାରେଟ୍ ) ।

ମୋହନ - କୁମାର ସାହେବ! (ମୋହନର ଉତ୍ତେଜନା ଦେଖି ଭୀମ ସିଂ ପ୍ରଥମେ ସ୍ତମ୍ଭିତ ହୋଇଗଲା ।)

ଭୀମ ସିଂ - ଆପ୍ ବୈଠିୟେ -

ମୋହନ - କୁମାର ସାହେବ କାହାନ୍ତି ?

ଭୀମ ସିଂ - ଆପ୍ ବୈଠିୟେ ତୋ....

ମୋହନ - ବସିବାକୁ ମୁଁ ଆସିନି, ମତେ କୁହ, କୁମାର ସାହେବ କାହାନ୍ତି ? ନାହାନ୍ତି ?

ଭୀମ ସିଂ - ଉପର ମେ - (ମୋହନ ଉପରକୁ ଯିବାକୁ ଉଦ୍ୟତ ହେଲାବେଳେ ଭୀମ ସିଂ

ତାକୁ ବାଧା ଦେଲା)

ମୋହନ - ମୁଁ ଉପରକୁ ଯିବି ।

ଭୀମ ସିଂ - ହୁକୁମ ନେହି..... (ମୋହନ ଜୋର୍ କରି ଆଗେଇଗଲା) ମତ୍ ଯାଇୟେ, ମତ ଯାଇୟେ ବାବୁସାହେବ, ଜୁଲୁମ୍ ମତ କିଜିୟେ.... । (ଏତିକିବେଳେ ସିଡ଼ି ଉପରେ ଦେଖାଦେଲେ କୁମାର ! ମୋହନ ତାଙ୍କୁ ଦେଖି ଅଟକିଗଲା ।)

କୁମାର - ମୋହନ ! ଧନ୍ୟବାଦ ମୋହନ, ତମେ ଆସିଚ ! .....ଭୀମ ସିଂ, ଚା....(ଭୀମ ସିଂ ଚାଲିଗଲା)

ମୋହନ - ଛବିଟା ?

କୁମାର - ଏଇ ପ୍ରଖର ଦିବାଲୋକରେ ଏକ୍‌ଜିବିସନ୍ ଷ୍ଟଲ୍‌ରୁ ଛବିଟାକୁ କେହି କେବେ ଚୋରାଇ ଆଣିପାରିବ ନାହିଁ ମୋହନ !

ମୋହନ - ଆପଣ ଜାଣିଛନ୍ତି, ଛବିଟା ବିକ୍ରି ପାଇଁ ନଥିଲା, ଅଥଚ ମୁଁ ନଥିଲାବେଳେ ଆପଣ ଛବିଟାକୁ ନେଇଆସିଚନ୍ତି !

କୁମାର - ତମେ ବୋଧହୁଏ ଜାଣନା, ମୋହନ ଏକ୍‌ଜିବିସନ୍‌ର ମୁଁ ମଧ୍ୟ ଜଣେ ପୃଷ୍ଠପୋଷକ । ଛବିଟା ଯେ ମୁଁ ନେଇଆସିଚି ସେଥିପାଇଁ ଏକ୍‌ଜିବିସନ୍ କର୍ମକର୍ତ୍ତାଙ୍କ ନିକଟରେ ମୁଁ ଦାୟୀ ।

ମୋହନ - ଛବିଟା ମୋତେ ଫେରାଇଦିଅନ୍ତୁ ।

କୁମାର - ଦେବି; କିନ୍ତୁ ତୁମେ ଏପରି ଉତ୍ତେଜିତ ହେଉଚ କାହିଁକି, ବସ । (ମୋହନ ବସିବାକୁ ଅନିଚ୍ଛୁକ) ମୁଁ ଅନୁରୋଧ କରୁଚି ମୋହନ, ତମେ ଶାନ୍ତ ହୋଇ ଟିକିଏ ବସ । ଛବିଟାକୁ ଫେରାଇଦେବାରେ ମୋର କୌଣସି ଆପତ୍ତି ନାହିଁ । ଏଇ ଦେଖ, ଛବିଟା ଏଇଠି ଅଛି । ତମ ଇଚ୍ଛା ବିରୁଦ୍ଧରେ ଛବିଟା ରଖିବା ଭଳି ଦୁର୍ବୁଦ୍ଧି ମୋର ନାହିଁ - ତମେ ବସ !!!

(ମୋହନ ଯନ୍ତ୍ରଚାଳିତ ପରି ବସିଲା - ତା'ର ଉତ୍ତେଜନା ଧୀରେ ଧୀରେ କମିଆସୁଥାଏ)

ଦିନେ ଅବଶ୍ୟ ଏ ଛବିଟା ପାଇଁ ମତେ ତମ ଘରପର୍ଯ୍ୟନ୍ତ ଯିବାକୁ ପଡ଼ିଥିଲା । ସେଦିନ ତ ମୁଁ ଜାଣି ନଥିଲି ଯେ, ମୋ ଅପେକ୍ଷା ଛବିଟା ଉପରେ ତମର ମୋହ, ମାୟା, ମମତା ବେଶି ! ତୁମେ ଜଣେ ଶିଳ୍ପୀ । ଧନଦୌଲତ ଅପେକ୍ଷା - ଆଦର୍ଶ ହିଁ ତମ ନିକଟରେ ବଡ଼ । ତା ହେବା ସ୍ୱାଭାବିକ । ସେଥିପାଇଁ ମୋ ନିଜ ତରଫରୁ ମୁଁ ଛବିଟା ଉପରୁ ସମସ୍ତ ଆଶା ତୁଟାଇ ଦେଇଥିଲି, କିନ୍ତୁ ଆଜି ? ଆଜି ଯଦି ଏ ଛବିଟା ମୁଁ ତୁମଠାରୁ ଭିକ୍ଷା ଚାହେଁ- ତେବେ ସେ ମୋ ନିଜପାଇଁ ନୁହେଁ..... (ମୋହନ ଜିଜ୍ଞାସୁ ଦୃଷ୍ଟିରେ କୁମାରଙ୍କୁ ଚାହିଁଲା । ଏତିକିବେଳେ ଚା' ଆସିଲା - ଚା'ରଖିଦେଇ ଭୀମ ସିଂ ଚାଲିଗଲା) ସବୁ ଜାଣିବ ମୋହନ, କାହିଁକି ; କାହାପାଇଁ ଏ ଛବିଟା ସକାଶେ ମୁଁ ପୁଣି ଆଜି ତମର ଦ୍ୱାରସ୍ଥ ହେଉଚି । ତମେ

ଆଗ ଚା' ଖାଅ ।

ମୋହନ - ମତେ କ୍ଷମାକରନ୍ତୁ କୁମାର ସାହେବ!

କୁମାର - ମୋ ଘରକୁ ତୁମେ ଆସିଚ ମୋହନ, ତମେ ମୋର ଅତିଥି । ମୋର ଆତିଥ୍ୟ ଯଦି ତମେ ଗ୍ରହଣ ନକର, ତେବେ ସେ ଅପମାନ ତ ଏକା ମତେ ବାଧିବ ନାହିଁ- ଆମ ସମାଜର ପରମ୍ପରା ମଧ ଏଥିରେ ଆହତ ହେବ ।

(ମୋହନ ଆସିବା ବେଳଠାରୁ କୁମାର ଏପରି ଉଲ୍ଲାସପୂର୍ଣ୍ଣ ଅଥଚ ସହଜ ଭାବରେ ତା' ସହିତ ବ୍ୟବହାର କରୁଥା'ନ୍ତି ଯେ, ମୋହନ ଚେଷ୍ଟା କରି ସୁଦ୍ଧା ତାଙ୍କର କୌଣସି କଥାର ପ୍ରତିବାଦ କରିପାରୁ ନଥାଏ । କୁମାର ନିଜ ହାତରେ ଚା' ଢାଳି ମୋହନକୁ ଦେଲେ - ନିଜେ ମଧ ଗୋଟିଏ କପ୍ ନେଲେ ।) ଏଇ ନିଅ ମୋହନ, ତମର ଚା! (ମୋହନ ଯେପରି ବାଧ ହୋଇ ଚା ଖାଇଲା ।)

ମୁଁ କହୁଥିଲି ନା ମୋହନ, ଆଜି କାହାପାଇଁ ଏ ଛବି ମୁଁ ତମଠାରୁ ଭିକ୍ଷା କରୁଚି । (ଟିକିଏ ରହି) ମୋର ଏଇ ଅତିପ୍ରିୟ ବ୍ଲୁ ଭିଲ୍ଲାରେ ପାଦ ଥୋଇ ଯିଏ ମୋତେ ଧନ୍ୟ କରିଚି, ମୋ ଜୀବନ ପଥରେ ଯିଏ ଜାଳିଦେଇଚି ଲକ୍ଷ ଦୀପାବଳିର ଶିଖା, ତା'ରି ପାଇଁ ମୋହନ - କେବଳ ତା'ରି ପାଇଁ ମୁଁ ଚାହେଁ ନୀଳାର ଏ ଛବିକୁ! ତମେ ଜାଣ, ସେ କିଏ ?

(ଠିକ୍ ଏତିକିବେଳେ ଦେଖାଗଲା ସିଡ଼ିର ଉପର ଭାଗରେ ଠିଆ ହୋଇଛି ନୀଳା - କିନ୍ତୁ ସଂପୂର୍ଣ୍ଣ ଭିନ୍ନ ବେଶଭୂଷାରେ । ଏଠାକୁ ଆସିବା ଦିନଠାରୁ ସେ କେବଳ ସାଦା ଶାଢ଼ି ପିନ୍ଧୁଥିଲା, ଆଜି ଖୁବ୍ ଦାମିକା ଶାଢ଼ି ପିନ୍ଧିଛି - ଦେହରେ ମଧ କେତେକ ମୂଲ୍ୟବାନ୍ ଅଳଙ୍କାର ।)

କୁମାର - ନୀଳା!!!

(କୁମାର ସିଡ଼ି ଉପରକୁ କିଛି ଦୂର ଉଠିଗଲେ । ବର୍ତ୍ତମାନ ସେ ଆହୁରି ଉତ୍ଫୁଲ୍ଲ ଦେଖାଯାଉଥା'ନ୍ତି ।) ଆସ ନୀଳା । (ନୀଳା କିନ୍ତୁ ଗୋଟିଏ ଦୁଇଟି ପାହାଚରୁ ବେଶୀ ତଳକୁ ଓହ୍ଲାଇଲା ନାହିଁ । ଆରମ୍ଭରୁ ତା' ଦୃଷ୍ଟି ପଡ଼ିଚି ମୋହନ ଉପରେ - ମୋହନ ମଧ ନୀଳାକୁ ପଲକହୀନ ଦୃଷ୍ଟିରେ ଚାହିଁରହିଚି । କିନ୍ତୁ ବେଶି ସମୟ ଏ ଦୃଷ୍ଟି ବିନିମୟ ତିଷ୍ଠିପାରିଲା ନାହିଁ । ଉଭୟ ନୀଳା ଓ ମୋହନ ଉପରେ କୁମାରଙ୍କର ଚଞ୍ଚଳ ଦୃଷ୍ଟିପାତ ଫଳରେ ସେ ଦୁହିଁଙ୍କର ଦୃଷ୍ଟି ବିନିମୟ ଆପେ ଆପେ ଭାଙ୍ଗିଗଲା । ଠିକ୍ ଏତିକିବେଳେ ବାହାରୁ ଆସିଲେ ଆନନ୍ଦ ।)

କୁମାର - ତମେ ଶୁଣି ସୁଖୀହେବ ରାୟ ଯେ, ମୋହନର ଏ ଛବିଟି ସମ୍ବନ୍ଧରେ ଆଜି ଗୋଟାଏ ସମାଧାନ ହୋଇଯାଇଛି । କିନ୍ତୁ ମୋହନ, ତମକୁ ମୁଁ ଏତିକିରେ ଛାଡୁନି । ନୀଳାର ଆଜିର ଠିକ୍ ଏଇ ବେଶରେ ଗୋଟିଏ ଛବି ତମକୁ ଆଙ୍କିବାକୁ ପଡ଼ିବ ।....ହଁ ରାୟ, ତମେ ତ ଶୁଣିଚ, ଏ ଛବିଟାପାଇଁ ମୁଁ ମୋହନକୁ ପାଞ୍ଚହଜାର ଟଙ୍କା ଦେବାପାଇଁ

ରାଜି ହୋଇଥିଲି । ମୋ କଥା ମୁଁ ରଖୁଚି ! କ'ଣ ମୋହନ.... (ପକେଟ୍‌ରୁ ଚେକ୍‌ଟା କାଢ଼ି ଧରିଲେ)

ମୋହନ - ଛବିଟା ମୁଁ ବିନା ମୂଲ୍ୟରେ ଦେଇଯାଉଚି । (କହିସାରି ଚାଲି ଯାଉଥିଲା)

ନୀଳା - ଶୁଣ !

(ମୋହନ ଅଟକିଗଲା - ନୀଳା ତଳକୁ ଆସିଲା ।)

ମୁଁ ଜାଣେ, ଛବିଟା ବିନା ମୂଲ୍ୟରେ ତମେ ମତେ ହିଁ ଦେଇଯାଉଚ । କିନ୍ତୁ ତମ ପରି ଜଣେ ଦରିଦ୍ର କାଙ୍ଗାଳ ଶିଳ୍ପୀଠାରୁ ଛବିଟାକୁ ବିନାମୂଲ୍ୟରେ ଦେଖିବାକୁ ମୁଁ ପ୍ରସ୍ତୁତ ନୁହେଁ । (କୁମାରଙ୍କ ହାତରୁ ଚେକ୍ ଖଣ୍ଡିକ ଟାଣିଆଣି) ଏଇ ନିଅ ତମର ଛବିର ଦାମ୍..... ପାଞ୍ଚ ହଜାର ଟଙ୍କା ନିଅ ।

(ଚେକ୍‌ଟାକୁ ମୋହନ ହାତରେ ଦେଇ ଦ୍ରୁତଗତିରେ ଉପରକୁ ଉଠିଗଲା । ମୋହନ ଟିକିଏ ପରେ ଚେକ୍‌ଟିକୁ ଧରି ଯନ୍ତ୍ରଚାଳିତ ପରି ସେଠାରୁ ଚାଲିଗଲା । କକ୍ଷ ଭିତରେ ଗୋଟାଏ ଅସ୍ୱାଭାବିକ ଧରଣର ନୀରବତା । ଏଇ ନୀରବତା ଭଙ୍ଗ କଲେ ଆନନ୍ଦ ।)

ଆନନ୍ଦ- ମେସ୍‌ମେରିଜମ୍ ! ! ଯାହାକୁ ଆମେ ସ୍ତମ୍ଭନ, ମୋହନ, ବଶୀକରଣ ବୋଲି କହୁ - ଏପରି ଗୋଟାଏ ବିଦ୍ୟା ଅଛି ବୋଲି ମୁଁ ଶୁଣିଥିଲି, କିନ୍ତୁ ଏପରି ନିର୍ଭୁଲ ଭାବରେ ତା'ର ପ୍ରୟୋଗ ଯେ କରାଯାଇପାରେ, ଏକଥା ମୋର କଳ୍ପନାର ବାହାରେ ଥିଲା ।

କୁମାର - ତମେ ଭୁଲ୍ ବୁଝିଚ ରାୟ......

ଆନନ୍ଦ - ମାତ୍ର ମୁହୂର୍ତ୍ତକ ପାଇଁ ସେ ଦୁହିଁଙ୍କୁ ନିରୋଳାରେ ରହିବାର ସୁଯୋଗ ଯଦି ତମେ ଦେଇଥା'ନ୍ତ -

କୁମାର - ସୁଯୋଗ ନବାର ଅପେକ୍ଷାରେ ମୁଁ ଥିଲି ରାୟ- ଦବାକୁ ନୁହେଁ ।

ଆନନ୍ଦ - ଏ ଛଳନାର ଶେଷ କେଉଁଠି କୁମାର ?

କୁମାର - ଛଳନା.:. ! !

ଆନନ୍ଦ - ପୁଣି ଏତେ ତିକ୍ତ ଆଉ କଟୁ ଯେ ମୋ ପରି ଆଶାବାଦୀ ଲୋକ ମଧ୍ୟ ବିବ୍ରତ ହୋଇପଡୁଚି -

କୁମାର - କାହିଁକି ରାୟ ?

ଆନନ୍ଦ - ନୀଳା ତମର ସ୍ତ୍ରୀ ନୁହେଁ ।

କୁମାର - ନୀଳା ଯେ ମୋ ସ୍ତ୍ରୀ, ଏକଥା ତ କେବେ କାହାରିକୁ ମୁଁ କହିନାହିଁ ।

ଆନନ୍ଦ - ଶ୍ରୀମତୀ ଦାସଙ୍କଠାରୁ ଆରମ୍ଭ କରି ଏ ମହଲାର ସମସ୍ତଙ୍କ ମୁହଁରେ ଯୁବରାଣୀ ସାହେବା ବୋଲି ପରିଚିତା ସେ ନାରୀଟି କିଏ ? ନୀଳା ତ ? (କୁମାର ନିରୁତ୍ତର) ଏ ଡାଏରୀଟି ପଢ଼ କୁମାର ସାହେବ, ଏଇଟି ମୋର ନୁହେଁ, ଶ୍ରୀମତୀ ଦାସଙ୍କର । (ଡାଏରୀଟି କୁମାରଙ୍କୁ ଦେଲେ) ଭଦ୍ରମହିଳା ତୁମରି ଲୁଣ ଖାଇ ଏଥିରି ତମରି ଗୁଣକୀର୍ତ୍ତନ କରିଅଛନ୍ତି..... କୁହ କୁମାର ଏ ଡାଏରୀକୁ ମୁଁ ବିଶ୍ୱାସ କରିବି ତ ?

(ଏ କଥାରେ କୁମାରଙ୍କର ସମସ୍ତ ପ୍ରଫୁଲ୍ଲତା କୁଆଡ଼େ ଉଭେଇଗଲା । ରାୟ ଏହା ବୁଝିପାରିଲେ ।)

କ୍ଷମାକର ଭାଇ, ଥରକୁ ଥର ମୁଁ ଭାବୁଚି, ଏପରି ନିର୍ମମ କଥା କହି ତମକୁ ଆଘାତ ଦେବିନି.... କିନ୍ତୁ ପାରିନାହିଁ ।

କୁମାର – ମୁଁ ଜାଣେ ରାୟ, ତମେ ମୋର ଚାଟୁକାର ନୁହଁ କିମ୍ବା ସୁବିଧାବାଦୀ ଶୁଭାକାଙ୍କ୍ଷୀ ନୁହଁ । ତମ ପାଖରେ କୌଣସି କଥା ଗୋପନ ରଖି ହୁଏନା – ଏ ଡାଏରୀରୁ ତୁମେ ପଢ଼ିଥିବ ମୋର ସ୍ତ୍ରୀ କଥା – ସେଇ ସ୍ନେହମୟୀ କରୁଣାମୟୀ ନାରୀ.....

ଆନନ୍ଦ – କାହାନ୍ତି ସେ ?

କୁମାର – ସେ କଥା କହିବାର ମନର ବଳ ମୋର ଭାଙ୍ଗିଯାଇଚି ରାୟ । ଗୋଟାଏ ଦୁର୍ଦ୍ଦିନର ଆଗମନ ସଙ୍ଗେ ସଙ୍ଗେ ଆମେ ଦୁହେଁ ବିଚ୍ଛିନ୍ନ ହୋଇଗଲୁ – ଆଉ ଆମର ଏଇ ଦୁର୍ଭାଗ୍ୟକୁ ଗୋଟାଏ ଦୁଃସ୍ୱପ୍ନ ପରି ମୁଁ ଭୁଲିଗଲି । ଏହାପରେ ହୁଏତ ମୋ ଜୀବନର ସତ୍ତା ମୁଁ ହରାଇ ବସିଥା'ନ୍ତି, କିନ୍ତୁ ଠିକ୍ ଏତିକିବେଳେ ମୋ ଆଖିଆଗରେ ଏକ ଲୋଭନୀୟ ଜୀବନର ଚିତ୍ର ଆଙ୍କିଦେଲେ ଶ୍ରୀମତୀ ଚନ୍ଦ୍ରାବତୀ ଦାସ ।

(ଫୋନ୍ ବାଜିଉଠିଲା – କୁମାର ଫୋନ୍ ଧରିଲେ ।) କୁମାର ସ୍ପିକିଙ୍ଗ୍ .....ହସ୍ପିଟାଲ୍....(ଚମକି ଉଠି) ... ଏଁ.... ଶ୍ରୀମତୀ ଦାସ ଆଉ ନାହାନ୍ତି ରାୟ !

ଆନନ୍ଦ –ଶ୍ରୀମତୀ ଦାସ ? କ'ଣ ହୋଇଥିଲା ?

କୁମାର – ବିଷ ଖାଇ ମୃତ୍ୟୁ । ମରିବା ଆଗରୁ ସେ କହି ଯାଇଚନ୍ତି ଯେ ଅରୁଣା ତାଙ୍କୁ ବିଷ ଦେଇଚି । ....ତାଙ୍କ ମୃତ୍ୟୁପାଇଁ ଦାୟୀ କିଏ ସେ କଥା ବିଚାର କରିବାର ଅବସ୍ଥା ମୋର ଆଜି ନାହିଁ; କିନ୍ତୁ ଶ୍ରୀମତୀ ଦାସ ଯେଉଁ ଜୀବନର ଲୋଭ ମତେ ଦେଖାଇଥିଲେ, ସେ ଜୀବନ ବଳେବଳେ ମୋ'ଠାରୁ ଦୂରେଇଗଲା । ଅଥଚ କଟକ ସହରରେ ସେ କେଉଁ ଅଖ୍ୟାତ ଗଳିରଏକ ସାଧାରଣ ଝିଅ ଏଇ ନୀଳା.....

ଆନନ୍ଦ –ମୁଁ ଜାଣେ କୁମାର, ନୀଳାପାଇଁ ତମ ହୃଦୟରେ ଅଛି ଏକ ଶାନ୍ତ ସୁନ୍ଦର ପ୍ରେମର ଆସନ । କିନ୍ତୁ ଏ ସମସ୍ୟାର ଶେଷ କେଉଁଠି ? ଏହାର ସମାଧାନ କାହିଁ ?

କୁମାର – ସମାଧାନ ହୋଇଚି ରାୟ, ଏଇ ଘରେ – ଏଇଠି ଜଣେ ପତିବ୍ରତା ନାରୀର ସ୍ନେହ-ପ୍ରେମ-ହୃଦୟ ଦେଇ ମତେ ଦିନେ ଯିଏ ସାର୍ଥକ କରିଥିଲା, ସେଇ ପୁଣି ଆଜି ଫେରିଆସିଚି ନୀଳା ରୂପରେ । ନୀଳାକୁ ପାଇ ଆଜି ମୁଁ ଫେରିପାଇଚି (ଏତିକିବେଳେ ସିଡ଼ିର ଉପର ପାହାଚରେ ନୀଳା ଦେଖାଦେଲା) କିଏ ନୀଳା ?

ନୀଳା – ଆପଣ ବସନ୍ତୁ କୁମାର – ଆମ ବିବାହର ଦିନ ସ୍ଥିର କରିବାକୁ ହବ । ଆଉ ଆପଣଙ୍କ ବନ୍ଧୁଙ୍କୁ ମୋର ଅନୁରୋଧ, ସେ ଯେପରି ବିବାହର ଶେଷ ପର୍ଯ୍ୟନ୍ତ କଲିକତାରେ ରହିବେ । (ନୀଳା ଚାଲିଗଲା)

କୁମାର – ଟିକିଏ ଆଗରୁ ତୁମେ କହୁଥିଲ ନା ରାୟ, ଯେ ମୁଁ ଛଳନା କରୁଚି । ବର୍ତ୍ତମାନ କୁହ....

ଆନନ୍ଦ - ନୀଳା ଦେବୀଙ୍କୁ କହିଦେବେ କୁମାର, ମୁଁ ତାଙ୍କର ଅନୁରୋଧ ରକ୍ଷା କରୁଚି । ବିବାହ ଉତ୍ସବରେ ଯୋଗ ନଦେଇ ମୁଁ କଟକ ଫେରୁନାହିଁ ।

## ପଞ୍ଚମ ଦୃଶ୍ୟ

(ମୀର୍ଣ୍ଣାର ସେଇ ଘର - ଚତୁର୍ଥ ଦୃଶ୍ୟର ଦୁଇଦିନ ପରର ଘଟଣା । ଦୃଶ୍ୟ ଆରମ୍ଭର ଟିକିଏ ପରେ ଆସିଲା ମୋହନ । ଚତୁର୍ଥ ଦୃଶ୍ୟରପରେ ସେ ଏକାବେଳକେ ବିପର୍ଯ୍ୟସ୍ତ ହୋଇପଡ଼ିଚି । ଯେପରି ଉଦ୍ଦେଶ୍ୟହୀନ ଭାବରେ ସେ ଘରେ ଟିକିଏ ବୁଲାଚଲା କରି ମୋହନ ବସିପଡ଼ିଲା ଗୋଟାଏ ଚୌକି ଉପରେ -ଭିତରୁ ଆସିଲା ମୀର୍ଣ୍ଣା ।)

ମୀର୍ଣ୍ଣା - ଆରେ ମୋହନବାବୁ ଯେ - ମୋହନବାବୁ ! କି ଅଦ୍ଭୁତ ଲୋକ ଆପଣ ! ତିନିଦିନ ହେଲା କୁଆଡ଼େ ଆତ୍ମଗୋପନ କରି ରହିଛନ୍ତି..... କ'ଣ ହୋଇଚି ଆପଣଙ୍କର ? ଏକାବେଳକେ ଦିନରାତି ଖଟୁଥିଲେ ? ଏତେ ଖଟୁଚନ୍ତି ତ, ମତେ ଟିକିଏ ଏକ୍‌ଜିବିସନ୍ ବୁଲାଇ ନେଲେ ନାହିଁ ।

ମୋହନ - ଆପଣ ଯାଇଥା'ନ୍ତେ ?

ମୀର୍ଣ୍ଣା - ବାଃ, କୁଆଡ଼େ ଯାଏନାହିଁ ବୋଲି ଏଠିକି ଯିବିନାହିଁ - ଏଇ ନିଷ୍ପତ୍ତି ଆପଣ କରିନେଲେ ପରା ? ଆଚ୍ଛା, ମୁଁ ନହୁଏ ନଗଲି - ଆପଣ ଆସୁ ନଥିଲେ କାହିଁକି ? ନୀଳାର ଛବିକୁ ଛାଡ଼ି ଆସୁନଥିଲେ ନା କ'ଣ ? କହିସାରି ମୀର୍ଣ୍ଣା ହସିଉଠିଲା - ମୋହନ ନିଷ୍ପ୍ରଭ ଦୃଷ୍ଟିରେ ଚାହିଁଲା ମୀର୍ଣ୍ଣାର ମୁହଁକୁ । ମୀର୍ଣ୍ଣାର ହସ ବନ୍ଦ ହୋଇଗଲା ।) କ'ଣ ହୋଇଚି ଆପଣଙ୍କର ?

ମୋହନ - କ'ଣ ହୋଇପାରେ କୁହନ୍ତୁ ।

ମୀର୍ଣ୍ଣା - ଏକାବେଳେ ଅବସନ୍ନ ହୋଇପଡ଼ିଚନ୍ତି ? କିଛି ନା କିଛି ହୋଇଛି ଆପଣଙ୍କର ?

ମୋହନ - ମୋ ଜୀବନ ସହିତ ସଂପୂର୍ଣ୍ଣ ଅପରିଚିତ ପରି କଥା କହୁଚନ୍ତି ଯେ ?

ମୀର୍ଣ୍ଣା - ଚା' ଖାଆନ୍ତୁ !

ମୋହନ - ନା ।

ମୀର୍ଣ୍ଣା - ତା'ହେଲେ ଏକ୍‌ଜିବିସନ୍ କଥା କୁହନ୍ତୁ । ନୀଳାର ଛବି....

ମୋହନ - ଆପଣ ଯା' କହିଥିଲେ....

ମୀର୍ଣ୍ଣା - ଫାଷ୍ଟ୍ ହୋଇଚି ତ ?

ମୋହନ - ହଁ ।

ମୀର୍ଣ୍ଣା - ଆନନ୍ଦରେ ସାବାସ୍ ମୋହନବାବୁ । ଆପଣଙ୍କ ତୂଳୀର ଜୟ ହେଉ । କିନ୍ତୁ ମୋ ବିଚାରଶକ୍ତିକୁ ଆପଣ ପ୍ରଶଂସା ନକରି ରହିପାରିବେ ନାହିଁ । ମୁଁ କହିଥିଲି ଏ ଛବି

ନିଶ୍ଚୟ ଫାଷ୍ଟ୍ ହେବ - ଫାଷ୍ଟ୍ ହୋଇଛି । ଆପଣଙ୍କ ଶିଳ୍ପୀ ଜୀବନ ସାର୍ଥକ ହୋଇଛି, ଏଥର ନିଶ୍ଚିତ ମନରେ ନୀଳାକୁ ବିବାହ କରି ସୁଖରେ ଘରସଂସାର କରି ରହନ୍ତୁ । ଭାବୁଚନ୍ତି କ'ଣ ? ଏତେ ବଡ଼ ଏକ୍‌ଜିବିସନ୍‌ରେ ଯା'ର ଛବି ଫାଷ୍ଟ୍ ହୋଇଚି, ତାକୁ ବିବାହ କରିବାପାଇଁ ରାଜା ଜମିଦାରମାନେ ବି ପାଗଳ ହୋଇଉଠିବେ । ହଁ, ପୁରସ୍କାର କେତେ, ଦୁଇ ହଜାର ନା ?

ମୋହନ - ଦୁଇ ହଜାର ? ନା ବେଶି ।

ମୀର୍ଣ୍ଣା - ବେଶି ? କେତେ ?

ମୋହନ - ବିଶ୍ୱାସ କରିବେ ତ ?

ମୀର୍ଣ୍ଣା - କୁହନ୍ତୁ !

ମୋହନ - ପାଞ୍ଚ ହଜାର ।

ମୀର୍ଣ୍ଣା - ପାଞ୍ଚ ହଜାର ! !

ମୋହନ - କାହିଁକି ? ଏ ଯୁଗର ମାନେ ଏଇ ଉଣେଇଶି ଶହ ତେପନ ମସିହାରେ ଜଣେ ସୁନ୍ଦରୀ ତରୁଣୀର ମୂଲ୍ୟ କ'ଣ ପାଞ୍ଚହଜାର ଟଙ୍କା ନୁହେଁ ।

ମୀର୍ଣ୍ଣା - କାହା କଥା ଆପଣ କହୁଚନ୍ତି ?

ମୋହନ - ନୀଳାର କଥା ।

ମୀର୍ଣ୍ଣା - ମୁଁ ନୀଳାର ଛବି କଥା ପଚାରୁଚି ।

ମୋହନ - ମୁଁ କିନ୍ତୁ ନୀଳାର କଥା କହୁଚି ।

ମୀର୍ଣ୍ଣା - ନୀଳା କାହିଁ ?

ମୋହନ - ଆପଣ ବର୍ତ୍ତମାନ କହୁଥିଲେ ନା, ନୀଳାକୁ ବିବାହ କରିବା ପାଇଁ ରାଜା ଜମିଦାରମାନେ ପାଗଳ ହୋଇଯିବେ ।

ମୀର୍ଣ୍ଣା - ମିଛ ତ କହିନାହିଁ ।

ମୋହନ - ମୁଁ ମଧ କହୁନି - ତେବେ କୁମାର ସାହେବ ପାଗଳ ହୋଇଥିଲେ କି ନା ମୁଁ ଜାଣେନି; କିନ୍ତୁ ସେ ନୀଳାକୁ ବିବାହ କରୁଚନ୍ତି ?

ମୀର୍ଣ୍ଣା - ନୀଳାକୁ ବିବାହ କରୁଛନ୍ତି କୁମାର ସାହେବ । କିଏ ସେ କୁମାର ?

ମୋହନ - ଜଣେ ସ୍ତ୍ରୀଲୋକ ପାଇଁ ପାଞ୍ଚହଜାର ଟଙ୍କା ଅକାତରରେ ଦେଇପାରିବେ - ଏହିପରି ଜଣେ ଭାଗ୍ୟବାନ୍ ବ୍ୟକ୍ତି ।

ମୀର୍ଣ୍ଣା - ଏଇଠି ଥାଆନ୍ତି ସେ - କଲିକତାରେ ?

ମୋହନ - ହଁ, ଏଇଠି ଥାଆନ୍ତି -ଖିଦରପୁରର ବ୍ଲୁ ଭିଲ୍ଲା ।

ମୀର୍ଣ୍ଣା - ବ୍ଲୁ ଭିଲ୍ଲା ।

ମୋହନ - ହଁ, ବ୍ଲୁ ଭିଲ୍ଲା....କୁମାର ଅମରେନ୍ଦ୍ର ନାରାୟଣ ସିଂହ ଦେଓ ।

ମୀର୍ଣ୍ଣା - ମୋହନବାବୁ ! (ମୀର୍ଣ୍ଣା ବିଶ୍ୱାସ କରୁନାହାନ୍ତି)

ମୋହନ - କ'ଣ ? ବିଶ୍ୱାସ କରୁନାହାନ୍ତି ? ବାସ୍ତବିକ, ନିଜ ଆଖିରେ ନଦେଖିଲା ପର୍ଯ୍ୟନ୍ତ ବିଶ୍ୱାସ କରିବାକୁ ପ୍ରବୃତ୍ତି ହୁଏନା ।

ମୀର୍ଣ୍ଣା - ତଥାପି ମୁଁ କହିବି ଏ ମିଛ କଥା ।

ମୋହନ - ମୁଁ ଜାଣେ, ଆପଣଙ୍କ ଆଖିରେ ନୀଳାର ସ୍ଥାନ ବହୁ ଉଚ୍ଚରେ । କିନ୍ତୁ ସେ ତ ଉଚ୍ଚରେ ହିଁ ରହିଛି । ଏଇ ଦେଖନ୍ତୁ, ପାଞ୍ଚ ହଜାର ଟଙ୍କାର ଚେକ୍... । ଏ ଚେକ୍ ନୀଳା ହିଁ ମତେ ଦେଇଚି ।

ମୀର୍ଣ୍ଣା - ଚେକ୍! (ମୋହନ ଚେକ୍‌ଟା ମୀର୍ଣ୍ଣା ହାତକୁ ବଢ଼ାଇ ଦେଲା ।)

ମୋହନ - ଦେଖନ୍ତୁ, ମୋର ସମସ୍ତ କଥା ଠିକ୍ । ମୁଁ ପାଞ୍ଚ ହଜାର ଟଙ୍କା ପାଇଛି ଆଉ ନୀଳା ହେବାକୁ ଯାଉଛି କୁମାର ଅମରେନ୍ଦ୍ର ନାରାୟଣ ସିଂହଦେଓଙ୍କ ସ୍ତ୍ରୀ - ଯୁବରାଣୀ ! ଏ କ'ଣ ମୀର୍ଣ୍ଣା ଦେବୀ । ଆପଣ ଏପରି ଆହତ ଦୃଷ୍ଟିରେ ଚାହିଁଛନ୍ତି କାହିଁକି । ଚେକ୍‌ଟା ଆଣି ମୁଁ ଭୁଲ୍ କରିଚି ? ମୋ ପୌରୁଷରେ କ'ଣ ଆଘାତ ଲାଗିଛି ? ନୀଳାର ଛବିକୁ ଦିନେ ଯିଏ ପାଇ ପାରିନଥିଲେ - ଆଜି ସିଏ ସ୍ୱୟଂ ନୀଳାକୁ ପାଇଚନ୍ତି ।

(ମୋହନର ଏକଥା ଶୁଣି ଶୁଣି ମୀର୍ଣ୍ଣା ଏକ ଅର୍ଦ୍ଧଚେତନ ଅବସ୍ଥାରେ ପହଞ୍ଚିଯାଇଛି ।)

ମୀର୍ଣ୍ଣା - ଆପଣ ଠିକ୍ ଜାଣନ୍ତି ମୋହନବାବୁ - ନୀଳା କୁମାର ସାହେବଙ୍କୁ ବିବାହ କରୁଚି ?

ମୋହନ - ଜାଣେ ।

ମୀର୍ଣ୍ଣା - ଆଉ ସେଇ ସମ୍ବାଦ ନେଇ ଆପଣ ମୋ ନିକଟକୁ ଆସିଚନ୍ତି !

ମୋହନ - ମୁଁ ଜାଣେ ଆପଣ ମୋତେ ବିଦ୍ରୂପ କରିବେ । ଆପଣ ନାରୀ ସତ - କିନ୍ତୁ ମୋ ପରି ଦୁର୍ବଳ ନୁହଁନ୍ତି, କି ନୀଳାପରି ନିଜକୁ ଅସହାୟା ଭାବନ୍ତି ନାହିଁ । ନୀଳାସ୍ଥାନରେ ଆପଣ ହୋଇଥିଲେ..... ଆପଣ ହୁଏତ ସେଇ ଉଦ୍ଧତ ବର୍ବର ନାରୀମାଂସପିପାସୁ କୁମାର ଅମରେନ୍ଦ୍ର ନାରାୟଣର ମଥାଟାକୁ ଆପଣଙ୍କର ଏହି ପାଦରେ ଦଳି ପେଷି....

ମୀର୍ଣ୍ଣା - (ବାଧାଦେଇ) ମୋହନବାବୁ !

(ମୀର୍ଣ୍ଣା ଆଉ ଠିଆହୋଇ ରହିନପାରି ବସିପଡ଼ିଲା - ତା'ର ସମସ୍ତ ଶକ୍ତି ଯେପରି ଲୋପପାଇଚି ।)

ମୋହନ - ଏଁ....

ମୀର୍ଣ୍ଣା - ହିନ୍ଦୁ ନାରୀ ସବୁ ପାରେ କିନ୍ତୁ ନିଜ କାନରେ ନିଜ ସ୍ୱାମୀର ନିନ୍ଦା....

ମୋହନ - ସ୍ୱାମୀ ! କିଏ ? ଆପଣଙ୍କର ସ୍ୱାମୀ ?

ମୀର୍ଣ୍ଣା - କୁମାର !

ମୋହନ - କୁମାର ! କୁମାର ସାହେବ ଆପଣଙ୍କର ସ୍ୱାମୀ । କୁମାର ଅମରେନ୍ଦ୍ର ନାରାୟଣ ସିଂହଦେଓ ! ନୀଳା ତାଙ୍କର ଯୁବରାଣୀ ହେଉଛି - ଆଉ, ସେ ସମ୍ବାଦ ଆପଣଙ୍କୁ

ଆଣିଦେଉଛି ମୁଁ - ମୁଁ !! ହାଃ....ହାଃ... ହାଃ (ଜୋର୍‌ରେ ହସିବାକୁ ଲାଗିଲା - ଭିତରୁ ଆସିଲେ ମହାପାତ୍ର)

ମହାପାତ୍ର - ହସ ମୋହନ, ହସ , ଆହୁରି ଜୋର୍‌ରେ ହସ । ଅନେକଦିନୁ ଏ ଘରେ କେହି ପ୍ରାଣଖୋଲା ହସ ହସିନାହିଁ । ଆଜି ସେ ଦିନ ଆସିଛି । ତୁମେ ହସ ଆହୁରି ଜୋର୍‌ରେ । (ସେମିତି ହସୁଥିବା ଅବସ୍ଥାରେ ମୋହନ ଚାଲିଗଲା)

ଦେଖିଲୁ - ଦେଖିଲୁ ମୀର୍ଣ୍ଣା ! ଯା'କୁ ତୁ ବିଶ୍ୱାସ କରିଥିଲୁ ତ । ଆଜି ସେ ଚାଲିଗଲା - ହସିହସି ବିଦାୟ ନେଲା - ଆଉ ତୋ ଆଖିରେ ଭରି ଦେଇଗଲା ଅଶ୍ରୁ.... (ଅଶ୍ରୁପୂର୍ଣ୍ଣ ନୟନରେ ମୀର୍ଣ୍ଣା ଭିତରକୁ ଚାଲିଗଲା; ଟିକିଏ ପରେ ବାହାରୁ ଆସିଲେ ଆନନ୍ଦ ) ।

ଆନନ୍ଦ - ଏଇ ବର୍ତ୍ତମାନ ଏ ଘରୁ ଯିଏ ବାହାରିଗଲେ ସେ ନିଶ୍ଚୟ ମୋହନବାବୁ ?

ମହାପାତ୍ର - ଠିକ୍ ପରେ ପରେ, ତାଙ୍କ ସ୍ଥାନ ପୂରଣ କରିବାକୁ ଯିଏ ଆସିଲେ, ସେ କ'ଣ ଭଗବାନ୍‌ଙ୍କ ସୃଷ୍ଟିର ଶ୍ରେଷ୍ଠ ଜୀବ - ଏଇ ପୃଥିବୀର ଅଢ଼େଇଶହ କୋଟି ମଣିଷଙ୍କ ପରି ଜଣେ ମଣିଷ ନୁହଁନ୍ତି ?

ଆନନ୍ଦ - ଏତେ ଦୂର ଯିବା ଦରକାର ନାହିଁ ସାର୍ - ମୁଁ ଏଇ ଦେଶର, ଆପାତତଃ ଏଇ କଲିକତା ସହରର ଜଣେ ଅଧିବାସୀ - କିନ୍ତୁ ମଣିଷ ତ ଭଗବାନଙ୍କ ସୃଷ୍ଟିର ଶ୍ରେଷ୍ଠ ଜୀବ, ଏଥିରେ ଆଉ ନୂତନତ୍ୱ କ'ଣ ଅଛି ?

ମହାପାତ୍ର - ନୂତନତ୍ୱ ନାହିଁ ? ଆଚ୍ଛା, ତୁମେ କହିପାରିବ ମଣିଷ କାହିଁକି ଶ୍ରେଷ୍ଠ ?

ଆନନ୍ଦ - କାରଣ, କାରଣ ସେ 'ମଣିଷ' । ସେ ବେଦ, ଉପନିଷଦ, ଗୀତା, ଭାଗବତ ରଚନା କରିଚି, କୋଣାର୍କ ତୋଳିଚି, ତାଜମହଲ ତୋଳିଚି, ପାଣିରେ ବୁଡ଼ିଚି, ପବନରେ ଉଡ଼ିଚି । ଲଣ୍ଡନରେ କଥା କହି କଟକରେ ଶୁଣିଚି । ଧର୍ମସ୍ଥାପନ କରିଚି - ଶିକ୍ଷାଦାନ କରିଚି - ସଂସ୍କୃତି ରକ୍ଷା କରିଚି - ବୁଦ୍ଧ, ଚୈତନ୍ୟ, ଯୀଶୁ, ମହମ୍ମଦ, ଗାନ୍ଧୀ ରୂପରେ ଜନ୍ମଗ୍ରହଣ କରି ଏ ମାନବ ସମାଜର ଅଶେଷ କଲ୍ୟାଣ ସାଧନ କରିପାରିଛି ।

ମହାପାତ୍ର- ଆଉ ସେଇ ମଣିଷ ଗୀତା, କୋରାନ୍, ବାଇବେଲ୍‌କୁ ଗୋଟାଏ ହାତରେ ଧରି ଆଉ ଗୋଟାଏ ହାତରେ ଖଣ୍ଡା, ବନ୍ଧୁକ, ବୋମା ଧରିଚି । ମନ୍ଦିର ଭାଙ୍ଗିଚି, ବିଗ୍ରହ ପୋଡ଼ିଚି - ଧର୍ମ, ଶିକ୍ଷା, ସଂସ୍କୃତି ନାମରେ ଜାଲ୍, ଜୁଆଚୋରୀ, ଭଣ୍ଡାମି କିଛି ବାଦ୍ ଦେଇନାହିଁ । ବିଜ୍ଞାନର ଦ୍ୱାହି ଦେଇ ବିଭୀଷିକାକୁ ପ୍ରଶ୍ରୟ ଦେଇଚି ।

ଆନନ୍ଦ - ତେବେ ତ ହେଇଚି ସାର୍- ଆପଣଙ୍କର ଉତ୍ତର ମିଳିଯାଇଚି । ମଣିଷ ଶ୍ରେଷ୍ଠ - କାରଣ, ମଣିଷ ଏ ହାତ ସେ ହାତ କରି ସବୁ କିଛି କରିପାରେ । ସେ ଶ୍ରେଷ୍ଠ, କାରଣ ସେ ଏକାଧାରରେ ମଣିଷ ଆଉ ପଶୁ ।

ମହାପାତ୍ର - (ଅତି ଆନନ୍ଦରେ ଆନନ୍ଦକୁ କୁଣ୍ଢାଇ ପକାଇ) Bravo! Bravo ବନ୍ଧୁ! ମୁଁ ତୁମକୁ ସ୍ୱାଗତ ଜଣାଉଚି । ତୁମେ ଆଜି ମଣିଷ ସମ୍ବନ୍ଧରେ ଗୋଟିଏ ଅତି ମହାସତ୍ୟକୁ ସ୍ୱୀକାର କରିଚ । ମଣିଷ ଜାଣେ ସେ ଏକାଧାରରେ ମଣିଷ ଆଉ ପଶୁ । କିନ୍ତୁ ତାକୁ

ତୁମେ ପଶୁର ଆଖ୍ୟା ଦେଲେ ସେ ମଣିଷର ସମସ୍ତ ଶକ୍ତି ନେଇ ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ, ତା ନିଜର ଭିତରଟାକୁ ଚାହିଁ ଦେଖିବ ଯେ, ସେଠାରେ ସେ ତା'ର ପଶୁତ୍ୱକୁ ଅତି ନିରାପଦ ଭାବରେ ଛପାଇ ରଖିପାରିଛି କି ନା ? ମଣିଷର ଏଇ ରୂପର ପରିଚୟ ତୁମେ ପାଇଚ - ଏତେ ଦିନ ମୁଁ ତୁମର ପଥ ଚାହିଁରହିଥିଲି । ତୁମେ ସେଇ, ତୁମେ ସେଇ । କିନ୍ତୁ, କିଏ ତୁମେ ? ତୁମକୁ ତ ମୁଁ.....

ଆନନ୍ଦ - ନାଁ - ମତେ ଆପଣ ଚିହ୍ନନ୍ତି ନାହିଁ, ମୁଁ କିନ୍ତୁ ଆପଣଙ୍କୁ ଚିହ୍ନିପାରିଚି -

ମହାପାତ୍ର - ମତେ ତମେ ଚିହ୍ନ ? ମତେ....କିଏ ମୁଁ ? କୁହ, କିଏ ମୁଁ ?

ଆନନ୍ଦ - ଆପଣ....

ମହାପାତ୍ର - ନା, ନା....ତୁମେ ମତେ ଚିହ୍ନନା ? କିପରି ଚିହ୍ନିବ ? ମୁଁ ମଣିଷ ନୁହେଁ କି ପଶୁ ନୁହେଁ - ଦେବତା ନୁହେଁ କି ଦାନବ ନୁହେଁ - ନର ନୁହେଁ କି ବାନର ନୁହେଁ - ମୁଁ ଏଇ ଦୁଇ ମହାଶକ୍ତି ଭିତରେ ଏକ ମଧ୍ୟବର୍ତ୍ତୀ ଅବସ୍ଥା.... ଏଇ ଆପୋଷ ନିଷ୍ପତ୍ତି । ସ୍ୱୟଂ ବିଧାତା ପୁରୁଷ ମୋର ନାମକରଣ କରିପାରିନାହାନ୍ତି । ତୁମେ ମୋତେ ଚିହ୍ନିବ କିପରି ? ତୁମେ ମୋତେ ଚିହ୍ନିନା.... ଚିହ୍ନିନା (ଚାଲିଗଲେ, ଟିକଏ ପରେ ଆସିଲା ମୀର୍ଣ୍ଣା) ।

ଆନନ୍ଦ - ନମସ୍କାର ମୀର୍ଣ୍ଣା ଦେବୀ !

ମୀର୍ଣ୍ଣା - ଆପଣ....

ଆନନ୍ଦ - ମୁଁ କୁମାର ସାହେବଙ୍କ ନିକଟକୁ ଆସି......

ମୀର୍ଣ୍ଣା - (ଦୃଢ଼ତା ସହ) କାହିଁକି ?

ଆନନ୍ଦ - ଦେଖନ୍ତୁ, ଅତି ଆକସ୍ମିକ ଭାବରେ ଏପରି କେତେ ଘଟଣା ଏ ଭିତରେ ଘଟିଯାଇଚି...... ସେ ସବୁର ଆଲୋଚନା ପାଇଁ ସମୟ କିମ୍ବା ସୁବିଧା ଏଠିନାହିଁ । ଆଚ୍ଛା, ମୋହନବାବୁ ବର୍ତ୍ତମାନ କେଉଁଠି ଜାଣନ୍ତି ?

ମୀର୍ଣ୍ଣା - ମୁଁ ଜାଣେନା.....

ଆନନ୍ଦ - ତାଙ୍କୁ ପୁଣି ଖୋଜି ବାହାର କରିବାକୁ ହେବ ।

(ମୀର୍ଣ୍ଣା ଚାଲିଯାଉଥିଲା) ଶୁଣନ୍ତୁ....

ମୀର୍ଣ୍ଣା - କିଛି ଶୁଣିବା ଦର୍କାର ନାହିଁ, ମୁଁ ସବୁ ଜାଣେ....

ଆନନ୍ଦ - ଆପଣ ଯାହା ଜାଣନ୍ତି - ତାହା ଯଥେଷ୍ଟ ନୁହେଁ । ତା ହୋଇଥିଲେ ମୁଁ ଆଜି ଏଠିକି ଆସିନଥାନ୍ତି । (ମୀର୍ଣ୍ଣାର ଗଳା ରୁଦ୍ଧହୋଇ ଆସୁଥାଏ)

ମୀର୍ଣ୍ଣା - ବେଶ୍ ତେବେ କୁହନ୍ତୁ, ଆଉ କ'ଣ ଶୁଣିବାରେ ବାକି ଅଛି ? (ମୀର୍ଣ୍ଣା ଆଖିରେ ଅଶ୍ରୁ)

ଆନନ୍ଦ - ମୋତେ କ୍ଷମାକରିବେ ମୀର୍ଣ୍ଣା ଦେବୀ - ମୋର ଧୃଷ୍ଟତା ସ୍ୱୀକାର କରୁଛି- କିନ୍ତୁ....

ମୀର୍ଣ୍ଣା - କିଛି ନ ଶୁଣି ମଧ୍ୟ ମୁଁ ବୁଝିପାରୁଚି.......ଆପଣ ମୋ ସମ୍ବନ୍ଧରେ ଅନେକ କିଛି ଜାଣନ୍ତି । ସଙ୍କୋଚର ଅବକାଶ ନାହିଁ.... ଆପଣ କୁହନ୍ତୁ ।

ଆନନ୍ଦ - ମୁଁ ଆଜି ଏଇ ଅନୁରୋଧ କରିବାକୁ ଆସିଚି.... ଚକ ଆଜି ଘୂରିଯାଇଚି ତା'ର ସୁଯୋଗ ଆପଣଙ୍କୁ ନେବାକୁ ହେବ ।

ମୀର୍ଣ୍ଣା - କ'ଣ ଆପଣଙ୍କର ଉଦ୍ଦେଶ୍ୟ ? କ'ଣ ଆପଣ କହିବାକୁ ଚାହାନ୍ତି ?

ଆନନ୍ଦ - ଅନେକ କଥା ମୁଁ କହିବାକୁ ଚାହେଁ - ଅନେକ କଥା ମୁଁ କହିବି....ସେ ଭରସା ଆପଣଙ୍କଠାରୁ ମୁଁ ପାଇଛି ।

ମୀର୍ଣ୍ଣା - କୁମାର ସାହେବ ଆପଣଙ୍କୁ ଏଠାକୁ ପଠାଇଛନ୍ତି ?

ଆନନ୍ଦ - ନା, ଆପଣଙ୍କ ନିକଟକୁ ମୋ ନିଜ ପକ୍ଷରୁ ମୁଁ ଆସିଛି । ସେ ମୋତେ ପଠେଇଛନ୍ତି ଆପଣଙ୍କ ବାପାଙ୍କ ନିକଟକୁ । କିନ୍ତୁ ତାଙ୍କୁ ଯେଉଁ ଅବସ୍ଥାରେ ମୁଁ ଦେଖୁଚି....

ମୀର୍ଣ୍ଣା - ତାଙ୍କର ଅବସ୍ଥା ଦେଖି ଆପଣଙ୍କର ଦୟାହେବା ଉଚିତ୍, ଏତିକିରେ ତାଙ୍କୁ ମୁକ୍ତି ଦିଅନ୍ତୁ !

ଆନନ୍ଦ - ମୋର ଉଦ୍ଦେଶ୍ୟ.....

ମୀର୍ଣ୍ଣା - (ବାଧାଦେଇ) ଆପଣଙ୍କର ଉଦ୍ଦେଶ୍ୟ ଯାହା ହୋଇଥାଉନା କାହିଁକି, ଆପଣ ଏଠୁ ଚାଲିଯାଆନ୍ତୁ (ଭିତରୁ ଆସିଲେ ମହାପାତ୍ର, ଦୁଇକପ୍ ଚା ନେଇ) ।

ମହାପାତ୍ର - ଗୋଟିଏ କପ୍ ଚା ନଖାଇ ସେ ଚାଲିଯିବେ କିପରି ମୀର୍ଣ୍ଣା ? ଏଇ ନିଅ ବାବୁ ଚା ! ମୁଁ ନିଜେ ତିଆରି କରି ଆଣିଚି । ସେଇ ଚୌକିରେ ବସି ଆରାମରେ ଚା ଖାଅ । (ନିଜେ ବସି ଚା ଖାଇଲେ) ହଁ, ମୋର ଗୋଟିଏ ପ୍ରଶ୍ନ - କେବେହେଲେ କ'ଣ ଏ ମଣିଷ ଗୋଟିଏ ସାଦାସିଧା ସୁନ୍ଦର ମଣିଷର ରୂପ ନେଇ ଏ ପୃଥିବୀରେ ହସି ଖେଳି ବୁଲିବ ନାହିଁ ? ସେ କ'ଣ ସମ୍ଭବ ନୁହେଁ ?

ଆନନ୍ଦ - ନିଶ୍ଚୟ ସମ୍ଭବ ! ପ୍ରତି ମୁହୂର୍ତ୍ତରେ ଏହା ସମ୍ଭବ ହେଉଚି । (ମହାପାତ୍ର ଜୋର୍‌ରେ ହସି ଉଠିଲେ)

ମହାପାତ୍ର - ପ୍ରତି ମୁହୂର୍ତ୍ତରେ ସମ୍ଭବ ହେଉଚି ? (ପୁଣି ହସିଲେ ) × × ×

ଆନନ୍ଦ - ଏଇ ଦେଖନ୍ତୁ ସେଇ ଶୁଭ ସମ୍ବାଦ ଘେନି ମୁଁ ଆପଣଙ୍କ ନିକଟକୁ ଆସିଚି ।

ମହାପାତ୍ର - ଶୁଭ ସମ୍ବାଦ ? ଶୁଣୁଚୁ ଶୁଣୁଚୁ ମୀର୍ଣ୍ଣା ! ଶୁଭ ସମ୍ବାଦ ଘେନି ଆସିଛନ୍ତି, ଶୁଭ ସମ୍ବାଦ.... (ହସ ଚାଲିଥାଏ, ଏଇ ଅବସରରେ ଆନନ୍ଦ ତାଙ୍କ ପକେଟ୍‌ରୁ ଗୋଟିଏ ଦଲିଲ୍ ବାହାର କରି ହାତରେ ଧରିଲେ ) ।

ଆନନ୍ଦ - (ଧରି) ଏଣେ ଦେଖନ୍ତୁ । ଏ ଦସ୍ତଖତ୍....

ମହାପାତ୍ର - ଦସ୍ତଖତ୍ ! କାହାର ?

ଆନନ୍ଦ - ଆପଣଙ୍କର ମନେନାହିଁ, ରୋଗଶଯ୍ୟାରେ ପଡ଼ି ଆପଣ ଏ ଦଲିଲ୍‌ରେ ଦସ୍ତଖତ କରି ଦେଇଥିଲେ । ଏଇ ଦଲିଲ୍ ବଳରେ ଆପଣଙ୍କର ସମସ୍ତ ସମ୍ପତ୍ତିର ମାଲିକ ହୋଇଗଲେ କୁମାର ସାହେବ.... ଏଇ ମୀର୍ଣ୍ଣା ଦେବୀଙ୍କ ସ୍ୱାମୀ.... କୁମାର ଅମରେନ୍ଦ୍ର ନାରାୟଣ ସିଂହଦେଓ, ଚିହ୍ନିପାରୁନାହାନ୍ତି ?

ମହାପାତ୍ର - କୁମାର !

ଆନନ୍ଦ - କୁସୁମପୁର ରାଜବଂଶର କୁମାର ଅମରେନ୍ଦ୍ର ନାରାୟଣ, ଯାହାଙ୍କର ରାଜ୍ୟ ନଥିଲା କି ସମ୍ପତ୍ତି ନଥିଲା.... ଥିଲା କେବଳ କୁମାର ସାହେବ ଉପାଧି । ଅନ୍ନ ଚିନ୍ତାରେ ଏଇ କଲିକତା ସହରରେ ବୁଲୁଥିବାବେଳେ ଆପଣ ତାଙ୍କ ସନ୍ଧାନ ପାଇଲେ - ତାଙ୍କର ରୂପ, ତାଙ୍କର ଶିକ୍ଷା....ଆଉ ସର୍ବୋପରି ତାଙ୍କର ଆଭିଜାତ୍ୟର ପ୍ରତୀକ 'କୁମାର ସାହେବ' ଉପାଧିରେ ଆପଣ ମୁଗ୍ଧ ହୋଇ ଆପଣଙ୍କର ଏକମାତ୍ର କନ୍ୟା ଏଇ ମାର୍ଣ୍ଣାଦେବୀଙ୍କ ସହିତ ତାଙ୍କର ବିବାହ ଦେଲେ.....

ମହାପାତ୍ର - ମାର୍ଣ୍ଣାର ବିବାହ ! !

ଆନନ୍ଦ - ହଁ, କଲିକତାର ବିଶିଷ୍ଟ ବ୍ୟବସାୟୀ ଭବାନୀଶଙ୍କର ମହାପାତ୍ରଙ୍କର ଏକମାତ୍ର କନ୍ୟା, ମାର୍ଣ୍ଣାଦେବୀଙ୍କ ବିବାହ ହୋଇଗଲା କପର୍ଦ୍ଦକଶୂନ୍ୟ କୁମାର ସାହେବଙ୍କ ସାଥିରେ । କିନ୍ତୁ ମୋଟେ ଦୁଇବର୍ଷ ପରେ ଏକ ମାରାତ୍ମକ ରୋଗ ମୁଖରୁ ବଞ୍ଚି ଆପଣ ଦେଖିଲେ, ଆପଣଙ୍କର ସମ୍ପତ୍ତି ସହିତ ଆପଣଙ୍କର ପ୍ରାଣପ୍ରିୟ କୁମାର ସାହେବ ଆପଣଙ୍କଠାରୁ ଦୂରେଇ ଯାଇଛନ୍ତି, ଏଇ ମହାନଗରୀର ସର୍ବଗ୍ରାସୀ ମୋହରେ ଭୁଲି, ଭୁଲିଚନ୍ତି ଆପଣଙ୍କୁ - ଭୁଲିଚନ୍ତି ତାଙ୍କର ଏଇ ଦେବୀପ୍ରତିମା ସ୍ତ୍ରୀ ମାର୍ଣ୍ଣା ଦେବୀଙ୍କୁ -

ମହାପାତ୍ର - (କେବଳ ଶୂନ୍ୟଦୃଷ୍ଟିରେ ଚାହିଁ ରହିଥା'ନ୍ତି)

ଆନନ୍ଦ - ଆଜି କିନ୍ତୁ ସେଦିନ ନାହିଁ । ଏଇ ଦେଖନ୍ତୁ, ଏ ସେଇ ଦଲିଲ, ଆପଣଙ୍କ ନିକଟକୁ ପୁଣି ଫେରିଆସିଚି - ତା ସଙ୍ଗେ ସଙ୍ଗେ ଫେରିଆସିଚି ଆପଣଙ୍କର ପୂର୍ବର ସମ୍ପତ୍ତି , ଆପଣଙ୍କର ବ୍ଲୁ ଭିଲ୍ଲା - କ୍ରାଇସେଲ୍‌ର ଲକ୍ଷ ଲକ୍ଷ ଟଙ୍କାର ସେୟାର୍ । ଆପଣ ଯାହା ଚାହିଁଥିଲେ, ତାହା ହିଁ ଘଟିଚି । ମଣିଷ ଆଜି ଦେଖାଦେଇଚି ଏକ ସାଦାସିଧା ମଣିଷ ରୂପରେ, ଆଉ ସେଇ ଶୁଭ ସମ୍ବାଦ ଘେନି ମୁଁ ଆପଣଙ୍କୁ ନିକଟକୁ ଆସିଚି ।

(କଥାର ଶେଷ ଆଡ଼କୁ ମହାପାତ୍ର ଦଲିଲ୍‌ଟା ସହିତ ଆନନ୍ଦଙ୍କର ହାତଟାକୁ ନିଜ ଛାତିରେ ଚାପି ଧରିଥା'ନ୍ତି । ତାଙ୍କ ଆଖିରୁ ଧାର ଧାର ଲୁହ ଝରି ଆସୁଥାଏ ।)

## ଷଷ୍ଠ ଦୃଶ୍ୟ

(କଲିକତା ସହରର ଗୋଟିଏ ଗଳି ରାସ୍ତା - ମୋହନ ଆସିଲା - ହତାଶ ଓ ଅବସାଦର ପ୍ରତ୍ୟେକ ଚିହ୍ନ ତା'ଠାରେ ସୁସ୍ପଷ୍ଟ । ସେ ଆସି ଠିକ୍ ତା'ବସାଘର ସମ୍ମୁଖରେ ହୋଇଚି, ଘର ଭିତରୁ ବାହାରି ଆସିଲେ ଆନନ୍ଦ ।)

ମୋହନ - ଆପଣ ଏଠି ?

ଆନନ୍ଦ - ଦୁଇଘଣ୍ଟାରୁ ଉପର ହେବ ଆପଣଙ୍କ ଘରେ ଆପଣଙ୍କୁ ଅପେକ୍ଷା କରି ବସିରହିଥିଲି ।

ମୋହନ - ମୋ ଘରେ ମୋତେ ଅପେକ୍ଷା କରିଥିଲେ ?

ଆନନ୍ଦ - ଦେଖିଲେ ତ ସିଧା ଆପଣଙ୍କ ଘରୁ ବାହାରିଚି । ଆପଣଙ୍କ ବସାଲୋକ କହିଲେ ଆପଣଙ୍କର ଫେରିବାରେ କିଛି ଠିକ୍ ଠିକଣାନାହିଁ ।

ମୋହନ - କୁହନ୍ତୁ କି କାମ ମୋ ଠାରେ ଅଛି ?
ଆନନ୍ଦ - କିନ୍ତୁ ଏଇ ରାସ୍ତାରେ.....
ମୋହନ - ବେଶ୍, ଘର ଭିତରକୁ ଚାଲନ୍ତୁ ।
ଆନନ୍ଦ - ସେଠି ଯେ ଅସୁମାରି ଲୋକ, ତା ଅପେକ୍ଷା ଆପଣ ଦୟାକରି ମୋ ସାଥିରେ-
ମୋହନ - କେଉଁଠି କି ? କୁମାର ସାହେବଙ୍କ ଘରକୁ ? ଦିନେ ଆପଣ ମୋ ଘରକୁ ଅର୍ଡ଼ର୍ ଦେବାକୁ ଆସିଥିଲେ, ଆଜି କ'ଣ ବିବାହର ନିମନ୍ତ୍ରଣ କରିବାକୁ ଆସିଛନ୍ତି ?
ଆନନ୍ଦ - ଦେଖନ୍ତୁ ମୋହନବାବୁ ? ଭଗବାନ୍ ମୋତେ ଏପରି ଗୋଟିଏ ଉପାଦାନରେ ଗଢ଼ିଛନ୍ତି ଯେ ମୁଁ ଆପଣଙ୍କଠାରୁ ଖଣ୍ଡିଏ ପାନ ଖାଇ ହୁଏତ ହଜମ କରି ପାରିବିନାହିଁ; କିନ୍ତୁ ଆପଣ ମୋତେ ଏମିତି ହଜାରେ ନିନ୍ଦା, ଅପବାଦ ଦିଅନ୍ତୁ, ମୁଁ ତାକୁ ଅକ୍ଳେଶରେ ହଜମ କରିଦେଇପାରିବି । ଛାଡ଼ନ୍ତୁ, ନୀଳା ସହିତ କୁମାର ସାହେବଙ୍କ ବିବାହ - ଆପଣ ଏତିକି ମାତ୍ର ଜାଣିଚନ୍ତି ?
ମୋହନ - ଆଉ କ'ଣ ଜାଣିବାକୁ ବାକି ଅଛି ?
ଆନନ୍ଦ - ଚିରଦିନ ପର ଉପରେ ଅଭିମାନ କରି ଆପଣ କ'ଣ ପାଇବେ ?
ମୋହନ - ଯେ ନିଃସ୍ୱ, ସର୍ବହରା ସେ ଅଭିମାନରୁ କ'ଣ ପାଏ, ସେ କଥା ଆପଣମାନେ ବୁଝିପାରିବେ ନାହିଁ । କୁହନ୍ତୁ, ଆପଣ କ'ଣ କହିବାକୁ ଆସିଛନ୍ତି ?
ଆନନ୍ଦ - କହିବାକୁ ତ ମୁଁ ଆସିଚି, କିନ୍ତୁ -
ମୋହନ - କିନ୍ତୁ.....
ଆନନ୍ଦ - ମୋର ହୃଦୟ ପଥରରେ ଗଢ଼ା ନୁହେଁ ମୋହନବାବୁ! ତଥାପି -
ମୋହନ - କ'ଣ ଆପଣ କହିବାକୁ ଚାହୁଁଛନ୍ତି ?
ଆନନ୍ଦ - କହିବାଟା ମୋ ପକ୍ଷେ ଯେତେ ସହଜ, ଶୁଣିବାଟା ଯଦି ଆପଣଙ୍କ ପକ୍ଷରେ ସେତିକ ସହଜ ହୋଇପାରନ୍ତା-
ମୋହନ - କ'ଣ ହେଇଚି ? କୁହନ୍ତୁ କ'ଣ ହେଇଚି ?
ଆନନ୍ଦ - ଆଚ୍ଛା, ଆପଣ ତା'ହେଲେ ଚାଲନ୍ତୁ ଆପଣଙ୍କ ଘରକୁ, ସେଇଠି କହୁଚି । (ଦୁହିଁଙ୍କର ପ୍ରସ୍ଥାନ)

## ସପ୍ତମ ଦୃଶ୍ୟ

(କୁମାର ସାହେବଙ୍କର ପୂର୍ବର ସେଇ ଘର - କୁମାର ଧୀରେ ଧୀରେ ପଦଚାରଣ କରୁଥିଲେ । ଅଳ୍ପକ୍ଷଣ ପରେ ସେ ଘର ଭିତରକୁ ଆସିଲେ ମୀର୍ଣ୍ଣା ଦେବୀ । ତାଙ୍କର ବେଶଭୂଷାରେ କୌଣସି ପରିବର୍ତ୍ତନ ନାହିଁ । ମୀର୍ଣ୍ଣାକୁ ଦେଖିବାକ୍ଷଣି କୁମାର ସ୍ଥିର ହୋଇ ଗୋଟିଏ ସ୍ଥାନରେ ଠିଆହୋଇ ରହିଲେ । ଦୁହିଁଙ୍କ ଦୃଷ୍ଟି

ଦୁହିଁଙ୍କ ଉପରେ ନିବଦ୍ଧ, ଏ ସାକ୍ଷାତ୍ ଯେପରି ଏକାବେଳକେ ଆକସ୍ମିକ; ଅଥଚ ଏଥିପାଇଁ ଉଭୟେ ପ୍ରସ୍ତୁତ -ଏଇ ଭାବ ଦୁହିଁଙ୍କଠାରେ ସୁସ୍ପଷ୍ଟ । ମୀର୍ଣ୍ଣା ଆଗେଇଯାଇ କୁମାରଙ୍କୁ ଭୂମିସଂଲଗ୍ନ ହୋଇ ପ୍ରଣାମ କଲେ । ନିମ୍ନମୁଖ କୁମାର ଏକ ଅପରାଧୀ ପରି ମୀର୍ଣ୍ଣାର ପ୍ରଣାମ ଗ୍ରହଣ କଲେ । ମୀର୍ଣ୍ଣା ଉଠି ଛିଡ଼ାହେଲେ ।)

କୁମାର - ମୁଁ ତୁମକୁ ହିଁ ଅପେକ୍ଷା କରୁଥିଲି ।

ମୀର୍ଣ୍ଣା - ମୁଁ କିନ୍ତୁ ଆଶା ରଖିନଥିଲି ଏମିତି ଭାବେ ତୁମକୁ ଏଠି ଭେଟିବି ବୋଲି-

କୁମାର - ଉପରକୁ ଚାଲ.... (ମୀର୍ଣ୍ଣା ଏକ ପ୍ରଶ୍ନବାଚକ ଦୃଷ୍ଟିରେ କୁମାରଙ୍କୁ ଚାହିଁଲେ ।)

କୁମାର - ବ୍ଲୁ -ଭିଲ୍ଲାର ସର୍ବମୟୀକର୍ତ୍ତ୍ରୀଙ୍କ ସ୍ଥାନ ତ -

(କୁମାର ତାଙ୍କ କଥା ଶେଷ କରିପାରିଲେ ନାହିଁ...କାରଣ ଠିକ୍ ଏତିକିବେଳେ ମୀର୍ଣ୍ଣା ତାଙ୍କ ଅଞ୍ଚଳ ଭିତରୁ ଦଲିଲଟା କାଢ଼ି ସଶବ୍ଦରେ ଟେବୁଲ୍ ଉପରକୁ ଫିଙ୍ଗିଦେଲେ ।)

ମୀର୍ଣ୍ଣା - ମୋର ସ୍ଥାନ କେଉଁଠି ତା'ର ସାକ୍ଷୀ ଏଇ ଦଲିଲ୍ - ଏଇଟାକୁ ଫେରାଇ ଦେବାକୁ ଆସିଥିଲି (ମୀର୍ଣ୍ଣା ଫେରୁଥିଲେ ।)

କୁମାର - ଶୁଣ ମୀର୍ଣ୍ଣା... ତୁମେ ନିଶ୍ଚୟ ଜାଣ ଯେ ଏ ଦଲିଲ୍ ସହିତ ମୋର ଆଉ କୌଣସି ସମ୍ପର୍କ ନାହିଁ ।

ମୀର୍ଣ୍ଣା - ଜାଣେ....

କୁମାର - ତା'ହେଲେ ଏଇଟା ଫେରାଇଦଉଚ କାହିଁକି ?

ମୀର୍ଣ୍ଣା - ବାପାଙ୍କ ଇଚ୍ଛାରେ ଫେରାଇଦେଉଚି ।

କୁମାର - ବାପାଙ୍କ ଇଚ୍ଛାରେ!! ସେ କିପରି ଅଛନ୍ତି ମୀର୍ଣ୍ଣା ?

ମୀର୍ଣ୍ଣା - (ରୁଦ୍ଧ ଗଳାରେ) ଓଃ....କୁମାର! ତାଙ୍କ କଥା ତୁମେ ପଚାରିପାରିଲ ....କି ସ୍ନେହ ସେ ତୁମକୁ କରୁନଥିଲେ! ରୋଗଶଯ୍ୟାରୁ ଉଠି ସେ ଯେତେବେଳେ ଜାଣିଲେ, ତାଙ୍କ ଅତି ଆଦରର କୁମାର ତାଙ୍କୁ ଅତି ନିଷ୍ଠୁର ଭାବରେ ଠକିଛି, କିପରି ତୁମେ ରୋଗଶଯ୍ୟାରୁ ଏ ଦଲିଲ୍‌ରେ ତାଙ୍କଠୁଁ ଦସ୍ତଖତ କରାଇନେଇଚ - ସେଇ ମୁହୂର୍ତ୍ତରୁ.... (ଅଶ୍ରୁ ଚାପରେ ମୀର୍ଣ୍ଣା ଆଉ କହିପାରିଲେ ନାହିଁ)

କୁମାର - ସେଇ ମୁହୂର୍ତ୍ତରୁ ହେଲା ତାଙ୍କ ମସ୍ତିଷ୍କର ବିକୃତି...ସେ ହେଲେ ପାଗଳ । ତା'ପରେ, ଏଇ ଦୀର୍ଘ ଦୁଇବର୍ଷ ବିତିଯାଇଛି, ଏ ଭିତରେ ମୁଁ ନାନା ଉପାୟରେ ଚାହିଁଚି ତାଙ୍କୁ ସାହାଯ୍ୟ କରିବାକୁ, କିନ୍ତୁ ସେ ସବୁ ତୁମେ ପ୍ରତ୍ୟାଖ୍ୟାନ କରି, ଏକ ପାଗଳ ପିତାର ଦାୟିତ୍ୱ ନିଜ ମଥାରେ ଘେନି, ଏଇ କଲିକତା ସହରରେ ଅତି ଦୀନ ଦରିଦ୍ର ଭାବରେ....

ମୀର୍ଣ୍ଣା - ମୁଁ ତ ବେଶ୍ ଚଳିଯାଉଥିଲି । କିଛି ନଥାଇ ମଧ୍ୟ ସେ ଜାଣୁଥିଲେ ତାଙ୍କର ସବୁ ରହିଛି - ସବୁ ସୁଖରୁ ବଞ୍ଚିତ ହୋଇ ସୁଦ୍ଧା ଦୁଃଖ କ'ଣ ଜାଣିବାର ଉପାୟ ତାଙ୍କର ନଥିଲା; କିନ୍ତୁ ଆଜି ଏଇ ଦଲିଲ ....ଏଇ ଦସ୍ତଖତ ଦେଖି ତାଙ୍କର ପୂର୍ବସ୍ମୃତି

ଫେରିଆସିଚି....ତାଙ୍କ ମୁଣ୍ଡର ବିକାର ଘୁଞ୍ଚିଚି ସତ, ତାଙ୍କ ପ୍ରାଣରେ ଜଳିଉଠିଛି ଦୁଃଖଶୋକର ନିଆଁ ! ଦୁଇ ବର୍ଷ ପରେ ସେ ଆଜି ପୁଣି ବୁଝିପାରିଛନ୍ତି, ଯେଉଁ କୁମାର ଉପରେ ତାଙ୍କର ଏତେ ଆଶା, ଏତେ ଭରସା ଥିଲା....ମୋ କୁମାର....ଓଃ...ନା କୁମାର ସାହେବ....ମୁଁ ତୁମକୁ ଅନୁନୟ କରୁଚି, ତୁମେ ଏ ଦଲିଲ୍, ଏ ସମ୍ପତ୍ତି ସବୁ ଫେରାଇ ନିଅ.... ସେ ପୁଣି ପାଗଳ ହୁଅନ୍ତୁ - ସେଇଥିରେ ତାଙ୍କର ସୁଖ, ମୋର ଶାନ୍ତି.....

(ଚାଲିଯାଉଥିଲେ)

କୁମାର - ଶୁଣ ମୀର୍ଣ୍ଣା, ମୋର କଥା ଶେଷହୋଇନି । ଏଇ ଦୁଇ ବର୍ଷ ଭିତରେ ହୋଟେଲ୍, କାଣାନୋଭା, ନାଇଟ୍ କ୍ଲବ୍, ମିସେସ୍ ଦାସ.... ଏ ସମସ୍ତଙ୍କଠୁ ଗୋଟାଏ ତିକ୍ତ ଅଭିଜ୍ଞତା ନେଇ ଏକ ଦ୍ୱନ୍ଦ୍ୱରେ ପଡ଼ିଥିବାବେଳେ ମୋ ଗତିପଥରେ ଦେଖାଦେଲା ନୀଳା....

ମୀର୍ଣ୍ଣା - ନୀଳା ! ନୀଳାକୁ ବିବାହ କରି କ'ଣ ତୁମେ ସୁଖୀ ହୋଇପାରିବ ନାହିଁ.....

କୁମାର - ନୀଳା ଆଉ ମୋ ସମ୍ବନ୍ଧରେ ତମର ଧାରଣା କ'ଣ ?

ମୀର୍ଣ୍ଣା - ଏ ଆଲୋଚନା ପାଇଁ ମୁଁ ଏଠିକି ଆସିନଥିଲି....

(ପ୍ରସ୍ଥାନୋଦ୍ୟତ)

କୁମାର - ଯାଅନାହିଁ ମୀର୍ଣ୍ଣା - କୁହ ତୁମେ କ'ଣ ଜାଣ ?

ମୀର୍ଣ୍ଣା - ମୋହନଠାରୁ ଶୁଣିଲି ତୁମର ନୀଳା ସହିତ ବିବାହ ହେଉଚି - ତୁମ ବନ୍ଧୁଙ୍କଠୁ ଶୁଣିଲି ବିବାହ ହେଉନାହିଁ - ଜାଣେନା କାହାକଥା ସତ ।

କୁମାର - ଦୁହିଁଙ୍କ କଥା ସତ । ଏଇ ଘରେ ଛ'ମାସ ବନ୍ଦିନୀ ହୋଇ ରହିବା ପରେ ନୀଳା ଯେଉଁଦିନ ମୋତେ ବିବାହ ପାଇଁ ସମ୍ମତି ଦେଲା - ସେ ଦିନର ସ୍ମୃତି ରୂପେ ମୁଁ ତାକୁ ଉପହାର ଦେଇଥିଲି ଗୋଟିଏ ହୀରାମୁଦି; କିନ୍ତୁ ମୋର ସେ ହୀରାମୁଦିର ବିନିମୟରେ ସେ ମତେ କ'ଣ ଉପହାର ଦେଲା ଜାଣ ମୀର୍ଣ୍ଣା ?

ମୀର୍ଣ୍ଣା - (ଜିଜ୍ଞାସୁ ଦୃଷ୍ଟିରେ ଚାହିଁରହିଲେ)

କୁମାର - ଏଇ ଚିଠିଟା ପଢ଼ି ସବୁ ବୁଝିପାରିବ, ନୀଳା ତା ନିଜ ହାତରେ ଏ ଚିଠିଟା ଲେଖିଚି ।

ମୀର୍ଣ୍ଣା - (ପଢ଼ିଲା) "ତମର ଉପହାର ହୀରା ମୁଦିଟି ପାଇଁ ମୁଁ ତୁମ ପାଖରେ ଚିରଦିନ ଋଣୀ । ମୋ ସମ୍ମୁଖରେ ବର୍ତ୍ତମାନ ସେ ହୀରାର ଗୁଣ୍ଡ ଥୁଆ ହୋଇଚି । କାଲି ଆମ ବିବାହର ଲଗ୍ନ - କାଲି ତମ ସହିତ ବିବାହ ହେବ ମୋର ଏଇ ମଲା ଦେହଟାର - ନୀଳା" ।

କୁମାର - ନୀଳା ସହିତ ମୋର ବିବାହ ହେଉଚି, ଏ ଧାରଣା ନେଇ ମୋହନ ଏଠୁ ଯିବା ପରେ ପରେ ଏ ଘଟଣା ଘଟିଲା - ସେଥିପାଇଁ ମୁଁ କହୁଥିଲି ମୋହନ ଓ ଆନନ୍ଦ

ଉଭୟଙ୍କ କଥା ସତ ।

ମୀର୍ଣ୍ଣା - କିନ୍ତୁ ତମର ବନ୍ଧୁ ତ ମୋତେ ଏ କଥା କହିନାହାଁନ୍ତି !

କୁମାର - ସେ ନିର୍ଦ୍ଦେଶ ମୋର ନ ଥିଲା । ନୀଳା ମରିଚି ଏ କଥା ଜାଣିଲେ ଏ ହତ୍ୟାକାରୀ ନିକଟକୁ ତୁମେ କ'ଣ କେବେହେଲେ ଆସିଥା'ନ୍ତ !

ମୀର୍ଣ୍ଣା - ଏତେ ପରିବର୍ତ୍ତନ ତୁମର ଏଇ ଦୁଇ ବର୍ଷ ଭିତରେ ହୋଇଯାଇଚି ! ଗୋଟିଏ ସ୍ତ୍ରୀଲୋକକୁ ହତ୍ୟାକରି ନିର୍ବିକାର ଭାବରେ ସେ କାହାଣୀ ମୋ ଆଗରେ କହିଚାଲିଚ !

କୁମାର - କିନ୍ତୁ ମୀର୍ଣ୍ଣା, ପ୍ରକୃତରେ କ'ଣ ମୁଁ ହତ୍ୟାକାରୀ ? ମରିବା ପାଇଁ ତ ମୁଁ ନୀଳାକୁ ହୀରାମୁଦି ଦେଇ ନଥିଲି ।

(ଏତିକିବେଳେ ବାହାରୁ ଘଣ୍ଟି ଶୁଭିଲା)

ମୀର୍ଣ୍ଣା - କିଏ ?

କୁମାର - ଯିଏ ହୁଅନ୍ତୁ - ତୁମେ ଉପରକୁ ଯାଅ ।

ମୀର୍ଣ୍ଣା - କାହିଁକି ?

କୁମାର - ଏଠି ରହିବା ତୁମ ପକ୍ଷରେ ଆଦୌ ଉଚିତ୍ ନୁହେଁ....

ଉପରକୁ ଯାଅ....

ମୀର୍ଣ୍ଣା - ନା....

କୁମାର - ଅନୁନୟ କରୁଚି ମୀର୍ଣ୍ଣା - ଅଳ୍ପକ୍ଷଣ ପାଇଁ ତମେ ଉପରକୁ ଯାଅ, ତା' ପରେ ତମର ଇଚ୍ଛା ଯାହା କରିବ.... ଯାଅ ମୀର୍ଣ୍ଣା । (ମୀର୍ଣ୍ଣା ଉପରକୁ ଗଲେ....କୁମାର ସଦର ଦରଜା ନିକଟକୁ ଯାଇ ସଙ୍ଗେ ସଙ୍ଗେ ଫେରିଆସିଲେ.... ତାଙ୍କ ପଛେ ପଛେ ଆସିଲେ ଆନନ୍ଦ ଓ ମୋହନ....କିଛି ସମୟପାଇଁ ସମସ୍ତେ ନୀରବ - କୁମାର ମୋହନ ଆଡ଼କୁ ପଛକରି ଛିଡ଼ା ହୋଇଥା'ନ୍ତି....)

ମୋହନ - ନୀଳା କାହିଁ ?

କୁମାର - (ନୀରବ)

ମୋହନ - କୁମାର ସାହେବ - ନୀଳା କାହିଁ ?

କୁମାର - ରାୟ !!

ଆନନ୍ଦ - ସେ ଜାଣନ୍ତି....

ମୋହନ - ଆପଣଙ୍କ ସକାଶେ ସେ ମରିଚି.... ଆପଣ ତା'ର ହତ୍ୟାକାରୀ....

କୁମାର - କିନ୍ତୁ ସେ ବଞ୍ଚିଥା'ନ୍ତା କାହିଁକି.... କାହା ପାଇଁ ? .....ଯା'ର ଉତ୍ତର ତୁମେ ଦେଇପାରିବ ?

ମୋହନ - ବଞ୍ଚିବାର ଅଧିକାର ତା'ର ନଥିଲା ବୋଲି ତାକୁ ମାରିଦେବାର ଅଧିକାର ଆପଣଙ୍କର ନାହିଁ । ନୀଳାର ମୃତ୍ୟୁ:ପାଇଁ ଆପଣ ଦାୟୀ.....ଆପଣ । ଆପଣଙ୍କୁ ଏହାର କୈଫିୟତ

ଦେବାକୁ ହେବ ।

କୁମାର - ତୁମେ ପୁଲିସ୍ ନୁହଁ ମୋହନ ।

ମୋହନ - ପୁଲିସ !

ମୋହନ - ହଁ.....ତେବେ ପାର ଯଦି ପୁଲିସ୍‌କୁ ଖବର ଦିଅ - ହାତ ପାଖରେ ଫୋନ୍ - Ring up ବଡ଼ ବଜାର 5379.... ଲାଲ ବଜାର ପୁଲିସ୍ ତା'ର ସମସ୍ତ ଶକ୍ତି ପ୍ରୟୋଗ କରି ଆସି ଦେଖୁ - ଏକା ଏ ବ୍ଲୁ ଭିଲ୍ଲା କାହିଁକି, ଏ ସମସ୍ତ ପୃଥିବୀରେ ନୀଳା ମୃତ୍ୟୁ ଦେହ କେଉଁଠି ଅଛି କି ନା! (ଟିକିଏ ପରେ) ନାଃ ତୁମେ ପାରିବ ନାହିଁ -

ମୋହନ - ପୁଲିସ୍ ଆପଣଙ୍କର କିଛି କରିପାରିବନାହିଁ ମୁଁ ଜାଣେ; କିନ୍ତୁ ମୁଁ ଜାଣିବାକୁ ଚାହେଁ -

କୁମାର - ତୁମେ କ'ଣ ଜାଣିବାକୁ ଚାହଁ ?

ମୋହନ - (ଦୁଃଖ ଓ ହତାଶରେ) କିଛିନାହିଁ; ମୁଁ ଜାଣିଥିଲି - ନୀଳା ମରିବ । ସେ ଆପଣଙ୍କ ନିକଟରେ କେବେହେଲେ ଆତ୍ମସମର୍ପଣ କରିବନାହିଁ ।

କୁମାର - ସେଇଥିପାଇଁ ତୁମେ ପଳାତକ ପରି ନୀଳାଠାରୁ ଲୁଚି ଲୁଚି ଦୂରରେ ରହୁଥିଲ - ଭୀରୁ ! କାପୁରୁଷ ! ଯା'ଛଡ଼ା ତୁମକୁ ଆଉ କ'ଣ କୁହାଯାଇପାରେ ? ଯେତେବେଳେ ସେ ତମଠାରେ ସମସ୍ତ ଆଶା ଓ ଭରସା ରଖିବସିଛି, ସେତେବେଳେ ଗୋଟାଏ ଛବିର ଦ୍ୱାହି ଦେଇ ତୁମେ ତାକୁ ଛାଡ଼ି ଚାଲିଆସିଲ । ସେଦିନ ଏଇଠି, ଏଇ ଘରେ ପ୍ରକୃତ କଥା ଜାଣିବା ପାଇଁ ସାମାନ୍ୟ ଟିକେ ଅବସର ସୁଦ୍ଧା ତୁମେ ଦେଇପାରିଲ ନାହିଁ । ଆଉ ଆଜି ଆସିଛ ମତେ ଭର୍ତ୍ସନା କରିବାକୁ!!

ମୋହନ - ଆପଣଙ୍କର ଅବସ୍ଥାର ସୁଯୋଗ ଆପଣ ନେଇଛନ୍ତି । ମୁଁ ଜାଣେ ଯୁଗ ଯୁଗ ଧରି ଆପଣଙ୍କୁ ଭର୍ତ୍ସନା କଲେ ସୁଦ୍ଧା ଆପଣଙ୍କର ଚେତନା ଆସିବ ନାହିଁ । ସେଥିପାଇଁ ମୁଁ ଆସିନି.....

କୁମାର - କାହିଁକି ତେବେ ଆସିଚ ! ନୀଳାର ଛବିଟା ପାଇଁ ?

ମୋହନ- ହଁ - ଛବିଟା ମତେ ଦିଅନ୍ତୁ!

କୁମାର - କାହିଁକି ଛବି ଉପରେ ତ ତମର ଆଉ କୌଣସି ଅଧିକାର ନାହିଁ......

ମୋହନ - ଏଇ ଆପଣଙ୍କର ଚେକ୍ -(ଚେକ୍‌ଟା ଦେଲା)

କୁମାର - ଚେକ୍‌ର କଥା ନୁହେଁ । ହୀରାଗୁଣ୍ଡ ଖାଇବା ପୂର୍ବରୁ ନୀଳାର ଏଇ ଚିଠିଟା ଦେଖ । ସେଥିରେ ସେ ତମର ନାମ ପର୍ଯ୍ୟନ୍ତ ଉଲ୍ଲେଖ କରିନାହିଁ- ବରଂ ମୋ ନିକଟରେ ଋଣୀ ବୋଲି ଲେଖିଯାଇଚି । ସେଇ ଦୃଷ୍ଟିରୁ ନୀଳାର ସ୍ମୃତି ରୂପେ ଛବିଟା ମୋ ପାଖରେ ରହିବ- ତମ ପାଖରେ ନୁହେଁ ।

ମୋହନ - ଜଣେ ହତ୍ୟାକାରୀଠାରୁ ଏପରି ନିର୍ମମତା ଛଡ଼ା ଆଉ କିଛି ଆଶାକରିବା ବୃଥା-

କୁମାର - ନୀଳାର ଛବିଟା ପାଇଁ ମୁଁ ତମକୁ ପାଞ୍ଚହଜାର ଟଙ୍କା ଦେଇଥିଲି । ଆଜି ମୋ ପାଇଁ ଯଦି ତମେ ନୀଳାକୁ ହରାଇଥାଅ, ତା'ର ଦାମ୍ ମଧ ମୁଁ ଦେବାକୁ ପ୍ରସ୍ତୁତ ଅଛି । (ମୋହନ ଚାଲିଯାଉଥିଲା) ଶୁଣ ମୋହନ ! ମୋର ଇଚ୍ଛାବିରୁଦ୍ଧରେ ବ୍ଲୁ-ଭିଲ୍ଲାରୁ କେହି କେବେ ପାଦ କାଢ଼ି ଯାଇନାହିଁ -ଚେଷ୍ଟା କରି ତମେ ମଧ ଯାଇପାରିବନାହିଁ - ଅପେକ୍ଷା କର ! (ଉପରକୁ ଚାଲିଗଲେ)

ମୋହନ - (ଆନନ୍ଦକୁ ଲକ୍ଷ୍ୟକରି) କୁମାର ସାହେବଙ୍କ ଉଦ୍ଦେଶ୍ୟ କ'ଣ ?

ଆନନ୍ଦ - କହିପାରିବି ନାହିଁ ।

ମୋହନ - ଆପଣଙ୍କ ପରି ଜଣେ ସରଳ ଅମାୟିକ ଲୋକଙ୍କର ଯା'ଙ୍କ ସହିତ ଯେ କିପରି ବନ୍ଧୁତା ହୋଇପାରିଲା -

ଆନନ୍ଦ - ମୁଁ ଦୁଃଖର ସହିତ କହୁଚି ମୋହନ ବାବୁ, ଯେତେ ଚେଷ୍ଟା କରି ସୁଦ୍ଧା ମୁଁ କୁମାର ସାହେବଙ୍କ ବନ୍ଧୁ ହୋଇପାରିନି । ମୁଁ ଯଦି ତାଙ୍କର ପ୍ରକୃତ ବନ୍ଧୁ ହୋଇଥା'ନ୍ତି, ତେବେ ବୋଧହୁଏ ଆଜି ଏ ଦୁର୍ଘଟଣା ଘଟିନ୍ଥା'ନ୍ତା -

(ଏତିକିବେଳେ ସିଡ଼ି ଉପରୁ କୁମାର, ମୀର୍ଣ୍ଣା ଓ ନୀଳା ଓହ୍ଲାଇ ଆସିଲେ)

ମୋହନ - କିଏ ? ନୀଳା !

ଆନନ୍ଦ - ହାୟ ଭଗବାନ୍ ! ଏ କି ଦୃଶ୍ୟ ମୁଁ ଦେଖୁଚି ?

କୁମାର - (ହସି ହସି ଆନନ୍ଦଙ୍କ ନିକଟକୁ ଆସି) ଭୟନାହିଁ ରାୟ- ଆମେ ଏଠି ସମସ୍ତେ ସଶରୀର ପ୍ରାଣୀ - ଅଶରୀରୀ କେହିନାହାନ୍ତି ।

ମୋହନ - ନୀଳା ବଞ୍ଚିଚି - ଅଥଚ....

କୁମାର - ଅଥଚ ରାୟ ତୁମକୁ ଖବର ଦେଲେ ଯେ ନୀଳା ମରିଚି । କିନ୍ତୁ ତୁମେ ଯେପରି ଧୈର୍ଯ୍ୟହୀନ, ପଳାୟନ ପ୍ରିୟ, ଭାବପ୍ରବଣ ଶିଳ୍ପୀ, ନୀଳା ବଞ୍ଚିଛି ଜାଣିଥିଲେ ତୁମେ କ'ଣ କେବେ ଏଠିକି ଆସିଥା'ନ୍ତ ! ବରଂ ଆହୁରି ଦୂରକୁ ପଳାଇଥା'ନ୍ତ ! ବରଂ ଆହୁରି ଦୂରକୁ ପଳାଇଥା'ନ୍ତ - ବମ୍ବେ କିମ୍ବା ଦିଲ୍ଲୀ - କ'ଣ କହୁଚ ରାୟ ?

ଆନନ୍ଦ - ନା ।

କୁମାର - କ'ଣ ନା ?

ଆନନ୍ଦ - ନୀଳା ଦେବୀ ତ ମରିନାହାନ୍ତି.....

କୁମାର - ନୀଳା ମରିଛନ୍ତି ବୋଲି କିଏ କହୁଚି....

ଆନନ୍ଦ - ସେ ଚିଠି - (କୁମାରଙ୍କଠାରୁ ଚିଠି ନେଇ) ଏ ଚିଠି.... ଆପଣ ଲେଖିଥିଲେ ତ ନୀଳା ଦେବୀ ?

ନୀଳା - ହଁ ।

ଆନନ୍ଦ - ହଁ ! ! ଆପଣ ନ ମରି ଚିଠି ଲେଖିଥିଲେ କେମିତି ?

କୁମାର - ମରିଥିଲେ ସେ ଚିଠି ଲେଖିଥା'ନ୍ତେ କିପରି ?

ଆନନ୍ଦ - କିନ୍ତୁ ଚିଠି ଲେଖି ତ ମରିପାରିଥା'ନ୍ତେ !

କୁମାର - ମୋ କଳଙ୍କିତ ଜୀବନର ଏହା ହିଁ ହେଉଚି ମୋର ପ୍ରଥମ ଗୌରବ ନୀଳାକୁ ମୁଁ ବଞ୍ଚାଇ ରଖିପାରିଚି । ଆଉ ନୀଳା ବଞ୍ଚିପାରିଛି ବୋଲି-

ଆନନ୍ଦ - ଘରର ଲକ୍ଷ୍ମୀ ଘରକୁ ଫେରିଛନ୍ତି । କିନ୍ତୁ କୁମାର ସାହେବ -ଶେଷପର୍ଯ୍ୟନ୍ତ ମୋତେ ବି ବାଦ୍ ଦେଲେନାହିଁ । ମୋ ଆଖିରେ ବି କୁହୁକ ଲଗେଇଦେଲେ....

କୁମାର - ଦିନେ ତୁମେ ମୋତେ କହିଥିଲ ରାୟ - ମୁଁ ଭଗବାନଙ୍କୁ ଭୟ କରେନା ! ଭଗବାନଙ୍କୁ ଭୟ କରେ କି ନା ମୁଁ ଜାଣେ ନା - କିନ୍ତୁ ମୁଁ ତୁମକୁ ଭୟ କରେ । ସେଦିନ ଏଇଠି - ତୁମ ସମ୍ମୁଖରେ ନୀଳା ବିବାହର ସମ୍ମତି ଦେଲା ପରେ ତୁମେ ମତେ ଯେଉଁ ଇଙ୍ଗିତ ଦେଇଥିଲ, ତାକୁ ମୁଁ ମୋ ଜୀବନର ସତର୍କବାଣୀ ରୂପେ ଗ୍ରହଣ କରିନେଇଥିଲି - ତୁମର ଇଙ୍ଗିତ ମୋତେ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲା ଯେ ନୀଳା ମୋ ପରି ମତେ ପ୍ରତାରଣା କରୁଚି । ସେଇଥିପାଇଁ ତାକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ମୁଁ ତାକୁ ଦେଲି ହୀରାର ମୁଦି -

ଆନନ୍ଦ - ତେବେ ହୀରାର ଗୁଣ୍ଡ ଖାଇ ସେ ବଞ୍ଚିଲେ କିପରି ?

କୁମାର - ତେବେ ବି ବୁଝିପାରିଲନାହିଁ ? ମୁଁ ଯେତେବେଳେ ଜାଣିପାରିଲି ଯେ ଆତ୍ମହତ୍ୟା ଛଡ଼ା ତା'ର ଆଉ ଅନ୍ୟ ଉପାୟ ନାହିଁ, ମୁଁ ତାକୁ ହୀରାମୁଦି ଦିଅନ୍ତି କିପରି ? ମୁଁ ତାକୁ ଦେଇଥିଲି ଏକ ନକଲି ହୀରା, ଯାହାର ହୀରାର ରୂପ ଥିଲା, କିନ୍ତୁ ଗୁଣ ନଥିଲା !

ଆନନ୍ଦ - ଧନ୍ୟବାଦ....

କୁମାର - ବିଚାରୀ ନୀଳା, ମରିବାର ଦୃଢ଼ସଂକଳ୍ପ ନେଇ ସେ ଶଯ୍ୟା ଗ୍ରହଣ କରିଚି ଆଉ ଲେଖିଚି ଏଇ ଚିଠି ଖଣ୍ଡିକ.....

ଆନନ୍ଦ - ତା'ପରେ....

କୁମାର - ତା'ପରେ ସବୁଦିନ ପରି ହୋଇଚି ତା'ର ନିଦ୍ରାଭଙ୍ଗ- ଆଉ ସେଇଠି ହୋଇଛି ମୋର ସବୁ ପରୀକ୍ଷା ଶେଷ - ସବୁ ଦ୍ୱନ୍ଦ୍ୱର ସମାଧାନ ।

ଆନନ୍ଦ - ବାବ୍‌ବା....ଏ ଯେ ଆରବ୍ୟ ଉପନ୍ୟାସର ସେଇ ବିଖ୍ୟାତ-ଆବୁହୋସନୀ କାଣ୍ଡ ! ! କିନ୍ତୁ କୁମାର ସାହେବ.... କି ଅଦ୍ଭୁତ ଯୋଗାଯୋଗ କୁହ ତ ? ଗରିବ ଚିତ୍ରକର ଘରର ଝିଅ ଏଇ ନୀଳାଦେବୀ... ଏ ରାଜମହଲର ଐଶ୍ୱର୍ଯ୍ୟ ସୁଦ୍ଧା ତାଙ୍କୁ ଟଳାଇ ପାରିଲାନାହିଁ - ଆଉ ସାତରାଜାର ଧନରେ ଧନୀ ହୋଇ ଜନ୍ମିଥିଲେ ମାର୍ଷାଦେବୀ - ଗରିବରୁ ବଳି ଗରିବ ହୋଇ ସୁଦ୍ଧା ସେ ଭାଙ୍ଗିପଡ଼ିନାହାନ୍ତି (ମୋହନ ପାଖକୁ ଯାଇ) ହଁ - ଏଣିକି ତୁମ ଦୁହିଁଙ୍କର ଆଶା ଭରସା ସବୁ କିଛି ହେଉଚନ୍ତି ଏ ଦୁଇଟି ରତ୍ନ....

କୁମାର ସାହେବ ତ ପ୍ରାୟଶ୍ଚିତ କରିସାରିଛନ୍ତି । ଏଣିକି ତୁମ ପଣ୍ଟା କ'ଣ ? ନୀଳା ଦେବୀ ନା ତାଙ୍କର ସେ ପ୍ରାଣହୀନ ଛବି ?

ମୀର୍ଣ୍ଣା - ନୀଳା ତ ତାଙ୍କର ଚିରଦିନ ଥିଲା, ଆଜି ବି ରହିଛି..... କିନ୍ତୁ ଏଇ ଘରେ ହୋଇଛି ନୀଳାର ପୁନର୍ଜନ୍ମ....ତା'ର ସ୍ମୃତି ରୂପେ ଛବିଟା ଏଇ ଘରେ ରହିବ.... କ'ଣ ମୋହନବାବୁ ରାଜି ?

ଆନନ୍ଦ - ନିଶ୍ଚୟ! ନିଶ୍ଚୟ ରାଜି! ଯେତେ ଗଣ୍ଡଗୋଳ ସେଇ ଛବି ନେଇ - ଛବିଟା ତାଙ୍କଠାରୁ ଯିବା ଦରକାର । କିନ୍ତୁ ଆଜି ହେଲା କ'ଣ, ଆମ ଛଡ଼ା ଏ ଘରେ କ'ଣ ଆଉ କେହି ନାହାନ୍ତି ? କୁଆଡ଼େ ଗଲେ ସେଇ ତନ୍ବୀ ଶ୍ୟାମା- (ଷୋଡ଼ଶୀ ସିଡ଼ି ଉପରେ ଦେଖାଦେଲା) ଆରେ ତୁମେ କ'ଣ ଉପରକୁ ଗଲଣି ଦେଖୁଚି - ବେଶ୍ ତେବେ ସେଇ ଆନନ୍ଦରେ ସେଇଠୁ ଗୋଟାଏ ଶୁଭଶଙ୍ଖ.....

(ଶଙ୍ଖଧ୍ୱନି ସହ ନାଟକର ଯବନିକା ନଇଁ ଆସିଲା)

---୦---

## ଉତ୍ସର୍ଗ

ବାବୁ ଓ ଝୁନୁ ହାତରେ
ବାପା

ଜନତା ରଙ୍ଗମଞ୍ଚରେ ଅଭିନୀତ : ପର-କଲମ
ପ୍ରଥମ ଅଭିନୟ ରଜନୀ - ତା ୫ । ୮ ।୧୯୫୪

# ପରିଚୟ

ଆଚାର୍ଯ୍ୟ -ନିରଞ୍ଜନ

ରାଜେନ୍ଦ୍ର - ଭୋଳାନାଥ

ମହାପାତ୍ର- ବଳାଇବାବୁ

ଶର୍ମା - କାର୍ତ୍ତିକ

ଦେବାନନ୍ଦ - ଋଷ୍ୟଶୃଙ୍ଗ

ମନ୍ଦର - ବେଣୁଧର

ମକୁନ୍ଦ - ଟିମ

ରାଧୁ - ବୃନ୍ଦାବନ

ସତ୍ୟବାଦୀ - ପ୍ରଫୁଲ୍ଲ

ସପନା - ଶରତ୍ ମହାନ୍ତି

ବିଜୟ - ଅଜିତ୍

ଶଶି - ନଟ

ଗୀତା - ଉମାଶଶି

ସୀତା - ପୂର୍ଣ୍ଣଚନ୍ଦ୍ର

ସେବ - କୃଷ୍ଣମଣି

ସୁରମା - ଅନୁରାଧା

ପରିଚାଳକ - ନିରଞ୍ଜନ ଶତପଥୀ

ସହକାରୀ - ଭୋଳାନାଥ ଦାସ

ସଙ୍ଗୀତ ରଚନା ଓ ସୁର - କିଶୋର କବି ଶ୍ୟାମସୁନ୍ଦର ଦାସ

ନୃତ୍ୟ ପରିଚାଳନା - ମାୟାଧର ରାଉତ

ସଙ୍ଗୀତ ଶିକ୍ଷା - ପ୍ରଭାକର ପାଢ଼ୀ

ସ୍ମାରକ - ପ୍ରଫୁଲ୍ଲ ଓ ଶରତ

ବିଭିନ୍ନ ବାଦ୍ୟଯନ୍ତ୍ର - ପ୍ରଭାକର, ପ୍ରଭୁରାମ, ବେଣୁ, ସୁଧୀର, ବୈଷ୍ଣବ ଓ ରାଧାନାଥ ।

'ଦାୟୀ କିଏ' ଗୀତର ଗାୟକ - ଶରତ ଶତପଥୀ

ଅନ୍ୟାନ୍ୟ ନାଚ ଓ ଗୀତରେ - ଶରତ୍, ପ୍ରଭୁରାମ, ସୁଧା, ଅନିରୁଦ୍ଧ, ଚକ୍ରଧର, କୁମୁଦ ଓ ଅନୁରାଧା ପ୍ରମୁଖ ।

# ମୁଖବନ୍ଧ

ପ୍ରାୟ ଦୁଇବର୍ଷ ତଳେ, ମୋର ଜଣେ ପରିଚାଳକ ବନ୍ଧୁଙ୍କୁ 'ପର-କଲମ'ର ଗଳ୍ପାଂଶ ଶୁଣାଇ ତାଙ୍କର ଅଭିମତ ଲୋଡ଼ିଥିଲି । ଶୁଣୁ ଶୁଣୁ ତାଙ୍କର ଭ୍ରୂକୁଞ୍ଚିତ ହୋଇଉଠିଥିଲା । ସଂପୂର୍ଣ୍ଣ ରାଜନୈତିକ ନାଟକର ସ୍ଥାନ ବ୍ୟବସାୟୀ- ରଙ୍ଗମଞ୍ଚରେ ନାହିଁ - ଏଇ ଆଶଙ୍କା ତାଙ୍କର ହୋଇଥିଲା । ....ଆହୁରି କୌତୂହଳର କଥା ଯେ ପର-କଲମ ମୁକ୍ତିଲାଭ କରିବାର ପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ଏଥିସଂପୃକ୍ତ ବହୁଲୋକ ନାଟକର ବ୍ୟବସାୟିକ ସଫଳତା ସମ୍ବନ୍ଧରେ ସନ୍ଦିହାନ ଥିଲେ । ୧୯୫୪ ମସିହା ଅଗଷ୍ଟ ମାସ ୫ ତାରିଖରେ ଡଃ ହରେକୃଷ୍ଣ ମହତାବଙ୍କ ପୌରୋହିତ୍ୟରେ ପର-କଲମ ଜନତା ରଙ୍ଗମଞ୍ଚରେ ମୁକ୍ତିଲାଭ କଲା । ରାଜନୈତିକ ନାଟକର ସ୍ଥାନ ଯେ ସାଧାରଣ ରଙ୍ଗମଞ୍ଚରେ ଅଛି, ପର-କଲମର ସାଫଲ୍ୟ ଏହା ପ୍ରମାଣିତ କରିପାରିଚି । ଏହା ପରେ ମୋର ଆଉ କିଛି କହିବାର ନାହିଁ । ନାଟକେଟିକୁ ମଞ୍ଚସ୍ଥ କରାଇବାରେ ଏକାନ୍ତ ଧୈର୍ଯ୍ୟ ଓ ସାହସର ପରିଚୟ ଦେଇଥିବାରୁ ଜନତା ରଙ୍ଗମଞ୍ଚର କର୍ତ୍ତୃପକ୍ଷ, ପରିଚାଳକ ତଥା ଅଭିନେତା - ଅଭିନେତ୍ରୀମାନଙ୍କ ନିକଟରେ ମୁଁ କୃତଜ୍ଞ ।

କାଳୀଗଳି, କଟକ -୨

ତା ୨.୯.୧୯୫୪ — ଗୋପାଳ ଛୋଟରାୟ

ପର-କଲମ ଭଳି ନାଟକ ଅନେକ ରାଜନୀତିଜ୍ଞ

ଏପରିକି ମନ୍ତ୍ରୀମଣ୍ଡଳ ସଭ୍ୟଙ୍କୁ ମଧ୍ୟ ଯଥେଷ୍ଟ

ଶିକ୍ଷା ଦେଇପାରିବ ।

ଶ୍ରୀ ହରେକୃଷ୍ଣ ମହତାବ

# ଅଭିମତ

"....ଏ ଯୁଗର ନିର୍ବାଚନ ଦଳଗତ, ଶାସନଗତର ନୀତି ବିଭ୍ରାଟକୁ କେନ୍ଦ୍ରକରି ନାଟକଟି ରଚିତ ହୋଇଥିବାରୁ ଅଭିନୟଟି ବେଶ୍ ଉପଭୋଗ୍ୟ ହୋଇଥିଲା । ସର୍ବୋପରି ଅଭିନେତାମାନଙ୍କର ଅଭିନୟ କୌଶଳ ଏହି ନାଟକଟିକୁ ଆହୁରି ସରସ ଓ ଜୀବନ୍ତ କରିଥିଲା ।....."

(ମାତୃଭୂମି, ତା ୭ । ୮ । ୫୪)

".... ଏହା ପୂର୍ବରୁ ଉକ୍ତ ରଙ୍ଗମଞ୍ଚରେ ଶ୍ରୀ ଛୋଟରାୟଙ୍କ 'ଭରସା' ନାଟକର ଅଭିନୟ ଓଡ଼ିଶା ରଙ୍ଗମଞ୍ଚରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା ।...."

ଶେଷ ଦୃଶ୍ୟରେ ଚରମ ଓ ପରିଣତି (କ୍ଲାଇମେକ୍ସ ଓ କାଟାଷ୍ଟ୍ରୋଫ) ସୃଷ୍ଟି ନାଟକଟିକୁ ସାଫଲ୍ୟମଣ୍ଡିତ କରିଛି । ଏଭଳି ନାଟକ ରଚନା ଓଡ଼ିଆ ନାଟ୍ୟସାହିତ୍ୟରେ ଏକ ନୂଆ ଅବଦାନ । ମନ୍ଦର ମହାନ୍ତି, ଶିକ୍ଷାମନ୍ତ୍ରୀ, ସେବବୋଉ ଓ ସପନା ଭୂମିକାର ଅଭିନୟ ଉଲ୍ଲେଖଯୋଗ୍ୟ ।"

(ସମାଜ, ତା ୭ । ୮ । ୫୪)

"ପର-କଲମ ଏକ ନୂତନ ରାଜନୀତିକ ସମାଲୋଚନାମୂଳକ ନାଟକ । ସୁଖର କଥା, ଗତ ବହୁବର୍ଷ ଧରି ଓଡ଼ିଶାର ବ୍ୟବସାୟିକ ନାଟକ ରଙ୍ଗମଞ୍ଚରେ ଯେଉଁ ପରମ୍ପରା ଧରି ନାଟକ ଅଭିନୀତ ହୋଇଆସୁଅଛି, ପର-କଲମରେ ତା'ର ବିଚ୍ୟୁତି ଘଟିଛି । ଚଳନ୍ତି ଭାରତୀୟ ରାଜନୀତିରେ ବିଶେଷ କରି ସ୍ୱାଧୀନତା ପରେ ଯେଉଁ କୁଟିଳତା, ଦୁର୍ନୀତି ପ୍ରବେଶ କରିଛି ତାହା ଲେଖକ ବିଭିନ୍ନ ଚରିତ୍ର ଭିତର ଦେଇ ସମସାମୟିକ ଘଟଣାସମୂହକୁ ଏକାଠି କରି ଏକ ଜୀବନ୍ତ 'ବ୍ୟଙ୍ଗ' ସୃଷ୍ଟି କରିପାରିଛନ୍ତି ।...."

(କୃଷକ, ତା ୯/୮/୫୪)

"ବ୍ୟାବସାୟିକ ରଙ୍ଗମଞ୍ଚରେ ଏପରି ନାଟକ ଅଭିନୀତ ହେବା ଏହା ପ୍ରଥମ । ସୁଖର କଥା ଯେ, ଲେଖକ ମହାଶୟ ଗତାନୁଗତିକ ଅବାସ୍ତବ ଓ ପ୍ରତିକ୍ରିୟାଶୀଳ ଭାବଧାରା ଉପରେ ଆଘାତ ଦେଇଛନ୍ତି । ସାଧାରଣତଃ ସାହିତ୍ୟିକମାନଙ୍କ ମନରେ ଧାରଣ ଯେ ସାହିତ୍ୟରେ ରାଜନୀତିର ସ୍ଥାନନାହିଁ । ଏହାଦ୍ୱାରା ତଥାକଥିତ ସାହିତ୍ୟିକମାନେ କହିବାକୁ ଚାହାଁନ୍ତି ଯେ ଜନସାଧାରଣ ରାଜନୀତିରେ ଭାଗ ନିଅନ୍ତି ନାହିଁ । ଏପରି ଧାରଣା ଭୁଲ୍ ଓ ପ୍ରତିକ୍ରିୟାଶୀଳ । ମଣିଷ ଜୀବନର ସମସ୍ତ ଅଂଶକୁ ଓ କ୍ରିୟାକଳାପକୁ ସାହିତ୍ୟରେ ନଫୁଟାଇବା ଅର୍ଥ ସାହିତ୍ୟକୁ ସଂକୀର୍ଣ୍ଣ କରିବା ଓ କେତେଜଣଙ୍କର କଳ୍ପନା ବିକାଶକୁ ସାହିତ୍ୟ ବୋଲି କହିବା । ତେଣୁ ଶ୍ରୀଯୁକ୍ତ ଗୋପାଳ ଛୋଟରାୟ ଯେଉଁ ଚେଷ୍ଟା କରିଛନ୍ତି ସେଥିପାଇଁ ସେ ଧନ୍ୟବାଦର ପାତ୍ର ଓ ଆହୁରି ଧନ୍ୟବାଦର ପାତ୍ର ଜନତା ରଙ୍ଗମଞ୍ଚର କର୍ତ୍ତାଗଣ ।

(ନୂଆ ଦୁନିଆ, ତା ୧୨ । ୮ । ୫୪)

ରାଜନୈତିକ ବିଷୟବସ୍ତୁକୁ ଭିତ୍ତିକରି ନାଟକ ରଚନା କରିବା ଏବଂ ତାହା ପୁଣି ପେଶାଦାର ଥିଏଟର ଦଳ ଜରିଆରେ ମଞ୍ଚସ୍ଥ କରିବାର ଦୁଃସାହସ ସାରା ଓଡ଼ିଶାରେ କେବଳ ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟଙ୍କଠାରେ ରହିଛି ।

ଭାରତ ସାଧାରଣତନ୍ତ୍ର ରାଷ୍ଟ୍ର ହେଲା ପରେ ଯେଉଁ ଭୋଟ୍ ଯୁଗ ଆସିଛି, ସେଥିପ୍ରତି ନାଟ୍ୟକାର ଦୃଷ୍ଟି ଦେଇଥିବାରୁ ନାଟକଟି ଉପାଦେୟ ଓ ଯୁଗୋପଯୋଗୀ ହୋଇଛି । ସରଳ ଭାଷାରେ ନାଟକର ସଂଳାପ ରଚିତ ହୋଇଥିବାରୁ ସାଧାରଣ ଲୋକେ ଗଣତାନ୍ତ୍ରିକ ବ୍ୟବସ୍ଥା ସମ୍ପର୍କରେ ଅନେକ କିଛି ଶିକ୍ଷା କରିବେ ।

କିଶୋର କବି ଶ୍ୟାମସୁନ୍ଦର ଦାସଙ୍କ ରଚିତ ଗୀତଗୁଡ଼ିକ ନାଟକର ବିଭିନ୍ନ ଅବସ୍ଥା ସହିତ ଖାପ ଖାଇଛି ଯେ, ଦୃଶ୍ୟଗୁଡ଼ିକ ଜୀବନ୍ତ ହୋଇଉଠିଛି ।

ତାଙ୍କର 'ଦାୟୀ କିଏ' ଗୀତଟି ଚିରଦିନ ଜୀବନ୍ତ ହୋଇ ରହିବ ।

(ପ୍ରଜାତନ୍ତ୍ର, ତା ୨୯ । ୮ ।୫୪)

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ରାଜ୍ୟ ବ୍ୟବସ୍ଥା ସଭାର କକ୍ଷ । ଅଧିବେଶନ ଚାଲିଛି । ଦର୍ଶକ ଗ୍ୟାଲେରୀରେ ଅନ୍ୟମାନଙ୍କ ମଧରେ ବସିଛି ଗୋଟିଏ ୨୦/୨୧ ବର୍ଷର ତରୁଣୀ । ଦୃଶ୍ୟ ଆରମ୍ଭରେ ଦେଖାଗଲା, ବିରୁଦ୍ଧ ମିଳିତ ଦଳର ନେତା ଶ୍ରୀଯୁକ୍ତ ରାମନାରାୟଣ ଆଚାର୍ଯ୍ୟ ବକ୍ତୃତା କରୁଅଛନ୍ତି ।)

ଆଚାର୍ଯ୍ୟ - ଆଜି ଏ ଆସେମ୍ବ୍ଲିର ଶେଷ ଦିନ । ଆଜି ଅଧିବେଶନ ପରେ ଏ ଆସେମ୍ବ୍ଲିକୁ ଭାଙ୍ଗି ଦିଆଯିବ । ଆଉ ଦୁଇମାସ ପରେ ସାଧାରଣ ନିର୍ବାଚନ । ଏ ସରକାରର ପରମାୟୁ ଦୁଇମାସ ପରେ ଶେଷ ହେବ । ଦେଶବାସୀ ନୂଆ ସରକାର ଗଢ଼ିବେ । ଏ ଅବସ୍ଥାରେ, ଏ ଫାର୍ଶ ଯେ ଏଠି କାହିଁକି ଚାଲିଛି - ମୁଁ ବୁଝିପାରୁନାହିଁ ।

ଶର୍ମା - (ସରକାରୀ ଗଣଶକ୍ତି ଦଳର ଏମ୍. ଏଲ୍. ଏ.) ବିରୁଦ୍ଧ ଦଳର ନେତାଙ୍କ ଭାଷଣ ପ୍ରତି ମୁଁ ମାନ୍ୟବର ବାଚସ୍ପତି ମହୋଦୟଙ୍କ ଦୃଷ୍ଟି ଆକର୍ଷଣ କରୁଅଛି । ତାଙ୍କ ଭାଷଣରେ ସେ 'ଫାର୍ଶ' ଶବ୍ଦ ବ୍ୟବହାର କରିଅଛନ୍ତି । ମୋ ମତରେ ଏ ଶବ୍ଦ ଆପତ୍ତିଜନକ ।

ଦେବାନନ୍ଦ - (ବିରୁଦ୍ଧ ଦଳର ଏମ୍.ଏଲ୍.ଏ.) ଆପଣଙ୍କ ମତ ମାନିନେବାକୁ ଆମେ ପ୍ରସ୍ତୁତ ନୋହୁଁ ।

ଶର୍ମା - ଆପଣମାନେ ମାନିନେବାକୁ ବାଧ ହେବେ - କାରଣ ଏ ଶବ୍ଦଟି ଏ ସଭାଗୃହର ମର୍ଯ୍ୟାଦା ହାନିକରୁଚି ।

ରାଜେନ୍ଦ୍ର - (ବିରୁଦ୍ଧ ଦଳର ଏମ୍. ଏଲ୍. ଏ.) ଫାର୍ଶ ଶବ୍ଦ କାହିଁକି ଆପତ୍ତିଜନକ ମାନ୍ୟବର ନୂଆପାଟଣାର ସଭ୍ୟ ଦୟାକରି ବୁଝାଇ ଦିଅନ୍ତୁ ।

ଶର୍ମା - ଫାର୍ଶ ଶବ୍ଦଟି ଇଂରାଜୀ ଭାଷାରୁ ଆସିଚି ସତ-କିନ୍ତୁ ଏହା ଏକାବେଳେକେ ଓଡ଼ିଆ ଭାଷାରେ ପରିଣତ ହୋଇଗଲାଣି କହିଲେ ଚଳେ । ଫାର୍ଶ କହିଲେ ସାଧାରଣତଃ ଯାତ୍ରାଦଳର ରଙ୍ଗରଙ୍ଗିଆ ସୁଆଙ୍ଗ ବା ତାମସା ବୁଝାଯାଏ । ଅଥଚ ବିରୁଦ୍ଧ ଦଳର ନେତା ଏ ଆସେମ୍ବ୍ଲିର କାର୍ଯ୍ୟକଳାପକୁ ଫାର୍ଶ ବୋଲି କହୁଚନ୍ତି । ବଡ଼ ଅଦ୍ଭୁତ କଥା ଯେ....ମୁଁ ଆଶାକରୁଚି, ମାନ୍ୟବର ସଭ୍ୟ ଏଥିପାଇଁ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏ ଶବ୍ଦଟିକୁ ପ୍ରତ୍ୟାହାର କରିନେବେ ।

ଆଚାର୍ଯ୍ୟ - ନା ! ମୁଁ ଜାଣିଶୁଣି ଏ ଶବ୍ଦ ଏଠି ବ୍ୟବହାର କରିଚି । କେବଳ ଆଜି ନୁହେଁ - ଗଣଶକ୍ତି ଦଳ ଏ ଦେଶର ଭାର ଗ୍ରହଣ କଲାଦିନୁ ଯାହା ଯାହା କରିଯାଇଛନ୍ତି - ସେସବୁକୁ ଗୋଟାଏ ଦିଗରୁ ବିଚାର କରି ଦେଖିଲେ ଫାର୍ଶ ଛଡ଼ା ଆଉ କିଛି କୁହାଯିବ ନାହିଁ ।

ଶର୍ମା - ବେଶ୍, ତେବେ ସେଥିପାଇଁ ମୁଁ ମାନ୍ୟବର ବାଚସ୍ପତିଙ୍କ ବିଚାର ଭିକ୍ଷା କରୁଚି ।

ବାଚସ୍ପତି - ଏ ଶବ୍ଦ ଆପତ୍ତିଜନକ କି ନୁହେଁ, ସେ ସମ୍ବନ୍ଧରେ ମୋର ନିଷ୍ପତ୍ତି ମୁଁ ପରେ ଜଣାଇବି ।

ଶର୍ମା - ଧନ୍ୟବାଦ ।

ଆଚାର୍ଯ୍ୟ - ସପ୍ଲିମେଣ୍ଟାରୀ ବଜେଟ୍ ନାମରେ ସରକାର ଯେଉଁ ଖର୍ଚ୍ଚ ସବୁକୁ ଏ ଆସେମ୍ବ୍ଲିରେ ପାସ୍ କରାଇ ନେଉଚନ୍ତି, ହଠାତ୍ ତା'ର କ'ଣ ଦରକାର ଥିଲା ? ଏ ପ୍ରଶ୍ନର ଏକମାତ୍ର ଉତ୍ତର ହଉଚି - ଭୋଟ୍ । ଇଲେକ୍‌ସନ ପାଖ ହୋଇଆସିଲାଣି । ଯେଉଁ ଯେଉଁ ଅଞ୍ଚଳରୁ ଗଣଶକ୍ତି ଦଳ ବେଶି ଭୋଟ୍ ପାଇବାର ଆଶା ରଖିଛନ୍ତି, ସେଇ ଅଞ୍ଚଳରେ ଏ ଟଙ୍କା ଖର୍ଚ୍ଚ ହେବାର ବ୍ୟବସ୍ଥା କରାଯାଇଚି । ଏ ବ୍ୟବସ୍ଥାକୁ ମୁଁ ଭୋଟ୍ ଖରିଦର ବ୍ୟବସ୍ଥା ବୋଲି କହିବି; କିନ୍ତୁ ଏହା କରିବା ଦ୍ୱାରା ଗଣଶକ୍ତି ଦଳ ଯେ ନିଜର ସମାଧି ନିଜେ ଖୋଳୁଛନ୍ତି - ଏ କଥା ତାଙ୍କର ବୁଝିରଖିବା ଉଚିତ୍ । (ଆସନ ଗ୍ରହଣ କଲେ ।)

ଶର୍ମା - ଆମ ନିଜର ସମାଧି ଯଦି ଆମେ ନିଜେ ଖୋଳୁଥାଉଁ, ତେବେ ମିଳିତ ଦଳର ତ ଶାନ୍ତିରେ ନିଃଶ୍ୱାସ ମାରିବା କଥା; ଆଚାର୍ଯ୍ୟ ମହାଶୟ ଏଥିରେ ଦୁଃଖ କରୁଛନ୍ତି କାହିଁକି ? କିନ୍ତୁ ତାଙ୍କର ଯୁକ୍ତି ତ ବଡ଼ ଅଦ୍ଭୁତ ! ! ଭୋଟ୍ ବେଳ ପାଖହୋଇ ଆସିଲାଣି ବୋଲି ଦେଶରେ କୌଣସି ଲୋକହିତକର କାମ ହେବନାହିଁ ? ଲୋକେ ପିଇବା ପାଣି ପିଇବେ ନାହିଁ - ସଡ଼କରେ ଚାଲିବେ ନାହିଁ ? ରୋଗର ଚିକିତ୍ସା କରାଇବେ ନାହିଁ ! ! ଅତି ବିଚିତ୍ର ଏ ଅଭିଯୋଗ । ଏସବୁ କାମ ହୋଇପାରୁନାହିଁ ବୋଲି ଦିନେ ଏଇ ଆସେମ୍ବ୍ଲିରେ ବିରୁଦ୍ଧ ଦଳ ତୀବ୍ର ବାକ୍ୟବାଣ ଆମ ପ୍ରତି ନିକ୍ଷେପ କରିଥିଲେ - ଅଥଚ ଆଜି ଅଭିଯୋଗ ହେଉଛି ଯେ ସରକାର କେବଳ ଭୋଟ୍ ଖରିଦ ପାଇଁ ଦେଶରେ କୂଅ, ପୋଖରୀ, ସଡ଼କର ବ୍ୟବସ୍ଥା କରୁଛନ୍ତି । କଥାଟାକୁ କିନ୍ତୁ ଅନ୍ୟ ଦିଗରୁ ବିଚାର କରି ଦେଖିଲେ ସେମାନେ ହୁଏତ ଆମକୁ ଏ ଦୋଷ ଦିଅନ୍ତେ ନାହିଁ । ଆମେ ଭୋଟ ପାଇ ଏଠିକି ଆସିଥିଲୁ କାହିଁକି ? ବିରୁଦ୍ଧ ଦଳ ସିନା ଲୋକଙ୍କଠାରୁ ଭୋଟ ପାଇ ଏଠିକି ଆସିଥିଲେ ଆମ ସହିତ କଳିକଜିଆ କରିବାକୁ; ଆମେ କିନ୍ତୁ ଆସିଛୁ ଲୋକଙ୍କର ଉପକାର କରିବାକୁ । ସେ କାମ ଆମେ କରିଛୁ-କରିବୁ, କେବଳ ଆମକୁ ବଦନାମ୍ କରେଇବା ପାଇଁ ବିରୁଦ୍ଧ ଦଳ ଯଦି ଏଥିରେ ବାଧା ଦିଅନ୍ତି, ତେବେ ଆମର ଯେଉଁ ସମାଧି କଥା ଆଚାର୍ଯ୍ୟ ମହାଶୟ କହୁଥିଲେ, ସେଥିରେ ଆମେ ନପଡ଼ି ମୋର ଆଶଙ୍କା ହେଉଛି, ବିରୁଦ୍ଧ ଦଳ ନିଜେ ପଡ଼ିଯିବେ । (ସରକାରୀ ଦଳର ହାସ୍ୟରୋଳ ଓ କରତାଳି ମଧ୍ୟରେ ଶର୍ମା ଆସନ ଗ୍ରହଣ କଲେ ।)

ରାଜେନ୍ଦ୍ର - ସରକାରୀ ସଭ୍ୟ ମାନ୍ୟବର ଶର୍ମା କହିଲେ ଯେ, ସେ ଭୋଟ ପାଇ ଏଠିକି ଆସିଛନ୍ତି ଲୋକଙ୍କର ଉପକାର କରିବାକୁ । ଭଲ କଥା ! କିନ୍ତୁ ଏଇ ଉପକାର କରିବା ପ୍ରବୃତ୍ତି ଯଦି ତାଙ୍କର ପାଞ୍ଚ ବର୍ଷ ଆଗରୁ, ଅର୍ଥାତ୍ ଏ ସରକାର ଗଢ଼ିଲା ଦିନରୁ ହୋଇଥା'ନ୍ତା

– ତାହାହେଲେ ବୋଧହୁଏ ଆମକୁ ଏଠି କଳିକଜିଆ କରିବାକୁ ହେଉନଥା'ନ୍ତା । (ବିରୁଦ୍ଧ ଦଳରୁ 'ହିଆର' 'ହିଆର')

ବିରୁଦ୍ଧ ଦଳରୁ ଆମେ ବରାବର ଦାବି କରିଆସୁଛୁ ଯେ ଏ ଆସେମ୍ବ୍ଲି ଭାଙ୍ଗିବା ସଙ୍ଗେ ସଙ୍ଗେ ମନ୍ତ୍ରୀମଣ୍ଡଳ ଇସ୍ତଫା ଦିଅନ୍ତୁ । ଭୋଟ ଶେଷ ପର୍ଯ୍ୟନ୍ତ ଏ ପ୍ରଦେଶର ଶାସନଭାର ଲାଟ୍‌ଙ୍କ ହାତରେ ରହୁ! କିନ୍ତୁ ସେପରି ହେବାର କୌଣସି ଆଶା ବୋଧହୁଏ ନାହିଁ ।

ଶର୍ମା – ନା, ନାହିଁ ।

ରାଜେନ୍ଦ୍ର – ମୁଁ ଜାଣେ, ମନ୍ତ୍ରୀମାନେ ଇସ୍ତଫା ଦେବେନାହିଁ । କାରଣ ଭୋଟବେଳେ ସେମାନେ ସରକାରୀ ଟଙ୍କାରେ ଗସ୍ତ କରି ଭୋଟ ପ୍ରଚାର କାମ ଚଳେଇବେ । ଭୋଟବେଳେ ପ୍ରତ୍ୟେକ ଦଳ ସମାନ ସୁବିଧା ପାଇପାରିବେ, ଏ ପ୍ରତିଶ୍ରୁତି ସରକାର ଏ ପର୍ଯ୍ୟନ୍ତ ଦେଇନାହାନ୍ତି ।

ମହାପାତ୍ର – ମୁଖ୍ୟମନ୍ତ୍ରୀ ଭାବରେ ଏ ପ୍ରତିଶ୍ରୁତି ମୁଁ ଦଉଚି – ଭୋଟ କାର୍ଯ୍ୟରେ ପ୍ରତ୍ୟେକ ଦଳ ସମାନ ସୁବିଧା ଓ ସୁଯୋଗ ପାଇପାରିବେ । (ସରକାରୀ ଦଳରୁ ତାଳି)

ରାଜେନ୍ଦ୍ର – ଏଥିପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହାପାତ୍ରଙ୍କୁ ଧନ୍ୟବାଦ ଦଉଚି । କିନ୍ତୁ ଆଉ ଗୋଟିଏ କଥା– ସମସ୍ତେ ଜାଣନ୍ତି ଯେ ଖାଦ୍ୟ ଦିଗରୁ ଆମ ପ୍ରଦେଶ ବଳକା ପ୍ରଦେଶ । ଆମ ପ୍ରଦେଶର ଚାଉଳ ଖାଇ ବଙ୍ଗଳା ଓ ମାନ୍ଦ୍ରାଜର ଲକ୍ଷ ଲକ୍ଷ ଲୋକ ବଞ୍ଚିପାରିଛନ୍ତି; କିନ୍ତୁ ଆମର ଏଠି ହଉଚି କ'ଣ ? ତୁଣ୍ଡ ଖୋଲିଲା ମାତ୍ରେ ବଡ଼ ବଡ଼ ହାକିମହୁକୁମମାନଙ୍କ ପାଦତଳେ ବସ୍ତା ବସ୍ତା ସୁପର୍‌ଫାଇନ୍ ଚାଉଳ ଆସି ଗଦା ହୋଇଯାଉଚି– ଅଥଚ ସେରେ ଦୁଇସେର ବାଲି ଗୋଡ଼ିମିଶା ବଗଡ଼ା ଚାଉଳ ପାଇଁ ଦୋକାନ ବଜାରରେ ମୁଣ୍ଡ ଫଟାଫଟି ଚାଲିଛି । ଆମ ଘରେ ଚାଉଳ ମହଜୁଦ୍ ଅଛି, ଅଥଚ ଖାଇବାକୁ ନପାଇ ଲୋକେ ମରୁଚନ୍ତି । ଏ ଅବ୍ୟବସ୍ଥା କାହିଁକି ? ମୁଁ ଆମ ଦଳ ଅର୍ଥାତ୍ ମିଳିତ ଦଳ ତରଫରୁ ଘୋଷଣା କରୁଛି ଯେ, ଏଇ ଖାଦ୍ୟ ନୀତି ଉପରେ ଆମେ ନିର୍ବାଚନ ଲଢ଼ିବୁ.....ଗଣଶକ୍ତିକୁ ଏହା ଆମର ଚାଲେଞ୍ଜ! (ବିରୁଦ୍ଧ ଦଳରୁ ଘନ ଘନ ତାଳି ହେଲା – ଏଇ ତାଳିରେ ଯୋଗଦେଲା ଦର୍ଶକ ଗ୍ୟାଲେରୀରେ ବସିଥିବା ତରୁଣୀଟି । ତାଳିଦେଇ ଚାଲିଥାଏ, ହଠାତ୍ ସେ ଜାଣିପାରିଲା ଯେ, ସଭାଗୃହର ସମସ୍ତ ଦୃଷ୍ଟି ତା ଉପରେ ନିବଦ୍ଧ । ସେ ସଂକୁଚିତା ହୋଇଉଠିଲା – ଆପେ ଆପେ ତା'ର ତାଳି ବନ୍ଦ ହୋଇଗଲା । ସଲଜ୍ଜ ଦୃଷ୍ଟିରେ ରାଜେନ୍ଦ୍ରକୁ ଥରଟିଏ ଚାହିଁ ସେ ମଥା ନତ କରି ବସିରହିଲା । ଟିକିଏ ପରେ ରାଜେନ୍ଦ୍ର ମଧ ଆସନ ଗ୍ରହଣ କଲେ ।)

ମହାପାତ୍ର – ଏ ସଭାଗୃହରେ ଯେଉଁସବୁ ଆଲୋଚନା ହୋଇଗଲା, ସେଥିରୁ ମୁଁ ସ୍ପଷ୍ଟ ବୁଝିପାରିଚି ଯେ, ମାନ୍ୟବର ସଭ୍ୟମାନେ ଆଲୋଚନାର ବିଷୟବସ୍ତୁ ଅପେକ୍ଷା ଆଗାମୀ ନିର୍ବାଚନ ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିଅଛନ୍ତି । ଭୋଟବେଳେ ଏ ଆଲୋଚନା ଆଉରି

ସରଗରମ ହୋଇଉଠିବ; କିନ୍ତୁ ମୋଟାମୋଟି ଏ ଆଲୋଚନା କେବଳ ଗୋଟିଏ ବିଷୟ ଉପରେ ଚାଲିବ - "କାହାକୁ ଭୋଟ୍ ଦେବା କାହାକୁ ନ ଦେବା" ମାତ୍ର ଏ ଦଳକୁ କାହିଁକି ('କାହିଁକି' ଶବ୍ଦ ଉପରେ ଜୋର୍ ଦେଇ) ଭୋଟ୍ ଦେବା ଓ ସେ ଦଳକୁ କାହିଁକି ଭୋଟ ନଦେବା - ଏକଥାକୁ ତଳେଇକରି ଦେଖିବାର ଶକ୍ତି ଆମ ଦେଶରେ ସାଧାରଣ ଭୋଟଦାତାମାନଙ୍କର ନାହିଁ ବୋଲି ମୋର ବିଶ୍ୱାସ । ସେଥିପାଇଁ ଭୋଟ ବଦଳରେ ସେମାନଙ୍କୁ ହାତୀ ଦବୁ - ଘୋଡ଼ା ଦବୁ ବୋଲି ବଡ଼ ବଡ଼ କଥା ନଶୁଣାଇ ଯଦି ଭୋଟ ଦବାର ପ୍ରକୃତ ମର୍ମଟି ସେମାନଙ୍କୁ ବୁଝାଇ ଦେଇପାରିବା, ତେବେ ଗଣତନ୍ତ୍ରର ଉପଯୁକ୍ତ ମର୍ଯ୍ୟାଦା ଆମେ ରଖିପାରିବୁ ବୋଲି ବୁଝିବାକୁ ହେବ । (ସରକାରୀ ଦଳରୁ ତାଳି) ବିରୁଦ୍ଧ ଦଳର ମାନ୍ୟବର ସହକାରୀ ନେତା ଶ୍ରୀ ରାଜେନ୍ଦ୍ର ନାଥ ଦାସ ଜଣେ ଯୁବକ - ତାଙ୍କର ରକ୍ତ ତାତି ରହିଥିବାର ପ୍ରମାଣ ସେ ଦେଇଛନ୍ତି -

ଆଚାର୍ଯ୍ୟ - ମାତ୍ର ୨୨ ବର୍ଷ ବୟସରେ ପିଟ୍ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ହୋଇପାରିଥିଲେ । ଆମ ଦଳର ସହକାରୀ ନେତା ମୋ ବନ୍ଧୁ ରାଜେନ୍ଦ୍ରବାବୁ ଯୁବକ ବୋଲି ମୁଖ୍ୟମନ୍ତ୍ରୀ ତାଙ୍କୁ ଆକ୍ଷେପ କରିବା ଉଚିତ୍ ନୁହେଁ ।

ଶର୍ମା - ବିରୁଦ୍ଧ ଦଳର ମାନ୍ୟବର ସଭ୍ୟଙ୍କ ସହିତ ମୁଁ ଏକମତ । ଏ ସମ୍ପର୍କରେ ମୋର ଦୁଇଧାଡ଼ି କବିତା ମନେ ପଡୁଚି -

'ନୁହେଁ ବୃଦ୍ଧ ସେଇ ଜନ ଶୁକ୍ଳ କେଶ
ଅଟେ ଯା'ର ଶିର,
ଯୌବନେ ଯେ ଜ୍ଞାନେ ରତ ହୁଅନ୍ତୁ ସେ
ଆସେମ୍ବ୍ଲି ମେମ୍ବର' ।

(ହାସ୍ୟରୋଳ)

ଦେବାନନ୍ଦ - (ଢୁଳଉଥିବା ଅବସ୍ଥାରୁ ଉଠି) - ମାନ୍ୟବର ସଭ୍ୟ କବିତା ଆବୃତ୍ତି କଲେଣି - ମୋର ଭୟ ହେଉଚି ଦିନେ ହୁଏତ ସେ ନାଚ କିମ୍ବା ଗୀତର ବ୍ୟବସ୍ଥା ଏଠି କରିବେ ।

ଶର୍ମା - ମାନ୍ୟବର ସଭ୍ୟ ବର୍ତ୍ତମାନ ବସି ବସି ଢୁଳଉଥିଲେ । ମୋର ଭୟ ହେଉଛି, ଦିନେ ହୁଏତ ସେ ତାଙ୍କ ସାଥିରେ ଖଣ୍ଡିଏ କ୍ୟାନଭାସ୍ ଖଟ ଓ ତକିଆ ଆଣି ଏଠି ଆରାମରେ ଶୋଇବାର ବ୍ୟବସ୍ଥା ମଧ୍ୟ କରିପାରନ୍ତି । (ହାସ୍ୟରୋଳ)

ମହାପାତ୍ର - ଯୁବକ ରାଜେନ୍ଦ୍ରବାବୁ ଅଭିଯୋଗ କରିଚନ୍ତି ଯେ, ସରକାରଙ୍କ ଖାଦ୍ୟନୀତିର କୌଣସି ଠିକଣା ନାହିଁ । ଆମ ପ୍ରଦେଶ ବଳକା ପ୍ରଦେଶ - ଅଥଚ ଏଠି ଖାଇବାକୁ ନପାଇ ଲୋକେ ମରୁଚନ୍ତି । ଏ ଅଭିଯୋଗର ଉତ୍ତର ଆସେମ୍ବ୍ଲିରେ ମୁଁ ବହୁବାର ଦେଇଚି । ଏଇ ପ୍ରଶ୍ନ ଉପରେ ଆସନ୍ତା ଭୋଟ୍ ଯୁଦ୍ଧରେ ଲଢ଼ିବା ପାଇଁ ସେ ଆମ ଦଳକୁ ଆହ୍ୱାନ କରିଚନ୍ତି । କିନ୍ତୁ ସେ ଭୁଲିଯାଇଚନ୍ତି ଯେ, ଏଇଟା ମ୍ୟୁନିସିପାଲିଟି ପଡ଼ିଆର ସାଧାରଣ ସଭା ନୁହେଁ, ଏଇଟା ଆସେମ୍ବ୍ଲି କକ୍ଷ । ତାଙ୍କ ଚାଲେଞ୍ଜର ଜବାବ ଏଠି ମୁଁ

ଦେବିନାହିଁ - କିନ୍ତୁ ମୁଁ କହିରଖୁଚି, ଉପଯୁକ୍ତ ସ୍ଥାନରେ, ଉପଯୁକ୍ତ ସମୟରେ ତାଙ୍କର ଠିକଣା ଜବାବ୍ ସେ ପାଇବେ । (ସରକାରୀ ଦଳରୁ ଆନନ୍ଦରୋଳ)

ବାଚସ୍ପତି - ବିରୁଦ୍ଧ ଦଳର ମାନ୍ୟବର ନେତା ତାଙ୍କ ଭାଷଣରେ ଫାର୍ଶ ଶବ୍ଦ ବ୍ୟବହାର କରିଥିଲେ, ମୋ ମତରେ ଏ ଶବ୍ଦଟି ଆପତ୍ତିଜନକ । ଏ ଶବ୍ଦଟିକୁ ଆସେମ୍ବ୍ଲି କାର୍ଯ୍ୟବିବରଣୀରୁ ଉଠାଇ ଦିଆଯିବ । (ସରକାରୀ ଦଳରୁ ଆନନ୍ଦରୋଳ) ବର୍ତ୍ତମାନ ମାନ୍ୟବର ସଭ୍ୟମାନଙ୍କୁ ମୁଁ ଜଣାଇ ଦେବାକୁ ଚାହେଁ ଯେ, ଆମ ହାତରେ ମୋଟେ ଅଧ ଘଣ୍ଟାଏ ସମୟ ଅଛି । ଆପଣମାନେ ତ ଜାଣନ୍ତି ଆଜିର ବୈଠକ ପରେ ଏ ଆସେମ୍ବ୍ଲି ପୁଣି ନୂଆ ଆସେମ୍ବ୍ଲି ଗଢ଼ାହେବା ପର୍ଯ୍ୟନ୍ତ ଭାଙ୍ଗି ଦିଆଯିବ । ଅତଏବ ଏଇ ଘଣ୍ଟାକ ମଧ୍ୟରେ ଯେପରି ଆଜିକାର ସମସ୍ତ ବାକି କାମ ଶେଷ ହୁଏ, ସେଥିପ୍ରତି ମାନ୍ୟବର ସଭ୍ୟମାନେ ଧ୍ୟାନଦେବାକୁ ମୋର ଅନୁରୋଧ ।

## ଦ୍ୱିତୀୟ ଦୃଶ୍ୟ

(ଆସେମ୍ବ୍ଲି ସଂଲଗ୍ନ-ମହଲ । ଆସେମ୍ବ୍ଲି ଅଧିବେଶନ ଶେଷ ହୋଇଯାଇଚି ମେମ୍ବର ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କର ଯାତାୟାତ ଚାଲିଚି - ସମୟ ଅପରାହ୍ନ ୫ଟା । କିଛି ସମୟ ପରେ ଆସିଲେ ରାଜେନ୍ଦ୍ର । ସିଗାରେଟ୍ ବାହାର କରି ଲଗାଇଲେ..... ସେ ଯେପରି କାହାକୁ ଅପେକ୍ଷା କରୁଛନ୍ତି ।....ପ୍ରାୟ ପରେ ପରେ ଆସିଲେ ଶର୍ମା ।)

ରାଜେନ୍ଦ୍ର - ଆସନ୍ତୁ ଆଜ୍ଞା.... (ସିଗ୍ରେଟ୍ ବଢ଼େଇଦେଲେ)

ଶର୍ମା - ସିଗ୍ରେଟ୍! ଧନ୍ୟବାଦ । ଆମ ଦଳର ଟ୍ରେଡ୍-ମାର୍କ ହେଲା ପିକା; କିନ୍ତୁ ପିକା ଏତେ କଡ଼ା ଯେ ଆମ ଗଣଶକ୍ତି ଦଳର କୋହଳ ନୀତି ସହିତ ମୋଟେ ଖାପଖାଇଲା ନାହିଁ । ସେଥିପାଇଁ ଆମକୁ ବାଧ୍ୟ ହୋଇ ସିଗ୍ରେଟ୍ ଖାଇବାକୁ ପଡୁଚି ।

ରାଜେନ୍ଦ୍ର - ଆପଣଙ୍କର ଏଇସବୁ କଥା ଶୁଣିବାକୁ ଭାରି ଭଲ ଲାଗେ ।

ଶର୍ମା - ଆସେମ୍ବ୍ଲି ଭାଙ୍ଗିଗଲା ବୋଲି କେତେକ ମେମ୍ବର କାନ୍ଦୁଥିବାର ମୁଁ ଦେଖିଚି ।

ରାଜେନ୍ଦ୍ର -ସେମାନେ ନିଶ୍ଚୟ ଆପଣଙ୍କ ଦଳର ସଭ୍ୟ ।

ଶର୍ମା -କାହିଁକି ? ଆପଣଙ୍କ ଦଳର ସଭ୍ୟମାନେ କ'ଣ ଦରମା ନେଉନଥିଲେ, ନା ଟି' ପାର୍ଟି ଭୋଜିଭାତକୁ ସେମାନଙ୍କୁ ନିମନ୍ତ୍ରଣ କରାଯାଉନଥିଲା ?

ରାଜେନ୍ଦ୍ର - ସେମାନଙ୍କ କାନ୍ଦିବାର କାରଣ ତେବେ ଏଇଆ ?

ଶର୍ମା - ପୁରୀ ଦେଉଳ ଭାଙ୍ଗିପଡ଼ିଲେ ତ କାହା ଆଖିରୁ ଟୋପାଏ ଲୁହ ଗଡ଼ିବ କି ନା ସନ୍ଦେହ - ଆସେମ୍ବ୍ଲି ଭାଙ୍ଗିଗଲା ବୋଲି ସେମାନେ କାନ୍ଦିବେ କାହିଁକି ? ଆସନ୍ତୁ ଚା' ଖାଇବା ।

ରାଜେନ୍ଦ୍ର - କ୍ଷମା କରନ୍ତୁ....

ଶର୍ମା - ଓ ! ଅପେକ୍ଷାରେ ଅଛନ୍ତି.... ଆଚ୍ଛା, କହନ୍ତୁ ଖବର କ'ଣ ?

ରାଜେନ୍ଦ୍ର - ଆପଣଙ୍କର ଖବର କହନ୍ତୁ ।

ଶର୍ମା - ମୋ ଖବର ? ଓକିଲାତି ପାସ୍ କରି ଓକିଲାତି ନକରି ଯେତେବେଳେ ରାଜନୀତିରେ ପଶିଲି, ସେତେବେଳେ ମୋର ୬୦ ଏକର ଜମି ଥିଲା । ଉଣେଇଶି ବର୍ଷ ରାଜନୀତି କରି ସେଥିରୁ ୩୮ ଏକର ବିକିଛି । କାଲି ଘରକୁ ଯାଇ ଦୁଇ ଏକର କବଲା କଲେ ମୋର ରାଜନୀତିକ ଜୀବନର କୋଡ଼ିଏ ବର୍ଷ ପୂରିଯାଉଛି ବୋଲି ଜୟନ୍ତୀ ଉତ୍ସବ ପାଳିତ ହେବ । ତା' ପରେ ସ୍ତ୍ରୀଙ୍କୁ ନେଇ ବଡ଼ ଡାକ୍ତରଖାନା ଆସିବି । ତାଙ୍କର କାମଳ ରୋଗ ବଢ଼ିଛି । ବଡ଼ପୁଅ ଆଇ.ଏସ୍‌ସି. ଫାଷ୍ଟ ଡିଭିଜନ୍‌ରେ ପାସ୍ କରି ବି.ଏସ୍‌ସି. ପଢ଼ିବ କି ଡାକ୍ତରୀ ପଢ଼ିବ କି ଇଂଜିନିୟରିଂ ପଢ଼ିବ ସେ ଯେପରି ଏକ ସମସ୍ୟା - ସାନପୁଅ ମାଟ୍ରିକ୍ ଫେଲ୍ ହୋଇ ସୋସାଲିଷ୍ଟ ହେବ କି କମ୍ୟୁନିଷ୍ଟ ହେବ କି କଂଗ୍ରେସ୍ ଆଶ୍ରମର ମେସ୍ ମେନେଜର୍ ହେବ, ସେ ମଧ ସେହିପରି ଏକ ସମସ୍ୟା । ଝିଅଙ୍କ ବାହାଘର ତ ହୋଇନାହିଁ କି ହୋଇପାରିବ ବି ନାହିଁ ।

ରାଜେନ୍ଦ୍ର - କାହିଁକି ?

ଶର୍ମା - ଚାକିରିଆ ବରକୁ ଯୌତୁକ ମୁଁ ଦେଇପାରିବି ନାହିଁ । ବେକାର ପାତ୍ର ଚାହାନ୍ତି ଶ୍ୱଶୁର ଏମ୍.ଏଲ୍.ଏ. । ସେ ଆଗେ ଚାକିରି ବନ୍ଦୋବସ୍ତ କରିଦିଅନ୍ତୁ, ପରେ ବିବାହ ହେବ । ଅଥଚ ଆମ ଦଳର ଯେଉଁ ନିୟମ....

ରାଜେନ୍ଦ୍ର - ଆପଣଙ୍କ ଦଳର ସମସ୍ତେ କ'ଣ ଏ ନିୟମ ମାନି ଚଳୁଛନ୍ତି ?

ଶର୍ମା - ମୋ ପରି ଯେଉଁମାନେ ବର୍ଷକୁ ଦୁଇ ଏକର କରି ଜମି ବିକୁଛନ୍ତି, ସେମାନେ ନିଶ୍ଚୟ ଏ ନିୟମ ମାନି ଚଳୁଛନ୍ତି । (ଆସିଲା ଗୀତା । ଗୀତା ହେଉଛି ସେଇ ଝିଅଟି, ଯିଏ ରାଜେନ୍ଦ୍ର ବକ୍ତୃତା ଦେଉଥିଲାବେଳେ ବହୁ ସମୟ ଧରି ତାଳିମାରୁଥିଲା । ସେ ହେଉଚି ମୁଖ୍ୟମନ୍ତ୍ରୀ ମହାପାତ୍ରଙ୍କ ଝିଅ ।

ଗୀତା -(ଶର୍ମାଙ୍କୁ) ନମସ୍କାର ମଉସା - ଆପଣ -

ଶର୍ମା - ତୋ ଅପେକ୍ଷାରେ ରାଜେନ୍ଦ୍ରବାବୁ ଏଠି ଏକା ଠିଆ ହୋଇଥିଲେ - ସମୟ କଟାଇବା ପାଇଁ ମୁଁ ତାଙ୍କ ସହିତ ଗପ କରୁଥିଲି । ଯାଉଚି....

ଗୀତା - ବାଃ ! ଯିବେ କାହିଁକି, ରହନ୍ତୁ ।

ଶର୍ମା - ଆଲୋ ପାଗଳୀ, ରାଜେନ୍ଦ୍ରବାବୁ ତୋ ଅପେକ୍ଷାରେ ଅଛନ୍ତି, ମୁଁ ନୁହେଁ ।

ଗୀତା - ଆପଣ ଘରକୁ ଯିବେ ?

ଶର୍ମା - ଆପାତତଃ କ୍ୟାଣ୍ଟିନ୍‌ରୁ ଟିକେ ଫେରିଆସେ ।

(ଚାଲିଗଲେ)

ରାଜେନ୍ଦ୍ର - ତମ ବାପାଙ୍କ ସହିତ ଦେଖାହେଲାଣି ?

ଗୀତା - ନା ।

ରାଜେନ୍ଦ୍ର - ମୋ ବକ୍ତୃତା ପରେ ତମର ଉଚ୍ଛ୍ୱସିତ ତାଳି ଆମ ଦୁହିଁଙ୍କ ସମ୍ବନ୍ଧରେ ଅନେକ ଲୋକଙ୍କୁ ଅନେକ କଥା ଭାବିବାର ସୁଯୋଗ ଦେଇଚି ।

ଗୀତା - ସତେ ଏକା, ଭାରି ଭୁଲ ହୋଇଗଲା ।

ରାଜେନ୍ଦ୍ର - ଲକ୍ଷ୍ୟ କରିଥିବ, ସେତେବେଳେ ସାରା ଆସେମ୍ବ୍ଲିର ଦୃଷ୍ଟି ତମରି ଉପରେ ।

ଗୀତା - ମୋର ଆଉ ଚାରା କ'ଣ ଥିଲା ? ତାଳିଟା ସିନା ମୋ ହାତର କଥା; କିନ୍ତୁ ତାଳି ଦେବାର ଯେଉଁ ଅଦମ୍ୟ ଲୋଭ, ସେ କ'ଣ କେବେ କାହାରି ଶାସନକୁ ଅପେକ୍ଷା କରେ ?

(କଥାଟା କହିସାରି ନିଜେ ନିଜେ ଲାଜରା ହୋଇଉଠିଚି ।)

ରାଜେନ୍ଦ୍ର - ଠିକ୍ ଏଇ ଅବସ୍ଥାରେ ବୋଧେ ରାଜନୀତି ପୁରୁଷର ଉପଭୋଗ୍ୟ ହୋଇଉଠେ । (ଚଞ୍ଚଳ କିନ୍ତୁ ପରିତୃପ୍ତ ଦୃଷ୍ଟିରେ ଗୀତା ରାଜେନ୍ଦ୍ରଙ୍କୁ ଚାହିଁ ସଂଗେ ସଂଗେ ପୁଣି ଆଖିଫେରାଇ ଆଣିଲା) ଏଇ ତମ ବାପା ଆସୁଛନ୍ତି ।

(ଗୀତା ସପ୍ରତିଭ ହୋଇ ଆଗନ୍ତୁକଙ୍କ ଅପେକ୍ଷାରେ ରହିଲା । ପ୍ରାୟ ସଙ୍ଗେ ସଙ୍ଗେ ଆସିଲେ ମୁଖ୍ୟମନ୍ତ୍ରୀ ମହାପାତ୍ର । ଗୀତା ତାଙ୍କରି ଝିଅ । ଗୀତାକୁ ଅତିକ୍ରମ କରି ଟିକିଏ ଆଗକୁ ଯିବା ପରେ ସେ ଅଟକିଲେ । .....ସଙ୍ଗେ ସଙ୍ଗେ ଗୀତା ତାଙ୍କ ନିକଟକୁ ଆଗେଇଗଲା ।)

ମହାପାତ୍ର - ତୁ ଘରକୁ ଯିବୁ ତ ?

ଗୀତା - ହଁ ।

ମହାପାତ୍ର - ମୋ ଗାଡ଼ିରେ ଯିବୁ ?

ଗୀତା - ଚାଲନ୍ତୁ ।

(ମହାପାତ୍ର ଚାଲିଗଲେ । ଗୀତା ଫେରିଚାହିଁଲା ରାଜେନ୍ଦ୍ରଙ୍କୁ - ରାଜେନ୍ଦ୍ର ନିଃଶବ୍ଦରେ ବିଦାୟର ଇଙ୍ଗିତ ଦେଲେ, ଗୀତା ଚାଲିଗଲା - ଏହା ପରେ ରାଜେନ୍ଦ୍ର କୁଆଡ଼େ ଯିବେ, ଏଇ କଥା ଭାବୁଥିଲାବେଳେ ପୁଣି ଆସିଲେ ଶର୍ମା ।)

ରାଜେନ୍ଦ୍ର - କ'ଣ ଚା' ଖାଇ ଆସିଲେ ?

ଶର୍ମା - ଗୋଲ୍ ବଜାରର ଛକ ଭଳି ଆପଣ ସେତିକିବେଳୁ ଏଠି ଠିଆହୋଇ ରହିଛନ୍ତି, ଆଉ ମୁଁ ବୁଲି ବୁଲି ଆସି ଏଠି ପହଞ୍ଚୁଚି ।

ରାଜେନ୍ଦ୍ର - ଆସନ୍ତୁ ଯିବା ।

ଶର୍ମା - ବାଦୀପାଲାର ଗାୟକ, ମକଦ୍ଦମାର ଦୁଇପକ୍ଷର ଓକିଲ, ଆଉ ଦୁଇ ବିରୁଦ୍ଧ ଦଳର ଆସେମ୍ବ୍ଲି ମେମ୍ବର - ଏମାନଙ୍କୁ ନେଇ ଏକ ତୁଳନାତ୍ମକ ପ୍ରବନ୍ଧ ଆପଣ ଲେଖିପାରିବେ ?

ରାଜେନ୍ଦ୍ର - (ହସି ହସି) ଆପଣଙ୍କୁ ମନକୁ ଏସବୁ କଥା ଆସୁଛି କାହିଁକି ?

ଶର୍ମା - ପ୍ରାୟ ପନ୍ଦରଟି ଦିନ ପରେ ଆମେ ଉଭୟ ଦଳ ଭୋଟ ଯୁଦ୍ଧରେ ଅବତୀର୍ଣ୍ଣ ହେବା, ସେତିକିବେଳେ ସଭାସମିତିରେ ଆପଣମାନେ ଆମକୁ ଯାହା କହିବେ ଆଉ ଆମେ ଆପଣମାନଙ୍କୁ ଯାହା କହିବୁ ସେଇସବୁ କଥା ମନେ ମନେ ଚିନ୍ତାକରି । ଆସନ୍ତୁ, ଏକ

ସାଥିରେ ଯିବ - ଯାତ୍ରାଟା ବେଶ ସୁଖକର ହେବ । (ଟିକିଏ ରହି) ଗୀତା ଗଲାଣି ତ ?

ରାଜେନ୍ଦ୍ର - ହଁ ।

ଶର୍ମା - ତା ବାପାଙ୍କ ସାଥିରେ ?

ରାଜେନ୍ଦ୍ର - ହଁ - ସେ ଆପଣଙ୍କର ଅତି ଆତ୍ମୀୟ, ନା ?

ଶର୍ମା - ହଁ ଆତ୍ମୀୟ - ଯଦିଓ ସମ୍ବନ୍ଧଟା ପୂରାପୂରି ରାଜନୈତିକ ।

ରାଜେନ୍ଦ୍ର - ରାଜନୈତିକ ।

ଶର୍ମା - ମୁଁ ଯେତେବେଳେ ପ୍ରଥମେ ରାଜନୀତିରେ ଯୋଗଦିଏ, ସେତେବେଳେ ଗୀତାର ବାପା ଶ୍ରୀଯୁକ୍ତ ମହାପାତ୍ର ଥିଲେ ଜଣେ ଅତି ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ । ତାଙ୍କରି ଦୟାରୁ ମୁଁ ସେତେବେଳେ ଛ'ମାସ ପାଇଁ ମାମୁଁଘରକୁ ଯାଇଥିଲି ସତ; କିନ୍ତୁ ଗୀତାର ମଉସା ହେବାର ସୌଭାଗ୍ୟ ମୋର ନଥିଲା । ତା'ପରେ ଶ୍ରୀଯୁକ୍ତ ମହାପାତ୍ର ଚାକିରି ଛାଡ଼ି ଆମ ଦଳରେ ଯୋଗଦେଲେ । ଆମ ଦୁହିଁଙ୍କର ସମ୍ବନ୍ଧ ହେଲା ରାଜନୈତିକ, ଆଉ ମୁଁ ଗୀତାର ହେଲି ରାଜନୈତିକ ମଉସା । ଆଚ୍ଛା, ଆମର ତ ଏଥର ଛତା ବାକ୍ସ ରହିଲା । ଆପଣଙ୍କର Symbol କ'ଣ ?

ରାଜେନ୍ଦ୍ର - ଏକାବେଳକେ ନୂଆ -ପର-କଲମ !

ଶର୍ମା - ପର-କଲମ ! ଏଣିକି ନିଜ କଲମ ଛାଡ଼ିଦେବେ ? ପର-କଲମ ! ବେଶ୍ ହୋଇଚି ।

## ତୃତୀୟ ଦୃଶ୍ୟ

(ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହାପାତ୍ରଙ୍କର ବାସଭବନର ଗୋଟିଏ କକ୍ଷର ଦୃଶ୍ୟ । ଦୃଶ୍ୟ ଆରମ୍ଭରେ ଦେଖାଗଲା ସେ ଫୋନ୍‌ରେ କଥା କହୁଛନ୍ତି ।)

ମହାପାତ୍ର - ହଁ ବର୍ତ୍ତମାନ ! ଆମର ଏଠିକି ଆସିବାକୁ କିଛି ଆପତ୍ତି ଅଛି ? .... ବେଶ୍ । ମୁଁ ଅପେକ୍ଷା କରୁଚି.... ସଙ୍ଗେ ସଙ୍ଗେ ଆସ ।

(ଫୋନ୍ ରଖିଦେଲେ, ହାତଟା କିନ୍ତୁ ସେଇ ଫୋନ୍ ଉପରେ ଥାଏ । ସେ ଯେ ଚିନ୍ତିତ, ଏକଥା ତାଙ୍କୁ ଦେଖିଲେ ବୁଝାଯାଉଥାଏ; କିନ୍ତୁ ଯେତେ ଦୁଃସହ ଚିନ୍ତା ହେଉନା କାହିଁକି, ତାଙ୍କ ଶାନ୍ତ ଓ ଗମ୍ଭୀର ମୁଖମଣ୍ଡଳରେ ତା'ର ପରିଚୟ ଅସ୍ପଷ୍ଟ । ....ଗୀତା ଆସିଲା - ତା ହାତରେ ଖଣ୍ଡେ ଖୋଲା ଚିଠି ।)

ଗୀତା - ବାପା !

ମହାପାତ୍ର - କିଏ ଚିଠି ଦେଇଚି ?

ଗୀତା - ଗାଁରୁ ଆସିଚି ।

ମହାପାତ୍ର - କୁଳମଣି ଲେଖିଚି ?

ଗୀତା - ହଁ !

ମହାପାତ୍ର - ସେଇ ପୁରୁଣା କଥାନା, ଆଉ କିଛି ?

ଗୀତା - ହଁ ଲେଖିଚନ୍ତି - ମଝି ଘରଟା ଏକାବେଳକେ ଭାଙ୍ଗି ପଡ଼ିଚି - ଭାଚଚାଷ ଧାନ ଗୋଟାଏ ବୋଲି ଅସୁଲ ହୋଇପାରୁନି.....

ମହାପାତ୍ର - (ବାଧାଦେଇ) ଜାଣେ, ଏମିତି ଅନେକ କିଛି ସେ ଲେଖିଥିବ । ତା'ର ଗୋଟିଏ ଧାରଣା, ତୁ ଏସବୁର କିଛି ହେଲେ ବ୍ୟବସ୍ଥା କରିପାରିବୁ । ସେଥିପାଇଁ ତୋ ପାଖକୁ ସେ ଏପରି ଚିଠି ଦିଏ, ଆଜି ବି ଦେଇଚି । ମତେ ଏସବୁ କହି ଲାଭ କ'ଣ ?

ଗୀତା - ଆପଣଙ୍କ ପାଖକୁ ବି ସେ ଲେଖିଛନ୍ତି ।

ମହାପାତ୍ର - କ'ଣ, ପଢ଼ିଲୁ ?

ଗୀତା - (ପଢ଼ିଲା) ତମକୁ ନେହୁରା ହଉଚି ମା' ତମ ବାପାଙ୍କୁ ଟିକିଏ ବୁଝାଅ । ମୁଁ ତ ଗୁମାସ୍ତା -ଚାକର, ମୋ କଥା ଶୁଣୁଚି କିଏ ? ଏଠି ସବୁ ନଷ୍ଟ ହେଇଯାଇଚି । ମନକଲେ ସେ ସବୁ ଠିକ୍ କରିଦିଅନ୍ତେ । ଏତେ ବଡ଼ ଗୋଟାଏ ରାଜ୍ୟ ଚଳଉଛନ୍ତି - ଗୋଟାଏ ଘରର ଖବର ସେ ବୁଝିପାରନ୍ତେ ନାହିଁ..... (ମହାପାତ୍ର ହୋ-ହୋ ହୋଇ ହସିଉଠିଲେ ।)

ମହାପାତ୍ର - ଖୁବ୍ ସତ କଥାଟାଏ ଏକା ସେ ଲେଖିଚି ।....ଆଚ୍ଛା ମା'ତୋର ଧାରଣା କ'ଣ ?

(ଗୀତା ପ୍ରଶ୍ନବାଚକ ଦୃଷ୍ଟିରେ ତାଙ୍କୁ ଚାହିଁଲା ।)

ମୋ ଘର ଖବର ବୁଝିବାକୁ ମୁଁ ଅନୁପଯୁକ୍ତ । ଅନ୍ୟ କଥାରେ ମୋର ଘର ଉପରେ ମୋର କୌଣସି କର୍ତ୍ତୃତ୍ୱନାହିଁ..... ଶାସନ ନାହିଁ....

ଗୀତା - ଶାସନ !

ମହାପାତ୍ର - ପ୍ରଥମ କଥା - ମୋର ଘର-ସଂସାର କହିଲେ କ'ଣ ବୁଝାଏ ? ମୋ ଜମି-ବାଡ଼ି, ସମ୍ପତ୍ତି - ଏସବୁ ମୋ ଅର୍ଜିତ ନୁହେଁ । ଦିନେନା ଦିନେ ସେ ସବୁ ମୋ ହାତରୁ ଯିବାର କଥା - ଆଜି ଯଦି ଯାଏ, ଯାଉ, ମୁଁ ଦୁଃଖ କରିବି କାହିଁକି ? ତା'ପରେ ବାକି ରହିଲା କ'ଣ ?

ଗୀତା - ମୁଁ ବୁଝିଚି ବାପା, ବାକି ରହିଲା ମୁଁ - ଆପଣଙ୍କର ଏକମାତ୍ର ଝିଅ । ମୋତେ ନେଇ ଆପଣଙ୍କ ସଂସାର । ଅଥଚ ମୋ ଉପରେ ଆପଣଙ୍କର କୌଣସି କର୍ତ୍ତୃତ୍ୱ ନାହିଁ - ଶାସନ ନାହିଁ ।

ମହାପାତ୍ର - ମୂଳ କଥାଟାକୁ ବେଶି ସମୟ ଚାପିରଖି ଲାଭ ନାହିଁ ଗୀତା । ସେଦିନ ଆସେମ୍ବ୍ଲିରେ ରାଜେନ୍ଦ୍ରର ବକ୍ତୃତା ପରେ ତୋର ବ୍ୟବହାର ପାଇଁ ଆମ ଦୁହିଁଙ୍କ ଭିତରେ ଏ ଅବସ୍ଥାର ସୃଷ୍ଟି ହୋଇଛି ।

ଗୀତା - ମୁଁ ମାନୁଚି ! ମୋର ଦୋଷ ହୋଇଛି ।

ମହାପାତ୍ର - କିନ୍ତୁ ତୋତେ ଦୋଷ ହେଲେ ଲୋକଚକ୍ଷୁରେ ଯେ ମୁଁ ନିଜେ ଦୋଷୀ ସାବ୍ୟସ୍ତ ହେବି ।

(ଗୀତା ପ୍ରଶ୍ନଭରା ଦୃଷ୍ଟିରେ ପୁଣି ତାଙ୍କୁ ଚାହିଁଲା ।)

ଲୋକେ ଜାଣନ୍ତି; ମୁଁ ଏ ଦେଶର ଜଣେ ନେତା – ଗୋଟାଏ ରାଜ୍ୟର ମୁଖ୍ୟମନ୍ତ୍ରୀ । ମୋର ନୀତି ହେଲା ପ୍ରତ୍ୟେକ ଲୋକକୁ ତା'ର ସ୍ୱାଧୀନ ମତ ପ୍ରକାଶ ପାଇଁ ଉପଯୁକ୍ତ ସୁବିଧା ଓ ସୁଯୋଗ ଦେବା... କିନ୍ତୁ ଏ କଥା ମୁଁ କାହାକୁ ବୁଝାଇବି – କିପରି ବୁଝାଇବି ଯେ ମୋର ଏକୋଇଶ ବର୍ଷର ଝିଅ ତା'ର ମନ କଥା ଖୋଲିଦେଲାକ୍ଷଣି ମୋର ମନ ତା ବିରୁଦ୍ଧରେ ବିଦ୍ରୋହ କରିଉଠୁଛି.... ପିତାର ସ୍ୱଭାବ-ସୁଲଭ ଶାସନ ତା' ଉପରେ ଜାହିର କରି ତାକୁ ମୋ ନିକଟରେ ନତମସ୍ତକ କରି ଠିଆକରାଇବାକୁ ମୋର ମନ ପ୍ରାଣ ବ୍ୟାକୁଳ ହୋଇଉଠୁଛି... ।

ଗୀତା – ମୁଁ ପୁଣି କହୁଛି – ବାପା, ମୁଁ ଦୋଷ କରିଛି ।

ମହାପାତ୍ର – କିନ୍ତୁ ତୁ ଯେ ଦୋଷୀ, ସେ ରାୟ ଦେବ କିଏ ?

ଗୀତା – ମୋର ଦୋଷ, କାହାରି ରାୟ କାହାରି ନିଷ୍ପତ୍ତିକୁ ଅପେକ୍ଷା ରଖୁନାହିଁ । ଏ ଦେଶର ବହୁଲୋକ ମିଳିତ ଦଳକୁ ସମର୍ଥନ କରୁଛନ୍ତି । ବହୁଲୋକ ରାଜେନ୍ଦ୍ରବାବୁଙ୍କ ଭକ୍ତ । କିନ୍ତୁ ସେ ଦିନ ଆସେମ୍ବ୍ଲିରେ ତାଙ୍କୁ ମୁଁ ସମର୍ଥନ କଲି ବୋଲି ଖବରକାଗଜରେ ମୋ ପ୍ରଶଂସାର ସୀମା ରହିଲାନାହିଁ । କାହିଁକି ? ତା'ର କାରଣ ମୁଁ ଆପଣଙ୍କ ଝିଅ, ମୁଁ ମୁଖ୍ୟମନ୍ତ୍ରୀଙ୍କ ଝିଅ । ଆପଣଙ୍କ ପ୍ରତିଷ୍ଠାର ସୁଯୋଗ ନେଇ, ଆପଣଙ୍କ ବାହୁଛାୟା ତଳେ ରହି, ଆପଣଙ୍କ ଶତ୍ରୁର ଗଳାରେ ମୁଁ ଜୟମାଲ୍ୟ ପିନ୍ଧାଇ ଦେଇଛି । ମୋର ସମସ୍ତ ବୁଦ୍ଧି ଓ ବିବେକ ଖଟାଇ ମୁଁ ଏ ବାଟ ବାଛି ନେଇଥିଲେ ସୁଦ୍ଧା , ମୁଁ ବୁଝିପାରୁଚି ଯେ ଶସ୍ତାରେ ନାଁ କମାଇବା ପାଇଁ ମୁଁ ଚୋରା ବଜାରର ଆଶ୍ରୟ ନେଇଛି । ଏ ଦୋଷର ସୀମାନାହିଁ ବାପା ! କିନ୍ତୁ ଆପଣଙ୍କୁ ମୋର ଶେଷ ଅନୁରୋଧ, ମତେ ତିନିଦିନ ସମୟ ଦିଅନ୍ତୁ ।

ମହାପାତ୍ର – ନା । (ଗୀତା ଶଙ୍କିତ ଦୃଷ୍ଟିରେ ତାଙ୍କୁ ଚାହିଁଲା) ମୁଁ ଜାଣେ ତିନି ଦିନ ପରେ ତୁ ଗୋଟିଏ ନିର୍ଦ୍ଦିଷ୍ଟ ବାଟ ବାଛିନେବୁ । ସେତେବେଳେ ବାପ ହୋଇ ଶାସନ କରିବାର ସୁବିଧା ମୋର ହୁଏତ ରହିବନାହିଁ । ସେଥିପାଇଁ ବାପର ସମସ୍ତ କ୍ଷମତା ମୁଁ ଆଜି ତୋ ଉପରେ ଖଟାଇବାକୁ ଚାହେଁ । ତୁ କହ ମୋର ଶାସନ ତୁ ମାନିନେବୁ ତ ?

ଗୀତା – ମୋର ଉତ୍ତର ମୁଁ ଦେଇସାରିଛି ।

ମହାପାତ୍ର – ବେଶ୍ ମୁଁ ଚାହେଁ... ତୋର....ବିବାହ ।

ଗୀତା – ବାପା !

ମହାପାତ୍ର – ମାତ୍ର ଏତିକି ମୁଁ ଚାହେଁ ଗୀତା...ମାତ୍ର ଏତିକିରେ ତୋଠାରୁ ବାପା ହିସାବରେ ମୋର ସମସ୍ତ ପ୍ରାପ୍ୟ ମୁଁ ପାରି ପାରିବି ।

ଗୀତା – ମୁଁ ପ୍ରସ୍ତୁତ ବାପା, ମୁଁ ବିବାହ କରିବି ।

ମହାପାତ୍ର – କିନ୍ତୁ ତୁ କାହାକୁ ବିବାହ କରିବୁ ସେ ନିଷ୍ପତ୍ତି..... (ଏଇଠି ଆଶଙ୍କାରେ ଗୀତାର ମୁହଁ ବିବର୍ଣ୍ଣ ହୋଇଉଠିଲା ।)

ତୁ କରିବୁ ମା....କହ ତୋର ମତ କ'ଣ ? ତୁ କାହାକୁ ବିବାହ କରିବାକୁ ଚାହୁଁ ?

(ଗୀତା ନିରୁତ୍ତର । ମୁହଁ ତଳକୁ କରି ବୁଢ଼ାଆଙ୍ଗୁଠି ନଖରେ ଭୂଇଁରେ ଗାର କାଟୁଥାଏ) ବେଶ୍, ତୋ ମନକଥା ମୁଁ ଜଣାଇ ଦେଉଚି, ତୁ ବିବାହ କରିବୁ.... ରାଜେନ୍ଦ୍ରକୁ । (ଗୀତାର ନଖ ଚାଳନା ବନ୍ଦ ହୋଇଗଲା । ବୁକୁ ଭିତରେ ତା'ର ଆଲୋଡ଼ନ । ଧୀରେ ଧୀରେ ମୁହଁ ଟେକି ସେ ସାମ୍ନାକୁ ଚାହିଁଲା ।)

ଗୀତା - ଏ ପରୀକ୍ଷା ମୁଁ ଦେଇପାରିବି ତ ବାପା !

ମହାପାତ୍ର - ପାରିବୁ । ରାଜେନ୍ଦ୍ରକୁ ମୁଁ ଫୋନ୍ କରିଚି, ସେ ଆସୁଥିବ ।

ଗୀତା - ମୋର ସ୍ୱାର୍ଥସିଦ୍ଧି ପାଇଁ ଆପଣ ଏ ସ୍ୱାର୍ଥତ୍ୟାଗ କରୁଛନ୍ତି କାହିଁକି ? ଜନ୍ମ ଜନ୍ମାନ୍ତର ଧରି ଏ ଋଣରୁ ମୁଁ ମୁକ୍ତ ହୋଇପାରିବି ନାହିଁ । (ତା'ର ଆଖିର ଲୁହ । ଏଇ ସମୟରେ ଘଣ୍ଟି ବାଜିଲା ।)

ମହାପାତ୍ର - କିଏ ? (ପର୍ଦ୍ଦା ଆଡ଼େଇ ଦେଖି) ଓ....ରାଜେନ୍ଦ୍ର ! ଆସ । (ରାଜେନ୍ଦ୍ର ଆସି ମହାପାତ୍ରଙ୍କୁ ନମସ୍କାର କଲେ ! ମହାପାତ୍ର ନିଜକୁ ସଂପୂର୍ଣ୍ଣ ପ୍ରକୃତିସ୍ଥ କରିନେଲେଣି) । କୌଣସି ଭୂମିକା ନକରି ମୁଁ କଥାଟାକୁ ଆରମ୍ଭ କରୁଚି..... ଗୀତା ସହିତ ତମର ବିବାହ ମୁଁ ଚାହେଁ । ଗୀତା ତା'ର ମତ ଦେଇସାରିଚି । କେବଳ ତମରି ସ୍ୱୀକୃତି-

ରାଜେନ୍ଦ୍ର - ଏତେ ଚଞ୍ଚଳ ଏ ନିଷ୍ପତ୍ତି....

ମହାପାତ୍ର - ଚଞ୍ଚଳ ନୁହେଁ, ବହୁ ଆଗରୁ ଏ ନିଷ୍ପତ୍ତି ମୁଁ କରିସାରିଚି । ଆଜି କେବଳ ତମକୁ ଜଣାଇଦେଲି ।

ରାଜେନ୍ଦ୍ର - କିନ୍ତୁ ଇଲେକ୍ସନ୍ ନିକଟ ହୋଇଆସୁଛି -

ମହାପାତ୍ର - ସେଇଥିପାଇଁ ଏ ବିବାହ ଖୁବ୍ ନିକଟରେ ହେବା ଉଚିତ୍ । ମାତ୍ର ପାଞ୍ଚଦିନ ପରେ.... କହ ତମର ଇଚ୍ଛା କ'ଣ ? ....କ'ଣ ଆଉ ଭାବୁଛ ? ତମ ଦଳର ଅନୁମତି ? ଆଚାର୍ଯ୍ୟ ମହାଶୟଙ୍କ ଅନୁମତି ?

ରାଜେନ୍ଦ୍ର - ଏତେ ଦୁର୍ବଳ ମତେ ଭାବୁଚନ୍ତି କାହିଁକି ?

ମହାପାତ୍ର - ତା'ହେଲେ ତମର କୌଣସି ଆପତ୍ତି ନାହିଁ ।

ରାଜେନ୍ଦ୍ର - ନା - ମୁଁ ରାଜି ।

ମହାପାତ୍ର - 'ଶାନ୍ତିର ନିଃଶ୍ୱାସ' କଥାଟାକୁ ମୁଁ ଆଜି ମର୍ମେ ମର୍ମେ ଅନୁଭବ କରୁଛି । ଭଗବାନ୍ ତମର ମଙ୍ଗଳ କରନ୍ତୁ । (ସେମାନଙ୍କୁ ଆଉ କିଛି କହିବାର ସୁଯୋଗ ନଦେଇ ସେଠାରୁ ସେ ଚାଲିଗଲେ ।)

ଗୀତା - (ବାଷ୍ପାକୁଳ କଣ୍ଠରେ) ଯେ କ'ଣ ହେଲା ରାଜେନ୍ଦ୍ର ବାବୁ ! ବାପା ହଠାତ୍ ଏ ନିଷ୍ପତ୍ତି କଲେ କାହିଁକି ? ତମେ କିପରି ରାଜିହେଲ ? ମୁଁ ବା କିପରି ରାଜିହେଲି ! ମୁଁ କିଛି ବୁଝିପାରୁନି । ବାସ୍ତବିକ ଆମ ବିବାହର କ'ଣ ପ୍ରୟୋଜନ ଥିଲା !

ରାଜେନ୍ଦ୍ର - ଥିଲା । ଅତୀତକୁ ଫେରିଚାହଁ ଗୀତା । ଯେଉଁ ଆକର୍ଷଣ ନାରୀ ଓ ପୁରୁଷକୁ ନିକଟରୁ ନିକଟତର କରାଏ, ସେଥିରୁ ତ ଆମେ ବାଦ୍ ଯାଇନୁ । ରାଜନୀତି ଆମ

ମିଳନର କ୍ଷେତ୍ର ଥିଲା । କିନ୍ତୁ ଏ ମିଳନ ଯେ ସମ୍ଭବ ହୋଇପାରିଥିଲା କେବଳ ପ୍ରେମ ଯୋଗୁଁ, ଏ କଥା ଆମେ କେହି ଅସ୍ୱୀକାର କରିପାରିବା ନାହିଁ । ସେହି ପ୍ରେମର ବିକାଶ ପାଇଁ ଏ ବିବାହର ପ୍ରୟୋଜନ ଅଛି । ସେଥିପାଇଁ ତମ ବାପାଙ୍କ ନିଷ୍ପତ୍ତିକୁ ଆମକୁ ମଥାପାତି ମାନିନେବାକୁ ହେବ ।

## ଚତୁର୍ଥ ଦୃଶ୍ୟ

(ଗାଁର ଏକ ରାସ୍ତାର ଦୃଶ୍ୟ । ଦଳେ କର୍ମୀ କୋରସ୍ ଗୀତ ଗାଇ ଗାଇ ଚାଲିଥା'ନ୍ତି । ସମସ୍ତଙ୍କ ହାତରେ ଗୋଟିଏ ଲେଖାଏଁ ପର-କଲମ । ସେମାନେ ହେଉଛନ୍ତି ମିଳିତ ଦଳର ସମର୍ଥକ, ଏ ଶୋଭାଯାତ୍ରାର ଚାଳକ ହେଉଛି ଜଣେ ଯୁବକ-ବିଜୟ ।)

(ଗୀତ)

ହେଇ ହେଇ ହେଇରେ ପର-କଲମକୁ ମନେକରି
ଧନ ମନେକରି ଧନ ମନେକରି ଆ-
ଅସଲ ସ୍ୱରାଜ ପାଇବୁ ଯେବେ ତୁ ଘରପୁଅ ଘରୁ ବାହାରିଆ ରେ
ଘରପୁଅ ଘରୁ ବାହାରିଆ.....
ଆଉ କେତେକାଳ ଦେଖାଇ କଙ୍କାଳ ପଡ଼ିଥିବୁ ହୋଇ ଗୁହାରିଆ
ଲାଲି ଆଖିତଳେ ପଡ଼ିଥିବୁ ହୋଇ ଗୁଆରିଆ
ଏଇ ମାଟି ତୋର – ଏଇ ପାର୍ଟି ତୋର....
(ଆଉ) କେତେ ପାର୍ଟି ବାନା ଟେକି ଦାନା-କନା ନମିଳେ
ହେଲୁ ତୁ ଡାହାଳିଆ... ।୧ ।
ପର-କଲମର ମହିମା ଏଥର ପରଖ ଏ ନୁହେଁ କ୍ନାଳିଆ.....
(ଖାଲି) ମୁହଁଦେଖା ଚିକ୍କଣ କୁହାଳିଆ...
ଗୁଡ଼କୁ ପିମ୍ପୁଡ଼ି ମଡ଼କୁ ଶାଗୁଣା
ବେଢ଼ିଥା'ନ୍ତି ତୋତେ କେତେ ନିଉଛୁଣା
(ତୋର) ଟେକି ଖୋସଣିରେ ଚାହିଁ ନିଶାଣିରେ ସାଜି ଭଣ୍ଡ
ବେଶ ମାହାରିଆ
(ଖାଲି) କାରତିକର ସେ ଚକୁଳିଆ ପଣ୍ଡା ରଡ଼ି ଛାଡୁଛନ୍ତି
ମାହାଳିଆରେ ।୨ ।
(ଗୀତ ପରେ ପରେ ରାଧୁ ପାଣି ସେ ବାଟ ଦେଇ ଚାଲି ଯାଉଥିଲା ।)

ମୁକୁନ୍ଦ – (ଭିତରୁ)....ହେ...ହେ....

(ରାଧୁ ଶୁଣି ନଶୁଣିଲା ପରି ଆଗେଇଲା । ଯେପରି ସେ ଜାଣିଶୁଣି ଖସିଯିବାର ଇଚ୍ଛା କରୁଛି ।)

ମୁକୁନ୍ଦ - ହେ ରାଧୁ ପାଣି !

(ରାଧୁ ଶୁଣି ନଶୁଣିଲା ପରି ଆଗେଇଲା । ଯେପରି ସେ ଜାଣିଶୁଣି ଖସିଯିବାର ଇଚ୍ଛା କରୁଛି ।)

ମୁକୁନ୍ଦ - ହେ ରାଧୁ ପାଣି !

(ରାଧୁ ବାଧ ହୋଇ ଠିଆହୋଇ ରହିଲା । ଟିକିଏ ପରେ ଆସିଲା ମୁକୁନ୍ଦ) ହଇରେ ! ଦୋକାନରେ ମତେ ଦେଖି ମୁହଁରେ ଲୁଗାଦେଇ ପଳେଇ ଆଇଥିଲୁଟି ? (ଦୁହେଁ ମଧ୍ୟବୟସ୍କ ଗ୍ରାମବାସୀ)

ରାଧୁ - ଲୁଗାଦେଇ ପଳେଇବି କାହିଁକି ?

ମୁକୁନ୍ଦ - ଏଡ଼େ ପାଟିରେ ଡାକୁଚି - ତତେ ଶୁଭୁ ନଥିଲା ?

ରାଧୁ - କାହିଁକି ଡାକୁଥିଲୁ ?

ମୁକୁନ୍ଦ - ଶୁଣିବଟି ! ଦେଢ଼ମାସ କି ଦି ମାସ ହେଲାଣି । ବାକି ଟଙ୍କା କେଇଟା ଦବାର ନାଁ ଧରୁନୁ - ଚମ୍ପେଇନେଉଜ ପରି କାଲି କାଲି କହି ଦୁନିଆ କାଲି ଦେଖେଇଲୁଣି । ଭୋଟବାଲା ଆସି ଗାଁ ଗାଁ ଖେଦିଗଲେଣି । ଏ ବେଳରେ ମୁଁ ପାଞ୍ଚ ପଇସା ଏଠୁ ସେଠୁ ଆଣି ମୋ ଦୋକାନ ଜମେଇବିନା....ଏମତି ତୁ କାଳି ମାରୁଥିବୁ, ମୁଁ ତୋ ପିଛା ଧରିଥିବି । ମୋ ଟଙ୍କା ପକା ।

ରାଧୁ (ରାଗିଯାଇ) ମୁକୁନ୍ଦା....

ମୁକୁନ୍ଦ - ମୋ ଦାଉ ଲୋ.....

ରାଧୁ - ତୋ ଭାଉ ମୁଁ ଖସେଇ ଦେବିନି ! ଛୋଟଲୋକ କାହାଁକା - ମୋ ଭଳିଆ ଲୋକକୁ ଗାଁ ଦାଣ୍ଡରେ ଅଟକେଇ ତାଗିଦା କରିବୁ ? ତୁ ମତେ ଟଙ୍କା ଦେଖଉଚୁ, ଟଙ୍କା ? ଛୋଟଲୋକ କାହାଁକା । (ସଗର୍ବରେ ଚାଲିଗଲା)

ମୁକୁନ୍ଦ - ଦେଖୁଚ, ଦେଖୁଚ ଯାକୁ ! ଆଚ୍ଛା ରହ, ତୋ ବଡ଼ଲୋକି ଛଡ଼େଇ ଦଉଚି ।

## ପଞ୍ଚମ ଦୃଶ୍ୟ

(ଗ୍ରାମ । ମନ୍ଦର ମହାନ୍ତିଙ୍କ ଘରର ଅଳିନ୍ଦ । ମନ୍ଦର ମହାନ୍ତି, ବୟସ ପଚାଶ ଉପରେ - କୁଞ୍ଚକେରା ଧୋତି- ଦେହରେ ଗଳାବନ୍ଧ ଅଧା କାମିଜ । ମୁଣ୍ଡରେ ଊନବିଂଶ ଶତାବ୍ଦୀର ଟେରି - କପାଳରେ ଲମ୍ବା ସିନ୍ଦୂର କଳି । ନାକତଳେ ମାମଲତକାରିଆ ନିଶ । ମଧ୍ୟାହ୍ନଭୋଜନ ପରେ ହାକୁଟି ମାରି ମାରି ସେ ଆସିଲେ । ପାଦରେ କଠଉ । କାଖରେ ଖଣ୍ଡେ ଛୋଟ ମସିଣା- ହାତରେ ପାନ

କୁଟିବାର ଦେଶୀଯନ୍ତ । ମସିଣା ଖଣ୍ଡିକ ପରିପାଟି ସହ ବିଛାଇ ସେଥିରେ ଚେକାମାରି ବସିଲେ । ପାନକୁଟା ଚାଲିଥାଏ.... ମଝିରେ ମଝିରେ ହାକୁଟି ବି ଚାଲିଥାଏ ।)

ମନ୍ଦର - (ଡାକିଲେ) ସେବ ବୋଉ - ହୋ ସେବ ବୋଉ !

ସୀତା - (ଭିତରୁ) କ'ଣ ?

(ଟିକିଏ ପରେ ଆସିଲେ ସେବ ବୋଉ ଅର୍ଥାତ୍ ତାଙ୍କର ସ୍ତ୍ରୀ ସୀତା । ସେ ଆସି ଠିଆ ହୋଇଥାଆନ୍ତି । ବେଶ୍ ପ୍ରଶଂସା ଦୃଷ୍ଟିରେ ମହାନ୍ତିଏ ତାଙ୍କ ମୁହଁକୁ ଚାହିଁଲେ ।)

ମନ୍ଦର - ଆସିଲ ! ବସ....

(ସୀତା ମୁହଁ ମୋଡ଼ିଦେଇ ଚାଲିଯାଉଥିଲା -

ସେବ ବୋଉ....ଆସ କହୁଚି । (ସୀତା ଫେରିଲା) ବସ.... ବସ....! (ଅନିଚ୍ଛାସତ୍ତ୍ୱେ ସେ ବସିଲା)

ହାତ ଖଣ୍ଡେ ତ ? ହାତ ଖଣ୍ଡେ ଏକା ପାଇଚ ! ଅମୃତ ଚଖେଇଦେଲ । ହଇ ହେ ! କୋଉ କାଳର ପୋକା କୋଳଥ - ସେ ଡାଲି ପୁଣି ଏତେ ସୁନ୍ଦର !! ନାଃ, ଏଇ ଗୁଣରେ ତମେ ହରିପୁରିଆଣୀ ଝିଅ ସବୁ ମାଇପିଙ୍କୁ ଟପିଯିବେ । ଡଙ୍କା ଚଟୁପାଇଁ ହାତ ଖଣ୍ଡେ ତ !!

ସୀତା - ହଉ - ଏଥର ସଇଲା ? ...ସଇଲା କି ?

ମନ୍ଦର - ସରେ କି ? ଦେଖୁନ, ହାକୁଟି ଉପରେ ହାକୁଟି ଚାଲିଛି (ସୀତା ଉଠି ଠିଆହେଲା) ଆରେ, ଉଠିଲ ଯେ....ବସ ।

ସୀତା - ସଙ୍କୁଡ଼ି ଉଠେଇ ସାରେ.. ଆସିବି ଯେ ବସିବି । ହେଇଟି କାନିରେ ସାତୁଟା ଗଣ୍ଠି ପକେଇଛି.... ସବୁକଥା ଆଜି ପଡ଼ିବ ।

ମନ୍ଦର - ମଲା ମଲା ! (ସୀତା ଚାଲିଗଲା - ଏତିକିବେଳେ ବାହାରୁ ଶୁଭିଲା ମୁକୁନ୍ଦର ପାଟି ।)

ମୁକୁନ୍ଦ - (ବାହାରୁ) ଘରେ ଅଛ ଆଜ୍ଞା !

ମନ୍ଦର - ଅଛି ।

(ପ୍ରାୟ ସଙ୍ଗେ ସଙ୍ଗେ ଆସିଲା ମୁକୁନ୍ଦ ସ୍ୱାଇଁ, ମଧ ବୟସ୍କ ଲୋକ । ସେ ରାଗରେ ତମତମ ହୋଇ ଆସିଚି ।)

ମକୁନ୍ଦ - ଟିକିଏ ଦାଣ୍ଡ ପଟକୁ ଆସ ଆଜ୍ଞା.... (ମନକୁ) ଆରେ.... ପାଞ୍ଚ ଲୋକରେ ପଚିଶ ବେଦ୍ଧିତ ନ ହେଲେ ତୋ ଦିନ ସରେନାହିଁ.... ତୁ ପୁଣି....

ମନ୍ଦର - କଥା କ'ଣରେ ମକୁନ୍ଦ ?

ମକୁନ୍ଦ - ତମେ ଟିକିଏ ଆଗ ଦାଣ୍ଡକୁ ଆସିଲ....କଥା ଧତୁ । ଆଜି ତା'ର ଦିନେ କି ମୋର ଦିନେ ।

ମନ୍ଦର - ତୁ ତ ତା'ର ଦିନେ କି ତୋର ଦିନେ କରିବୁ, ମୁଁ ଆଉ କାହିଁକି ଯିବି ?

ମକୁନ୍ଦ - ମୋ କଥା ତେବେ ବୁଝ । (ବସିପଡ଼ିଲା)

ମନ୍ଦର - ବୁଝିବା ! ତୁ ଟିକିଏ ଥୟ କରି ବସ୍ ।

ମକୁନ୍ଦ - କେମିତି ଥୟଧରି ବସିବି କହୁଛ ଆଜ୍ଞା ? ଥରେ ନୁହେଁ, ଦି'ଥର ନୁହେଁ - ଦଶ ପରସ୍ତ ଚିତାକାଟି ଖାଇଲାଣି ।

ରାଧୁ - (ବାହାରୁ) ମହାନ୍ତିଏ ଘରେ ଅଛଟି ?

ମକୁନ୍ଦ - ହେଇ, ଆଇଲାଣି । ମୋ ପିଛା ଧରି ଧରି ଆଇଚି.... ତୁ ଆ ଆଗେ ଏଠିକି !

ମନ୍ଦର - ମକୁନ୍ଦ ! ମୁରବି ମାନି ମୋ ପାଖକୁ ଆସିଚୁ । ମୋ କଥା ମାନି ତୁନି ହୋଇ ବସ୍ - ସେ ଏଠିକି ଆସୁ - କଥା କ'ଣ ପଡୁ....

ମକୁନ୍ଦ - ହଉ ହେଲା । ପାଞ୍ଚଖଣ୍ଡ - ତିନିଖଣ୍ଡ ଗାଁର ଲୋକେ ତମ କଥା ଶୁଣୁଚନ୍ତି - ମାନୁଚନ୍ତି ମୁଁ ନ ମାନିବି କାଇଁକି- ମାନିଲି.... ମୋ କଥା ତେମେ ବୁଝ ।

ରାଧୁ - (ବାହାରୁ) ମହାନ୍ତିଏ....

ମନ୍ଦର - ଏଇଠିକି ଆସ ରାଧୁ ।

(ମକୁନ୍ଦକୁ ଶାନ୍ତି ହୋଇ ବସିବାକୁ ଇଙ୍ଗିତ କଲେ । ମକୁନ୍ଦ ଚୁପ୍‌ଚାପ୍ ବସିରହିଲା - ରାଧୁ ପାଣି ଆସିଲା ।)

ମନ୍ଦର - ଆମ ଶାକଳ....

ରାଧୁ - କ'ଣ କହିଲ ?

ମନ୍ଦର - ଆମ ଶାକଳ - ବିଦେଶରୁ ତାଙ୍କ ଗାଁକୁ ଆସିଚନ୍ତି । ମୋ ପାଇଁ ନୈନିତାଲ ଆଳୁ ଆଉ ଖାଣ୍ଟି କାନ୍‌ପୁରୀ ବଡ଼ ଫାଳ ହରଡ଼ ପଠେଇ ଦେଇଥିଲେ । ଖଟା ମିଠା ଦିଆହୋଇ ସେ ଡାଲି ଆଜି ଆମର ହେଇଥିଲା । କ'ଣ କହିବି ରାଧୁ - ବଡ଼ଦେଉଳ କୁଡୁଆ ଡାଲିକି ଆଡ଼େଇ ଦେଇ ସେ ଡାଲିକି- ତମେ ଖାଇବ ।

ରାଧୁ - ସମସ୍ତଙ୍କ ଭାଗ୍ୟରେ କ'ଣ ଏସବୁ ପଦାର୍ଥ ଜୁଟେ ?

ମନ୍ଦର - ଆଉ ଖବର କ'ଣ ରାଧୁ - ଏତେବେଳେ କୁଆଡ଼େ ?

ରାଧୁ - ମକୁନ୍ଦା କୁଆଡ଼େ ଆଇଚି ?

ମନ୍ଦର - ତମେ ଯିଏ ଯୁଆଡ଼େ ଆଇଚ ମୁଁ ସବୁ ଜାଣେ - ମକୁନ୍ଦ, ସତ କହିଲୁ ରାଧୁ ଉପରେ ତୋର କେତେ ଟଙ୍କା ଦୋକାନ ବାକି ?

ରାଧୁ - ମୋଟେ ଟଙ୍କା ପାଞ୍ଚଟା । ମୁଁ ଗାଁ ଦାଣ୍ଡରେ ଚାଲିଯାଉଚି, ଏତେ ବଡ଼ ପାଟିରେ ମୋତେ ପଛରୁ ଡାକି କହୁଚି - "ହେ ରାଧୁ ପାଣି ! ମୋ ଟଙ୍କା ଦେଇଯା ।"

ମକୁନ୍ଦ - ହକ୍ ଟଙ୍କା ଥେଲା । ମାଗିଲି ତ....

ରାଧୁ - (ବାଧାଦେଇ) ଚୁପ୍ - ଦାଣ୍ଡ ମଝିରେ ଗୋଟାଏ ମଗାମଗି କ'ଣ ? ମୋର ଇଜ୍ଜତ ମହତ ନାଇଁ ?

ମକୁନ୍ଦ - ମୋ ଦାଉଲୋ ଇଜ୍-ଜ-ତ୍ ! ଟଙ୍କା ମାଗିଲି ବୋଲି ମତେ ବାର ଅବର୍ଯ୍ୟା କରି ଶୋଧି

- ଓଲଟି ମୋ ଉପରେ ଚଢ଼ଉ ? ଦେ ଆଣ.... ମୋ ଟଙ୍କା ପଚା ।

ରାଧୁ - ମୁଁ ଟଙ୍କା ଦେବିନାଇଁ !

ମକୁନ୍ଦ - ଧାରୁଆ-ପାତୁଆ....

ରାଧୁ - ଚୋ...ପ୍...

ମକୁନ୍ଦ - ଶୁଣୁଚ ଆଜ୍ଞା....ହଇରେ ଟଙ୍କା ଦବୁନାଇଁ ?

ରାଧୁ - ନା- ମୁଁ ଦେବିନାହିଁ । ମୁଁ ତୋ ଦୋକାନ ବାକି କରିନି, ଟଙ୍କା ଫଙ୍କା ମୁଁ କିଛି ଜାଣେନା -

ମକୁନ୍ଦ - ବାସ୍ ! ମହାନ୍ତିଙ୍କ ସାମ୍‌ନାରେ କଥାଟା ପଡ଼ି ତୁଟିଗଲା । ତୁ ନ ଦେ ଟଙ୍କା- ହେଲେ ଆଜ୍ଞା, ମୋ କଥା ଆଜିଠୁ ଶୁଣିଥା - ମୁଁ ବି ସେମିତି ଦେବିନାହିଁ ।

ମନ୍ଦର - ରାଧୁ ତ କହୁଚି, ତୋ ଦୋକାନ ବାକି ଟଙ୍କା ଦବ ନାଇଁ, ତୁ ପୁଣି କ'ଣ ଦବୁନାଇଁ ?

ମକୁନ୍ଦ - ଭୋଟ !

ମନ୍ଦର - ଭୋଟ ?

ମକୁନ୍ଦ - ହଁ ଭୋଟ । ୟା ଭଳିଆ ପାଞ୍ଚୁଟା ଜୁଟିଲେ ତ ମୋ ଦୋକାନକୁ ଖାଇ ପିଇ କଳାକନା ବୁଲେଇଦେବେ । ମୁଁ ଆଉ ଏ ଗାଁରେ ଥିବି ନା ଭୋଟ ଦେବି ।

ରାଧୁ - ହଇରେ ଭୋଟ କ'ଣ ଦୋଳ ଦଶରା ଚାନ୍ଦା ହେଇଚି ନା ଜାଣିଆଣ କଥା ହେଇଚି ଯେ, ମୋ ପତର ପଡ଼ିଲେ ତୋ ପତର ପଡ଼ିବନାଇଁ !

ମକୁନ୍ଦ - ଜାତିଆଣ କଥା ନୁହେଁ ତ, ଏଜେଣ୍ଟି ହେଇଚୁ ବୋଲି ତୁ କାଇଁକି ଗୋଟାକୁଗୋଟା ମହାପ୍ରସାଦଦିଆ ବନ୍ଧୁଘର କରୁଚୁ । ଆଠଦିନ ହେଲା, ମତେ କାଇଁକି ପୁସଲଉଚୁ ପର-କଲମ ବାକ୍‌ସରେ ଭୋଟ ଦେବାକୁ -

ମନ୍ଦର - ତମ କଥା ସବୁ ଶୁଣି ମତେ ହସମାଡୁଚି । ହଉ, ମୋ କଥା ମାନ୍ ରାଧୁ, ତା ଟଙ୍କା କେଇଟା ତାକୁ ଦେଇଦିଅ ।

ରାଧୁ - ମୋ କଥାରେ ସେ ରାଜି ହଉ, ତା ଟଙ୍କା ଦେଇଦେବି ।

ମକୁନ୍ଦ - ଓହୋ ରେ - ମୋରି ଟଙ୍କାରେ ମୋଠୁ ଭୋଟ କିଣିବୁ - ଭାରି ମଉଜିଆ.... ଦେଖୁଚ ଆଜ୍ଞା..... କେମିତି ଦଲାଲି ବୁଦ୍ଧି କାଢୁଚି ।

ରାଧୁ -ମକୁନ୍ଦ....

ମକୁନ୍ଦ - ପର-କଲମ ବାକ୍‌ସରେ ମୋଟେ ଭୋଟ ଦେବି ନାଇଁ - ଆମ ମନ୍ତ୍ରୀଙ୍କ ଛତା ବାକ୍‌ସରେ ଭୋଟ ଦେବି ।

ମନ୍ଦର - ଆଉ ଘଡ଼ିକେ ମେଳଣ ପଡ଼ିଆରେ ସଭା ଅଛି । ଜାଣିଚ ତ ମକୁନ୍ଦ ?

ମକୁନ୍ଦ - ମୁଁ ତ ସଭାକୁ ବାହାରିଚି ।

ମନ୍ଦର - ଭୋଟ କଥା ସେଇଠି ନିଷ୍ପତ୍ତି ହେବ । ବୁଝିଲ ?

ମକୁନ୍ଦ - ଏ ଗାଁ ବାରଅଡୁଆ ନିଷ୍ପତ୍ତି ନହେଲେ କ'ଣ ଭୋଟ କଥା ଛିଡ଼ିବ ?

ମନ୍ଦର - ଆଚ୍ଛା, ଆଚ୍ଛା, ସେ କଥା ବୁଝାଯିବ । ଆଜି ସଭା ହେଇଯାଉ । ହଁ, ମୁକୁନ୍ଦ, ତୋ ଟଙ୍କା ପାଇଁ ମୁଁ କିମା ଗଡ଼ିକି ବୁଝିଲୁ - ତମେ ଯାଅ ।

(ରାଧୁ ଓ ମକୁନ୍ଦ ଚାଲିଗଲେ - ଟିକିଏ ପରେ ଆସିଲା ସୀତା ।)

ସୀତା - କଚେରି ଭାଙ୍ଗିଲା ?

ମନ୍ଦର - ଶୁଖିଲା କଚେରି - ଆପେ ଆପେ ଭାଙ୍ଗିଗଲା । ତମ କାନି ଗଣ୍ଠିଟା ଆଗେ ଫିଟୁ ।

ସୀତା - ବିଜୟ ଆସିଥିଲା -

ମନ୍ଦର - କୋଉ ବିଜୟ ?

ସୀତା - ନୂଆ ଗାଁ ଶାମ ମହାନ୍ତିଙ୍କ ପୁଅ ବିଜୟ ।

ମନ୍ଦର - ଏଠିକି କାଇଁକି ଆସିଥିଲା ?

ସୀତା - କ'ଣ ଏମିତି ଛୋପରା ହଉଚ ମ ?... ଏ ଗାଁରେ ତା ମାମୁ ଘର ନୁହେଁ ?

ମନ୍ଦର - ବୁଝିଲି ।

ସୀତା - ସେବ ତା ମନକୁ ଖୁବ୍ ପାଇଚି ।

ମନ୍ଦର - ସେ ବି ସେବ ମନକୁ କମ୍ ପାଇନାଇଁ ?

ସୀତା - ତମ ମନକୁ ପୁଣି କ'ଣ ପାଉଚି ?

ମନ୍ଦର - ଭୋଟ ପରେ -

ସୀତା - କ'ଣ ହେଲା ?

(ଆସିଲା ସେବତୀ - ୧୭/୧୮ ବର୍ଷର ଲାବଣ୍ୟମୟୀ ଝିଅ । ମଫସଲରେ ବଢ଼ିଥିଲେ ବି ଆଧୁନିକତାର ସ୍ପର୍ଶ ଲାଗିଛି । ଖଣ୍ଡେ ସାଧା ଶାଢ଼ି ସେ ପିନ୍ଧିଥାଏ ।)

ସେବ - ବୋଉ, ଆଲମାରି ଚାବିଟା ଦେଲୁ ।

ସୀତା - କାଇଁକି ?

ସେବ - ଦେ' ନା - (ଚାବିନେଇ ଚାଲିଗଲା)

ସୀତା - ଝିଅକୁ ଦେଖି ତମକୁ ମାଡ଼ିପଡୁନାଇଁ ? କେଇଦିନ ତାକୁ ଘରେ ରଖିବ ?

ମନ୍ଦର - (ଉଠି ଠିଆହୋଇ) ଏଇ ଏଗାର ନମ୍ବର ୟୁନିୟନ୍‌ରେ ବଡ଼ ବଡ଼ ଚାଷୀ ଅଛନ୍ତି - ଢେର୍ ପଇସାବାଲା ତ ଅଛନ୍ତି - ପାଠୁଆ ବି କମ୍ ନାହାନ୍ତି - କିନ୍ତୁ ମାମଲତକାର ଘରେ - (ନିଜକୁ ଦେଖାଇ) ଏ-କ୍ !!

ସୀତା - ଭାରି ପାରିଲାର କଥା । ନିଇତି ସଞ୍ଜରେ ଯୋଗୀ ସାଇକି ଚାଉଳ ପାଇଁ ନ ଦଉଡ଼ିଲେ ହାଣ୍ଡି ଚୁଲିକି ଯିବନାଇଁ....

ମନ୍ଦର - ମୋ ପାରିଲାପଣିଆ ତ ସେଇଠି । ....ନିତି ସଞ୍ଜରେ ଯିଏ ଯୋଗୀ ସାଇକି ଚାଉଳ କିଣିବାକୁ ଦଉଡୁଚି, ଡୋଲି ଅମାରରେ ଚାଉଳ ଯେଉଁମାନେ ଖଞ୍ଜି କରି ରଖିଛନ୍ତି, ନିଇତି ସକାଳେ ସେମାନେ ମୋ ଘରକୁ ଦଉଡ଼ନ୍ତି କାହିଁକି ? ମନ୍ଦର ମହାନ୍ତିର ବାଡ଼ି ଗୋବରେ ଗୋବେ ଜମିନାଇଁ - ହେଲେ ତା ମଥାରେ ମଥାଏ ବୁଦ୍ଧି ଅଛି । କ'ଣ

ଅଭାବ ? କୋଉଁ କଥାର ଅଭାବ ? ଚୂନ ସିମେଣ୍ଟର ଘର କରିନାହିଁ ? ଘରେ ଖଟ ଆଲମାରିନାଇଁ, କୁହ - କୋଉ କଥାରେ ଅଭାବ କୁହ, କହୁନ ?

(ସୀତା ସମ୍ଭାଳି ନପାରି ହସିପକାଇଲା - ତା ସ୍ୱାମୀ କଥାକୁ ଯେମିତି ସେ ସମର୍ଥନ କରିଚି - ସେଇ ହସ । ଉଭୟଙ୍କର ପ୍ରାଣଖୋଲା ହସ କିଛି ସମୟ ଚାଲିଲା - ପୁଣି ଆସିଲା ସେବ । ଖଣ୍ଡେ ଭଲ ଶାଢ଼ି ଓ ଜାମା ସେ ପିନ୍ଧିଛି -ମନ ବେଶ୍ ଫୂର୍ତ୍ତି ।)

ସେବ - ବୋଉ ! ବୋଉ -

ସୀତା - (ତୃପ୍ତ ନୟନରେ ସେବକୁ ଚାହିଁ) ସେବ ମାଇଁ ସେଦିନ କହୁଥିଲା, ଏମିତି କୁଞ୍ଚ କରି ଲୁଗା ପିନ୍ଧିଲେ ସେବକୁ ମଫସଲିଆ ଝିଅ ବୋଲି କିଏ କହିବ ?

(ବୋଉ କଥା ଶୁଣି ସେବର ଆତ୍ମପ୍ରସାଦ ବଢୁଥାଏ)

ସେବ - ଚାବିଟା ରଖ ବୋଉ !

ସୀତା - ହଉ ତୁ ଯା' ପାନ ଦି'ଖଣ୍ଡ ଭାଙ୍ଗ - ମୁଁ ଯାଉଚି ।

ମନ୍ଦର - କୁଆଡ଼େ ?

ସୀତା - ଆଠଦିନ ହେଲା, ବ୍ରାହ୍ମଣୀ ମାଉସୀ ଖବର ଦେଲାଣି, ତାଙ୍କ ଘରଆଡ଼େ ବୁଲିଯିବାକୁ । ଆଜି ବାହାରିଚି ଯେ, ସେବ ଏତିକିବେଳୁ ସଜ ହୋଇ ବସିଲାଣି । (ସେବ ହସିଉଠିଲା)

ସେବ - ବୋଉ କଥା ଶୁଣୁଚଟି ବାପା ! ମୁଁ କୁଆଡ଼େ ବ୍ରାହ୍ମଣୀ ମାଉସୀ ଘରକୁ ବୁଲିଯିବି ?

ସୀତା - ଆଉ କୁଆଡ଼େ ଯିବୁ ?

ସେବ - ମିଟିଂ !

ସୀତା - କ'ଣ ?

ସେବ - ତୁ କ'ଣ ଜାଣିନୁ ଆଜି ମେଲଣ ପଡ଼ିଆରେ ମିଟିଂ ହେଉଚି ? ଏଇ ଶୁଣ, ଏଥିରେ କ'ଣ ଲେଖା ହେଇଚି....

ସୀତା - ସେଇଟା କ'ଣ ?

ସେବ - ପାମ୍ପଲେଟ୍ - ବିଜୟ ଭାଇ ଦେଇଛନ୍ତି ।

ସୀତା - କ'ଣ ସେ ? ବିଜୟ କ'ଣ ଦେଇଚି ?

ସେବ - ତୁ ଶୁଣ୍ - ମୁଁ ପଢୁଚି (ପଢ଼ିଲା) "ନନ୍ଦୀପୁର ମେଲଣ ପଡ଼ିଆରେ ବିରାଟ ଭୋଟ ସଭା... ମିଳିତ ଦଳ (ପର-କଲମ) ଓ ଗଣଶକ୍ତି ଦଳ (ଛତା) ଏ ଦୁଇ ଦଳର ବଡ଼ ବଡ଼ ନେତାମାନେ ତାଙ୍କ ନିଜ ନିଜ କଥା ସଭାରେ ଶୁଣାଇବେ । ସଭା ଶେଷରେ ଭୋଟ ନାଚ ହେବ ।"

ମନ୍ଦର - ତୁ କେଉଁ ଦଳର ମା ?

ସେବ - ବିଜୟ ଭାଇଙ୍କ ଦଳର ।

ମନ୍ଦର - ସେ ପୁଣି କେଉଁ ଦଳର ?

ସେବ - ( ଗୋଟିଏ ପର-କଲମ ଦେଖାଇ) ଏଇ ଦଳର ।

ମନ୍ଦର - ଓ ରାଜେନ୍ଦ୍ର ଓ ଆଚାର୍ଯ୍ୟବାବୁଙ୍କ ମିଳିତ ଦଳର - ବେଶ୍ ବେଶ୍ ବେଶ୍.... (ସେବ ଚାଲିଗଲା)

ସୀତା - ହଇହେ, ସିଏ କ'ଣ ସଭା କରିବାକୁ ବାହାରିଲାଣି । ତମେ କହୁଚ ବେଶ୍, ବେଶ୍, ବେଶ୍,....

ମନ୍ଦର - ଏତେ ବଡ଼ ନେତା ରାଜେନ୍ଦ୍ରବାବୁ - ସେ ତାଙ୍କ ସ୍ତ୍ରୀଙ୍କୁ ନେଇ ସଭା କରିବାକୁ ଆଜି ଏଠିକି ଆସୁଛନ୍ତି । ତାଙ୍କ ସ୍ତ୍ରୀ ପୁଣି ମୁଖ୍ୟମନ୍ତ୍ରୀ ମହାପାତ୍ରଙ୍କ ଝିଅ । ସେବ ଏବେ ବିଜୟ ସାଙ୍ଗରେ ଯାଉ, କ୍ଷତି କ'ଣ ? .... ହଁ ତମ କାନିର ଗଣ୍ଠି ସବୁ ଫିଟିଲା ?

ସୀତା - ମୋ ପୋଡ଼ାମନ ତ ? ହେଇଚି - ସାଉଘର ସାନବୋହୂ ହଲେ ଜୟପୁରୀ ସୁନାର ଝୁମୁକା ବିକିବ, ରଖିବ ତେମେ ? ତାକୁ କହିବି ?

ମନ୍ଦର - ହଁ, ରଖିବି; କିନ୍ତୁ ଭୋଟ୍ ପରେ -

ସୀତା - କି ନିଆଁ ଲଗା ଭୋଟ ଭୋଟ ହଉଚ - ଭୋଟ କେବେ ସରିବ କହିବଟି ?

ମନ୍ଦର - ମାସ ଦେଢ଼ୁଟାରେ । ମୁଁ ଯାଉଚି - ସଭା କଥା ବୁଝିବାକୁ ହେବ ।

ସୀତା - ଶୁଣ- ସାବିତ୍ରୀ....

ମନ୍ଦର - କିଏ ?

ସୀତା - ମୋ ସାନଭଉଣୀ ସାବିତ୍ରୀ - ତା'ର ନଅ ମାସ ପାଖାପାଖି ହୋଇ ଆସିଲାଣି । ତା ଘରକୁ ଅରୁଚି ଭାରି ଯିବନାହିଁ ?

ମନ୍ଦର - ଯିବ, ଭୋଟ ପରେ ।

ସୀତା - ଶୁଣିବଟି, ସବୁକଥା ଖାଲି ଭୋଟ ପରେ....

ମନ୍ଦର - ହେଇଟି, ଯିଏ ଚାଷୀ, ଦେଣା ପାଉଣା ବେଳକୁ ସେ କଥା ଦିଏ - ପୁଷମାସ ପରେ । ବ୍ୟବସାୟୀ କହେ, ବାକି ଅସୁଲ ପରେ - ଚାକିରିଆ କହେ, ପହିଲା ପରେ । ବର୍ତ୍ତମାନ ମୋର ପହିଲା ପୁଷ ପୁନିଅଁ - ଯାହା କୁହ - ସବୁ ହେଲା ଏଇ ଭୋଟ୍- ବୁଝିଲ ? ମୁଁ ଯାଉଚି- ଆଉ ପଛରୁ ଡାକିବନି.....

ସୀତା - ମୋ ମୁଣ୍ଡ ଖା'ଟି ଆଉ ଗୋଟାଏ କଥା ଶୁଣିଯା' -

ମନ୍ଦର - କ'ଣ ଆଉ ଗଣ୍ଠି ବାକି ଅଛି ?

ସୀତା - ସେଇ ଭୋଟ କଥା -

ମନ୍ଦର - ଏଁ, ତମର ପୁଣି ଭୋଟ ? ?

ସୀତା - ସେଇ ମ ! ମୋ ମାମୁପୁଅ ଭାଇର ଶ୍ୱଶୁରଙ୍କ ପିଇସି ପୁଅ ଭାଇର ଭଣଜା....

ମନ୍ଦର - ରୁହ....ରୁହ.... ତମ ମାମୁପୁଅ ଭାଇଙ୍କ ଅମୁକଙ୍କ ଅମୁକ ସିଏ ମୋର କ'ଣ ହେବେ !

ସୀତା - ମଲା ! ହିସାବରେ ସେ ମୋର ଭାଇ ହେଲେ ତମର....

ମନ୍ଦର - ହେଲା...ତମର ତ ଭାଇ....ସେତିକିରେ କ'ଣ ହିସାବ ପୂରା ପଡ଼ିଲାନାହିଁ ?

ସୀତା - ସିଏ ଭୋଟରେ ଠିଆ ହୋଇଚନ୍ତି ପରା ? ....କି ମହାପାତ୍ରଟି... ମନ୍ତ୍ରୀ ହେଇନାହାନ୍ତି ?

ମନ୍ଦର - ବୁଝିଲି ! ! ! କ'ଣ କହୁଚ ତେବେ ?

ସୀତା - ତାଙ୍କର କି ବାକ୍‌ସ ?

ମନ୍ଦର - ଛତା ବାକ୍‌ସ ?

ସୀତା - ମୋ' ମାଇଁ ବହୁତ କରି ମୋ ପାଖକୁ ଖବର ଦେଇଚି- ସେଇ ଛତା ବାକ୍‌ସରେ ଭୋଟ ଦେବାକୁ , ସେଇ ବାକ୍‌ସରେ ଯେମିତି ଭୋଟ ହବ..... ସେଇ କଥା ବୁଝ ।

ମନ୍ଦର - ବାପା-ମାଆ-ଝିଅ ଆମେ ତିନୋଟି ପ୍ରାଣୀ ଏ ଘରେ । ଝୁଅଙ୍କର ପର-କଲମ, ବାକ୍‌ସ, ତମର ଛତା ବାକ୍‌ସ -

ସୀତା - ଆଉ ତମର ?

ମନ୍ଦର - ମୋର ! ଏ କାମିଜର ଦି'ପାଖରେ ଦି'ଟା ଖୋଲା ପାକିଟ୍ ବାକ୍‌ସ । ତମ ଦି'ଜଣଙ୍କ ବାକ୍‌ସ ଭୋଟରେ ଭର୍ତ୍ତି ହେବା ସଙ୍ଗେ ସଙ୍ଗେ ମୋ ପାକିଟ୍ ବାକ୍‌ସ ଦି'ଟା ନୋଟ୍‌ରେ ଭର୍ତ୍ତି ହେଇ ଚାଲିଥିବ । ମୋ ଭୋଟ ପରେ କଥାଟା ବୁଝିଲ ତ ? ମୁଁ ଯାଉଚି ।

## ଷଷ୍ଠ ଦୃଶ୍ୟ

(ନନ୍ଦୀପୁର ଗ୍ରାମସଂଲଗ୍ନ ମେଲଣପଡ଼ିଆ । ସଭା କାମ ଶେଷ ହୋଇଯାଇଚି । ସଭାସ୍ଥଳରେ କେବଳ ଅଛନ୍ତି ମକୁନ୍ଦ ଓ ରାଧୁ ପାଣି । ଦୃଶ୍ୟ ଆରମ୍ଭରେ ଦେଖାଗଲା ରାଧୁ ମକୁନ୍ଦର ହାତ ଦି'ଟାକୁ ଜୋର୍‌ରେ ମାଡ଼ିବସିଛି ।)

ମକୁନ୍ଦ - ନା-ନା-ନା - ଏକଥା ହେବନାହିଁ, ମୋର ଗୋଟାଏ ବାପ- ଗୋଟାଏ କଥା - ମୁଁ ପର-କଲମ - ବାକ୍‌ସରେ ଭୋଟ ଦେବିନାହିଁ ।

ରାଧୁ - କାହିଁକି ଦବୁନାଇଁ ?

ମକୁନ୍ଦ - ଦେବି ତ ନାଇଁ - କାହିଁକି ଦେବିନାଇଁ କ'ଣ ?

ରାଧୁ - ଅଲବତ୍ ଦବୁ ।

ମକୁନ୍ଦ - ହରଗିଜ୍ ଦେବିନାଇଁ ।

ରାଧୁ - ମକୁନ୍ଦା ! ମୋ କଥା ମାନ୍ କହୁଛି । ନଇଲେ ଏ ଗାଁରେ ତତେ ରଖେଇ ଦେବିନାଇଁ ।

ମକୁନ୍ଦ - ମୋ ଦାଉଁଟା କିଲୋ - ଭୋଟ ନହେଉଣୁ ଏ ମନ୍ତ୍ରୀ ହେଇଗଲାଣି ।

ରାଧୁ - ହଇରେ ମକୁନ୍ଦା ! ଏତେ ବଡ଼ ସଭା ହେଲା, କେଡ଼େ କେଡ଼େ ଲୋକଙ୍କଠାରୁ କେତେ କେତେ କଥା ଶୁଣିଲୁ - ଶେଷକୁ.....

ମକୁନ୍ଦ - ଶେଷକୁ ସୀତା ମାଈ କି ଅଣିରା କେହି କହିଲେ ନାଇଁ । ଆଚ୍ଛା - ଏ କି ସଭା ହେଲା ? ଯାଙ୍କ ଗୁମର ସେ ଫିଟେଇ କହିଲେ, ପର-କଲମ ବାକ୍‌ସରେ ଭୋଟ ଦିଅ । ତାଙ୍କ ଗୁଣ ଏ ଗାଇ କହିଲେ, ଛତା ବାକ୍‌ସରେ ଭୋଟ ଦିଅ । ଆଉ ଆମ

ମହାନ୍ତିଏ ସଭାପତି ହୋଇଥିଲେ, ସେ ଏମିତି କଥା କହିଲେ ଯେ, "ସାପ ମରିବନାଇଁ କି ବାଡ଼ି ଭାଙ୍ଗିବନାଇଁ ।" ଏଥିରୁ ସୀତା ମାଈ କି ଅଣ୍ଡିରା କ'ଣ ବୁଝିବ, ବୁଝ ।

ରାଧୁ - ଆଉ ଅଧିକା କ'ଣ କହିଥା'ନ୍ତେ । ଆମେ ତ ଦି'ତରଫଙ୍କ କଥା ଶୁଣିଲେ - ଏଣିକି ବୁଝି ବିଚାରି ଯାହାକୁ ଭୋଟ ଦେବାର କଥା ଦବା ।

ମକୁନ୍ଦ - ଏ'ତ ଭଲ କଥା । ମୁଁ ବୁଝି ବିଚାରି ଯାହା କରିବାର କରିବି, ତୁ ମତେ ଫୁସଲଉଚୁ କାହିଁକି ।

ରାଧୁ - ତୁ'ଟା କୋଉ ମଣିଷରେ ମଣିଷ, ହଇରେ ! ଏସବୁ ବଡ଼ ବଡ଼ ପଲଟିକ୍ସ କଥା - ତୁ ବୁଝିପାରିବୁନାଇଁ ବୋଲି ମୁଁ ବୁଝଉଚି ।

ମକୁନ୍ଦ - ହଃ, ଏଜେଣ୍ଟି ହେଲୁ ବୋଲି ଧୋବଲି ଠକଙ୍କ ଭଳିଆ ସଫା ଜାମା କପଡ଼ା ପିନ୍ଧିଲୁଣି । ଅଣ୍ଟା ଜକେଇଲାଣି ।

ରାଧୁ - ଅଣ୍ଟା ଜକେଇଲାଣି କ'ଣ ? ମୁଁ ଟଙ୍କା ଖାଉଚି ? ହଇରେ ମୁଁ ଟଙ୍କା ଖାଇଚି ?

ମକୁନ୍ଦ - ଖାଉନୁ ତ, ମୋ ଦୋକାନ ବାକି ଟଙ୍କା କାଲି ଦବୁ ବୋଲି କହୁଚୁ, କେମିତି ?

ରାଧୁ - ତୁ ଶଳାଟି ଅମଣିଷ । ଓଲୁଙ୍କ ବୁକୁଚାବୁହା । ଏଜେଣ୍ଟ ନରହିଲେ ଭୋଟ ହେବ କେମିତି ? ରଘୁ ପଟ୍ଟନାୟକ ଛତା ଦଳର ଏଜେଣ୍ଟ ହେଉଚି, ସେ ତେବେ ଟଙ୍କା ଖାଉଚି ?

ମକୁନ୍ଦ - ହଁ, ଖାଉଚି, ମୋ ଦୋକାନରୁ ଆଜି ସେରେ ଗୁଆଘିଅ ନେଇଚି । ନୁଖୁରା ସଳିତା ଜୁଟୁନଥିଲା, ଆଜି ଯେମିତି ବାବୁମାନେ ଆସି ପହଞ୍ଚି ଯାଇଛନ୍ତି, ଯାର ଲମ୍ଫିଯାଉଚି । ତୁ ବି ଯେସନ, ସେ ବି ତେମନ । ହେଇତି, ଆଜ୍ଞା ଆଇଲେଣି (ମନ୍ଦର ମହାନ୍ତି ଆସିଲେ) ଆଜ୍ଞା - ଆମକୁ ଟିକେ ବୁଝାଅ ।

ମନ୍ଦର - କୋଉ କଥା ?

ମକୁନ୍ଦ - ଏଇ....

ରାଧୁ - (ବାଧାଦେଇ) ରହ ବେ, ଶୁଣ । (ମନ୍ଦରକୁ ) ଭାରି ବଢ଼ିଆ ଲେକ୍‌ଚର ଏକା ଦେଲେ, ନାଇଁ ଆଜ୍ଞା ?

ମନ୍ଦର - କିଏ ?

ରାଧୁ - ଆଚାର୍ଯ୍ୟ । ଝୋଟ କଥାଟା ଆରପାରିଆଙ୍କ ମନକୁ ଖୁବ୍ ପାଇଯାଇଚି । ଦେଖିଲେ ନାଇଁ କେମିତି ତାଳି ଖଇଫୁଟିଲାଣି ?

ମକୁନ୍ଦ - ଛତା ବି ଛାଡ଼ିନାହାନ୍ତି । ତାଙ୍କ ନା କ'ଣ ଟି...ହଁ ଶର୍ମା ...ସେ ଯେଉଁ ଦାୟିକା ମାଡ଼ ଦେଲେ, ତାଳି ଖାଲି ନହଡ଼ିଭାଙ୍ଗିଲା ? ନାଇଁ ଆଜ୍ଞା !

ମନ୍ଦର - ଦୁହେଁ ଠିକ୍ କହିଚନ୍ତି - ଇଏ କହିଲେ, ଆମ ଦେଶରୁ ଏତେ ଝୋଟ ଆମଦାନୀ ହୋଇ ବଂଗଳାକୁ ଚାଲିଯାଉଛି- ମଝିରେ ବେପାରୀମାନେ ଲାଭ ମାରିନଉଚନ୍ତି । ଅଥଚ ସରକାର ଆମର ଏଠି ଝୋଟକଳ ବସାଇନାହାନ୍ତି । ଆଉ ସିଏ କହିଲେ - ସରକାର

ଝୋଟକଳ ବସାଉନାହାନ୍ତି ବୋଲି ମିଳିତ ଦଳ ପାଟିତୁଣ୍ଡ କରୁଛନ୍ତି; କିନ୍ତୁ ସରକାର ଯେମିତି ଝୋଟକଳ ବସେଇବେ, ତା ଆରଦିନ ଏମାନେ ସେଠି ଲୁଟି କୁଲି ମଜୁରିଆଙ୍କୁ ଶିଖେଇ, ଧର୍ମଘଟ କରାଇ, କଳକୁ ଉଠେଇବାର ଯୋଗାଡ଼ କରିବେ ।

ରାଧୁ - ଏଇଟା କ'ଣ ଠିକ୍ କଥା ?

ମନ୍ଦର - ମୁଁ ତ ଖାଲି ଏଇଟାକୁ ଠିକ୍ ବୋଲି କହୁନାହିଁ ରାଧୁ; ମୁଁ କହୁଛି ଏଇଟା ଠିକ୍, ସେଇଟା ଠିକ୍ -

ମକୁନ୍ଦ - ହଁ, ଇଏ ଯେମନ ସିଏ ତେମନ ।

ମନ୍ଦର - ମୁଁ ନିରପେକ୍ଷ ଲୋକ । ମୋ ଆଖିରେ ଦୁହେଁ ସମାନ । ସଭା ସଇଲା - ପର-କଲମକୁ ନେଇ ତାଙ୍କ କେମ୍ପରେ ଛାଡ଼ିଲି, ଛତାକୁ ନେଲି ତାଙ୍କ ବଙ୍ଗଳାରେ ପହଞ୍ଚାଇଲି । ଆଚ୍ଛା ! ମୁଁ ଯାଉଛି ଟିକେ ବୁଲିଆସେ । ମକୁନ୍ଦ ! କ'ଣ ତା'ହେଲେ ଠିକ୍ କଲୁ ? କାହାକୁ ଭୋଟ ଦବୁ ?

ମକୁନ୍ଦ - ସେଇ ଛତା ବାକ୍ସରେ । ଦିହେଁ ତ ସମାନ କହୁଛ ମୁଁ ଯେତେବେଳେ ଛତାବାଲାଙ୍କ ସାଙ୍ଗରେ ପାଞ୍ଚ ବରଷ ବନ୍ଧୁ ବାନ୍ଧି ସାରିଛି, ବର୍ତ୍ତମାନକୁ ଭାଙ୍ଗିଦେବି କାହିଁକି ?

ରାଧୁ - ବେହିଆ କ'ଣ ଆଉ ଗଛରେ ଫଳନ୍ତି । ଶଳା ବନ୍ଧୁ ବାନ୍ଧିଛି । ପାଞ୍ଚ ବରଷ କାଳ ଖାଇପିଇ କଳାକନା ବୁଲେଇଦେଲେଣି । ତାଙ୍କୁ ପୁଣି ଭୋଟ ଦେବ ?

ମକୁନ୍ଦ - ଆଜ୍ଞା ଏ ସମସ୍ତେ କହୁଛନ୍ତି ସରକାର ଖାଇଗଲା ଖାଇଗଲା । କ'ଣ ଖାଇଗଲା ? ବିଦେଶୀ ସରକାର ହେଇଚି, ମୁଣ୍ଡରେ ନେଇ ତା' ଘରକୁ ପଳେଇବ; ଆମରି ଭାଇ ଆମରି ଖାଇଲା, ଖାଉ - କେତେ ଖାଇବ.....

ରାଧୁ - (ବଡ଼ପାଟିରେ) ମ-କୁ-ନ୍ଦା-

ମକୁନ୍ଦ - କ'ଣ ମାରିବୁ ?

ମନ୍ଦର - ଟିକିଏ ଶୁଣ ରାଧୁ, ସିଏ କ'ଣ କହୁଚି ? ହଁ ତୁ କ'ଣ କହୁଥିଲୁ ମକୁନ୍ଦ ?

ମକୁନ୍ଦ - ମୁଁ କହୁଛି କି ଆଜ୍ଞା, ସରକାର ଯଦି ଖାଏ, ପର-କଲମ ସରକାର ଆସିଲେ କ'ଣ ଖାଇବନାହିଁ ? ତାଙ୍କର କ'ଣ ପେଟପାଟଣା ନାହିଁ ?

ରାଧୁ - ଜାଣିଛୁ ମକୁନ୍ଦା, ତୋ ତାଲୁ ଫଟେଇଦେବି ।

ମକୁନ୍ଦ - ମୋ ଦାଉ ଲୋ ! କହିଲେ ତ ବାଧିଯାଉଛି, ଭୋଟ ପାଇଁ ଏମିତି ଫୁସଲଉଚୁ କାହିଁକି ? ମୁଁ କହୁଛି ଆଜ୍ଞା, ଆମର ସେଇ ଛତାବାକ୍ସ । ତାଙ୍କ ଘଡ଼ି ପୂରିଗଲାଣି, ଘିଅପିଆ ଠେକି ପରି ତାଙ୍କ ଠେକିରେ ସରପଡ଼ିଗଲାଣି । ଯିଏ ନୂଆ ସରକାର ଗଢ଼ିବେ, ସେ ନୂଆ ଠେକି ଆଣି ବସେଇବେ । ତାଙ୍କ ଠେକିରେ ସରପଡ଼ିଲା ବେଳକୁ ଆଉରି ପାଞ୍ଚ ବରଷ । ଏମିତି ଖାଲି ଗୋଟାକୁ ଗୋଟା ଠେକିରେ ସର ପଡୁଥିବ - ଏଣେ ଆମ ଠେକି ମାଙ୍କଡ଼ଚିତ୍-

ରାଧୁ - ଶୁଣୁଚନ୍ତି ଆଜ୍ଞା, ଏ ବେଅକଲିଆଟାର କଥା -

ମନ୍ଦର - ମୁଁ ତା କଥା ଶୁଣୁଚି ରାଧୁ; ତମ କଥା ବି ଶୁଣୁଚି - ମୁଁ ନିରପେକ୍ଷ ଲୋକ, ମୋ ପାଖରେ ତମ କଥା ଠିକ୍ - ତା କଥା ବି ଠିକ୍ - (ଚାଲିଗଲେ)

ମକୁନ୍ଦ - ବୁଝିଲୁ, ଛତା ଯେମନ - ପର-କଲମ ତେମନ ।

ରାଧୁ - (କଅଁଳରେ) ହଇରେ ମକୁ.....

ମକୁନ୍ଦ - ମୋ ଦାଉଲୋ ! ଆଉ ଫୁସୁଲାଫୁସୁଲିରେ ମକୁ ନ ପଟନ୍ତି.... ଏଇ ଅନୀ, କଟକିଆବାବୁ ଆଉଛନ୍ତି ।

(ଶଶି ଆସିଲା ! ସହରର ଶିକ୍ଷିତ ଯୁବକ; ତା' ହାତରେ ଗୋଟାଏ ବ୍ୟାଗ୍ ଓ କ୍ୟାମେରା ।)

ରାଧୁ - ଆସନ୍ତୁ ଆଜ୍ଞା ! ଆପଣ କ୍ୟାମ୍ପ୍‌କୁ ଯାଇନାହାନ୍ତି ?

ଶଶି - ଶୁଣିଲି କ'ଣ ନାଚ ଗୀତ ପ୍ରଭୃତି ହେବ । ବିଜୟବାବୁ କାହାନ୍ତି ?

ରାଧୁ - ସେଇ ବନ୍ଦୋବସ୍ତ କରିବାକୁ ସେ ଯାଇଛନ୍ତି ।

ମକୁନ୍ଦ - ଆମ ଗାଁ ଯାତ୍ରାଦଲ କ'ଣ ସୁଆଙ୍ଗ ବାହାର କରିବେ ।

ଶଶି - କେତେ ଡେରିହେବ ? (କଥା କହିବା ବେଳେ କାହାକୁ ଯେମିତି ଖୋଜୁଥାଏ)

ମକୁନ୍ଦ - ଏଇକ୍ଷଣି ଆରମ୍ଭ ହବ । ଦେଖୁନାହାନ୍ତି, ମାଇପି ମରଦ କିପରି ମେଳା ମେଳା ହଉଚନ୍ତି ସୁଆଙ୍ଗ ଦେଖିବେ ବୋଲି - ଆପଣ କଟକରୁ ଆଇଚନ୍ତି ?

ଶଶି - ହଁ ।

ମକୁନ୍ଦ - ଏଇ ଭୋଟ ଇଲାକାରେ କ'ଣ ଚାକିରି ?

ରାଧୁ - ସେଇଟା ଇଡ଼ିଅଟ୍‌ଟାଏ ଆଜ୍ଞା - ତା କଥା ଶୁଣନ୍ତୁ ନାହିଁ ।

ମକୁନ୍ଦ - ଜାଣିନାହିଁ ବୋଲି ତ ପଚାରୁଛି..... ଶୁଣିବେ ନାହିଁ କ'ଣ ?

ଶଶି - ନା, ମୁଁ ଚାକିରି କରେନାହିଁ ।

ମକୁନ୍ଦ - ଆଜ୍ଞା -

ରାଧୁ - ବାବୁ ହେଉଚନ୍ତି ଆଚାର୍ଯ୍ୟ ମହାଶୟଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ।

ମକୁନ୍ଦ - ଯା'ହେଉ, ଗୋଟାଏ କିଛି ଚାକିରି ତ.... ଦରମା ପାଉଥିବେ ନଇଲେ...

ଶଶି - ନା -ନା; ମୁଁ ଚାକିରି କରୁନାଇଁ କି ଦରମା ନିଏନାହିଁ । ମୁଁ ପଢ଼ାପଢ଼ି ଶେଷକରି ଆଚାର୍ଯ୍ୟ ମହାଶୟଙ୍କ ପାଖରେ ଅଛି । ଏ ଭୋଟ କାମରେ ତାଙ୍କୁ ସାହାଯ୍ୟ କରୁଛି ।

ମକୁନ୍ଦ - ସେମିତି...ହାତରୁ ଖାଇ ! !

ଶଶି - ତମେ ଜାଣ ସେ କେତେ ବଡ଼ଲୋକ ! ତାଙ୍କ ପାଖରେ ରହିଲେ ଅନେକ କଥା ଶିଖିବାକୁ ହୁଏ ।

ମକୁନ୍ଦ - ଓ ଆପଣ ତା' ନା କ'ଣ - ଶିଖୁଚନ୍ତି ! ଉମେଦାରି ! ଶିଖି ସାରିଲେ ମୁକରିର ହେବେ ।

ଶଶି - ସେ ଝିଅଟି ?

ରାଧୁ - କିଏ ?

ଶଶି - ସେଇ ଯେ, ସଭାବେଳେ....

ମକୁନ୍ଦ - ଓ, ସେବତୀ ।

ଶଶି - ହଁ, ସେବତୀ ।

ମକୁନ୍ଦ - ହେଇଟି ସେ ମାଇପିଙ୍କ ପଞ୍ଚାରେ ଠିଆହୋଇଚି । ଡାକିଦେବି ? (ବଡ଼ପାଟିରେ କହିଲା) ସେବତୀ - ହେ....

ରାଧୁ - ମକୁନ୍ଦ-

ଶଶି - ନା, ଥାଉ - (ଚାଲିଗଲା, ରାଧୁ ତା'ର ଯିବା ବାଟକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁଲା - ମକୁନ୍ଦ ପ୍ରଥମେ କିଛି ବୁଝିପାରିଲାନାହିଁ । ପରେ ସେ ରାଧୁ ପାଣିର ଦୃଷ୍ଟି ପଥକୁ ଅନୁସରଣ କରି ସବୁ ବୁଝିନେଲା)

ମକୁନ୍ଦ - ମୋ ଦାଉଲୋ ! ରାଧୁ ପାଣି ! ଏଇ ନବରଙ୍ଗ ଚାଲିଚିନା ! ପର-କଲମ କେବେହେଲେ ନିଜର ହେବନାଇଁ । ସେ ମନ୍ଦର ମହାନ୍ତି ଝିଅଟି ! ଏମିତି ହୁନ୍ଦର ଲଗେଇଦେବ ଯେ ରଜାପୁଅ ଯୋଗୀହେଇ କେନ୍ଦରା ବଜଉଥିବ - ବଜଉଥିବ ।

(ନାଚ ଗୀତ ଆରମ୍ଭ ହେଲା)

(ଗୀତ)

ଏ ତ ନଟଘଟିଆଙ୍କ ଭୋଟରେ
ଏ ତ ଚଟପଟିଆଙ୍କ ଭୋଟରେ ପଟିମାରିଦେବ କରି ଚକ୍‌କା
ଏ ତ ନଟଘଟିଆଙ୍କ ଭୋଟରେ ।
ଏ ସେହି ଛତାବେଣ୍ଟିଆଙ୍କ ଭୋଟରେ
ଏ ସେହି ଓଲାଉଠିଆଙ୍କ ଭୋଟରେ ପଟିମାରିଦେବ କରି ଚକ୍‌କା
ଓଠ ଧରି ଚାଟେ ଦେବାର ଫିକର ଜାଣନ୍ତି ସେ ଚାହିଁ ତରକା
ସେ ଚାହିଁ ଖରଖର ତରକା ଲୋ ।୦ ।
କଥା ସରୁ ଯାର ଲୋ କନ୍ଥା ସରୁ ସରୁ ଚାହେଁ ବଙ୍କା
ସେ ତ ବାହାପିଆଙ୍କର ଗୁରୁ ଲୋ ସାରା ଦୁନିଆ ଚଖା
ଏଇ କଥାକୁ ହେଜ ରଖିଥିବୁ ଆବୁ ବଥାକୁ ମଲ୍ଲୀ ତ.... ପଲୋ
ପାନ ସିଗାରେଟ୍ ଘୋଡ଼ା ଗାଡ଼ି ଚଢ଼ା
ସୋଡ଼ା ଲେମଲେଟ୍ ନିମିକି ସିଙ୍ଗଡ଼ା
ଟକଲା ଖୋଇକି ବଢ଼ାନା ଖାଇକି
ଶେଷକୁ ବନିବୁ ମୁତୁଫରକା ।୧ ।
ବାଦ୍‌ସାହାର ମହଲେ ଦେବେ ଉଡୁ ପବନଘୋଡ଼ା ଲୋ
ପକ୍ଷୀରାଜ ଘୋଡ଼ା

(ଆଉ) ଲାଖରାଜ ବାହିଲ ଦେବେ ଅଖୋଛା ବାମଡ଼ା
ଯେତେ ତୋର ଲୋଡ଼ା ଲୋ - କାନମୋଡ଼ା ଜାବୁଡ଼ା
ଧ କହିଲେ କାମୁଡ଼ିବେ
ମାଇଁ ମାଇଁ ଏବେ ପଡ଼ିଛି ଡକା ।୨ ।

(ଗୀତ ବାଦ୍ୟ ଆରମ୍ଭ ହୋଇଯିବା ପୂର୍ବରୁ ରଙ୍ଗମଞ୍ଚକୁ ଆସିଲେ ମିଳିତ ଦଳରୁ ଆଚାର୍ଯ୍ୟ, ରାଜେନ୍ଦ୍ର, ଗୀତା ଓ ତାଙ୍କର କେତେକ ସହକର୍ମୀ । ସରକାରୀ ଦଳରୁ ଶର୍ମା ଓ ତାଙ୍କର କେତେକ ସହକର୍ମୀ । ଏମାନଙ୍କ ସହିତ ମନ୍ଦର ମହାନ୍ତି, ସେବତୀ, ବିଜୟ ପ୍ରଭୃତି ମଧ ଆସିଲେ - ଆଚାର୍ଯ୍ୟ ଓ ଶର୍ମା ପ୍ରଭୃତି ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଆସନରେ ଯାଇ ବସିଲେ । ସଭାପତିଙ୍କ ଆସନରେ ବସିଲେ ମନ୍ଦର ମହାନ୍ତି । ସେବତୀ ଗୀତା ପାଖରେ ଠିଆହୋଇଥାଏ । ନାଚ-ଗୀତ ଛଳରେ ଗଣଶକ୍ତି ଦଳକୁ ତୀବ୍ର ଆକ୍ଷେପ କରାଯାଇଥାଏ, ନାଚ-ଗୀତ ଶେଷ ହେଲା । ନୃତ୍ୟକାରୀଦଳ ବିଦାୟ ନେଲେ - ଆଚାର୍ଯ୍ୟ, ଶର୍ମା ପ୍ରଭୃତି ଆସନଛାଡ଼ି ଉଠି ଠିଆହେଲେ ।)

ମକୁନ୍ଦ - (ଯଥେଷ୍ଟ ସଂଭ୍ରମ ରକ୍ଷାକରି) ଏ ପିଲା ଚାରୋଟି ଆମ ଗାଁ ଯାତ୍ରାପାର୍ଟି ପିଲା ।

ରାଧୁ - (ଅନ୍ୟମାନଙ୍କ ପରୋକ୍ଷରେ) ମକୁନ୍ଦ....

ମକୁନ୍ଦ - (ରାଧୁକୁ) କାହିଁକି ମୁଁ କ'ଣ କହୁଚି କି (ଅନ୍ୟମାନଙ୍କୁ) ଆଗେ ଏମିତି ସୁଆଙ୍ଗ କରୁନଥିଲେ ଗୟାସୁର ବଧ, ସୁଧର୍ମା ସଭା - ଏମିତି କେତେ ସୁଆଙ୍ଗ ଶିଖୁଥିଲେ । ଏଥର ଚନ୍ଦନଯାତ୍ରାକୁ କଟକ ଯାଇ ସିନିମାରୁ ଏହି ସାମାଜିକ ସୁଆଙ୍ଗ ସବୁ ଶିଖିଆସିଛନ୍ତି ।

ଶର୍ମା - ବେଶ୍ ଭଲ ସାମାଜିକ ସୁଆଙ୍ଗ ଶିଖିଛନ୍ତି (ମନ୍ଦରକୁ) ଆଚ୍ଛା, ଏଥର ଆମକୁ ବିଦାୟ ଦିଅନ୍ତୁ ।

ମକୁନ୍ଦ - (ହାତଯୋଡ଼ି) ହଜୁରମାନଙ୍କ ପାଖରେ ମୋର ଗୋଟିଏ କଥା ଜଣା କରିବାକୁ ଅଛି ।

ରାଧୁ - ମକୁନ୍ଦ !

ମକୁନ୍ଦ - ମୁଁ ମୂରୁଖ ଲୋକ ଜାଣି ନାଇଁ ବୋଲି ପଚାରୁଚି ।

ଶର୍ମା - ଆଚ୍ଛା କ'ଣ ତମେ କହୁଚ କୁହ-

ମକୁନ୍ଦ - ଆଜ୍ଞା ! ସଭା ତ ହେଲା । ଦି'ତରଫଙ୍କ କଥା ଆମେ ଶୁଣିଲୁ.... ଆମେ ସବୁ ଭୋଟ ଦବୁ - ହଜୁରମାନେ ସରକାର ଗଢ଼ିବେ । ଆମେ ସୁଖଶାନ୍ତିରେ ରହିବୁ । ମାତ୍ର, ଏ ସରକାର ଗଢ଼ିବା ପାଇଁ ଆପଣଙ୍କୁ କିଏ ପଠେଇଛି ? (ଏ କଥାରୁ ମକୁନ୍ଦାର ବୋକାମି ଛଡ଼ା ଆଉ କିଛି ଯେପରି କେହି ବୁଝିପାରିଲେ ନାହିଁ ।)

ଶର୍ମା - କିଏ ପଠେଇବ କାହିଁକି ? ଆମେ ନିଜେ ନିଜେ ଏଠିକି ଆସିଚୁ ।

ମକୁନ୍ଦ - ସେଇକଥା ଆଜ୍ଞା - ଆମ ମଳିମୁଣ୍ଡିଆଙ୍କ ସୁଖ ସୁବିଧାପାଇଁ ଆପଣମାନେ ହାତରୁ ଖାଇ ହଜାର ହଜାର ଟଙ୍କା ଖର୍ଚ୍ଚ କରୁଚନ୍ତି । ଏ ଟଙ୍କା କେମିତି କୁଆଡୁ ଆପଣମାନେ ଅସୁଲ କରିବେ, ଆମେ ବୁଝିପାରୁନୁ । ପୁଣି ଦିହଦୁଃଖ ସହି ଖରାତରାରେ ଆମ ଦୁଆରକୁ

ଦଉଡ଼ୁଛନ୍ତି । ଶୋଷ ସିନା ପାଣି ପାଖକୁ ଯାଏ, ହେଲେ ପାଣି କେମିତି ଶୋଷ ପାଖକୁ ଆସୁଚି ? ଏଇ ଅଡୁଆ କଥାଟା ମୁଁ ବୁଝିପାରୁନଥିଲି ।

ରାଧୁ - ଏଥର ବୁଝିଲୁ ତ ?

ମକୁନ୍ଦ - ତୁ ତ ସବୁ ବୁଝିପକେଇଚୁ !

ଶର୍ମା - କେହି କିଛି ବୁଝିନାହାନ୍ତି ମକୁନ୍ଦ, ପାଣି କାହିଁକି ଶୋଷ ପାଖକୁ ଆସୁଚି - ଏଇ କଥାଟା ଉଠାଇ ତୁମେ ଗଣତନ୍ତ୍ର ଶାସନର ମୂଳଦୁଆକୁ ହଲାଇ ଦେଇଚ । ଏ ପ୍ରଶ୍ନର ଉତ୍ତର ତମେ ଯାହାଠାରୁ ପାଇବ, ତାକୁଇ ତମେ ଭୋଟ ଦିଅ ।

ଶଶି - ଏ ପ୍ରଶ୍ନର ଉତ୍ତର ଆପଣ ଦେଇପାରିବେ ନାହିଁ ?

ଶର୍ମା - ନା, ଯିଏ ପାରୁଚି ସିଏ ଦଉ । (ମନ୍ଦରକୁ) ଆଚ୍ଛା, ଆମକୁ ବର୍ତ୍ତମାନ ବିଦାୟ ଦିଅନ୍ତୁ ।

ମନ୍ଦର - (ଖୁବ୍ ବ୍ୟସ୍ତ ହୋଇ) ମୁଁ କି ଛାର ଲୋକ ଆଜ୍ଞା - ମୁଁ କ'ଣ ଆପଣଙ୍କୁ ବିଦାୟ ଦେବି ?

(ନମସ୍କାର ଆଦାନ ପ୍ରଦାନ ପରେ ଶର୍ମା ଓ ତାଙ୍କର ସହକର୍ମୀ ବିଦାୟ ନେଲେ, ମନ୍ଦର ତାଙ୍କ ସଙ୍ଗରେ ଗଲେ ।)

ମକୁନ୍ଦ - (ଶଶିକୁ ଏକାନ୍ତରେ) ମୋର କ'ଣ ଭୁଲ ହେଲା ଆଜ୍ଞା !

ରାଜେନ୍ଦ୍ର - ନାଁ, ତମର କିଛି ଭୁଲ୍ ହେଇନି । ତମେ ପ୍ରଥମେ କୁହ ତ, ଆମ ଦେଶରେ ବର୍ତ୍ତମାନ କି ଶାସନ ଚାଲିଚି ।

ମକୁନ୍ଦ - (ଟିକେ ଭାବି) ଛତା ଶାସନ । (ସମସ୍ତେ ହସିଲେ)

ରାଜେନ୍ଦ୍ର - ମୁଁ ସେ କଥା ପଚାରୁନାହିଁ । ବିଦେଶୀ ଶାସନ, ରାଜାରାଜୁଡ଼ା ଏମାନେ ତ ଗଲେ - ବର୍ତ୍ତମାନ -

ମକୁନ୍ଦ - ଆଜ୍ଞା ମନ୍ତ୍ରୀ ଶାସନ -

ରାଜେନ୍ଦ୍ର - ବେଶ୍ - କିନ୍ତୁ ରାଜାପୁଅ ରାଜା ହେଲା ପରି ମନ୍ତ୍ରୀପୁଅ ତ ମନ୍ତ୍ରୀ ହୋଇପାରିବ ନାହିଁ । ମନ୍ତ୍ରୀ ଆସିବେ କେଉଁଠୁ ? ଏଇ ଆମରି ଭିତରୁ କେହି ମନ୍ତ୍ରୀ ହେବେ ।

ମକୁନ୍ଦ - ହଉଚନ୍ତି ତ ! ଆମ ସେବ ବୋଉ ମାମୁଙ୍କ ଶ୍ୱଶୁରଙ୍କ ଆଉ କ'ଣ କିଏ ମନ୍ତ୍ରୀ ହେଉଛନ୍ତି-

ରାଜେନ୍ଦ୍ର - କିନ୍ତୁ ସେ ମନ୍ତ୍ରୀ ହେବେ କେମିତି ?

ମକୁନ୍ଦ - ସେଇକଥା ହଜୁର ମୁଁ ବୁଝିପାରୁନାହିଁ । ମତେ ରୋଗ ଧଇଲା, ବଇଦ ଦୁଆରକୁ ମୁଁ ଯିବିନା, ରୋଗର ବାସନା ବାରି ବାରି ବଇଦ ମୋ ଦୁଆରକୁ ଆସିବ - ପୁଣି ହାତରୁ ପଇସା ଖର୍ଚ୍ଚ କରି !!

ଆଚାର୍ଯ୍ୟ - ଏତେ ସହଜରେ ଏ କଥା ବୁଝିପାରିବନି ମୁକୁନ୍ଦ । ଅପେକ୍ଷା କର । ଧୀରେ ଧୀରେ ବୁଝିବ । ତମେ ଖାଲି ଏତିକି ଜାଣିରଖ ଯେ ଆମ ଦେଶରେ ଗୋଟାଏ ଶକ୍ତିଶାଳୀ ଟାଣୁଆ ସରକାର ଗଢ଼ିବାକୁ ହେଲେ ସେହିପରି ଉପଯୁକ୍ତ ଲୋକଙ୍କୁ ଭୋଟ ଦେବା

ଦରକାର । ବୁଝିଲ ?

ମକୁନ୍ଦ - ବୁଝିଲି ଯେ ଆଜ୍ଞା, ହେଲେ ଦି'ଆଡ଼ର ଦି' ରକମ କଥା ଶୁଣି ମଝିରେ ମଝିରେ ସବୁ ଗୋଳମାଳିଆ ହେଇଯାଉଛି....

ରାଧୁ - ମକୁନ୍ଦା ! (କର୍ତ୍ତୃତ୍ୱ ଜାହିର କଲାଭଳି)

ମକୁନ୍ଦ - ମୋ ଦାଉଲୋ ! ଆଜ୍ଞା ରାଧୁ ପାଣି ମତେ ଆଉ ଏଠି ରଖେଇଦେବ ନାହିଁ - ମୁଁ ଯାଉଛି (ଅଣ୍ଟା ନୁଆଇଁ ନମସ୍କାର କରି ଚାଲିଗଲା । ପଛେ ପଛେ ରାଧୁ ପାଣି ଗଲା ।)

ଶଶି - ଏ ନାଚ ଗୀତ ବୋଧହୁଏ ଶ୍ରୀଯୁକ୍ତ ଶର୍ମାଙ୍କୁ ଖୁବ୍ ବାଧିଲା.... ସେ ସମ୍ବନ୍ଧରେ ସେ କିଛି ନକହି ଚାଲିଗଲେ ।

ଆଚାର୍ଯ୍ୟ - ଏଥିରେ ବାଧିବାର କ'ଣ ଅଛି ? ଦେଶର ପ୍ରକୃତ ଚିତ୍ର ଏଥିରେ ଦିଆଯାଇଚି । ଏ ଆୟୋଜନ କରାଇଥିଲା କିଏ ?

ଶଶି - ବିଜୟବାବୁ, ଆଉ....

ଆଚାର୍ଯ୍ୟ - ଆଉ କିଏ ?

ଗୀତା - ଏଇ ଝିଅଟି....

ଆଚାର୍ଯ୍ୟ - ଏଁ, ହଁ - ଏ ଝିଅଟି କିଏ ?

ଶଶି - କୁହନ୍ତୁ ବିଜୟବାବୁ -

ବିଜୟ - ସେ ହେଉଚି - ସେବତୀ - ଆଜି ଯିଏ ସଭାପତି ହେଇଥିଲେ...

ଆଚାର୍ଯ୍ୟ - ଓ, ଶ୍ରୀଯୁକ୍ତ ମନ୍ଦର ମହାନ୍ତିଙ୍କ ଝିଅ ।

ବିଜୟ - ହଁ ।

ଗୀତା - ତମେ ବରାବର ଗାଁରେ ରୁହ ?

ସେବତୀ - ହଁ ।

ଗୀତା - ଏଇ ଇଲେକ୍‌ସନରେ ତମେ ଆମକୁ ସାହାଯ୍ୟ କରିବ ତ....

ଶଶି - ସାହାଯ୍ୟ ତ କରୁଛନ୍ତି - ଆମ ଦଳପାଇଁ ସେ ଦିନରାତି ପରିଶ୍ରମ କରୁଛନ୍ତି ।

ଆଚାର୍ଯ୍ୟ - ସତେ ?

ଶଶି - ତାଙ୍କ ପରି ଉତ୍ସାହୀ କର୍ମୀ ଏ ଅଞ୍ଚଳରେ ଆଉ କେହି ନାହାନ୍ତି ।

ଆଚାର୍ଯ୍ୟ - ଶୁଣି ଖୁସିହେଲି ସେବତୀ ! ସୁନାହାର ଦେବାର ଅବସ୍ଥା ଆମରନାହିଁ, ଏଇ ତମର ପୁରସ୍କାର (ଗୋଟିଏ ଫୁଲମାଳ ସେବତୀକୁ ଦେଲେ ।)

ଶଶି - (ତାଳି ସହ) ତମର ସୌଭାଗ୍ୟ ସେବତୀ, କାଲି କାଗଜରେ ଏ ଖବର ବାହାରିବ - ଏ ଯୁଗରେ ଜଣେ ଶ୍ରେଷ୍ଠ ଜନନାୟକ ଶ୍ରୀ ରାମନାରାୟଣ ଆଚାର୍ଯ୍ୟ ଜଣେ ଗ୍ରାମ୍ୟବାଳିକାକୁ କିପରି ସମ୍ବର୍ଦ୍ଧନା ଜଣାଇଛନ୍ତି ।

ବିଜୟ - ଭୋଟ ଦିନ ଏ ଗାଁର ସବୁ ସ୍ତ୍ରୀଲୋକ ଯେପରି ଆସି ଭୋଟ ଦେଇପାରିବେ, ସେ ଦାୟିତ୍ୱ ସେବତୀ ନେଇଚି ।

ରାଜେନ୍ଦ୍ର - କେଉଁ ବାକ୍‌ସରେ ଭୋଟ ଦେବେ ?

ସେବତୀ - ପର-କଲମ ବାକ୍‌ସରେ - ଏକା ମୋ ବୋଉକୁ ଛାଡ଼ି ।

ଗୀତା - କାହିଁକି ? ତମ ବୋଉ ବାଦ୍ ଯିବେ କାହିଁକି ?

ସେବତୀ - ମୁଖ୍ୟମନ୍ତ୍ରୀ ହେଉଛନ୍ତି ତା' ମାମୁପୁଅ ଭାଇର ଶ୍ୱଶୁରଙ୍କ ପିଇସୀପୁଅର ଭାଇର ଭଣଜା, ସେଥିପାଇଁ ସେ ତାଙ୍କ ଦଳର ଛତା ବାକ୍‌ସରେ ଭୋଟ ଦେବ ।

ରାଜେନ୍ଦ୍ର - ଆଉ ତମେ ଆମ ଦଳକୁ ଭୋଟ ଦେବ କାହିଁକି ?

ସେବତୀ - କାରଣ ବର୍ତ୍ତମାନ ସରକାରର ଅଯୋଗ୍ୟପଣିଆରୁ ଦେଶ ରସାତଳକୁ ଯାଉଚି, ଏ ଅବସ୍ଥାରେ ଦେଶକୁ ଏକା ମିଳିତ ଦଳ ରକ୍ଷାକରିପାରିବ ।

ଗୀତା - ଏ ଶିକ୍ଷା ତମେ କାହାଠୁ ପାଇଲ ସେବତୀ ?

ଶଶି - ବିଜୟବାବୁଙ୍କଠାରୁ - ସେ ତାଙ୍କର ଶିକ୍ଷାଗୁରୁ ।

ରାଜେନ୍ଦ୍ର - (ବିଜୟର ଦୁଇ କାନ୍ଧରେ ହାତରଖି) ତମେ ପାରିବ ବିଜୟ । ଦେଶକୁ ଚିହ୍ନିବାର ଶକ୍ତି ତମର ଅଛି । କିନ୍ତୁ 'ନିଆଁ ସହିତ ଖେଳ ଯେଉଁ କଥାଟା ଅଛି, ତାକୁ ଯେପରି ଭୁଲିନଯାଅ ।

ଆଚାର୍ଯ୍ୟ - ତମ ବାପା କାହିଁଗଲେ ସେବତୀ - ଏଇ ତ ଆଇଲେଣି (ମନ୍ଦର ଆସିଲେ) ।

ମନ୍ଦର - କ୍ଷମାକରିବେ ଆଜ୍ଞା - ସେମାନଙ୍କୁ ବଳେଇ ଦେବାକୁ ଯାଇଥିଲି ।

ଆଚାର୍ଯ୍ୟ - ବର୍ତ୍ତମାନ ଆମକୁ ବିଦାୟ ଦିଅନ୍ତୁ ।

ମନ୍ଦର- ମୁଁ କି ଛାରଲୋକ ଆଜ୍ଞା, ଆପଣଙ୍କୁ ମୁଁ କ'ଣ ବିଦାୟ ଦେବି ।

ରାଜେନ୍ଦ୍ର - ଆପଣ ତ ନିରପେକ୍ଷ ଲୋକ, ଆପଣ କୁହନ୍ତ ଏ ଭୋଟର ଫଳାଫଳ କ'ଣ ହେବ ?

ମନ୍ଦର - ଏ ଭୋଟରେ ଆଜ୍ଞା, ମୋ ପାଟିରେ ମୁଁ ତାଲା ପକାଇଦେଇଚି । ଦେଖୁନାହାନ୍ତି - ଏ ଗାଁ ସାରା ସମସ୍ତେ ମାତିଛନ୍ତି, ହେଲେ ମୋ ପାଟି ବନ୍ଦ ।

ଆଚାର୍ଯ୍ୟ - କିନ୍ତୁ ଆପଣଙ୍କ ପାଟି ନଫିଟିଲେ ଯେ, ଠିକ୍ ବେଳକୁ ସମସ୍ତଙ୍କ ପାଟି ବନ୍ଦ ହୋଇଯିବ । ଆପଣ ଜାଣିବେ ନାହିଁ - ଗାଁବାଲା ଭୋଟ ଦେଇଯିବେ - ଏ ବିଶ୍ୱାସ ମୋର ନାହିଁ ।

ମନ୍ଦର - ନାଇଁ ଆଜ୍ଞା, ମୁଁ କି ଛାରଲୋକ ।

ଆଚାର୍ଯ୍ୟ - (ଭ୍ରୂକୁଞ୍ଚନ ସହ ମନ୍ଦରକୁ ଲକ୍ଷ୍ୟ କରି) ଆଚ୍ଛା, ଆସନ୍ତୁ ଯିବା । ଆମକୁ ପୁଣି ଆଜି ଭିତରେ କୋଡ଼ିଏ ମାଇଲ ଯିବାକୁ ହେବ । (ତତ୍ପରତା ସହିତ ମନ୍ଦର ସେମାନଙ୍କୁ ବାଟକଢ଼ାଇ ଚାଲିଗଲେ; କିନ୍ତୁ ପ୍ରାୟ ସଙ୍ଗେ ସଙ୍ଗେ ଫେରିଆସିଲା ସେବତୀ - ଆଚାର୍ଯ୍ୟ ତାକୁ ଦେଇଥିବା ଫୁଲମାଳଟି ଗୋଟାଏ ଚୌକିରେ ଝୁଲାଇଦେଇଥିଲା - ସେଇଟାକୁ ନେଲାବେଳେ ଦେଖିଲା ସେଇ ଚୌକିଟା ଉପରେ ଗୋଟାଏ ବ୍ୟାଗ୍ ଥୁଆହୋଇଚି, ସେଇଟାକୁ ଉଠାଇ ଧରି ଫେରିଆସିଲା ବେଳକୁ ଆସିଲା ଶଶି ।)

ଶଶି - ଆମକୁ ଭୁଲିଯିବେ ନାହିଁ ତ ସେବତୀ ?

ସେବତୀ - ଆପଣମାନଙ୍କ ପାଇଁ ମୁଁ ପ୍ରାଣ ମଧ ଦେଇପାରେ ।

ଶଶି - ବିଜୟବାବୁଙ୍କ ପରି ତମେ ମଧ ପାରିବ ସେବତୀ, ତୁମର ଖାଲି ଦେଶପ୍ରୀତି ନାହିଁ, (ଢୋକଗିଳି) ପ୍ରାଣ ଅଛି, ହୃଦୟ ଅଛି - (ସେବତୀ ଯିବାକୁ ବାହାରିଲା) ସେ ବ୍ୟାଗ୍‌ଟା !!! ସେଇଟା ବିଜୟବାବୁଙ୍କ ବ୍ୟାଗ୍ ନୁହେଁ - ମୋର ।

ସେବତୀ - ନିଅନ୍ତୁ (ବ୍ୟାଗ୍‌ଟା ଦେଇ ଚାଲିଯାଉଥିଲା)

ଶଶି - ଟିକିଏ ଠିଆହୁଅ, ସେବତୀ ! ତୁମର ଗୋଟାଏ ଫଟୋ ମୁଁ ଉଠେଇବି ।

ସେବତୀ - କାହିଁକି ?

ଶଶି - କହିଚି ତ, ତମର ପ୍ରାଣ ଅଛି, ହୃଦୟ ଅଛି - ଟିକିଏ ଠିଆହୁଅ, (ଅଡୁଆରେ ପଡ଼ି ସେବତୀ ଠିଆହେଲା) ନନ୍ଦୀପୁର ସଭାର କିଏ କ'ଣ ପାଇଲେ ମୁଁ ଜାଣେନା; କିନ୍ତୁ ମୁଁ ଯାହା ପାଇଲି....ହଁ - ଟିକେ ହସ -ହସ-ନିଜେ ନହସିଲେ ତମେ ଯେଉଁମାନଙ୍କ ପାଇଁ ଅଣ୍ଟାଭିଡ଼ି ବାହାରିଚ, ତାଙ୍କ ମୁହଁରେ ହସଫୁଟାଇବ କେମିତି.... ହସ (ସେବତୀ ହସିଲା, ଶଶି ଫଟୋ ନେଲା ।)

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ମନ୍ଦର ମହାନ୍ତିଙ୍କ ଗୃହର ଗୋଟିଏ କକ୍ଷ । ତାଙ୍କର ଅବସ୍ଥା ଅନୁରୂପ ଗୃହଟି ସଜ୍ଜିତ । ଅନ୍ୟାନ୍ୟ ଉପକରଣ ମଧ୍ୟରେ ଅଛି ଗୋଟାଏ ତକ୍ତପୋଷ । ତା ଉପରେ ଗୋଟିଏ ବିଛଣା - ଦୃଶ୍ୟ ଆରମ୍ଭରୁ ଦେଖାଗଲା ସୀତା ଖଟ ଉପରେ ଗୋଟିଏ କଡ଼ମାଡ଼ି ଶୋଇଚି । ମଞ୍ଚର ଅଗ୍ରଭାଗରେ ଠିଆହୋଇଛନ୍ତି ମନ୍ଦର । ଡାହାଣ ହାତରେ ନିଶ ମୋଡୁଛନ୍ତି । ବାଁ ହାତ ଭରା ରହିଚି ଗୋଟିଏ ବେତବାଡ଼ି ଉପରେ । ମୁହଁରେ ବିଜୟସୂଚକ ଚିହ୍ନ ।)

ମନ୍ଦର - ଚିତ୍‌ପଟାଙ୍ଗ୍..... (ସୀତା କଟମଟ୍ କରି ଚାହିଁଲା) ଚିତ୍‌ପଟାଙ୍ଗ.... (ସୀତା ରାଗରେ ମୁହଁବୁଲାଇ ଶୋଇଲା । ମନ୍ଦର ଆଖି ଫେରାଇ ତାଙ୍କୁ ଦେଖି) ଚିତ୍‌ପଟାଙ୍ଗ୍ ।

ସୀତା - ଜୀବନ ହାରିଦେବି କହୁଚି - ଜୀବନ ହାରିଦେବି ।

ମନ୍ଦର - ଆହା-ହା-ହା- ସେବ ବୋଉ - ଟିକିଏ ଥୟ ଧର । ତମ ମାମୁପୁଅ ଭାଇଙ୍କ ଶ୍ୱଶୁରଙ୍କ...

ସୀତା - ପୁଣି ମୋ ସାଙ୍ଗରେ ଲଗେଇଚ ? କୂଅ ପୋଖରୀକି ଡେଇଁପଡ଼ିବି - କନିଅରମଞ୍ଜି ଖାଇଦେବି । ଆପଣାର ଲୋକ ହେଇ ମୋତେ ରଖେଇ ଥୋଇ ଦଉନ । ଭାଇ ଭଗାରିରେ ମୁଁ ମୁହଁ ଟେକି ଚାଲିବିଟି ! ଘରଠୁ ବାହାରଯାଏ ମୋ ଉପରେ ସମସ୍ତେ ଦାଉ ସାଧିଲ । ମୋ'ରି ପେଟରୁ ଜନମ ହୋଇ ସେବ ପୁଣି ମୋର ହେଲାନି । ସେ ରାଧୁ ପାଣିଟା, କୋଉ ମଣିଷରେ ମଣିଷ ସେ ? ସେ ପୁଣି ମତେ କହିବ ?

ମନ୍ଦର - ଚିତ୍‌ପଟାଙ୍ଗ୍....ଏଇୟା ତ ? (ଏଥର ସୀତା ପ୍ରକୃତରେ କାନ୍ଦି ମୁଣ୍ଡପିଟିଲା) ଓହୋ-ହୋ....ସେବ ବୋଉ - ଆରେ ଶୁଣ - ମୋ କଥା ଶୁଣ -

ସୀତା - ଶୁଣିବି କ'ଣ ବା - ଏ ନିଆଁଲଗା ଭୋଟ ହେଲାନାହିଁ ଯେ ମୋ'ରି କପାଳ ଫାଟିଲା । ଭାଇ-ଭଗାରିରେ ମୋ ପାଇଁ ଥାନ ନାହିଁ ।

ମନ୍ଦର - ହଇହେ ସେବ ବୋଉ ! ଏ ଭୋଟରେ ଛଶ'କି ସାତଶ' ଲୋକ ହାରିଲେ । ଜମି ବନ୍ଧାପକେଇ ଗହଣାବିକି ହଜାର ହଜାର ଟଙ୍କା ଖର୍ଚ୍ଚ କରି ଲଢ଼ିଲେ । ତିନିଶ' ଲୋକଙ୍କର ତ ଅମାନତ ଟଙ୍କା ଉଡ଼ିଗଲା । ସେମାନେ ସବୁ ଦିହଧରି ରହିଲେ - ତମେ ଧାଇଁ ଧାଇଁ ତମ ମାମୁପୁଅ ଭାଇଙ୍କ ଲତାଗତାର ଖାତିର୍‌ରେ ଛତା ବାକ୍‌ସରେ ଭୋଟ ଖଣ୍ଡେ ଗଳେଇଦେଇଥିଲ । ଏଇଥିରେ ତମପାଇଁ ଭାଇଭଗାରି ସବୁଠି କଣ୍ଟାପଡ଼ିଲା । ଛି, ଛି, ଛି.... ଏ କଥା ଯିଏ ଶୁଣିବ -

ସୀତା - (ଉଠିବସି) ଏତେ ଆଉ କହନାଇଁ ମ ! ଦୁନିଆରେ ଘର କରି କିଏ କ'ଣ ନ

କରୁଚି ? ଭାରିଯା ମୁହଁ ଖୋଲିଲେ, ଗେରସ୍ତ ଲଙ୍କାକୁ ବନ୍ଧ ବାନ୍ଧିଦଉଚି । ଆୟ ଅଳଙ୍କାର ତ ମୁଁ ମାଗିନଥିଲି, କାକୁତି ମିନତି ହୋଇ କହିଥିଲି, ଛତାବାକ୍‌ସରେ କେମିତି ଭୋଟ ହେବ ! ରଖିଲ ମୋ କଥା ! ଆଉ କହୁଚ ପୁଣି କ'ଣ ନା.....

ମନ୍ଦର - ଶୁଣ ସେବ ବୋଉ, ମୁଁ ତ ନିରପେକ୍ଷ ଲୋକ ।

ସୀତା - ଯା- ଯା ତମ ପକ୍ଷ । ତମେ ଯଦି ନିରପେକ୍ଷ ସେ ପକ୍ଷର କଲମ କାହାର ?

ମନ୍ଦର - ଏତେଦିନଯାଏ କେହି ଜାଣିନଥିଲେ - ଆଜି ତମକୁ କହୁଚି, ହେଇ ଦେଖ.... ମୋ ଭୋଟ କାଗଜ ଖଣ୍ଡିକ ସେମିତି ମୋ ପକେଟ୍‌ରେ ଥୁଆ ହୋଇଛି । କାହାରିକି ମୁଁ ଭୋଟ ଦେଇନି । ଯଦି ଛତାବାକ୍‌ସ ଜିତିଥା'ନ୍ତା - ତେବେ ମହାପାତ୍ର ଲେଖିଥା'ନ୍ତେ "ମହାନ୍ତିଏ ତମେ ପକ୍‌କା ଲୋକ" । ପର-କଲମ ଜିତିଛି । ଆଚାର୍ଯ୍ୟ ମହାଶୟ ଲେଖିଛନ୍ତି - "ମହାନ୍ତିଏ, ଆମ ଦଳ ଜିତିଲା । ଆମେ ଏ ଦେଶ ଶାସନ କରିବୁ । ହେଲେ ତମ ଋଣ ସୁଝି ପାରିବୁନି ।" ବୁଝିଲ ?

ସୀତା - ସେଇ କଥା ତ ଜାଣ - ରଜାଙ୍କ ଆଗରେ ପୁଅ - ରାଣୀଙ୍କ ଆଗରେ ଝୁଅ ।

ମନ୍ଦର - ଆହା । ଯଦି ରଜା, ରାଣୀ ଦୁହେଁ ଏଥିରେ ଖୁସି - ପୁଅକୁ ଝୁଅ, ଝୁଅକୁ ପୁଅ କରିଦେଲେ ମୋତେ ବାଧିବ କାହିଁକି ?

ସୀତା - ମତେ କ'ଣ ମିଳିବ ସେଥିରୁ ? ମୋ କଥା ତ ରହିଲାନାହିଁ ।

ମନ୍ଦର - କୋଉ କଥା ରହିଲା ନାହିଁ - ସାହୁ ଘର ସାନବୋହୂର ସେ ଝୁମୁକା-

ସୀତା - ଆଉ ଅଛି..... ରାଧୁ ପାଣି ଭାରିଯା କାନ ଦେଖିବ ଯା' ।

ମନ୍ଦର - ତମ ଭଉଣୀଙ୍କ ମନଶୋଧ ଭାର-

ସୀତା - ସେ ତମକୁ ଅନାଇ ବସିଥା'ନ୍ତା ! !

ମନ୍ଦର - ଆରେ ଭାର ଯାଇଛି କି ନା ?

ସୀତା - ଆହା -ହା, ହା, ହା-

ମନ୍ଦର - ତେବେ ଯାଇଚି । ଆଉ କ'ଣ ରହିଲା ? - ହଁ ସେବର ବାହାଘର । ସେ ତ ଏମିତି ଧୁମ୍‌ଧାମ୍‌ରେ ହେବ ଯେ.....

ସୀତା - ଆଉ ହବ - ପାଞ୍ଜି ଦେଖିଚ ? ନୂଆ ପାଞ୍ଜିରେ ତେରମାସ ବାହାନାହିଁ ।

ମନ୍ଦର - ତେର ମାସ ବାହାନାହିଁ ।

ମକୁନ୍ଦ - (ବାହାରୁ) ମହାନ୍ତିଏ ଘରେ ଅଛ ?

ମନ୍ଦର - ଅଛି ।

ମକୁନ୍ଦ - (ବାହାରୁ) କେଉଁଠି ?

ମନ୍ଦର - ଏଇ ଘରକୁ ଆସ । (ସୀତା ଚାଲିଗଲା - ଆସିଲା ମକୁନ୍ଦ)

ମକୁନ୍ଦ - ଏ କି ନାଟ ଲାଗିଛି ଆଜ୍ଞା !

ମନ୍ଦର - ନାଟ ?

ମକୁନ୍ଦ - ଯାହା ହବାର ତ ହୋଇଗଲା - ଯିଏ ଯାହା ମାରିପିଟି କରି ଖାଇବାର ଖାଇଲେ । ଏଣିକି ଯେଝା ଦୁଃଖ-ସୁଖରେ ଯେଝା ଲାଗିବେ ନା ସେଇ ସୂତାରୁ ଖିଅ ଟଣାହଉଥିବ - ଟଣାହଉଥିବ....

ମନ୍ଦର - ବୁଝିଲି - ଆରକ କାହିଁଗଲେ ?

ମକୁନ୍ଦ - ମୁଁ କିଆଁ ଜାଣିବି ସେ କୁଆଡ଼େ ଗଲା ?

ରାଧୁ - (ବାହାରୁ) ମହାନ୍ତିଏ ଅଛନ୍ତି ?

ମନ୍ଦର - ଅଛି, ଅଛି - (ମନ୍ଦରକୁ) ଏଇ ଦେଖ୍ ଆଇଲା -

ମକୁନ୍ଦ - ଆସୁ । (ରାଧୁ ଆସିଲା)

ରାଧୁ - (ମକୁନ୍ଦକୁ) କିଓ, ଛତ୍ରଧାରୀ ଛତ୍ରପତି ମହାରାଜା ଶ୍ରୀ ଶ୍ରୀ ଶ୍ରୀ ମକୁନ୍ଦଦେବ ! ତୁମ ପାଟ-ଛତା ଚିତ୍‌ପଟାଙ୍ଗ୍ ?

ମକୁନ୍ଦ - ସେଇଠୁ ?

ରାଧୁ - କ'ଣ ସେଇଠୁ ?

ମକୁନ୍ଦ - ପୁରାଣ ତ ଫିଟେଇଚୁ - ଗାଇଯା' - କେତେ ଗାଇବୁ -

ରାଧୁ - ରାଗୁଚୁ କିରେ ମକୁ ! ମୁଁ ତୋ ଘରୁ ଖୋଜି ଖୋଜି ଆଇଲିଣି । କୁଆଡ଼େ ତିନିଖଣ୍ଡ ଅର୍ଖ ନୂଆ ଛତା ଭୋଟ ବେଳେ ମାରିଦେଇଚୁ, ଖଣ୍ଡେ ଦେ' - ଦାମ୍ ଦେବି, ମାଗଣା ମାଗୁନାଇଁ ।

ମକୁନ୍ଦ - ଶୁଣୁଥା - ଆଜ୍ଞା !

ରାଧୁ - ମିଛ ନୁହଁରେ - କାଲି ଧୂମାଳ ପବନରେ ମୋ ଛତାଟି ଓଲଟି ଏକାବେଳକେ ଚିତ୍‌ପଟାଙ୍ଗ୍ । କାଠି, ବେଣ୍ଟ ସବୁ କୁଟ୍‌କୁଟା । ଛତା ଖଣ୍ଡେ ନହେଲେ ଚଳିବ କେମିତି ? ଖଣ୍ଡେ ଦେ' ।

ମକୁନ୍ଦ - ମୁଁ ତମକୁ ସାକ୍ଷି ରଖ୍ କହୁଛି ଆଜ୍ଞା - ଏଣିକି ମୋ ଦୋଷ ଦବନାଇଁ, (ରାଧୁକୁ) ହେଇତି - ତୋ କାଠ ବେଣ୍ଟ କ'ଣ ଭାଙ୍ଗି କୁଟ୍‌କୁଟା ହେଇଚି - ମକୁନ୍ଦ ସୋଇଁ ଯୋଉଦିନ ଉଠିବ, ତୋ ଗୋଡ଼ ହାତ ଭାଙ୍ଗି ଚୂନାକରିଦେବ - ଜାଣିଚୁ ? ମୁଁ କ'ଣ କୋଉଠୁ ଉଡ଼ିଆସି ଏ ଗାଁରେ ପଡ଼ିଚି କି ?

ରାଧୁ - ଏ ଗାଁ ନା ତୁ ଧରନା କହୁଚି - ଏ ଗାଁରେ ତତେ ରଖେଇ ଦେବିନି - ଏ ବାଟ ଘାଟ, ଏ ପାଣି ପବନ ତତେ ସବୁ ଅଟକ । ଏ ପାଞ୍ଚ ବରଷରେ ମୁଁ ତତେ ପଞ୍ଚତୀର୍ଥ ଦେଖେଇଦେବିନାଇଁ ? ଭାବୁଚୁ ମୁଁ ସେଇ ରାଧୁ ପାଣି ପରା ! ଆଜି ସକାଳେ ଦାରୋଗା ବାବୁ ଯେମିତି ଦେଖିଛନ୍ତି, ସାଇକେଲ୍‌ରୁ ଓହ୍ଲେଇପଡ଼ି କହିଲେ - କିଓ ରାଧୁବାବୁ ?

ମକୁନ୍ଦ - ମୋ ଦାଉଲୋ ।

ରାଧୁ - ରହିଚି ଯେ ଟିପା ରହିଚି । ମକୁନ୍ଦ ସୋଇଁ ଏତେ ନମ୍ବର ଭୋଟ ଛତାବାକ୍‌ସରେ ଦେଇଚି । ବୁଝିଲୁ, ମାସକେ ଏଗାର ନମ୍ବର ମକଦ୍ଦମା । ତୋ ଚାଲରେ କୁଟା ଖିଏ

ରଖେଇଦେବିନାହିଁ ।

ମକୁନ୍ଦ - କେଉ ଦିନକୁ ? କେଉ ଦିନକୁ ଏ ଟାଣ ? ରାମଚନ୍ଦ୍ର ମହାପ୍ରଭୁ ଚଉଦବର୍ଷ ବନବାସ ଗଲେ - ଅଯୋଧ୍ୟାପୁରୀ ରହିଲା ନା ଭାସିଗଲା । ସେମିତି ଏ ବର୍ଷ ପାଞ୍ଚଟା ଅନଉ ଅନଉ ଗଡ଼ିଯିବ - ସେଇଠୁ ? (ମନ୍ଦର ମହାନ୍ତି) ଏ ପର୍ଯ୍ୟନ୍ତ ଆରାମରେ ବସି ଆଖିବୁଜି ପାନ କୁଟୁଥିଲେ ।)

ମନ୍ଦର - ହଇରେ ମକୁନ୍ଦ । ରାଧୁ ଟିକେ ପରିହାସ କରୁଚି, ତୁ ପରମତ୍ତ୍ୱଟ ବୁଝୁନୁ କାଇଁକି ?

ମକୁନ୍ଦ - ସେ ମୋର କ'ଣ କି ଆଜ୍ଞା, ମୋତେ ପରିହାସ କରିବ ?

ମନ୍ଦର - ତୁ ତ ଭୁଲ୍‌ଟି କରିଚୁ ମକୁନ୍ଦ !

ମକୁନ୍ଦ - ମୋ ଗଳାରେ ଛୁରୀ ଦେଇଦିଅ ଆଜ୍ଞା, ଆପଣ ତ ଏ କଥା କହିଲେଣି । ଛତାବାକ୍‌ସରେ ଭୋଟି ଦେଲି ବୋଲି -

ମନ୍ଦର - ଆରେ ଛତାବାଡ଼ି କଥାନୁହେଁ - ଏ ଭୋଟ କାରବାର ତ ଗୁପ୍‌ଚୁପିଆ କାରବାର । କଉ ସାତ ସନ୍ଧିରେ ତ ଯାଇ ଭୋଟ ବାକ୍‌ସ । ସାପକୁ ଦେଲ କି ବେଙ୍ଗକୁ ଦେଲ ଇନ୍ଦ୍ର, ଚନ୍ଦ୍ର ଜାଣିଲେ ନାହିଁ । କେଡ଼େ ସୁବିଧା କଥା ?

ମକୁନ୍ଦ - ସେ ପରା ନମ୍ବର ଟିପିରଖିଚି ବୋଲି କହୁଚି ।

ମନ୍ଦର - ପରିହାସ । ମୋ କଥା ଦେଖ - ମୁଁ ନିରପେକ୍ଷ, ହେଲେ ପର-କଲମ ଯେତେବେଳେ ଜିତିଗଲେ - ଶହେ ଚାଳିଶି ଜାଗାରୁ ଶହେ ଏକ ଜାଗା ଆସେମ୍ବ୍ଲିରେ ଦଖଲ କଲେ - ତାଙ୍କ ଆଡ଼କୁ ତୁନି କରି ଢଳିପଡ଼ିବା କଥା । ସରକାର ଦ୍ରୋହୀ ହେଲେ ଆଉ ରକ୍ଷା ଅଛି ?

ମକୁନ୍ଦ - ମୋର କି ବିଶ୍ ଅଛି ଆଜ୍ଞା - ମୁଁ କାହିଁକି ସରକାର ଦ୍ରୋହୀ ହେବି ?

ମନ୍ଦର - ଓହୋ.... ତୁ ତ କଥାଟା ବୁଝୁନୁ । ଯଦି ତାଙ୍କ କାନରେ କଥାଟା ପଡ଼େ ଯେ, ଅମୁକ ଗାଁର ଅମୁକ ଲୋକଟା ଗୋଟାଏ ଘୁଙ୍ଗୋଳ ଲଗେଇଚି - ତା'ହେଲେ ? ହାନିଟା କାହାର ?

ମକୁନ୍ଦ - ହଉ ହେଲା, ତମରି କଥା ହେଲା, ତମରି ଆଶ୍ରା ଧରି ତ ପଡ଼ିଛି, ଯାହା କରିବ କର ।

ମନ୍ଦର - ହଉ, ତୁ ଯା' ବାବୁ, ତୋର କେହି କିଛି କରିବେ ନାଇଁ - ମୁଁ ପରା ଅଛି....ଯା'....

ରାଧୁ - ହେ ମକୁନ୍ଦା - ଆଜି ନାଟ ହବ, ଜାଣିଚୁ ! ନାଟବାଲାଙ୍କ ପାଇଁ ପତର ଯୋଗାଇବା ଭାର ତୋ ଉପରେ - ଯଦି ନ କରୁ....

ମକୁନ୍ଦ - ମୋ ଦାଉଲୋ, (ମକୁନ୍ଦ ଚାଲିଗଲା । ମନ୍ଦର ହୋ ହୋ କରି ହସିଉଠିଲେ ।)

ମନ୍ଦର - ସରଳିଆ ଲୋକଟା । ହଁ, ରାଧୁ ଖବର କ'ଣ ?

ରାଧୁ - ସେଇ କଥା ଆଜ୍ଞା.....

ମନ୍ଦର - କୋଉ କଥା ?

ରାଧୁ - ସେଇ....

ମନ୍ଦର - ଆରେ କୋଉ ?

ରାଧୁ - ଗାଁବାଲା ସବୁ ଅଡ଼ିବଇଚନ୍ତି -

ମନ୍ଦର - ତାଙ୍କୁ କହିଦିଅ ରାଧୁ, ମୁଁ ମଲାଦିନ ପଛେ ମୋ ଦୁଆରେ କୋକେଇ ନ ବାନ୍ଧିବେ- ମୁଁ ମକୁନ୍ଦ ସୋଇଁ ହେଇଚି କି ?

ରାଧୁ - ମୋ ଜୀବନ ଖାଇଯାଉଚନ୍ତି - ତମର ହେଉ ତାଙ୍କୁ ମୁଁ କଥା ଦେଇଥିଲି....

ମନ୍ଦର - ମୁଁ କ'ଣ କହିଥିଲି ? କହିଥିଲି ଛତାଠୁଁ ଖାଇ ପର-କଲମରେ ଗଳେଇ ଦିଅ ।

ରାଧୁ - ଛତା ପରା ଟରଳିଗଲା....କିଛି ଦେଲାନି....

ମନ୍ଦର - ଆଉ ପର-କଲମ କାହାକୁ କ'ଣ ଅଡାଡ଼ିଦେଇଚି ! କିଏ ସେ ହିସାବ ରଖିଚି !!!

ରାଧୁ - ତମେ ଟିକିଏ ଚାଲ ।

ମନ୍ଦର - ଚାଲ ! ବୁଝିଲୁ ରାଧୁ, ମନ୍ଦର ମହାନ୍ତି ଯେଉଁଠି ମାମଲତ୍ କରେ; ସେଠି ସବୁ ପଛେ ଗାଧୋଇ ଯାଉ - ହେଲେ, ଅସଲ ମାମଲତଟି ଯଉଁଠି, ସେଇଠି ହଲ୍‌ନାଇଁ କି ଚଲ୍‌ନାଇଁ । ଆଲୋ, ସେବ, ସେବ...(ସେବ ଆସିଲା) ଆଲୋ ତୋ ବୋଉ କୁଆଡ଼େ ଗଲା ?

ସେବ - ବ୍ରାହ୍ମଣୀ-ମାଉସୀ ଘରକୁ ବୁଲିଯାଇଛି ।

ମନ୍ଦର - ବୁଲିଯାଇଚି ? ହଉ ହଉ ଚାଲ, ରାଧୁ ଚାଲ ।

(ଦୁହେଁ ଚାଲିଗଲେ)

(ସେବତୀ ଗୋଟାଏ ଜାଗାରୁ ପାଞ୍ଜିଟା ଉଠାଇ ଆଣି ପୃଷ୍ଠା ଓଲଟାଇଲା । ଟିକିଏ ପରେ ବାହାରୁ କଥା କହି କହି ମନ୍ଦର ଫେରିଆସିଲେ, ସେବତୀ ଭିତରକୁ ଚାଲିଗଲା ।)

ମନ୍ଦର - ଆସନ୍ତୁ ବାବୁ, ଘର ଭିତରକୁ ଆସନ୍ତୁ (ପଛେ ପଛେ ଆସିଲା ଶଶି) ଆଜି ସକାଳୁ ଉଠି ଶଙ୍ଖଚିଲ ମୁହଁ ଚାହିଁଥିଲି - ଆପଣଙ୍କ ପାଦ ମୋ ଘରେ ପଡ଼ିଲା । ବସନ୍ତୁ ।

ଶଶି - ମୋ ସକାଶେ ଆପଣଙ୍କ କାମ ଅଟକିଲା ।

ମନ୍ଦର - କି କାମ ?

ଶଶି - କୁଆଡ଼େ ବାହାରିଥିଲେ ଯେ.....

ମନ୍ଦର - ଓ ଏଇକଥା ! ମତେ ଛାଡ଼ି ଏ ଗାଁବଲା କୋଉ କାମରେ ହାତ ଦେବେନାହିଁ- ଯା ବୋଲି ଆପଣ ଆଗ ନାଁ ଗାଁ କଥା ଆଗ ? କେଡ଼େ ଆନନ୍ଦର କଥା ଆପଣମାନେ ଜିତିଗଲେ - ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ହେଲେ.... ଆଉ ଅନ୍ୟ ମନ୍ତ୍ରୀମାନେ କିଏ ଟି ?

ଶଶି - ରାଜେନ୍ଦ୍ରବାବୁ - ଦେବାନନ୍ଦବାବୁ .....କିନ୍ତୁ....ଛାଡ଼ନ୍ତୁ ସେ କଥା ସବୁବେଳେ ସେ ଚର୍ଚ୍ଚା ଭଲ ଲାଗୁନାହିଁ । ଆପଣଙ୍କ ଖବର କୁହନ୍ତୁ, ସବୁ ଭଲ ତ ?

ମନ୍ଦର - ଜାଣିଥିବେ ତ, ମୋର ବାଡ଼ି ଗୋବରେ ଗୋବେ ଜମିନାହିଁ । ହେଲେ ସବୁଦିନେ ଦେଖିବେ ମୁଁ ଏମିତି ।

ଶଶି - ସେବତୀ କେମିତି ଅଛି ?

ମନ୍ଦର - କାହିଁ କଉଚନ୍ତି - ମିଳିତ ଦଳ ଜିତିନାହାନ୍ତି ଯେ ସେ ହାତରେ ସୁନାଚାନ୍ଦ ପାଉଚି ।

ଶଶି - ଘରେନାହିଁ କି ?

ମନ୍ଦର - ଥିଲା ତ - ପାନ ନିଅନ୍ତୁ (ଡିବା ଖୋଲି) ମଲା - ପାନ ତ କ'ଣ ନାହିଁ - ଆଲୋ ସେବ - ଏଣେ ଦେଖ କିଏ ଆଇଛନ୍ତି.... ଲାଜ କ'ଣ କମ୍ - ଏଇତ ଆସିଲାଣି (ସେବତୀ ଆସ ଶଶିକୁ ନୀରବ ନମସ୍କାର କଲା ।)

ଶଶି - ନମସ୍କାର ! ଭଲଅଛନ୍ତି ତ ?

ସେବତୀ - ହଁ, ଆପଣ ବିଜୟଭାଇଙ୍କୁ ଭେଟିନାହାନ୍ତି ?

ଶଶି - (ଯେମିତି ଡରିଯାଇ) କାହାନ୍ତି ସେ -

ମନ୍ଦର - ବିଜୟ ଆସିଥିଲା ?

ସେବତୀ - ହଁ ତାଙ୍କ ମାମୁଁ ଘରକୁ ଆସିଛନ୍ତି ।

ମନ୍ଦର - ଡକାଇ ଆଣିବି ? (ବିଜୟ ଆସିଥିଲା ଶୁଣି ଶଶି ଅସନ୍ତୁଷ୍ଟ ହେଇପଡ଼ିଛି ।)

ଶଶି - ନାଁ - ଥାଉ - ମତେ ବସିବାକୁ ବେଳନାହିଁ - ଏଇ ଦିନ ଦି'ଟା ଗାଡ଼ିରେ ମୁଁ କଟକ ଯିବି ।

ସେବତୀ - ଗୀତା ଦେବୀଙ୍କୁ ମୋର ନମସ୍କାର ଜଣାଇଦେବେ ।

ଶଶି - ଆଚ୍ଛା !

ମନ୍ଦର - (ଇଙ୍ଗିତ କରି) ପାନ ଦେ' !

ଶଶି - ଥାଉ - ପାନ କ'ଣ ହେବ ?

(ସେବତୀ ମନ୍ଦର ହାତକୁ ପାନ ବଢ଼ାଇ ଦେଲାବେଳେ ଶଶିର ହାତ ଯେମିତି ଆପେ ଆପେ ଲମ୍ବିଗଲା । ସେବତୀ ପାନ ଦେଇ ସେଠୁ ଚାଲିଗଲା ।)

ଶଶି - ଭୁଲିଯାଇଥିଲି - ଏଇ...(ପକେଟ୍‌ରୁ ଗୋଟାଏ ସୁନାହାର ବାହାର କରି ମନ୍ଦରକୁ ଦେଲା ।)

ମନ୍ଦର - ଏ ହାର କାହାପାଇଁ ?

ଶଶି - ଇଲେକ୍‌ସନରେ ଭଲ କାମ କରିଥିଲା ବୋଲି ସେବତୀକୁ ଏଇଟା ପୁରସ୍କାର ।

ମନ୍ଦର - କିଏ ଦେଇଚି ?

ଶଶି - ସେଥିରୁ ଆପଣ କ'ଣ ପାଇବେ ? ଆପଣ ତ ଜାଣନ୍ତି, ମୁଁ ଆଚାର୍ଯ୍ୟ ମହାଶୟଙ୍କ ଲୋକ - ସେବତୀକୁ ଗୋଟାଏ ସୁନାହାର ଦବାର ଭାର ମୋ ଉପରେ ଥିଲା - ସେତକ ମୁଁ ତୁଲାଇଦେଲି । ଆଚ୍ଛା ! ଆସୁଚି । ନମସ୍କାର (ଚାଲିଗଲେ, ଭିତର ଆଡୁ ଆସିଲା ସୀତା - ସେସବୁ କଥା ଶୁଣିଚି ।)

ସୀତା - ସେ କିଏ ?

ମନ୍ଦର - ସେ ପରା.....

ସୀତା - ସେ କାହିଁକି ମୋ ଝିଅକୁ ସୁନାହାର ଦେଲା ।

ମନ୍ଦର - ସାଇ ଗସ୍ତରୁ ଫେରି ସବୁ ଶୁଣୁଥିଲଟି ?

ସୀତା - ନାକ ମାଡୁନାହିଁ ? ମୁହଁ ହଲେଇ କଥା କହୁଚ - ଭଲରେ କହୁଚି, ସେ ହାର ତାକୁ ଫେରେଇଦିଅ ।

ମନ୍ଦର - ସେ ତ ସାଇକେଲ୍ ମାରି ଚମ୍ପଟ ଦେବଣି । ମୁଁ ଏବେ କୁଆଡ଼େ ଯିବି ?

ସୀତା - ତୁମକୁ କିଏ କହିଲା ରଖିବାକୁ ? ତାକୁ ଏମିତି ଦେଇଆସେ ! ମୋ ଝିଅକୁ ସେ ସୁନାହାର ଦେବ ! ଅନ୍ତଫାଡ଼ି କଲିଜା ଖାଇଯାଇନଥା'ନ୍ତି ।

ମନ୍ଦର - ଖାଇଗଲ ନାହିଁ ! ସାତ ହାତ ଓଢ଼ଣା ହାଣି ଲୁଚିଲ କାହିଁକି ? ଦେଇଚି ତ ଦେଇଚି । ମୁଁ କଟକ ଗଲେ, ଆଚାର୍ଯ୍ୟଙ୍କୁ ପଚାରିବି - ହାରଟା କିଏ ଦେଇଚି.... ଯଦି ସେ ଦେଇଥା'ନ୍ତି, ତେବେ ତ ଉତ୍ତମ କଥା - ନିଅ-ରଖ ।

ସୀତା - ମୁଁ ଛୁଇଁବାକୁ ଯିବି ନା ତାକୁ ! ତମେ ରଖିଚ ତମେ ଜାଣ - ଆରେ- ମୋ' ଝିଅକୁ ସେ କ'ଣ କରି ପାଇଲା କି ? ମୁଁ ମନା କରୁଚି- ଝିଅକୁ ନେଇ ଭୋଟରେ ନଚେଇଥିଲ, ଏବେ ଫଳ ପାଅ । ସେ ହାର ମୋ ଘରେ ପଶିବନାହିଁ - ତାକୁ ନେଇ ଗାତ ଖୋଳି କୋଉଠି ରଖୁଚ ରଖ ।

ମନ୍ଦର - ଫଳ ପାଇଲି କ'ଣ ? କ'ଣ ଫଳ ପାଇଲି ? ମୁହଁ ବଢ଼ିଯାଉଚି କି ?

ସୀତା - ମୁହଁ ଆଉ ରଖିଚ କି ମୁହଁ ବଢ଼ିବ ? ପର ମଣିଷକୁ ନିଜର କରି ନିଜ ମଣିଷ ମୁହଁରେ ତ ଛ'ପଟା ଚୂନକାଳି ବୋଳି ଛାଡ଼ିଦେଇଚ....

ମନ୍ଦର - ଆରେ.... ଏ ଲୋକଟାକୁ ତ ଡାଆଣୀ ଗ୍ରାସିଲାଣି । ସେଇ ଗୋଟାଏ କଥାକୁ ଗୁଣୁଗୁଣୁ ହଉଚି । ଯା'କୁ ତ ଘରଭଙ୍ଗା ବୁଦ୍ଧି ଦିଶିଲାଣି ।

ସୀତା - ସେ ଭଙ୍ଗାଭଙ୍ଗି ଯୋଡ଼ାଯୋଡ଼ି କଥା ତମେ ଜାଣିଚ - ଆମ ଜାତକରେ ସେ କଥା ନାଇଁ ।

(ଚାଲିଯାଉଥିଲେ)

ମନ୍ଦର - ଏ ସେବ ବୋଉ..... ଏ ହାର ରଖ କହୁଚି-

ସୀତା - ସେ ହାର କଥା ମତେ କହନାହିଁ- କହନାହିଁ - ମୋ କୋହଘର ଉଠିଆଉଚି....

ମନ୍ଦର - (ଖୁବ୍ ରାଗି) ତମ ମାମୁପୁଅ ଭାଇଙ୍କ ଅମୁକଙ୍କ ଅମୁକ ଯଦି ହାରଟା ଦେଇଥା'ନ୍ତେ - ତେବେ ମୋହ ଘର ଖାଲି ଉଛୁଳି ପଡ଼ିଥା'ନ୍ତା ! କ'ଣ ଆଉ କହନ୍ତି ! ! ହଉ ଯା'-ଯା'-

## ଦ୍ୱିତୀୟ ଦୃଶ୍ୟ

(ସହରର ଏକ ରାସ୍ତା, ଗୋଟିଏ ଦିଗରୁ ଆସୁଛି ବିଜୟ- ଅନ୍ୟ ଦିଗରୁ ଶଶି ।)

ଶଶି - ଓହୋ, ବିଜୟବାବୁ, ନମସ୍କାର, ନମସ୍କାର - ଅନେକ ଦିନପରେ ଦେଖା । ସେଇ ନନ୍ଦୀପୁର ମେଳଣପଡ଼ିଆ ସଭା ଦିନଠୁ ମୁଁ ଆପଣଙ୍କୁ ଦେଖିନାହିଁ । କଟକ କେବେ

ଆସିଲେ ?

ବିଜୟ - ମୁଁ ବରାବର ଏଠି ଅଛି ।

ଶଶି - ବରାବର ମାନେ ?

ବିଜୟ - ତିନିମାସ ହେବ । ଯେଉଁଦିନଠୁ ମନ୍ତ୍ରୀମଣ୍ଡଳ ଗଢ଼ା ହେଲା, ସେଇଦିନଠୁ ଆସିଚି । ଆଉ ଫେରିନି ।

ଶଶି - କେଉଁଠି ରହୁଛନ୍ତି ?

ବିଜୟ - ପାର୍ଟି ଅଫିସ୍‌ରେ । ଆପଣ ତ ସେଆଡ଼େ ଯାଆନ୍ତି ନାହିଁ....

ଶଶି - ବେଳନାହିଁ, ଆଚାର୍ଯ୍ୟ ମହାଶୟ ମୁଖ୍ୟମନ୍ତ୍ରୀ ହେଲେ - ସେକ୍ରେଟାରୀ, ପ୍ରାଇଭେଟ୍ ସେକ୍ରେଟାରୀଠାରୁ ଆରମ୍ଭକରି ଛ'ଛ'ଟା ଦରମାଖିଆ ଚାକର; କିନ୍ତୁ ମତେ ଛାଡ଼ିବେ ନାହିଁ.....

ବିଜୟ - ଏ ଭାଗ୍ୟ କେତେ ଲୋକଙ୍କର ଥାଏ ?

ଶଶି - (ଦୂରକୁ ଲକ୍ଷ୍ୟ କରି) ଦେଖିଲେ ବିଜୟବାବୁ, ଏଇ ଶର୍ମା ନା ? ହଁ, ଶର୍ମା ତ । କୁଆଡ଼େ ତେଣେ ଛୁଟିଚି ?

ବିଜୟ - ସେ ତ ଏଥର କଟିନାହାନ୍ତି ?

ଶଶି - ନାଁ, ବିଚରା ଅଳ୍ପକେ ରକ୍ଷାପାଇଗଲା । ପୁଏ ଭାବିଥିଲେ, ଏ ଦେଶଟା ତାଙ୍କ ମୌରସୀ ସମ୍ପତ୍ତି । ସବୁଦିନେ ଗାଦି ମାଡ଼ି ବସିଥିବେ । ମଜା ପାଇଲେ ଯେ! ଆପଣ କ'ଣ ଭାବିଚନ୍ତି ସରକାର ଚଳେଇ ନପାରି ବଦନାମ୍ ହୋଇ ସେ ହାରିଗଲେ । ନା-ଗଣଶକ୍ତି ଦଳ ହାରିବାର ବଡ଼ କାରଣ ହେଉଚି - ତାଙ୍କ ନିଜ ଭିତରେ ଦଳାଦଳି! ଆଚ୍ଛା ବିଜୟବାବୁ, ମୁଁ ଚାଲିଲି । ମୋ ବସା ତ ଦେଖିଚନ୍ତି । ଆଜି ସନ୍ଧ୍ୟାରେ ଆସନ୍ତୁ - ମୁଁ ଆଉ ବେଶିଦିନ ଆଚାର୍ଯ୍ୟଙ୍କ ପାଖରେ ରହୁନାହିଁ ।

ବିଜୟ - କାହିଁକି ?

ଶଶି - କେତେ ଏଠି ଖଟିବି ? କଲିକତାର ଜଣେ ବ୍ୟବସାୟୀ ଏଠି ବ୍ୟବସାୟ ଆରମ୍ଭ କରିଚନ୍ତି । ସେଇ ବ୍ୟବସାୟୀ ବୁଝିବି । ହାକିମି ଅଛି - ଆରାମ ବି ଅଛି । ଛବି ଭଳି ସୁନ୍ଦର ଘରଟିଏ ହୋଇଥିବ - ସନ୍ଧ୍ୟାବେଳେ ସୋଫା ଉପରେ ବସି ସିଲୋନ ରେଡ଼ିଓ ଶୁଣୁଥିବି । ଗସ୍ତପାଇଁ ଦାମିକା ଗାଡ଼ି- ମୋଟା ଦରମା! ସତ କହୁଚି ବିଜୟବାବୁ, ଉପଭୋଗ କରିବାପାଇଁ ମନ କାହିଁକି ବ୍ୟାକୁଳ ହୋଇଉଠୁଚି ।

ବିଜୟ - ମୋର ଭାରି ଭୟ ହେଉଚି ଶଶିବାବୁ, ଭୋଟରେ ଜିଣି ଏମାନେ ସରକାର ଗଢ଼ିଲେ - ଯଦି କିଛି କରି ନପାରନ୍ତି! ମାସ ତିନିଟା ନହେଉଣୁ ଖବରକାଗଜମାନେ ତ ଲେଖାଲେଖି ଆରମ୍ଭ କରିଦେଲେଣି ।

ଶଶି - ସେ ସବୁ ବାଜେ କଥା । ରାଜନୀତି କରିବାକୁ ହେଲେ ଗାଳି ଶୁଣିବାକୁ ହେବ । ଯା ବୋଲି କ'ଣ ଲୋକଙ୍କୁ ଡରି ଶାସନ ଚଳେଇବେ ?

ବିଜୟ - ମଫସଲ ଭୋଟରମାନେ ଜାଣିବାକୁ ଉଚ୍ଛନ୍ନ ହେଲେଣି କେବେ ତାଙ୍କ ଦଶା ଫେରୁଚି ।

ଶଶି - କ'ଣ ଏଇ ତିନିମାସ ଭିତରେ ?

ବିଜୟ - ହଁ, ଆଜି ତ ସେବତୀର ଚିଠି ପାଇଲି ।

ଶଶି - ସେବତୀ....ସେବତୀ - (ଜାଣି ନଜାଣିଲା ପରି) ଓ, ଆପଣଙ୍କର ସେଇ ସେବତୀ - କେମିତି ଅଛି ସେ ?

ବିଜୟ - ଭଲ ଅଛି ।

ଶଶି - ଆଚ୍ଛା, ମୁଁ ଆସୁଚି - ନମସ୍କାର । (ଚାଲିଗଲା)

## ତୃତୀୟ ଦୃଶ୍ୟ

(ମନ୍ତ୍ରୀ ରାଜେନ୍ଦ୍ରଙ୍କର ସରକାରୀ ବାସଭବନର ଗୋଟିଏ କୋଠରି - ଏକାନ୍ତ ସାଧାରଣଭାବେ ସଜ୍ଜିତ । ଦୃଶ୍ୟାରମ୍ଭରେ ଦେଖାଗଲା, ରାଜେନ୍ଦ୍ର ଗୋଟିଏ ଇଜି ଚେୟାର୍‌ରେ ବସିଛନ୍ତି । ହାତରେ ତାଙ୍କର ଖଣ୍ଡେ ଲମ୍ବା କାଗଜର ଚିଠି - ଚିଠିଟି ପଢ଼ି ସେ ଯେ ସୁଖୀ ହୋଇପାରିନାହାନ୍ତି, ଏ କଥା ତାଙ୍କୁ ଦେଖିଲେ ବୁଝାଯାଏ । ତା'ଛଡ଼ା ଉପସ୍ଥିତ ସେ ଅସୁସ୍ଥ । ତାଙ୍କର ଶରୀର ସଂପୂର୍ଣ୍ଣ ଭାଙ୍ଗିପଡ଼ିନଥିଲେ ମଧ୍ୟ ରୋଗର ଲକ୍ଷଣ ପରିସ୍ଫୁଟ ।)

(ଚିଠି ଭାଙ୍ଗିକରି ସେ ହାତ ପାଖରେ ଥିବା ଟେବୁଲ୍ ଉପରେ ରଖି କଲିଂବେଲ୍ ବଜାଇଲେ - ଟିକିଏ ପରେ ଆସିଲା ଗୀତା - ତା ହାତରେ ଫଳରସପୂର୍ଣ୍ଣ ଗୋଟିଏ ଗ୍ଲାସ୍ ।)

(କଲିଂବେଲ୍ ଶୁଣି ଗୀତା ଆସିବ - ଏ କଥା ରାଜେନ୍ଦ୍ର ଆଶା କରିନଥିଲେ)

ରାଜେନ୍ଦ୍ର - ତୁମେ ?

ଗୀତା - ନିଅ-

ରାଜେନ୍ଦ୍ର - ସର୍ବତ ?

ଗୀତା - ହଁ - (ସର୍ବତ ବଢ଼ାଇଲା) ।

ରାଜେନ୍ଦ୍ର - (ଗ୍ଲାସ୍ ଧରି) ଯେ କି ସର୍ବତ ।

ଗୀତା - ଫଳ ସର୍ବତ ।

ରାଜେନ୍ଦ୍ର - ଫଳ.... ।

ଗୀତା - ହଁ ଅଙ୍ଗୁର, ବେଦନା, ଲେମ୍ବୁ, ସପୁରୀ.....

ରାଜେନ୍ଦ୍ର - ଗୀତା....!! (ଗୀତା ଆହତ ଦୃଷ୍ଟିରେ ଚାହିଁ ରହିଲା) ତୁମେ କ'ଣ ଜାଣନା - ଗୀତା ! ମୁଁ ବର୍ତ୍ତମାନ ଏଠି ବସି ଅଙ୍ଗୁର ବେଦନାର ସର୍ବତ ପିଇଲାବେଳେ ମୋ ଦେଶର ଲକ୍ଷ....ଲକ୍ଷ...

ଗୀତା - (ଉଚ୍ଛ୍ୱସିତ ଗଳାରେ) ମୁଁ ଜାଣେ, ଜାଣେ - ତମେ ଏଠି ଫଳ ସର୍ବତ ପିଉଥିଲାବେଳେ

ତମ ଦେଶର ଲକ୍ଷ ଲକ୍ଷ ଲୋକ ହୁଏତ ମୁନ୍ଦାଏ ତୋରାଣୀ ପିଇବାକୁ ପାଉନଥିବେ, କିନ୍ତୁ ସେଇଥିପାଇଁ ମୁଁ ଏ ଦଣ୍ଡ ଭୋଗିବି କାହିଁକି ? ତମ ଦେହ ଅବସ୍ଥା ଆଜି ଯାହା -

ରାଜେନ୍ଦ୍ର - ନିଜ ଦେହ କଥା ଚିନ୍ତା କରିବାର ଅବସ୍ଥା ଏ ଦେଶରେ କେତେ ଲୋକଙ୍କର ଅଛି ?

ଗୀତା - କିନ୍ତୁ ଏ କଥା ତୁମେ ଭୁଲିଯାଉଚ କାହିଁକି ଯେ, ଦେଶବାସୀଙ୍କ ଧନରୁ ଯେଉଁ ଦରମା ତମେ ପାଉଚ, ସେଥିରୁ ଗୋଟିଏ ସୁଦ୍ଧା ପାଇବା ମୁଁ ଏ ଦିଗରେ ଖର୍ଚ୍ଚ କରୁନାହିଁ । ମୁଁ ଜାଣେ, ଦେଶକୁ ବଞ୍ଚାଇବାର ଦାୟିତ୍ୱ ଆଜି ତମକୁ ଦିଆଯାଇଚି, କିନ୍ତୁ ତୁମକୁ ବଞ୍ଚାଇବାର ଭାର ଦେଶବାସୀ ନେଇନାହାନ୍ତି କି ନେଇପାରିବେ ନାହିଁ । ସେ ଦାୟିତ୍ୱ ମୋର, ଏକା ମୋର ! ସେଥିରୁ ତମେ ମତେ ବଞ୍ଚିତ କରାଅନି !

ରାଜେନ୍ଦ୍ର - ତମର ଇଙ୍ଗିତ ମୁଁ ବୁଝୁଚି ଗୀତା ! କିନ୍ତୁ ମୁଁ ବୁଝିପାରୁନାହିଁ - ମୁଁ ଏପରି ଅସହାୟ ହୋଇପଡୁଛି କାହିଁକି ?

ଗୀତା - କୌଣସି କଥା ବୁଝିବାକୁ ଚେଷ୍ଟା କରିବା ସୁଦ୍ଧା ତୁମର ଉଚିତ୍ ନୁହେଁ ବୋଲି ପରା ଡାକ୍ତର କହିଚନ୍ତି ! ଆଉ ତମେ ପ୍ରତିଜ୍ଞା କରିଚ ଆସନ୍ତା ଛ'ମାସ ତମେ ମୋର କୌଣସି କାମରେ ପ୍ରତିବାଦ କରିବନାହିଁ -

ରାଜେନ୍ଦ୍ର - ତାହାହିଁ ହେଉ ଗୀତା । ଏ ଛ'ମାସ ମୋର ପିଲାଖେଳରେ କଟିଯାଉ ! ଆଜି ଏ ଦାମିକା ଫଳର ସର୍ବତ ମୁଁ ପିଉଚି । ପିଇବା ମୋର ଅନୁଚିତ ବୋଲି ହୁଏତ ତୁଣ୍ଡଖୋଲି କେହି କହିବେ ନାହିଁ । କିନ୍ତୁ ସେଇ ନୀରବତା ହିଁ ଦିନେ ମୋଠାରୁ ଦାବି କରି ବସିବ ମୋର କୈଫିୟତ । ମନ୍ତ୍ରୀତ୍ୱ ହାକିମି ନୁହେଁ ଗୀତା - ଚାକିରି ମଧ୍ୟ ନୁହେଁ - ମନ୍ତ୍ରୀତ୍ୱ ହେଉଚି ସରଭିସ୍ ଏଣ୍ଡ୍ ସାକ୍ରିଫାଇସ୍ (Service and Sacrifice) ସେବା ଆଉ ତ୍ୟାଗ - ଏତିକିରେ ଲୋଭରେ ମୁଁ ଆଜି ବଞ୍ଚି ରହିବାକୁ ଚାହୁଁଚି । (ସର୍ବତ ପିଇଲେ - ପିଇସାରି ପୁଣି କଲିଂବେଲ ବଜେଇଲେ; କିନ୍ତୁ କେହି ଆସିଲେ ନାହିଁ ।)

ଗୀତା - କାହାକୁ ଖୋଜୁଚ ?

ରାଜେନ୍ଦ୍ର - ଚପ୍ରାସୀ, ପି.ଏ. ?

ଗୀତା - କେହିନାହାନ୍ତି ।

ରାଜେନ୍ଦ୍ର - କେହି ଆସିନାହାନ୍ତି ?

ଗୀତା - ନା-

ରାଜେନ୍ଦ୍ର - କାହିଁକି ?

ଗୀତା - ତମର ଅବସ୍ଥା ଦେଖି ସେମାନଙ୍କର ମଧ୍ୟ ଦୟା ହେଉଚି, ତମକୁ ଆଉ ଖଟାଇବାକୁ ସେମାନେ ଚାହାନ୍ତି ନାହିଁ ?

ରାଜେନ୍ଦ୍ର- କୌଣସି ଫାଇଲ୍ ଆଜି ଆସିନାହିଁ ?

ଗୀତା - ନା-

ରାଜେନ୍ଦ୍ର – ତେବେ ମୁଁ ନିଜେ ସେକ୍ରେଟାରୀଏଟ୍‌କୁ ଯିବି । ଆଜି ଦିନର ଦରମା ତ ମତେ ନେବାକୁ ହବ ?

ଗୀତା – ନା, ଆଜିଠାରୁ ତମର ଛୁଟିର ଆରମ୍ଭ ।

ରାଜେନ୍ଦ୍ର – ଆଜିଠାରୁ ? କିଏ କହିଲା ? ଆଚାର୍ଯ୍ୟ ମହାଶୟଙ୍କଠାରୁ କୌଣସି ଉତ୍ତର ମୁଁ ଏ ପର୍ଯ୍ୟନ୍ତ ପାଇନାହିଁ ।

ଗୀତା – ମୁଁ ନିଜେ ତାଙ୍କୁ ଅନୁରୋଧ କରିଥିଲି – ଆଜିଠୁ ତୁମେ ଛ'ମାସ ଛୁଟିରେ ଯିବ ବୋଲି – ସେ ରାଜି ହୋଇଛନ୍ତି ।

ରାଜେନ୍ଦ୍ର – ରାଜି ହୋଇଛନ୍ତି !! ତମେ ଠିକ୍ କହୁଚ ଗୀତା – ସେ ରାଜିହୋଇଛନ୍ତି ।

ଗୀତା – ହଁ ।

ରାଜେନ୍ଦ୍ର – (ଟିକେ ଭାବି) ବୁଝିଲି, କିନ୍ତୁ – ଏ ଦୀର୍ଘ ଛ'ମାସ ମୋର କଟିବ କେମିତି ? ମୁଁ ଦଶବର୍ଷ ପଛକୁ ଫେରି ଚାହିଁ ଦେଖୁଚି, ଦଶ ଦିନ ସୁଦ୍ଧା ମୁଁ ଆଳସ୍ୟରେ କଟାଇନାହିଁ । ଏ ଦୀର୍ଘ ଛ ମାସ !! ମୋର ଭୟ ହେଉଚି ଗୀତା – କାହାକୁ ଅବଲମ୍ବନ କରି ମୋର ଏ ଦୀର୍ଘଦିନ କଟିବ – କାହାକୁ ? (ଆଉ କହିବାର ଅବସର ସେ ପାଇଲେନାହିଁ । ଗୀତା ତାଙ୍କ ଚୌକି ପଛରେ ଗୋଟିଏ ଗୀତର ପଦଟିଏ ମାତ୍ର ଅନୁଚ୍ଚ ସ୍ୱରରେ ଗୁଣୁଗୁଣୁ ହୋଇ ରାଜେନ୍ଦ୍ରର କାନ ପାଖରେ ଗାଇଲା । କିଛି ସମୟ ପାଇଁ ରାଜେନ୍ଦ୍ରର ଆଖି ବୁଜି ହୋଇଆସିଲା ।)

ରାଜେନ୍ଦ୍ର – ପୁରୁଷର ଶୁଷ୍କ, ନୀରସ ହୃଦୟର ଅନ୍ତରାଳରେ ଯେଉଁ ସରସତା, ଯେଉଁ ସବୁଜତା ଆତ୍ମଗୋପନ କରିଥାଏ; ତାକୁ ଆବିଷ୍କାର କରିପାରେ ଏକମାତ୍ର ନାରୀ– ତମକୁ ଏଡ଼ାଇଦେଲେ ହୁଏନା ଗୀତା !

ଗୀତା – ପଦେ ଗୀତର ଏତେ ମାହାତ୍ମ୍ୟ ?

ରାଜେନ୍ଦ୍ର – ଗୀତର ମାହାତ୍ମ୍ୟ ନୁହେଁ, ଗୀତାର ମହାତ୍ମ୍ୟ ।

ଗୀତା– (ଟେବୁଲ୍ ଉପରୁ ଭଗବତ୍‌ଗୀତା ଉଠାଇ) ଏଇ ଗୀତାର ମାହାତ୍ମ୍ୟ ।

ରାଜେନ୍ଦ୍ର – ଏଇ ଭଗବତ୍ ଗୀତା । ଏଥିରେ ଭଗବାନ୍ ଶ୍ରୀକୃଷ୍ଣ ସଂସାରରେ ସବୁ ଅସାରତା ପ୍ରମାଣ କରାଇ ଅର୍ଜୁନଙ୍କୁ ବିଷମ ସଂସାରୀ ହେବାର ଉଦ୍‌ବୋଧନ ଦେଇଅଛନ୍ତି । ଲକ୍ଷ୍ୟ ହାସଲପାଇଁ ଏହା ଏକ ପରସ୍ପରବିରୋଧୀ ପଥ । ତମେ ଠିକ୍ ଏଇ ପଥ ଅନୁସରଣ କରୁଚ ?

ଗୀତା – କୌଣସି କଥା ନିଜେ ବୁଝିବାକୁ ଚେଷ୍ଟା କରିବା ତମର ଉଚିତ୍ ନୁହେଁ – ଅଥଚ ତମେ ମତେ ବୁଝାଇବାକୁ ଆରମ୍ଭ କରିଦେଲେଣି ।

ରାଜେନ୍ଦ୍ର – କିଏ ଆସିଲା ବୋଧହୁଏ । (ଗୀତା ଆଗେଇଗଲା ଦରଜା ଆଡ଼କୁ)

ଗୀତା – (ନମସ୍କାର କରି) ମଉସା – ଆପଣ ହଠାତ୍ ।

(ଶର୍ମା ପ୍ରବେଶ । ରାଜେନ୍ଦ୍ର ନମସ୍କାର କଲା)

ରାଜେନ୍ଦ୍ର - ବସନ୍ତୁ ! (ଶର୍ମା ବସିଲେ)

ଶର୍ମା - (ଗୀତାକୁ) କ'ଣ କହୁଥିଲୁ ମା' - ହଠାତ୍ ଆସିଗଲି । କିନ୍ତୁ ହଠାତ୍ ଆସିବା କଥାଟା ତ ଆଦୌ ଠିକ୍ ନୁହେଁ । ତମ ବିବାହର ପ୍ରାୟ ପାଞ୍ଚମାସ ପରେ ଏଇ ପ୍ରଥମ ତମ ଘରକୁ ଆସିଲି ।

ରାଜେନ୍ଦ୍ର - କିନ୍ତୁ ଏଠିକି ଆସିବା ପାଇଁ ଆପଣ ସଙ୍କୋଚବୋଧ କରିବେ କାହିଁକି ?

ଶର୍ମା - ଗୀତା ସହିତ ତୁମର ବିବାହ ହେଲା । ତା'ପରେ ହେଲା ଇଲେକ୍‌ସନ୍ - ଇଲେକ୍‌ସନ୍‌ରେ ତମ ଦଳ ଜିତିଲା - ଆମ ଦଳ ହାରିଲା - ତମେ ମନ୍ତ୍ରୀ ହେଲ । ଏ ସବୁକୁ ମିଳାଇଦେଲେ ଆମ ଭିତରେ ଯେପରି ଗୋଟାଏ ପାଚିରି ଠିଆହୋଇଚି ବୋଲି ମନେହେଉଚି ।

ରାଜେନ୍ଦ୍ର - ଆପଣ ଆସିଚନ୍ତି - ଭଲ ହୋଇଚି । ଆପଣ କୁହନ୍ତୁ ଏ ତିନିମାସ ଶାସନ ଚଳେଇ ଆମେ କ'ଣ କରିଚୁ ନକରିଚୁ - କ'ଣ ଆପଣଙ୍କର ଧାରଣା ?

ଶର୍ମା - କ୍ଷମା କର ରାଜେନ୍ଦ୍ର ବାବୁ - ତମେ କ'ଣ କରିଚ ନକରିଚ ତା'ର ହିସାବ ଆମେ ଦବୁ ଆଗାମୀ ଆସେମ୍ବ୍ଲିରେ । ସେ ଆଲୋଚନା ପାଇଁ ମୁଁ ଆସିନି । ତମେ କୁହ, ତମ ଦେହ କେମିତି ଅଛି ।

ରାଜେନ୍ଦ୍ର - ଦେହ ଅବଶ୍ୟ ଭଲନାହିଁ, କିନ୍ତୁ.....

ଶର୍ମା - କିନ୍ତୁ ଯାହାହେଉ, ତମର ବିଶ୍ରାମ ନେବା ଉଚିତ୍ ।

ରାଜେନ୍ଦ୍ର - ନେଉଚି ତ.....ସିଗ୍ରେଟ୍.... ?

ଶର୍ମା - କ୍ଷମା କର - ଖାଇବିନାହିଁ । ଶୁଣିଲି ତମେ ସିଗ୍ରେଟ୍ ଛାଡ଼ିଦେଇଚ ?

ରାଜେନ୍ଦ୍ର - ହଁ ।

ଶର୍ମା - କ'ଣ ଦେହ ଖରାପ ବୋଲି ?

ରାଜେନ୍ଦ୍ର - ନା ଦେହପାଇଁ ନୁହେଁ ।

ଶର୍ମା - ଓ - ମନେପଡ଼ିଲା - ଖବରକାଗଜରେ ବାହାରିଥିଲା । ତମେ ମନ୍ତ୍ରୀ ହେଲା ପରେ ସିଗ୍ରେଟ୍ ଛାଡ଼ିଦେଇଚ ।

ରାଜେନ୍ଦ୍ର - ଏଇ ସାମାନ୍ୟ କଥା ଯେ ଖବରକାଗଜକୁ ଯାଏ କିମିତି ?

ଶର୍ମା - ଜଣେ ମନ୍ତ୍ରୀ ସିଗ୍ରେଟ୍ ଛାଡ଼ିଦେବା ସାମାନ୍ୟ କଥା ନୁହେଁ । ବିଶେଷତଃ ହକରମାନଙ୍କୁ ଡାକିବା ପାଇଁ ଏହା ଏକ ଚମକପ୍ରଦ ଖବର ।

ରାଜେନ୍ଦ୍ର - କୌଣସି ଉଦ୍ଦେଶ୍ୟ ରଖି କିମ୍ବା କୌଣସି ଆଦର୍ଶ ପ୍ରଚାର ନିମନ୍ତେ ମୁଁ ସିଗ୍ରେଟ୍ ଛାଡ଼ିନାହିଁ ।

ଶର୍ମା - ତମେ କାହିଁକି ସିଗ୍ରେଟ୍ ଛାଡ଼ିଚ ତମେ ହୁଏତ ଜାଣନା । କିନ୍ତୁ ଚା'ଦୋକାନ ଆଉ ନଈକୂଳରେ ଏକଥା ବହୁମୁଖରେ ଆଲୋଚିତ ହୋଇ ତମ ସପକ୍ଷରେ ଓ ବିପକ୍ଷରେ ବହୁ ମତ ପ୍ରକାଶ ପାଇଥିବ । (ବାହାରୁ କେହି ଆସିବାର ସଙ୍କେତ ଜଣାଗଲା - ରାଜେନ୍ଦ୍ର ନିଜେ ଦ୍ୱାର ନିକଟକୁ ଉଠିଗଲେ - ଭିତରପଟୁ ଆସିଲା ଗୀତା - ହାତରେ କପେ ଚା')

ଗୀତା - (ଶର୍ମାଙ୍କୁ) ନିଅନ୍ତୁ ।

(ଚା'କପ୍‌ଟି ଶର୍ମାଙ୍କ ହାତକୁ ବଢ଼ାଇଦେଲା - ଠିକ୍ ସେତିକିବେଳେ ରାଜେନ୍ଦ୍ର ସହିତ ପଶିଆସିଲେ ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟ - ଆଚାର୍ଯ୍ୟ ଯେ ପୂର୍ବର ଆଚାର୍ଯ୍ୟ ନୁହନ୍ତି ଏ କଥା ତାଙ୍କ ବ୍ୟବହାରରୁ ସୁସ୍ପଷ୍ଟ । ଅବଶ୍ୟ ମୁଖ୍ୟମନ୍ତ୍ରୀ ହୋଇଛନ୍ତି ବୋଲି ତାଙ୍କର ବୃଥା ଗର୍ବ କିମ୍ବା ଦମ୍ଭ ବଢ଼ିନାହିଁ; କିନ୍ତୁ Superiority Complex ଭାବଟା ଏପରି ନିପୁଣତା ସହ ପ୍ରକାଶପାଇଛି ଯେ, ଏ ଭାବଟା ଯେପରି ତାଙ୍କର ସ୍ୱଭାବସିଦ୍ଧ, ଏ କଥା ସେ ଜଣାଇବାକୁ ଚାହାନ୍ତି । ତାଙ୍କର ଚାଲିଚଳନ ସବୁଥିରୁ ଏହା ବୁଝାଯାଉଥାଏ ଯେ, ସେ ଯେପରି ଗୋଟାଏ ମିନିଟ୍ ସମୟ କେଉଁଠି ନଷ୍ଟ କରିବାକୁ ଚାହାନ୍ତି ନାହିଁ । ଏସବୁ ସଙ୍ଗେ ସଙ୍ଗେ ଜଣେ ପ୍ରସିଦ୍ଧ ନେତା ଓ ପ୍ରବୀଣ କୂଟନୀତିଜ୍ଞର ସମସ୍ତ ଲକ୍ଷଣ ପରିପୂର୍ଣ୍ଣ ରହିଚି । ଆସିବା ସଙ୍ଗେ ସଙ୍ଗେ ତାଙ୍କ ଆଖିପଡ଼ିଚି ଶର୍ମା ଉପରେ, ତଥା ଶର୍ମାଙ୍କର ଗୀତା ହାତରୁ ଚା' କପ୍‌ଟା ଗ୍ରହଣ କରିବାର ଦୃଶ୍ୟଟା ଉପରେ । ମୁହୂର୍ତ୍ତକରେ ସେ ଏଥିରୁ ଅନେକ କଥା ବୁଝିନେଇ, ଅନ୍ୟ ମୁହୂର୍ତ୍ତରେ ସେସବୁକୁ ଆଡ଼େଇ ଦେଇଛନ୍ତି; କିନ୍ତୁ ତାଙ୍କର ଉପସ୍ଥିତି ଏ କଥା ସୂଚାଇଦେଉଥାଏ ଯେ, ସେ ଏ ରାଜ୍ୟରେ ମୁଖ୍ୟମନ୍ତ୍ରୀ, ଅତଏବ ଏଠାରେ ସବୁଠୁ ସମ୍ମାନାସ୍ପଦ ଅତିଥି । ମୁହଁରେ କିନ୍ତୁ ସେଇ Diplomatic ହସ.....ଆଚାର୍ଯ୍ୟଙ୍କୁ ଏଠି ଏମିତି ଦେଖିବାର ଆଶା ଶର୍ମାଙ୍କର ଆଦୌ ନ ଥିଲା । ଏହାପରେ ଏଠି ସେ ରହିବା ଉଚିତ୍ କି ନା କେବଳ ଏଇ ପ୍ରଶ୍ନ ତାଙ୍କ ମନରେ ଦେଖାଦେଲା । ଚା' କପ୍‌ଟି ଟେବୁଲ୍ ଉପରେ ରଖିଦେଇ ଉଠି ଠିଆହେଲେ - ଗୀତା ଆଚାର୍ଯ୍ୟଙ୍କୁ ନୀରବ ନମସ୍କାର ଜଣାଇଲା ।)

ଶର୍ମା - ନମସ୍କାର - (ଆଚାର୍ଯ୍ୟ ଘର ଭିତରକୁ ଆସିବା ସଙ୍ଗେ ସଙ୍ଗେ ସମସ୍ତଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ନମସ୍କାର ଜଣାଇ ସାରିଥା'ନ୍ତି । ଏଇ ଅବସରରେ ଗୀତା ଭିତରକୁ ଚାଲିଗଲା ।)

ଆଚାର୍ଯ୍ୟ - (ହସି ହସି) ଖବର କହନ୍ତୁ, ଅବଧୂତବାବୁ ! ଆପଣଙ୍କ ଜୟନ୍ତୀ ଉତ୍ସବ କେତେଦୂର ଗଲା । ଆପଣଙ୍କ କଥା ବହୁବାର ଆମ ଭିତରେ ଆଲୋଚିତ ହୁଏ, ନା ରାଜେନ୍ଦ୍ରବାବୁ !

ଶର୍ମା - ନନ୍ଦପୁର ମେଲଣପଡ଼ିଆ ସଭା କଥା, ଆପଣଙ୍କ ସ୍ମରଣ ଅଛି ?

ଆଚାର୍ଯ୍ୟ - ସେ କଥା ଭୁଲିବ କିଏ ? ଗୋଟାଏ ନିର୍ବାଚନ ସଭାରେ ଦୁଇ ବିରୁଦ୍ଧ ଦଳ ବକ୍ତୃତା ଦେବା ଆମ ଦେଶରେ ପ୍ରାୟ ଦେଖାଯାଏ ନାହିଁ ।

ଶର୍ମା - ସେଇଦିନ ମୋର ଜୟନ୍ତୀ ଉତ୍ସବ ମୁଁ ପାଳନ କରିଥିଲି - ସଭା ଶେଷରେ ସେଇ ନାଚ ଗୀତ ମୋତେ ଅଭିନନ୍ଦନ ଉଦ୍ଦେଶ୍ୟରେ ହୋଇଥିଲା ବୋଲି ମୁଁ ଧରିନେଇଚି ।

(ଆଚାର୍ଯ୍ୟ କେବଳ ହୋ-ହୋ ହୋଇ ହସି କଥାଟାକୁ ଉଡ଼େଇଦେବା ଛଡ଼ା ଅନ୍ୟ ବାଟ ପାଇଲେ ନାହିଁ - ଏ ବିପଦରୁ ତାଙ୍କୁ ରକ୍ଷା କଲା ଗୀତା - ଗୋଟାଏ ସୁନ୍ଦର ଗ୍ଲାସ୍‌ରେ କିଛି ପାନୀୟ ଆଣି ସେ ଆଚାର୍ଯ୍ୟଙ୍କୁ ଅର୍ପଣ କଲା ।)

ଗୀତା -ଭିମ୍‌ଟୋ....

ଆଚାର୍ଯ୍ୟ - (ଗ୍ଲାସ୍‌ଟି ନେଇ) ଭିମ୍‌ଟୋ ! ମୋର ପ୍ରିୟ ପାନୀୟ । ଧନ୍ୟବାଦ (ପିଇଲେ) ଜାଣନ୍ତି; ଶ୍ରୀଯୁକ୍ତ ଶର୍ମା - ଆମେ ସ୍ଥିରକରିଛୁ, ଏଣିକି ଶତକରା ୩୦ ଜଣ ସ୍ତ୍ରୀଲୋକଙ୍କୁ ଆମ ଦଳ ପକ୍ଷରୁ ଆସେମ୍‌ବ୍ଲିକୁ ଯିବାର ସୁବିଧା ଦିଆଯିବ ।

(ଗୀତା ଶୁଣି ଚାଲିଗଲା)

ଶର୍ମା - ଏଥିରେ ଆପଣଙ୍କ ସହିତ ମୁଁ ସଂପୂର୍ଣ୍ଣ ଏକମତ; କିନ୍ତୁ କେବଳ ସ୍ତ୍ରୀମାନଙ୍କୁ ନୁହେଁ - ସ୍ୱାମୀ, ସ୍ତ୍ରୀ ଉଭୟଙ୍କୁ ଆସେମ୍‌ବ୍ଲି ମେମ୍ୱର ହେବାର ସୁବିଧା ଦିଆଯିବା ଦରକାର ।

ଆଚାର୍ଯ୍ୟ କାହିଁକି ?

ଶର୍ମା - ଜନ୍ମ ନିୟନ୍ତ୍ରଣ ବା Planned Parent-hood ର ସମାଧାନ ପାଇଁ ଆସେମ୍‌ବ୍ଲିରେ ପୁରୁଷ ସଭ୍ୟ ଓ ନାରୀ ସଭ୍ୟାଙ୍କ ମଧ୍ୟରେ ବିଶେଷ ଟେବୁଲ୍ ପିଟାପିଟିର ଅବକାଶ ରହିବ ନାହିଁ ।

ଆଚାର୍ଯ୍ୟ - (ହସି) ଆପଣ ତେବେ ଏ ସୁଯୋଗ ପ୍ରଥମେ ଦେବା ଉଚିତ୍ ।

ଶର୍ମା - ନିଅନ୍ତି, କିନ୍ତୁ ମୋ ସ୍ତ୍ରୀ ବୋଧହୁଏ ଆସେମ୍‌ବ୍ଲି ମେମ୍ୱର ହେବାକୁ ରାଜିହେବନାହିଁ । କାରଣ ଆମ ପାଞ୍ଚ ଭାଇଙ୍କର ୪୦ ଜଣ କୁଟୁମ୍ବଙ୍କୁ ନେଇ ଆମର ଯେଉଁ ଘରୋଇ ଆସେମ୍‌ବ୍ଲି, ସେଥିରେ ସେ ବହୁଦିନ ଧରି ସ୍ପିକରଙ୍କ କାମ ଚଳେଇଆସିଚି । ଆସେମ୍‌ବ୍ଲି ମେମ୍ୱର ହେବାର ତା'ର ଆଉ ଲୋଭନାହିଁ ।

(ଏଥର ମଧ୍ୟ ଆଚାର୍ଯ୍ୟ ପୂର୍ବପରି ହସିବାକୁ ଲାଗିଲେ । ଗୀତା ଆସିଲା - ଆଚାର୍ଯ୍ୟଙ୍କ ଉଦ୍ଦେଶ୍ୟରେ ହାତରେ ଗୋଟିଏ ପ୍ଲେଟ୍ ।)

ଗୀତା - ଗୁଆ-ମସଲା ।

ଆଚାର୍ଯ୍ୟ - ଧନ୍ୟବାଦ !

ଶର୍ମା - ମୁଁ ଏଥର ଆସୁଚି ମା' -

ଗୀତା - ଆପଣଙ୍କ ଚା'.....

ଆଚାର୍ଯ୍ୟ - ସତେ ତ ! ଚା' ଖାଇଲେ ନାହିଁ ଯେ ?

ଶର୍ମା - ଥଣ୍ଡା ହୋଇଗଲାଣି ।

ଗୀତା - ଟିକିଏ ରୁହନ୍ତୁ - ଗରମ ଚା' ଆଣି ଦଉଚି ।

ଶର୍ମା - ତୁ ଗରମ ଚା' ଆଣି ଦେଇଥିଲୁ - ମୁଁ ଖାଇ ନପାରି ଥଣ୍ଡା କରି ଥୋଇଚି (ଆଚାର୍ଯ୍ୟଙ୍କୁ କଟାକ୍ଷରେ ଚାହିଁ) ଦୋଷଟା ଚା'ର ନୁହେଁ । ମୋର । ଅତଏବ ମୋର ଆଉ ଚା' ଖାଇବା ଉଚିତ୍ ନୁହେଁ, ମୁଁ ଆସୁଚି....ନମସ୍କାର.... (ଚାଲିଗଲେ)

ଆଚାର୍ଯ୍ୟ - ଦେହର ଅବସ୍ଥା କିପରି ରାଜେନ୍ଦ୍ରବାବୁ !

ଗୀତା - ଆଦୌ ଭଲନୁହେଁ ।

ଆଚାର୍ଯ୍ୟ - ତମର ଖୁବ୍ ଶୀଘ୍ର ବିଶ୍ରାମ ନେବା ଦରକାର । ଆଜିଠାରୁ ତୁମ ଛୁଟିର ବନ୍ଦୋବସ୍ତ ମୁଁ କରିଚି । କେଉଁଠିକି ଯିବ ?

ଗୀତା – ସୁଇଜରଲାଣ୍ଡ....

ଆଚାର୍ଯ୍ୟ – ମୁଁ ଠିକ୍ ତାହାହିଁ ଭାବୁଥିଲି – ତମର କିଛିଦିନ ସୁଇଜରଲାଣ୍ଡରେ ରହିବା ଉଚିତ୍...ହଁ ଏଥିପାଇଁ ତମର ଯାହା ଖର୍ଚ୍ଚ ହେବ ସେ ସମସ୍ତ ସରକାରରୁ ତମେ ପାଇବ ।

ରାଜେନ୍ଦ୍ର – ନା !

ଆଚାର୍ଯ୍ୟ – ନା ! !

ରାଜେନ୍ଦ୍ର – ଟଙ୍କାର ଯୋଗାଡ଼ ହୋଇଯାଇଛି ।

ଆଚାର୍ଯ୍ୟ – ହେଲା କେମିତି ? ମୁଁ ତ ଜାଣେ ତମ ନିଜର କୌଣସି ସମ୍ବଳନାହିଁ ।

ରାଜେନ୍ଦ୍ର – ଗୀତା ତା'ର ସମସ୍ତ ସମ୍ପତ୍ତି ବିକି ଟଙ୍କା ବ୍ୟାଙ୍କ୍‌ରେ ରଖିଚି । ମୋ ଚିକିତ୍ସାର ସମସ୍ତ ଖର୍ଚ୍ଚ ଏଇ ଟଙ୍କାରୁ ଚାଲିଚି ।

ଆଚାର୍ଯ୍ୟ – ଭଲ କଥା । ହଁ, ତମ ଦରମାରୁ ତମର ସାଧାରଣ ଖର୍ଚ୍ଚ ଯାଇ ଯାହା ବଳିବ, ସେତକ ସରକାରଙ୍କୁ ଫେରାଇଦେବ ବୋଲି ତମେ ଯେଉଁ ପ୍ରସ୍ତାବ ଦେଇଥିଲ, ସେଟା ଉଚିତ୍ ହେବ ବୋଲି କ'ଣ ତମର ବିଶ୍ୱାସ ? କ'ଣ କହୁଚ ? ଆଚ୍ଛା, ତମେ ଆଗ ଛୁଟିରୁ ଫେର ।....କିଛି ଚିନ୍ତାନାହିଁ ଗୀତା ଦେବୀ – ମୋର ଆଶୀର୍ବାଦ ଓ ଦେଶବାସୀଙ୍କ ଶୁଭେଚ୍ଛାରୁ ରାଜେନ୍ଦ୍ରବାବୁ ଖୁବ୍ ଶୀଘ୍ର ସୁସ୍ଥ ହୋଇ ଫେରିଆସିବେ । (ଗୀତା ସାମାନ୍ୟ ହସି ପ୍ଲେଟ୍ ପ୍ରଭୃତି ନେଇ ଚାଲିଗଲା ।)

ରାଜେନ୍ଦ୍ର – ଏ ଚିଠିଟା ପଢ଼ନ୍ତୁ ।

ଆଚାର୍ଯ୍ୟ – ଚିଠି ! କିଏ ଦେଇଚି ? (ପଢ଼ିଲେ)

ମାନ୍ୟବର ରାଜେନ୍ଦ୍ରବାବୁ, ସରକାରୀ ବୃତ୍ତିରେ ଜାପାନକୁ ଉଚ୍ଚଶିକ୍ଷା ପାଇଁ ଯିବା ନିମନ୍ତେ ୩୫୮ ଜଣ ପ୍ରାର୍ଥୀଙ୍କ ଭିତରୁ ଯେଉଁ ୧୨ ଜଣ ବଛାହେଲେ, ସେମାନଙ୍କ ମଧ୍ୟରେ ମାନ୍ୟବର ମନ୍ତ୍ରୀ ଦେବାନନ୍ଦ ସାମନ୍ତରାୟଙ୍କ ପୁଅ ରବୀନ୍ଦ୍ର ସାମନ୍ତରାୟ ଅଛନ୍ତି । ସେ ମନ୍ତ୍ରୀଙ୍କ ପୁଅ ହେଲେ ବୋଲି ସରକାରୀ ବୃତ୍ତି ପାଇବେ ନାହିଁ, ଏଭଳି ଯୁକ୍ତି ଯିଏ କରେ ସେ ଅବିବେକ । କାରଣ ଶ୍ରୀମାନ୍ ରବୀନ୍ଦ୍ର ଜଣେ ମେଧାବୀ ଛାତ୍ର । ତାଙ୍କ ନିଜର ଯୋଗ୍ୟତା ବଳରୁ ଏ ବୃତ୍ତି ପାଇବାକୁ ସେ ହକ୍‌ଦାର । ଏ ସମ୍ବନ୍ଧରେ ପୂର୍ବରୁ ନଜିର ମଧ୍ୟ ରହିଛି । ଯେହେତୁ ପୂର୍ବ ମନ୍ତ୍ରୀମଣ୍ଡଳର ଜଣେ ମାନବ୍ୟର ମନ୍ତ୍ରୀଙ୍କର ପୁଅ ସରକାରୀ ବୃତ୍ତି ପାଇ ଆମେରିକା ଯାଇଥିଲେ । ଅତଏବ, ଆପଣଙ୍କ ମନ୍ତ୍ରୀମଣଳ ନିରାପଦ ।

## (ଦୁଇ)

ତାଳପଟା ନଈ ବନ୍ଧ ଭାଙ୍ଗୁଚି ବୋଲି ଶୁଣି ଦୁଇଦିନ ତଳେ ନିଜେ ମୁଖ୍ୟମନ୍ତ୍ରୀ ମଟର ଘେନି ଛୁଟିଲେ । ମାତ୍ର ତିନି ଘଣ୍ଟା ପରେ ପହଞ୍ଚି ନିଜେ ମାଟି ବୋହି ବନ୍ଧରେ ପକାଇଲେ ଓ ତାଙ୍କୁ ଦେଖି ହଜାର ହଜାର ଲୋକ ମାଟି ବୁହାଇବାରୁ ବନ୍ଧ ଭାଙ୍ଗିଲାନାହିଁ,

ମଟର ନଥିଲେ ପଚାଶ ବର୍ଷ ବୟସ ମୁଖ୍ୟମନ୍ତ୍ରୀ ଚାଲିଚାଲି ତିନିଦିନରେ ସେଠି ପହଞ୍ଚିଥା'ନ୍ତେ । ଫଳରେ ବନ୍ଧ ଭାଙ୍ଗିଥା'ନ୍ତା । ମନ୍ତ୍ରୀମାନେ ମଟର ଚଢ଼ୁଛନ୍ତି ବୋଲି ଯେଉଁମାନେ ସମାଲୋଚନା କରୁଛନ୍ତି ସେମାନେ କ୍ଷମାର ପାତ୍ର । ଏଥିରେ ମଧ୍ୟ ପୂର୍ବ ନଜିର ରହିଚି - ଯେହେତୁ ପୂର୍ବର ସବୁମନ୍ତ୍ରୀ ମଟର ଚଢ଼ୁଥିଲେ । ଅତଏବ ଆପଣମାନେ ଏ ବିଷୟରେ ମଧ୍ୟ ନିରାପଦ । କିନ୍ତୁ ମୋର ଏତିକି ଦୁଃଖ ଯେ ମନ୍ତ୍ରୀତ୍ୱ ପାଇଲେ ଆପଣମାନେ ସଙ୍ଗେସଙ୍ଗେ ଦେଶକୁ ଓଲଟାଇ ଦେବେ ବୋଲି କହିଥିଲେ - ତିନିମାସ ପରେ ମୁଁ ଦେଖୁଚି, ଆମ ଏଠାକାର ଆକାଶର ରଙ୍ଗ ସେଇ ନୀଳ, ପାହାଡ଼ର ରଙ୍ଗ ଧୂସର ଓ ଘାସର ରଙ୍ଗ ସବୁଜ । ସବୁଠୁ ମଜାର କଥା, ସରକାରୀ ଅଫିସ୍ ଫାଇଲ୍‌ରେ ଥିବା ଫିତାର ରଙ୍ଗ ସେଇ ଲାଲ୍, ଦୟାକରି ଏ ଫିତାର ରଙ୍ଗ କଳା କରିଦିଅନ୍ତୁ, ଅନ୍ତତଃ ଏଇ ସୋଜା କାମଟା ହୋଇଯାଇ, ନାଁ ରହିଯିବ । ତିନିମାସ ଆଉ ବିଶେଷ କିଛି ହୋଇ ନାହିଁ ବୋଲି ଲେଖୁନାହିଁ । ଇତି ।

ଆପଣଙ୍କର ଶ୍ରୀ ସତ୍ୟବାଦୀ ସାମଲ

(ମେଟ୍ରିକ୍ ପାସ୍)

ରାଜଧାନୀ ଅଞ୍ଚଳ କଣ୍ଟ୍ରାକ୍‌ଟରମାନଙ୍କର ମାଟିବୁହା କୁଲି । (ଚିଠିଟି ପଢ଼ିସାରି ଆଚାର୍ଯ୍ୟ ଆଦୌ ବିଚଳିତ ହୋଇନାହାନ୍ତି - ଚିଠିଟି ପଢ଼ି ଦୁଇଫାଳ କରି ଚିରିଦେଲାବେଳେ ଚିଠିଟାର ପଛପଟେ ଦୃଷ୍ଟି ପଡ଼ିଲା ।)

ଆଚାର୍ଯ୍ୟ - ଏ ପାଖରେ ବି ତ କ'ଣ ଲେଖାହୋଇଛି (ପଢ଼ିଲେ) "ମୁଁ ଜାଣେ ଆପଣ ଏ ଚିଠି ପଢ଼ିସାରି ଚିରିଦେବେ, ତଥାପି ଲେଖିଲି ।" ଏଥିରେ କିଛି କହିବାର ଅଛି ରାଜେନ୍ଦ୍ରବାବୁ । (କହୁ କହୁ ଚିଠିଟାକୁ ଟିକିଟିକି କରି ଚିରିଦେଲେ)

ରାଜେନ୍ଦ୍ର - ମୁଁ ଠିକ୍ ବୁଝିପାରୁନି ତା'ର ଏମିତି ଏକ ଚିଠି ଲେଖିବାର ଉଦ୍ଦେଶ୍ୟ କ'ଣ ? ପୁଣି ନିଜର ସମସ୍ତ ପରିଚୟ ଦେଇଚି ।

ଆଚାର୍ଯ୍ୟ - ବ୍ୟକ୍ତିସ୍ୱାତନ୍ତ୍ର୍ୟ । ନାଗରିକ ଅଧିକାର ! ! ଗଣତନ୍ତ୍ର ଶାସନରେ ସରକାରଙ୍କୁ ଏପରି ଲେଖିବାର ଅଧିକାର ତା'ର ଅଛି - ଏଇ କଥା ହୁଏତ ସେ ଜଣାଇଦେବାକୁ ଚାହେଁ ।

ରାଜେନ୍ଦ୍ର - ଜଣେ ବିଶିଷ୍ଟ ସାହିତ୍ୟିକ କହିଚନ୍ତି.... "ନିଜ ବାସଭୂମିରେ ପରବାସୀ ହେବାରେ ଦୁର୍ଭାଗ୍ୟ ଆମ ଜାତିର ଅଛି ।" ତା' ନିଜ ଗାଁ ମାଟିରେ ଶିକ୍ଷିତ ଯୁବକ ସତ୍ୟବାଦୀ ଜଣେ ବିଦେଶୀ କଣ୍ଟ୍ରାକ୍ଟର ଅଧୀନରେ କୁଲି - ଏଥିପାଇଁ କ'ଣ ତା ମନରେ ବିଦ୍ରୋହରେ ନିଆଁ ଜଳୁନାହିଁ ? ବ୍ୟଙ୍ଗବିଦ୍ରୂପ ଛଳରେ ଏ ଚିଠି ଖଣ୍ଡିକ ଲେଖିଲାବେଳେ ତା ନିଜ କଥା ସଙ୍ଗେ ସଙ୍ଗେ ତା ମନରେ ହୁଏତ ମୁହୂର୍ତ୍ତକ ପାଇଁ ଜାଗିଉଠିଥିବ - ତା'ଜାତିର କଥା - ତା'ଦେଶର କଥା ।

ଆଚାର୍ଯ୍ୟ - ହୁଏତ ଜାଗିଉଠିଥିବ - କିନ୍ତୁ ସେ ହେଉଚି ସେଇ ଶ୍ରେଣୀର ଦେଶପ୍ରେମୀ, ଯାହାର 'ଇନ୍‌କିଲାବ୍-ଜିନ୍ଦାବାଦ୍' ଶେଷ ହୁଏ ତା' ନିଜ ସ୍ୱାର୍ଥର ଜିନ୍ଦାବାଦ୍ ଧ୍ୱନିରେ । ସେମାନଙ୍କର ମୁହଁ ବନ୍ଦ କରିବାର ଉପାୟ ମତେ ବେଶ୍ ଜଣା । ତା ଚିଠିର ଉତ୍ତର ମୁଁ ଦେବି ।

ରାଜେନ୍ଦ୍ର - ଆପଣ ଦେବେ ? କ'ଣ ଦେବେ ?

ଆଚାର୍ଯ୍ୟ - (ଅଟ୍ଟ ହସି) ଏ ପ୍ରଶ୍ନ ତମେ ଆଚାର୍ଯ୍ୟକୁ କରୁଚ ରାଜେନ୍ଦ୍ର !

ରାଜେନ୍ଦ୍ର - ଏକା ରାଜେନ୍ଦ୍ର ନୁହେଁ - ସାରା ଦେଶ ଆଜି ଆପଣଙ୍କୁ ପ୍ରଶ୍ନଭରା ଦୃଷ୍ଟିରେ ଚାହିଁରହିଚି - ଚାହିଁ ରହିଚି, କାରଣ ଆପଣ ବୁଝନ୍ତି ସେ ପ୍ରଶ୍ନ କ'ଣ । ଆପଣ ଜାଣନ୍ତି ତା'ର ଉତ୍ତର କେଉଁଠି ?

(ଆଚାର୍ଯ୍ୟଙ୍କ ଭ୍ରୂକୁଞ୍ଚିତ ହୋଇଉଠିବା ସଙ୍ଗେ ସଙ୍ଗେ ଓଠରେ ଖେଳିଗଲା ସେଇ Diplomati ହସ ।

ଆଚାର୍ଯ୍ୟ - ହଁ, ରାଜେନ୍ଦ୍ର । ଗୀତା ଦେବୀ ତୁମ ସାଥିରେ ନିଶ୍ଚୟ ଯାଉଚନ୍ତି ?

ରାଜେନ୍ଦ୍ର - ହଁ ।

ଆଚାର୍ଯ୍ୟ - ତମ ପାସ୍‌ପୋର୍ଟ୍ ଓ ପ୍ଲେନ୍‌ର ବ୍ୟବସ୍ଥା ମୁଁ ଖୁବ୍ ଶୀଘ୍ର କରୁଚି - ଆଚ୍ଛା ମୁଁ ଆସେ (ଚାଲିଗଲେ, ଆସିଲା ଗୀତା)

ଗୀତା - କ'ଣ ଭାବୁଚ ?

ରାଜେନ୍ଦ୍ର - ଭାବୁଚି - "Government of the people, by the people and for the people shalll never perish from the earth."

## ଚତୁର୍ଥ ଦୃଶ୍ୟ

(ମଦର ମହାନ୍ତିଙ୍କ ଗୃହର ଅଳିନ୍ଦ, ଭିତରୁ ଆସିଲା ସୀତା । ବାହାର ପଟକୁ ଥରେ-ଦୁଇଥର ଚାହିଁ ହାତରେ ଇଙ୍ଗିତ କରି କାହାକୁ ଡାକିଲା - ସଙ୍ଗେ ସଙ୍ଗେ ଖୁବ୍ ଉତ୍ସାହର ସହିତ ଆସିଲା ମକୁନ୍ଦ - କୌଣସି ନୂଆ ସ୍ଥାନକୁ ଯିବାର ଉଦ୍ଦେଶ୍ୟରେ ତା ଶକ୍ତିମତେ ଲୁଗାପଟା ପିନ୍ଧିଚି । ହାତରେ ଗୋଟିଏ ବ୍ୟାଗ୍- ବ୍ୟାଗ୍‌ଟି ଦରକାରୀ ଜିନିଷପତ୍ରରେ ଭର୍ତ୍ତି ରହିଚି ।)

ମକୁନ୍ଦ - କ'ଣ ହେଲା ନାନୀ, ମଙ୍ଗିଲେଟି ?

ସୀତା - ପହିଲୁ ତ ହୁଙ୍କାରୀଟାଏ ଛାଡ଼ିଲେ - ପଛକୁ କେତେ ସାଉଁଳାସାଉଁଳି କଲାରୁ ଯାଇ....

ମକୁନ୍ଦ - ମଙ୍ଗିଛନ୍ତି ତ ?

ସୀତା - ହୁଁ.....

ମକୁନ୍ଦ - ନଜାଣି ଆଉ ମୁଁ ତୁମ ଆଶ୍ରା ଧରିଥିଲି - ତମେ ନ କହିଥିଲେ ମହାନ୍ତିଏ ମତେ ସାଙ୍ଗରେ ନବାକୁ ମଙ୍ଗିଥା'ନ୍ତେ !

ସୀତା - ତୁ ଏବେ ଯିବାକୁ ଉଛନ୍ନ ହେଉଛୁ କାହିଁକି ?

ମକୁନ୍ଦ - ନଯିବି କିମିତି କହିଲ ନାନୀ ? ପିଲାକବିଲା ନେଇ ଘରକରିଚି । କ'ଣ କୋଉ କୁଳର ନହୋଇ ଭାସିଯିବି ! ଆଚାର୍ଯ୍ୟ କୁଆଡ଼େ ରାବଣେଶ୍ୱର ପରି ଭାରି ପ୍ରତାପୀ ।

କଲମ ଗାରକେ ସବୁ ଉଡ଼େଇ ଦଉଚି । ମୋର ଚିଭ କେତେ ? କି ଆଣ୍ଟ ମୁଁ କରିନଥିଲି ? ହେଲେ ଶେଷକୁ ମୋଡ଼ିମୋଡ଼ି ହୋଇ, ପର-କଲମକୁ ଆଶ୍ରା କରି ରାଧୁ ପାଣିର ଶରଣ ପଶିଲି - ବେଳ ପଡ଼ିଛି ନାନୀ, ଦିନେ ଭଗବାନ୍ ବି ଗଧପାଦ ଧରିଥିଲେ । ନଇଲେ ରାଧୁ ପାଣି ଗୋଟାଏ ମଣିଷ ! ଏବେ ଦୋକାନ ସଉଦା ବାବଦକୁ ପଇସାଟାଏ ଦବାର ନାଁ ଧରୁନାହିଁ - ନନ୍ଦଉ, ଅକଳରେ ତ ପଡ଼ିଯାଇଚି ।

ସୀତା - ସେଇ କଥାରେ ମକୁନ୍ଦ - ବିଜୟ ଲେଖିଥିଲା, ଯାଙ୍କର କୁଆଡ଼େ ସେଠି ଭାରି ଖାତିରି, ଭାରି ମାନ.... (ଟିକିଏ ଚାପା ଗଳାରେ) ଉପରେ ଉପରେ ସିନା ନିରପେକ୍ଷ ହେଲେ - ଭିତରେ ଭିତରେ....

ମକୁନ୍ଦ - ଯେ ମୁଁ କ'ଣ ସେ କଥା ଜାଣିନାହିଁ, ମହାନ୍ତିଏ ନଥିଲେ ପର-କଲମ ନା, କାଠି-କଲମ ।

ସୀତା - ମନ୍ତ୍ରୀଙ୍କ ପାଖକୁ ଯାଉଛନ୍ତି ବୋଲି କାଲି ରାତି ଅଧଯାଏ ରାଧୁ ପାଣି ଆଉ ଆମ ଇଏ ବସି ଏଡ଼େ ଲମ୍ବ ତାଲିକା କରିଚନ୍ତି ।

ମକୁନ୍ଦ - ବଢ଼ାର ତାଲିକା ?

ସୀତା - ନାଇଁବା - ଏ ଗାଁ କ'ଣ ଆଉ ଗାଁ ହୋଇ ରହିବ, ନାଲି ସଡ଼କ ହେବ । ଗାଁ ଦାଣ୍ଡରେ ନଳକୂଅ ବସିବ । ମାଇନର୍ ଇସ୍କୁଲ୍ ହବ । ମେଲଣପଡ଼ିଆରେ ଝୁଲଣ-ବେଦୀ ହେବ । ରାଧୁ ପାଣି କାନତରାଟି ହେବ । ଆଉ ଇଏ ହେବେ ପରପଞ୍ଚ, ପୋଡ଼ିଯାଉ ମୋ ପାଟି - ଏଇ କ'ଣଟି - ସରପଞ୍ଚ-ସରପଞ୍ଚ- ! !

ମକୁନ୍ଦ - ମୋ ଦାଉଲୋ-

ସୀତା - ଆଉ ଇଏ ଗାଁ ଯାତ୍ରାପାର୍ଟି ନୁହେଁ ।

ମକୁନ୍ଦ - (ଆଗ୍ରହରେ) ହଁ....

ସୀତା - ସେ ଆଉ ଯାତ୍ରା କରିବେନି ।

ମକୁନ୍ଦ - ଆଉ ?

ସୀତା - ଥେଟର୍ କରିବେ - ଥେଟର ।

ମକୁନ୍ଦ - କର୍ମିଲାରେ !

ମନ୍ଦର - (ଭିତରୁ) ସେବ ବୋଉ !

ସୀତା - ଯାଉଚି - ଜାଣିଲୁ ମକୁନ୍ଦ, ସବୁ ହେଉଚି - ମୋ କଥା ବେଳକୁ ଖାଲି ଘୁମୁରୁଚନ୍ତି । କହୁଚନ୍ତି - ଏ ଛୋଟ କଥାଗୁଡ଼ାକ ମୋ ଦେଇ ହେବନି, ମୋ ମାମଲତକାରୀ ଅଛି ତ ସବୁ ଅଛି ।

ମକୁନ୍ଦ - କଉ କଥା ନାନୀ ?

ସୀତା - ମୁଁ କହିଥିଲି ଦି' ଚାରିମାଣ ଜମିପାଇଁ । ଏତେ କାମ ଆମେ ତାଙ୍କ ପାଇଁ କଲୁ - ତାଙ୍କ ମୁଣ୍ଡରେ ସୁନାକଳସ ଢଳା ହେଲା - ସେ ସିଂହାସନରେ ଚଢ଼ିଲେ, ମନେକଲେ କ'ଣ

ଦି'ଚାରିମାଣ ଜମି କରିଦିଅନ୍ତେ ନାହିଁ । ମୋ ଭାଇଟା ପରା - ସେ ତାଲିକା ଦେଲାବେଳେ ତୁ ଖାଲି ଏଇ କଥାଟା ମନେପକାଇଦବୁ ।

ମକୁନ୍ଦ - ଏଇ ରାଧୁ ପାଣିଟା ନଯାଉଥିଲେ ମୁଁ ପରା ସେଇଠୁ ଜମି ନେଖେଇ ଆଣନ୍ତି ।

ମନ୍ଦର - ସେବ ବୋଉ ! (ଭିତରୁ ଡାକିଲେ)

ସୀତା - ଯାଉଚି -ମକୁନ୍ଦ ! ମନେ ରହିଲାଟି - (ଚାଲିଗଲେ)

ମକୁନ୍ଦ - (ସେଇଠି ବସି ଛତାକୁ ଦେଖି) ଏଇ ଛତା ପୁଣି ଏମିତି ଦଗା ଦେଲା - ବାଉଁଶବେଣ୍ଟ ନହୋଇ ଯଦି ଲୁହାବେଣ୍ଟ ହୋଇଥା'ନ୍ତା - (ରାଧୁ ପାଣି ଆସିଲା, ପୋଷାକପତ୍ରର ମାତ୍ରା ତା'ର ବଢ଼ିଯାଇଛି ମୋ.... (ଅଟକିଗଲା) ।

ରାଧୁ - ମୋ ! !

ମକୁନ୍ଦ - ମୋ ଭାଇଟା ଅଇଲାଣି - ହେଇତି ମୁଁ ଯିବି - ମହାନ୍ତିଏ ରାଜି ।

ରାଧୁ - (ସୁଟ୍‌କେଶ ଦେଇ) ନେ ଏଇଟା ଧର, ଆଉ ଶୁଣ, ତୋ ଭାଗ୍ୟ ତୁ ଆମ ସାଥିରେ ମନ୍ତ୍ରୀଙ୍କ ପାଖକୁ ଯାଉଚୁ, ହୁସିଆର କହୁଚି, ଆମେ ଯଉ ନାଇନ୍‌ରେ କଥା କହିବୁ, ତୁ ଠିକ୍ ସେଇ ନାଇନ୍‌ରେ ଚାଲିବୁ, ବୁଝିଲୁ ? ନଇଲେ - (ମନ୍ଦର ଆସିଲେ ବିଛଣା ସହ)

ରାଧୁ - ନେ ବିଛଣା ଧର, (ମକୁନ୍ଦ ସବୁ ଧରିଲା) ଯା, ତୁ ଆଗେ ଆଗେ ବାହାରି ଯା'-

(ମୁକୁନ୍ଦ ଚାଲିଗଲା)

ମନ୍ଦର - ଚାଲ ରାଧୁ !

ରାଧୁ - ସେଦିନ ଗାଁ ବାଲା ଯେମିତି ଅଡ଼ିବସିଥିଲେ -

ମନ୍ଦର - ଦେଖିଲ ତ ଗୋଟାଏ ଭଡ଼କରେ କେମିତି ସମସ୍ତେ ଥଣ୍ଡା !

ରାଧୁ - ହେଲେ, ଏଥର ଯଦି ଖାଲିହାତରେ ଫେରିବା, ତେବେ ନାକ ନିଶ ତଳେପଡ଼ିବା କଥା ।

ମନ୍ଦର - ତମେ ଥୟ ଧର ରାଧୁ - ଦେଖିବ ତାଲିକା ମାଫିକେ ସବୁ କାମ ହାସଲ କରେଇବି । (ରାଧୁ ଆଗେ ଆଗେ ଗଲା । ଭିତରୁ ଆସିଲା ସୀତା ।)

ସୀତା - କାଲି ସଞ୍ଜକୁ ଯେମିତି ଫେରିବ, ବିଜୟର ଖବର ନେବ- ଆଉ-

ମନ୍ଦର - କ'ଣ ? ଜମି ?

ସୀତା - ପାଞ୍ଚମାଣ ହେଲେ ତ କାହିଁରେ କ'ଣ -

ମନ୍ଦର - ହଉ, ମନେରହିଲା । ମୁଁ ଫେରିଲାବେଳକୁ ହଳ ଲଙ୍ଗଳ ବାନ୍ଧି ବସିଥିବ । ତମେ ମନ୍ଦର ମହାନ୍ତି ହାତ ଧରିଚ ପରା ! ମନ୍ଦର ମହାନ୍ତି ଯାଇ ହଳ ଢି ଢି କରିବ ? ଛୋଟ ଲୋକ ! !

(ଚାଲିଗଲେ)

## ପଞ୍ଚମ ଦୃଶ୍ୟ

(ମୁଖ୍ୟମନ୍ତ୍ରୀଙ୍କ ଅଫିସ୍ ସଂଲଗ୍ନ ସାଧାରଣ ଅପେକ୍ଷା ଗୃହ । ସାଦା କାଠର ଉପକରଣରେ ସଜ୍ଜିତ । ଖୁବ୍ ସତର୍କତା ଓ ସଙ୍କୋଚ ସହ ସେଠାକୁ ଆସିଲେ ମନ୍ଦର, ରାଧୁ ଓ ମକୁନ୍ଦ । ସେଠାକୁ ଆସି ସୁଦ୍ଧା ସେମାନେ ଯେପରି ଅନ୍ୟ କାହାରି ନିର୍ଦ୍ଦେଶକୁ ଅପେକ୍ଷା କରିଥା'ନ୍ତି । ଅପେକ୍ଷା ଗୃହର ତତ୍ତ୍ୱାବଧାରକ ସତ୍ୟବାଦୀଙ୍କ ସ୍ୱର ଭିତରୁ ଶୁଣାଗଲା ।)

ସତ୍ୟବାଦୀ - (ଭିତରୁ) ସେଇଠି ବସନ୍ତୁ ।

ମନ୍ଦର - ବସ ରାଧୁ..... ବସ ମକୁନ୍ଦ !

ରାଧୁ - ମକୁନ୍ଦା, ସୁଟ୍‌କେଶ ବିଛଣା ସବୁ ଯା ତଳେ ରଖିବେ

(ଗୋଟିଏ ଲମ୍ବ ବେଞ୍ଚ୍ ତଳେ ସେ ସବୁ ମକୁନ୍ଦ ରଖିଲା - ସେମାନେ ମଧ୍ୟ ସେଇ ବେଞ୍ଚରେ ବସିଲେ ।)

ମକୁନ୍ଦ -ହଇରେ ରାଧୁ, ଗାଁରେ ଡାକୁ ବୋଲି ଏଠି ତମେ ସେଇ ମକୁନ୍ଦା ବୋଲି ଡାକିବ ?

ରାଧୁ - କ'ଣ ହୋଇଗଲା ?

ମକୁନ୍ଦ - ଶୁଣୁଚ ଆଜ୍ଞା ? ମନ୍ତ୍ରୀ ଶୁଣିଲେ ଆମ ଓର କଳିନେବେନେଇଁ ?

ରାଧୁ - ବକ୍‌ବକ୍ ହ'ନା, ବସ୍ ।

ମନ୍ଦର - ଦେଖୁଚ ରାଧୁ ! କେଡ଼େ ସୁବିଧା କାମ - ଆମେ ଦେଖାକରିବାକୁ ଆସିଛୁ ବୋଲି ବସିବାକୁ ଆମକୁ ଆସନ ଦିଆଗଲା । ଉପରକୁ ଦେଖ, କେମିତି ବିଜୁଳିପଙ୍ଖା ବୁଲୁଚି, ଘର କବାଟରେ ଲେଖା ହୋଇଚି 'ଅପେକ୍ଷା ଗୃହ' । ଏଇ ଘରେ ଅପେକ୍ଷା କଲେ ମନ୍ତ୍ରୀଙ୍କ ଦେଖାମିଳିବ । କେଡ଼େ ସୁବିଧା କାମ - ହେଇଟି ସେ କଣରେ ଲେଖାହେଇଚି 'ପାନୀୟ ଜଳ' । ଶୋଷ ହେଲେ ସେଇଠି ପାଣି ପିଇବ ।

ମକୁନ୍ଦ - କିଏ ସବୁ ଲେଖିଚି ଯାକୁ ?

ମନ୍ଦର - ମନ୍ତ୍ରୀ ଲେଖେଇଚନ୍ତି !

ମକୁନ୍ଦ - ମନ୍ତ୍ରୀ ଲେଖେଇଚନ୍ତି !

ରାଧୁ - ହୁଁ...ମନ୍ତ୍ରୀ !! ନାଇଁ ଆଜ୍ଞା ! କେଡ଼େ ଗୋଲ ହାତ ।

ମକୁନ୍ଦ - ମୋ ଦାଉ ଲୋ.....

ମନ୍ଦର - ଦେଖୁଚ ରାଧୁ ! ଏଠି କ'ଣ ଲେଖା ହେଇଚି ? 'ତୁନି ରହିବାକୁ ଅନୁରୋଧ' (ଚାପାଗଳାରେ) ଏ ! କେହି ପାଟିକରନା । ଚୁପ୍‌ଚାପ୍ ବସ ।

(ସମସ୍ତେ ତୁନିହୋଇ ବସିଲେ । ଗୋଟିଏ ଆଶଙ୍କାର ଛାୟା ଯେପରି ଖେଳିଯାଇଛି । ଗୋଟିଏ ଦିଗରେ କ'ଣ ଲକ୍ଷ୍ୟ କରି ରାଧୁ ମନ୍ଦରଙ୍କୁ ପଚାରିଲେ - ମନ୍ଦର ଜାଣନ୍ତି ନାହିଁ ବୋଲି ଇଙ୍ଗିତରେ ଜଣାଇଦେଲେ । ଟିକିଏ ପରେ ସେଠାକୁ ଆସିଲା ସୁରମା -ଦେବାନନ୍ଦଙ୍କ ଝିଅ ।

ସେମାନଙ୍କୁ ଭ୍ରୂକ୍ଷେପ ନକରି ସେଠାରେ ପଦଚାରଣ କଲା - ତା'ପରେ ଗୋଟିଏ ଚୌକିରେ ବସି ବେଳେବେଳେ କୌତୂହଳଭରା ଦୃଷ୍ଟିରେ ଏମାନଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲା । ତା'ର ଆଧୁନିକତାର ଲକ୍ଷଣ ଦେଖି ଏମାନେ ବିସ୍ଫାରିତ ନେତ୍ରରେ ତାକୁ ଚାହିଁରହିଥା'ନ୍ତି । ସୁରମା ନିକଟରେ ଏହା ଯେପରି ଅଭଦ୍ରତା ବୋଧ ହେଲା । ସେ ଚଟ୍‌କରି ଉଠି ପଣତ ହଲାଇ ଚଟି ପଟ୍‌ପଟ୍ କରି ଏକାନ୍ତ କ୍ଷିପ୍ର ଗତିରେ ସେଠୁ ଚାଲିଗଲା ।)

ମକୁନ୍ଦ - ମୋ ଦାଉ ଲୋ...

(ସଙ୍ଗେ ସଙ୍ଗେ ରାଧୁ ମକୁନ୍ଦର ପାଟିକୁ ଚାପି ଧରିଲା । ସୁରମା ଯାଉ ଯାଉ ଫେରିଆସିଲା ।)

ସୁରମା - କ'ଣ କହିଲେ ?

(ସମସ୍ତେ ଏପରିକି ମନ୍ଦର ମହାନ୍ତି ପର୍ଯ୍ୟନ୍ତ ଭୟରେ କଳାକାଠ ପଡ଼ିଗଲେ ! ସୁରମା କିଛି ବୁଝିନପାରି ଅଳ୍ପ ହସିଦେଇ ଚାଲିଗଲା । ମନ୍ଦର ମହାନ୍ତି ଗମ୍ଭୀର ହୋଇ ବସିରହିଲେ । ରାଧୁକୁ ଦେଖିଲେ ଜଣାଯାଏ, ସେ ମକୁନ୍ଦକୁ ମାରେ କି ନ ମାରେ । ଅବସ୍ଥା ଦେଖି ମକୁନ୍ଦ କାନ୍ଦ କାନ୍ଦ ହୋଇଆସୁଛି ।)

ମନ୍ଦର - (ଚାପା ଗଳାରେ) ଅକଲ ଶିଖିବନି ? ସେଠି କ'ଣ ଲେଖାହେଇଚି । ବଡ଼ ବଡ଼ ଲୋକଙ୍କ ପାଖରେ ବସିବ, ପାଟି ଫିଟିବ ନାହିଁ ।

ମକୁନ୍ଦ - ପାଟି ତ ଫିଟିବ ନାହିଁ । ସେବ ବୋଉ ଜମି କଥା କହିଥିଲା....

(ରାଧୁ ପୁଣି ମକୁନ୍ଦ ପାଟିକୁ ଚାପିଧରିଲା । ସେଇ ସଙ୍ଗେ ସଙ୍ଗେ ସେଠାକୁ ଆସିଲେ ମଧ୍ୟବୟସ୍କ ଭଦ୍ରଲୋକ- ଭାରତୀୟ ରୁଚିରେ ବେଶ୍ ରୁଚିସମ୍ପନ୍ନ ଦାମିକା ପୋଷାକ ପିନ୍ଧିଛନ୍ତି । ତାଙ୍କର ନାମ ଇସମାଇଲ୍ ଖାଁ । କିନ୍ତୁ ଦାଢ଼ି ଓ ଫେଜ୍ ଟୋପି ନଥିବାରୁ ମୁସଲମାନ୍ ବୋଲି ଜାଣିହୁଏନାହିଁ । ସେ ଆସି ଗୋଟିଏ ଚୌକିରେ ବସିଲେ ।

ଖାଁ - ଆପଣମାନେ କେଉଁଠୁ ଆସିଚନ୍ତି ? କୁହନ୍ତୁ କେଉଁଠୁ ଆସିଚନ୍ତି ?

(ସମସ୍ତେ ନୀରବ, କେବଳ ମନ୍ଦର ଇତସ୍ତତଃ ହେଲେ । ମନ୍ଦର ମହାନ୍ତି କହିବାକୁ ଯିବା ପୂର୍ବରୁ ଲେଖା ଆଡ଼କୁ ଚାହିଁଲେ । ଖାଁ ଘଟଣା ବୁଝିପାରି ହୋ -ହୋ ହୋଇ ହସିଉଠିଲେ ।)

ଖାଁ - ବୁଝିଲି, ସେଠି ଲେଖାହୋଇଛି ବୋଲି ଆପଣମାନେ କେହି କଥା କହୁନାହାନ୍ତି । କେତେବେଳୁ ଏମିତି ତୁନି ହୋଇ ବସି ରହିଛନ୍ତି ?

ମନ୍ଦର - ନାହିଁ ବାବୁ ! କଥାବାର୍ତ୍ତା କରିବାକୁ ଆମର କିଛି ନଥିଲା । ତେବେ ଯେତେହେଲେ ସରକାର ଘର କଥା । କିଏ କାହିଁକି ଅମାନ୍ୟ କରିବ ।

ଖାଁ - ଠିକ୍ କହିଛନ୍ତି । କିନ୍ତୁ ସରକାରଙ୍କର ସବୁ କଥା ଯଦି ଏମିତି ଆମେ ସୁନାପିଲାପରି ମାନି ନେଉଥା'ନ୍ତେ, ତେବେ ଏ ଲେଖା ଏଠି ନଥା'ନ୍ତା କି ଆପଣମାନେ ମୁହଁରେ ତୁଣ୍ଡିବାନ୍ଧି ବସି ନଥା'ନ୍ତେ ।

ମକୁନ୍ଦ - କଥା କହିଲେ ଆଜ୍ଞା ଦୋଷନାହିଁ ତ ?

ଖାଁ - (ହସି) ଦେଖୁଚି ଆପଣମାନେ ଏକାବେଳେକେ ନିରୀହ ।
ମକୁନ୍ଦ - (ରାଧୁକୁ) ଦେଖିଲୁଟି ! (ରାଧୁ ଅପ୍ରସ୍ତୁତ ହୋଇପଡ଼ିଲା)
ଖାଁ - କହନ୍ତୁ କେଉଁଠୁ ଆସିଛନ୍ତି ?
ମନ୍ଦର - ନନ୍ଦୀପୁର - ଜିଲ୍ଲେ....
ଖାଁ - ବସ୍ତା ଷ୍ଟେସନ୍ ପାଖ ନନ୍ଦୀପୁର ?
ମକୁନ୍ଦ - ହଇ ଆଜ୍ଞା । ବସ୍ତା ଇଷ୍ଟେସନ୍‌ରୁ ଓହ୍ଲେଇଲେ ବାଟ କୋଶେ ହବନାଇଁ....
ଖାଁ - ବୁଝିଲି ।
ମନ୍ଦର - ଆପଣଙ୍କ ନିବାସ ?
ଖାଁ - ମୁଁ କଲିକତାରେ ଥାଏ - ମୁଁ ଜଣେ ବ୍ୟବସାୟୀ....
ମକୁନ୍ଦ - ବର୍ଣ୍ଣରେ କ'ଣ ବୋଲାନ୍ତି ଆଜ୍ଞା !
ଖାଁ - ବର୍ଣ୍ଣରେ ! (ପରେ ବୁଝିପାରି) ଓ, ମୁଁ ହେଉଛି ମୁସଲମାନ୍ । ମୋ ନାଁ ଇସମାଇଲ୍ ଖାଁ । ଆପଣଙ୍କର ସିଆଡ଼େ ଧାନ ଫସଲ ଭଲ ହେଇଚି ତ ?
ମନ୍ଦର- ଆପଣ ଧାନ ଚାଉଳ ବ୍ୟବସାୟ କରନ୍ତି ପରା ?
ଖାଁ - କରିବାକୁ ତ ଆସିଛି ! ଆପଣମାନେ କାହିଁକି ଆସିଚନ୍ତି ? ମନ୍ତ୍ରୀଙ୍କୁ ଦେଖା କରିବାକୁ ?
ମନ୍ଦର - ହୁଁ, ଦେଖା କରିବୁ - ଗୁହାରି ଜଣେଇବୁ ।
ଖାଁ - ଆପଣମାନେ ସମସ୍ତେ ଏଥର ବୋଧହୁଏ ଆଚାର୍ଯ୍ୟଙ୍କ ମିଳିତ ଦଳକୁ ଭୋଟ ଦେଇଚନ୍ତି ?
ମକୁନ୍ଦ - (ସମସ୍ତେ କଥାଟା ଶୁଣି ଯେପରି ଡରିଯାଇ କହିପକାଇଲେ) ହଁ ଆଜ୍ଞା, ସମସ୍ତେ ଦେଇଚୁ - ସମସ୍ତେ.....
ଖାଁ - ଏଇଟା ଆପଣଙ୍କ ଦେଶ୍ ଆପଣମାନେ ଭୋଟ ଦେଇଛନ୍ତି । ଏ ସରକାର ଗଢ଼ାହୋଇଚି । କିନ୍ତୁ ମୋର ବିଶ୍ୱାସ, ଏ ସରକାର ବେଶି ଦିନ ତିଷ୍ଟିବ ନାହିଁ ।
ରାଧୁ - କାହିଁକି ଆଜ୍ଞା ! ଏ କଥା କହୁଚନ୍ତି କାହିଁକି ? ଆଚାର୍ଯ୍ୟଙ୍କ ଠାରୁ ଯୋଗ୍ୟ ଲୋକ ଏ ଦେଶରେ କ'ଣ କେହି ଅଛି ?
ଖାଁ - ମୁଁ ଆଚାର୍ଯ୍ୟଙ୍କୁ ନିନ୍ଦା କରୁନାହିଁ କି ତାଙ୍କ ସରକାରକୁ ନିନ୍ଦା କରୁନାହିଁ । ବରଂ ତାଙ୍କ ପାଖରୁ ମୋ କାମ ହାସଲ ପାଇଁ ମୁଁ ଆସିଛି । ମୁଁ ଏଇୟା କହୁଚି ଯେ, ତିନୋଟି ଦଳ ଉପରେ ଉପରେ ମିଶି ଯେଉଁ ସରକାର ଗଢ଼ିଛନ୍ତି ସେ ସରକାରର ପରମାୟୁ କେତେ ଦିନ ?

(ସତ୍ୟବାଦୀ ଆସିଲେ - ସେ ସୁଟ୍ ପିନ୍ଧିଚନ୍ତି, ବୟସ ୨୨/୨୩)

ସତ୍ୟବାଦୀ - (ଖାଁକୁ ଦେଖି) ନମସ୍କାର ! ଆପଣ ଏଠି ବସିଚନ୍ତି କାହିଁକି ? ସେ ଘରେ ବସନ୍ତୁ ।
ଖାଁ - ଠିକ୍ ଅଛି - ମୁଁ ଏଇଠି ବସି ଏମାନଙ୍କ ସହିତ ଆଳାପ କରୁଚି । - ମୁଖ୍ୟମନ୍ତ୍ରୀ ଏକା ଅଛନ୍ତି ?

ସତ୍ୟ - ନାଁ, ଅନରେବ୍ଲ ସାମନ୍ତରାୟ ଅଛନ୍ତି ?

ଖାଁ - ତେବେ ତ ଡେରିହେବ ଦେଖୁଚି -

ସତ୍ୟ - ଆପଣଙ୍କ ପାଇଁ ଡେରି ? - ....କାର୍ଡ଼୍ ଦେଇଛନ୍ତି ?

ଖାଁ - ଏଇ ନିଅନ୍ତୁ (କାର୍ଡ଼୍ ଦେଲେ) ଏମାନଙ୍କ କାର୍ଡ଼୍ ?

ସତ୍ୟ - ଏମାନଙ୍କ କାର୍ଡ଼୍ କ'ଣ ? ନାଁ ଗାଁ ଟିପି ନେଇ ପଠେଇ ଦେଇଚି । ଆପଣ ଦୟାକରି ସେ ଘରେ ବସନ୍ତୁ - ମୁଁ କାର୍ଡ଼୍ ପଠେଇଦିଏଁ....(ଚାଲିଗଲା -ସତ୍ୟବାଦୀ ଆସିବା ଯାଏଁ ମକୁନ୍ଦ ତାକୁ ନିର୍ବାକ୍ ଭାବେ ଲକ୍ଷ୍ୟ କରୁଥାଏ - ଯେପରି ତା'ର କେହି ପରିଚିତ ଲୋକ । ସେ ଯିବା ପରେ ମକୁନ୍ଦ ତା ପଛେପଛେ ଦୁଆର ମୁହଁ ପର୍ଯ୍ୟନ୍ତ ଗଲା ।)

ରାଧୁ - (ମକୁନ୍ଦକୁ) ହେଃ..... (ମକୁନ୍ଦ ଫେରିଆସିଲା ।)

ଖାଁ - (ମକୁନ୍ଦକୁ) ସେ ଘରେ କ'ଣ ଅଛି ଦେଖିବାକୁ ଯାଇଥିଲ ? ସେଇଟା ଏମିତି ଅପେକ୍ଷା କରିବା ଘର । ତେବେ ସେଠି ତଳେ ଗାଲିଚା ବିଛା ହୋଇଚି । ଗାଲିଚା ଉପରେ ବସିବା ପାଇଁ ଖୁବ୍ ଦାମିକା ଆସନ ପଡ଼ିଛି । ସେ ଘରେ ବସିଲେ ଚା' ସିଗ୍ରେଟ୍ ଖାଇବାକୁ ମିଳିବ ।

ମନ୍ଦର - ସରକାରରୁ ମିଳେ ?

ଖାଁ - ହଁ....

ମକୁନ୍ଦ - କ'ଣ ମାଗଣା ?

ଖାଁ - ହଁ, ହଁ ମାଗଣା ...(ହସି)

ମକୁନ୍ଦ - ମୋ ଦାଉ ଲୋ....

ଖାଁ - କ'ଣ କହିଲ ?

(କେହି କିଛି କହିବା ପୂର୍ବରୁ ସତ୍ୟବାଦୀ ଆସିଲା - ମକୁନ୍ଦ ପୂର୍ବପରି ପୁଣି ତାକୁ ନିରୀକ୍ଷଣ କରିବାକୁ ଲାଗିଲା ।)

ସତ୍ୟ - କାର୍ଡ଼୍ ପଠେଇଦେଲି.... (ସୁରମା ପୁଣି ଆସିଲା)

ଆପଣ ଯାଇନାହାଁନ୍ତି ?

ସୁରମା - ନାଁ, ବୁଲି ବୁଲି ସେକ୍ରେଟେରିଏଟ୍‌ର ସବୁ ଡିପାର୍ଟ୍‌ମେଣ୍ଟ୍ ଦେଖୁଥିଲି -

ସତ୍ୟ - ଆସନ୍ତୁ, ଆପଣମାନଙ୍କର ପରିଚୟ କରେଇ ଦେଉଚି - କୁମାରୀ ସୁରମା ସାମନ୍ତରାୟ ! ଅନରେବ୍ଲ ଦେବାନନ୍ଦ ସାମନ୍ତରାୟଙ୍କ ଝିଅ - ବି.ଏ. । ଆଉ ମି. ଇସ୍‌ମାଇଲ୍ ଖାଁ, କଲିକତାର ବିଖ୍ୟାତ 'ଇସ୍‌ମାଇଲ୍ ଏଣ୍ଡ୍ କୋ.'ର ମ୍ୟାନେଜିଂ ଏଜେଣ୍ଟ୍ ।

ଖାଁ - ବି.ଏ. ତ ପାସ୍ କଲେ । ଏଣିକି କ'ଣ କରିବେ ? ରାଜନୀତି ?

ସୁରମା - ନାଁ, ନାଚ ପ୍ରତି ମୋର ଝୁଙ୍କ ଅଛି । ସେଥିପାଇଁ ମାନ୍ଦ୍ରାଜ ଯିବି ବୋଲି ଭାବୁଛି.... । ମୁଁ ଆପଣଙ୍କୁ ଜାଣେ । ବାପା ଆପଣଙ୍କ କଥା କହୁଥିଲେ -

ଖାଁ - ଓ -

ସୁରମା - (ସତ୍ୟବାଦୀଙ୍କୁ ) ଦେଖନ୍ତୁ - ମୋର ଗୋଟିଏ ଉପକାର କରିବେ - ବାପାଙ୍କର ହୁଏତ ଡେରି ହେବ । ମୁଁ ଆଉ ରହିପାରୁନାହିଁ । ଗାଡ଼ିଟା ନେଇ ମୁଁ ଚାଲିଯାଉଚି - ବାପାଙ୍କୁ କହିଦେବେ - କହିବେ ତ ?

ସତ୍ୟ - କହିବି....

ସୁରମା - ଆଚ୍ଛା, ମୁଁ ଯାଉଚି - ନମସ୍କାର - (ଉଭୟଙ୍କୁ) (ଚାଲିଗଲା । ଭିତରୁ ଘଣ୍ଟି ହେଲା - ସତ୍ୟବାଦୀ ମଧ୍ୟ ଗଲା ।)

ମନ୍ଦର - ମନ୍ତ୍ରୀଙ୍କ ଝିଅ ?

ଖାଁ - ହଁ, ମନ୍ତ୍ରୀ ସମାନ୍ତରାୟଙ୍କ ଝିଅ ।

ମନ୍ଦର - କୁଆଡ଼େ ଆସିଥିଲେ ?

ଖାଁ - ବୋଧହୁଏ ସଉକରେ ବାପାଙ୍କ ସାଥିରେ ବୁଲି ଆସିଥିଲେ । (ସତ୍ୟବାଦୀ ପୁଣି ଆସିଲା)

ସତ୍ୟ - ଆସନ୍ତୁ, ଡାକରା ହେଲାଣି - (ସତ୍ୟବାଦୀ ଓ ଖାଁ ଚାଲିଗଲେ) ।

ରାଧୁ - ବୁଝିଲେ ଆଜ୍ଞା ! ଏଇଟା ନିମକହାରାମ୍ ଲୋକ -

ମନ୍ଦର - କିଏ ? ଇସ୍‌ମାଇଲ୍ ଖାଁ ?

ରାଧୁ - ହଁ -

ମନ୍ଦର - କାହିଁକି ?

ରାଧୁ - ଏଠିକି ବ୍ୟବସାୟ କରିବାକୁ ଆସିଚି, ଏଣେ ଆମ ସରକାରଙ୍କ ନାଁରେ ଗାଉଚି । ନିମକ୍‌ହାରାମ୍ ନ ହେଲେ -

ମକୁନ୍ଦ - ତୁ' ଟା ସର୍ବଜ୍ଞ -

ରାଧୁ - ଚୁପ୍ !

ମକୁନ୍ଦ - ଚୁପ୍ କ'ଣ ବେ ! ତାକୁ କେତେ ଖୁସାମଦ୍ ବରାମତ୍ । ପଛରେ ଆସି ଆଗ ଡାକରା ହେଲାଣି - ସେ ହେଲା ନିମକ୍‌ହାରାମ ! ! ଆଉ ତୁ ଭାରି ନିମକ୍‌ସଚା । କୋଉ ପହରୁ ଆସି ଏଠି ପଡ଼ିଚୁ, କେହି ପଚାରୁନାହାନ୍ତି ? କ'ଣ ଆଜ୍ଞା ?

ମନ୍ଦର - ଏଠିକା ଢଙ୍ଗ ମୁଁ କିଛି ଗମ୍ କରିପାରୁନାହିଁ ମକୁନ୍ଦ- ସବୁ ଯେମିତି ଭେଳିକି ! (ସତ୍ୟବାଦୀ ଆସିଲା)

ରାଧୁ - ଆମକୁ ଡାକରା ?

ସତ୍ୟ - ଏତେ ଚଞ୍ଚଳ କେଉଁଠି ହେଲାଣି ? ସେ ଯେ ଖାଁ ଗଲେ, ଜାଣିଚ ତାଙ୍କୁ ? ଲକ୍ଷପତି -

ମନ୍ଦର - (ସ୍ୱର ଲମ୍ୱାଇ) ହଁ.....

ସତ୍ୟ - ସେଇମାନେ ତ ଏ ଦେଶକୁ ଆଙ୍ଗୁଠି ଆଗରେ ନଚାଉଚନ୍ତି ।

ମନ୍ଦର - ହଁ, ହଁ ନଚେଇବାର କଥା - ନଚଉଥିବେ - ଟଙ୍କା ଆଗରେ କିଏ ? (ସତ୍ୟବାଦୀକୁ) ବାବୁଙ୍କର ଏଠି କି ଚାକିରି ?

ସତ୍ୟ - ଏଇ ଯା' ଦେଖୁଚ !

ମକୁନ୍ଦ - ପେସ୍କାର - ପେସ୍କାରି କାମ -
ରାଧୁ - ଚୁପ୍ ।
ମନ୍ଦର - ପଢ଼ାପଢ଼ି ?
ସତ୍ୟ - ମାଟ୍ରିକ୍ ପାସ୍ କରିଚି ?
ମନ୍ଦର - ଦରମା ?
ସତ୍ୟ - ଦେଢ଼ଶ' ।
ମନ୍ଦର - ଏଁ ? ଦେଢ଼ଶହ !
ସତ୍ୟ - ହଁ ଦେଢ଼ଶହ !
ମକୁନ୍ଦ - ମୋ ଦାଉଲୋ.....
ସତ୍ୟ - କ'ଣ କହିଲ ?
ରାଧୁ - (ମକୁନ୍ଦକୁ) ବଜାତ୍ - କାହାଙ୍କା ?
ମନ୍ଦର - ସେଇଟା ଅଜ୍ଞାନଟାଏ ବାବୁ, ତା'କଥା ଧରନାହିଁ ।

(ସତ୍ୟବାଦୀ କିଛି ନକହି ଚାଲିଗଲା) ।

ରାଧୁ - ହଇରେ ମକୁନ୍ଦା ! ତୋ ମୁଣ୍ଡରେ କ'ଣ ପିତ୍ତ ଚଢ଼ିଲାଣି କିରେ ! ତୁ କାହାକୁ କ'ଣ କହୁଚୁ ? ସେ ପରା ମନ୍ତ୍ରୀଙ୍କ ପାଖଲୋକ !
ମକୁନ୍ଦ - ମୁଁ ହଲପ୍ କରି କହୁଚି ରାଧୁ, ମୋ ବଡ଼ ଶଳା ଯେ କାନତରାଟି ପାଖରେ କୁଲି-ସରଦାର ହେଇଚି; ତା'ରି ତଳେ ଏ କୁଲି କାମ କରୁଥିଲା - ମୁଁ ସେଠିକି ଯାଇଥିଲି-ଆଖିରେ ଦେଖିଚି -
ମନ୍ଦର - ଏ କି ଅସମ୍ଭବ କଥା କହୁଚ ମକୁନ୍ଦ ! ସେ ଭଦ୍ରଲୋକ ପିଲା - ପାଠଶାଠ ପଢ଼ିଚନ୍ତି ।
ମକୁନ୍ଦ - ସେଠି ପରା ହୁଲ୍ଲର ପଢ଼ିଥିଲା - ମାଟ୍ରିକ୍ ପାସ୍ ଗୋଟାଏ ଟୋକା ମାଟି ବହୁଚି । ତା ନାଁ ସତିଆ -
ରାଧୁ - ଭଲରେ କହୁଚି ମକୁନ୍ଦ ତୁ ଏଠୁ ଯା, ନହେଲେ ତୋ ମୁଣ୍ଡ ଛତୁ କରିଦେବି - (ସତ୍ୟବାଦୀ ଆସିଲା) ।
ସତ୍ୟ - ଏମିତି ପାଟିତୁଣ୍ଡ କରୁଚ କାହିଁକି ? ମୁଖ୍ୟମନ୍ତ୍ରୀ ବର୍ତ୍ତମାନ ଖୁବ୍ ବ୍ୟସ୍ତ !
ମନ୍ଦର - ଦେଖା ହୋଇପାରିବ ନାହିଁ ?
ସତ୍ୟ - ନ ହୁଅନ୍ତା କାହିଁକି ? ବେଳ ହେଲେ ତ ?
ମନ୍ଦର - ଖାଁ ତ ପୁଣି ଗଲେ ?
ସତ୍ୟ - ଖାଲି ଖାଁ ନୁହନ୍ତି, ଖାଁ, ସିଂହ, ବୋଷ, ଘୋଷ, ମିଶ୍ର, ମହାନ୍ତି ଅନେକ ଦେଖାକଲେଣି, ଆହୁରି ଅନେକ ବି ଅଛନ୍ତି । ବର୍ତ୍ତମାନ ବେଳ ହୋଇଗଲାଣି - ସେକ୍ରେଟାରୀଏଟ୍ କ୍ଲବ୍ ଘର ଶୁଭ ଦେବାପାଇଁ ମୁଖ୍ୟମନ୍ତ୍ରୀ ବାହାରିଯିବେ ।
ମନ୍ଦର - କି ଘର ?

ସତ୍ୟ - ଓଃ ! କ୍ଲବ୍ ଘର ବାବୁ - ଯେଉଁ ଘରେ ବସି ଅମଲାମାନେ ଖେଳାଖେଳି କରିବେ ।

ମନ୍ଦର - ଦେଖୁଚୁ ରାଧୁ ! କେଡ଼େ ସୁବିଧା କାମ । ଅମଲାମାନଙ୍କ ପାଇଁ ମନ୍ତ୍ରୀଙ୍କ ମନ କେମିତି ଡ଼ଚିଛି ?

ସତ୍ୟ - ଏଇ ଅମଲା - ହାକିମମାନେ ତ ମୂଳ । ଏମାନଙ୍କୁ ହାତରେ ନରଖିଲେ ଶାସନ ଚଳିବ ? (ଅନ୍ୟଆଡ଼କୁ ଲକ୍ଷ୍ୟ କରି) ମୁଖ୍ୟମନ୍ତ୍ରୀ ଉଠିଲେଣି - ଏଇବାଟେ ବୋଧେ ଯିବେ -

ମନ୍ଦର - ତାଙ୍କ ସାଙ୍ଗରେ ସେ କିଏ ?

ସତ୍ୟ - ଦେବାନନ୍ଦ ସାମନ୍ତରାୟ - ମନ୍ତ୍ରୀ ହେଇନାହାନ୍ତି ?

ରାଧୁ - ଦେଖୁଚ ଆଜ୍ଞା - ପଛରେ କେତେ ଲୋକ ଗୋଡ଼େଇଛନ୍ତି -

ମକୁନ୍ଦ - କାଇଁ ?

ରାଧୁ - ଏଇ ଦେଖ୍....

ମକୁନ୍ଦ - (ଦେଖି) ମୋ ଦାଉ ଲୋ -

ସତ୍ୟ - ହେଇ ! ! ଏଇ ବାରଣ୍ଡା ଦେଇ ଯିବେ । ଏଇଠି ଠିଆ ହୋଇଥାଅ । ଆଖି ପଡ଼ିଗଲେ ଆସିପାରନ୍ତି । (ସମସ୍ତେ ନୀରବ ପ୍ରତୀକ୍ଷାରେ ଠିଆହୋଇ ରହିଲେ - ଆଚାର୍ଯ୍ୟ ଓ ଦେବାନନ୍ଦ ଆସିଲେ । ଏ ତିନିଜଣ ଅତି ନମ୍ର ଭାବରେ ନମସ୍କାର ଜଣାଇଲେ) ।

ଆଚାର୍ଯ୍ୟ ଆରେ, ଆପଣମାନେ ଏଠି ! କେତେବେଳୁ ଆସିଲେଣି ? ଟ୍ରେନ୍‌ରୁ ଓହ୍ଲାଇ ସିଧା ଏଠିକି ଆସିଚନ୍ତି ପରା । କିନ୍ତୁ ମୋ ସହିତ ଦେଖା କରି ନଥିଲେ କାହିଁକି ?

ସତ୍ୟବାଦୀ ! (ସତ୍ୟବାଦୀ କ'ଣ କହିବାକୁ ଯାଉଥିଲା)

ନା- ନା - ଏତେ ସମୟ ଏଠି ବସାଇ ରଖିବା ଉଚିତ୍ ନଥିଲା ।

ଦେବାନନ୍ଦ - ଏମାନେ କେଉଁଠୁ ଆସିଛନ୍ତି ?

ଆଚାର୍ଯ୍ୟ - ନନ୍ଦୀପୁର.......

ଦେବାନନ୍ଦ - ଓ - ରାଜେନ୍ଦ୍ରବାବୁଙ୍କ କନ୍‌ଷ୍ଟିଚ୍ୟୁଏନ୍‌ସି । ଆପଣମାନେ ତ ରାଜେନ୍ଦ୍ର ବାବୁଙ୍କୁ ଭୋଟ୍ ଦେଇଥିଲେ - ସେ ତ ମନ୍ତ୍ରୀ ହୋଇଛନ୍ତି ।

ମନ୍ଦର - ସେ ଆମର ମହାଭାଗ୍ୟ ।

ଆଚାର୍ଯ୍ୟ - ଯାଙ୍କୁ (ମନ୍ଦରଙ୍କୁ) ତୁମେ ଜାଣିନାହଁ ସାମନ୍ତରାୟ । ଖୁବ୍ ଚତୁର ଲୋକ । ଆମପାଇଁ ଖୁବ୍ କରିଚନ୍ତି ।

ଆଚାର୍ଯ୍ୟ - ବାସ୍ତବିକ୍ ଆପଣମାନଙ୍କୁ ଏଠି ଦେଖି ମୁଁ ଭାରି ଖୁସି । ମୋର ଇଚ୍ଛା, ମୋ ଦେଶର ପ୍ରତ୍ୟେକ ଭାଇ, ଭଉଣୀଙ୍କୁ ତାଙ୍କ ଘରେ ଯାଇ ଭେଟିବି । ତାଙ୍କୁ ଚିହ୍ନିବି । ତାଙ୍କ ମନକଥା ବୁଝିବି । ଯାଙ୍କର(ସତ୍ୟବାଦୀ) ଇତିହାସ ଆପଣମାନେ ବୋଧହୁଏ ଜାଣନ୍ତି ନାହିଁ । ମାଟ୍ରିକ୍ ପାସ୍ କରି ଜଣେ କଣ୍ଟ୍ରାକ୍ଟର ପାଖରେ କୁଲିକାମ କରୁଥିଲେ । ମୋ ଦୃଷ୍ଟିକୁ ଏ କଥା ଅଣାଯିବା ପରେ ପରେ ତାଙ୍କୁ ଏଠି ଚାକିରି ମିଳିଚି.... (ଏଇ କଥା

କହିବା ବେଳେ ସତ୍ୟବାଦୀ ଆଚାର୍ଯ୍ୟଙ୍କର ଆଖି ମିଳିଗଲା - କାରଣ ଏହା ସତକଥା ନୁହେଁ । ମନ୍ଦର ଆଚାର୍ଯ୍ୟଙ୍କ ପାଖରେ ଠିଆ ହୋଇଥା'ନ୍ତି । ରାଧୁ, ମକୁନ୍ଦ ଦୂରରେ ଠିଆହୋଇଥା'ନ୍ତି ।)

ମକୁନ୍ଦ - ଶୁଣିଲୁଟି ରାଧୁ, କ'ଣ ମୁଁ କହୁଥିଲି - ମୁଁ ପରା ସେଠି ତାକୁ ଦେଖିଚି ।

ରାଧୁ - ଚୁପ୍ -

ଆଚାର୍ଯ୍ୟ - ନା- ନା- ସେ ଠିକ୍ କହିଛନ୍ତି । କାହାରି ଦୁଃଖ, ଦୁର୍ଦ୍ଦଶା ଦେଖି ଯେପରି ଆମେ ଆଖି ବୁଜିନଦଉ, ଏହାହିଁ ହେଲା ଆମର ନୀତି ।.....ହଁ, କୁହନ୍ତୁ ମହାନ୍ତିଏ ଖବର କ'ଣ ?

ମନ୍ଦର - ଆପଣଙ୍କ ଦର୍ଶନକୁ ଆସିଥିଲୁ ଆଜ୍ଞା - (ଆଚାର୍ଯ୍ୟ ମଝିରେ ଘଣ୍ଟା ଦେଖୁଥା'ନ୍ତି ।)

ଆଚାର୍ଯ୍ୟ - ଠିକ୍ ଓଲଟା କଥା କହିଲେ - ଆମେ ଆପଣଙ୍କ ଦର୍ଶନ ପାଇଲୁ । (ମନ୍ଦର ପକେଟ୍‌ରୁ ହାତଟି କାଢ଼ି ସଙ୍କୋଚ ସହିତ ଦେଖାଇଲେ - ଆଚାର୍ଯ୍ୟ ହାତଟି ଉଠାଇନେଲେ) ଏ ହାର.... ?

ମନ୍ଦର - (ରହି ରହି) ସେ....ବ....ତୀ...

ଆଚାର୍ଯ୍ୟ - ଓ, ଆପଣଙ୍କ ଝିଅ ସେବତୀ - ଝିଅଟିଏ ଏକା- ଆମପାଇଁ ସେ ପ୍ରାଣମୂର୍ଚ୍ଛା କାମ କରିଚି ।

ମନ୍ଦର - ସେ ତ କହେ ମିଳିତ ଦଳପାଇଁ ସେ ତା ଜୀବନ ଦେଇଦେବ -

ଆଚାର୍ଯ୍ୟ - ବାସ୍ତବିକ୍ - ତା'ପରି ଝିଅଟିଏ ମୁଁ ଗାଁଗହଳିରେ ଆଉ କେଉଁଠି ଦେଖିନାହିଁ..... ସେଇ ତା' ହେଲେ ଏ ହାର ଦେଇଚି....କାହିଁକି ? (ମନ୍ଦର କିଛି କହିପାରୁ ନଥା'ନ୍ତି ।)

ଦେବାନନ୍ଦ - (ନୀମିଳିତ ଚକ୍ଷୁ ମେଲି) ହୁଏତ ଆମ ଦଳର ପାଣ୍ଠି ପାଇଁ ଚାନ୍ଦା-

ଆଚାର୍ଯ୍ୟ - ସତେ ! ସେବତୀ ଏ ହାର ଦାନ କରିଚି । (ମନ୍ଦର ଶୁଷ୍କ ହସିଲେ) କିନ୍ତୁ ସେ ବିଚାରି କାହିଁକି ଏ ସ୍ୱାର୍ଥତ୍ୟାଗ କଲା । ମୁଁ ତାକୁ ଗୋଟିଏ ଫୁଲମାଳ ଦେଇଥିଲି, ତା ବଦଳରେ ସେ ତା' ବେକର ସୁନାହାର ଦାନ କରିଚି - ଗୋଟିଏ ଗାଉଁଲି ଝିଅର ଏ ଆଦର୍ଶ ହିଁ ଆମ ଦଳକୁ ବଞ୍ଚାଇ ରଖିବ । ସତ୍ୟବାଦୀ, ଖବରକାଗଜମାନଙ୍କୁ ଆଜି ଏ ସମ୍ବାଦ ପଠାଇଦିଅ ଯେ ପୁରପଲ୍ଲୀର ଗୋଟିଏ ଅଜଣା ଅଶୁଣା ଝିଅ ତା ଗଳାର ପିନ୍ଧାହାର ଆମ ପାଣ୍ଠିକୁ ଦାନ କରିଚି । ଆପଣଙ୍କ ଭାଗ୍ୟ (ମନ୍ଦରକୁ) ଯେ ଆପଣ ଏପରି ଝିଅର ବାପ ହୋଇପାରିଚନ୍ତି । ସେବତୀକୁ କହିବେ ଯେ ତା'ର ଏ ଦେଶପ୍ରୀତିକୁ ପ୍ରଶଂସା ଜଣାଇବାର ଭାଷା ମୋର ନାହିଁ । ଆଚ୍ଛା, ମୁଁ ଆସୁଚି.....

ମନ୍ଦର - ଟିକିଏ ଗୁହାରି ଥିଲା.......

ରାଧୁ - ତାଲିକାଟା ।

ଆଚାର୍ଯ୍ୟ - କି' ତାଲିକା -

ମନ୍ଦର - (ତାଲିକା ଧରି) - ଆମ ସେ ଆଡ଼ର ଅଭାବ - ଅସୁବିଧା.....

ଆଚାର୍ଯ୍ୟ - ବେଶ୍ ତ, ସୁବିଧା କରି ଦିନେ ଆସନ୍ତୁ.... ସବୁକଥା ଶୁଣିବି । ଆଜି ୨୧ ତାରିଖ ସନ୍ଧ୍ୟାରେ ରୋଟାରୀକ୍ଲବ୍ ଭାଷଣ.. ରାତି ୧୨ଟାରେ ବ୍ରହ୍ମପୁର ଯିବି - କାଲି ସକାଳେ ଆନ୍ଧ୍ର ମହାସଭାରେ ଭାଷଣ - ସନ୍ଧ୍ୟାରେ -

ଦେବାନନ୍ଦ - ମୋ ଝିଅର ଜନ୍ମଦିନ - ଟି'ପାର୍ଟି -

ଆଚାର୍ଯ୍ୟ - ତା' ପରଦିନ ୨୩ ତାରିଖ - ପ୍ରୋଗ୍ରାମ କ'ଣ ସତ୍ୟବାଦୀ....

ସତ୍ୟ -Chinese Cultural Mission ଆସୁଚନ୍ତି - ସାରାଦିନ busy ରହିବେ - ସନ୍ଧ୍ୟାରେ ରାଜଭବନରେ ଡିନର -

ଆଚାର୍ଯ୍ୟ - ୨୪ ତାରିଖ ସକାଳେ ପ୍ରଦର୍ଶନୀ ଉଦ୍‌ଘାଟନ - ୧୦ଟାରୁ କ୍ରିକେଟ୍ ଖେଳଠାରେ ଉପସ୍ଥିତ ରହିବାକୁ ହେବ । ସନ୍ଧ୍ୟାରେ କ୍ରିକେଟ୍ ଖେଳାଳିମାନଙ୍କୁ ମୁଁ ଡିନର୍ ଦେବି । ୨୫ ତାରିଖ ଦିନ ବୋଧହୁଏ ଫ୍ରି ଅଛି, ସତ୍ୟବାଦୀ !

ସତ୍ୟ - ଆଜ୍ଞା -

ଆଚାର୍ଯ୍ୟ - ବେଶ୍ - ୨୫ ତାରିଖ ଦିନ ଏଇଠିକି ଆସନ୍ତୁ - ଏଇଠି ଦେଖାହେବ ।

ମନ୍ଦର - ହଜୁର - ଆମ କଥା ଟିକେ ଶୁଣନ୍ତୁ । ଦୂରବାଟିଆ ଲୋକ; କେତେ ଦିନ ହାତରୁ ଖାଇ ଏଠି ବସି ରହିବୁ; ଟିକେ ଖାଲି ତାଲିକାଟା ଉପରେ ଆଖି ବୁଲେଇ ଆଣିଲେ... ଘଡ଼ିକର କାମ....

ଆଚାର୍ଯ୍ୟ - ତମେ ଏମିତି ଜିଦ୍ ଧରି ବସିଲେ ମହାନ୍ତି ମୁଁ ନାଚାର ! ଦେଖୁଛ ତ ମୋ ହାତରେ କେତେ କାମ ? ସେ ସବୁ ବଡ଼ ବଡ଼ କଥା ଦେଖିବି ନା - ତମର ଏଇ ତାଲିକା... ତମେ ସେଇ ୨୫ ତାରିଖରେ ଆସ, ନଚେତ୍ ତମର ସେଠି S.D.O. ଅଛନ୍ତି - D.M. ଅଛନ୍ତି; ତାଙ୍କୁ ଦେଖାକର । ସେମାନେ ତମ କଥା ବୁଝିବେ । ଏଇସବୁ ଛୋଟ କଥାରେ ମୋ ପାଖକୁ ଦୌଡ଼ିଲେ ଚଳିବ ? - ଆସନ୍ତୁ ଦେବାନନ୍ଦ ବାବୁ -

ମକୁନ୍ଦ - ଆଜ୍ଞା ? (ଲମ୍ବ ହୋଇ ପଡ଼ିଗଲା)

ଆଚାର୍ଯ୍ୟ -ୟେ' କ'ଣ - ଉଠ - ଉଠିବସି କୁହ ।

ମକୁନ୍ଦ - (ଉଠିବସି) ଯିଏ ତ ପର -କଲମରେ ଭୋଟ ଦେବାର କଥା ଦେଲେ- ଆଉ ଯିଏ ଛତା ବାକ୍‌ସରେ ଭୋଟ୍ ଦେଇଚନ୍ତି ସେମାନେ କ'ଣ ଏ ରାଜ୍ୟରେ ରହିବେ ନାଇଁ - ତାଙ୍କ ଚୁଲିଚାଳ ସବୁ ଉଡ଼ିଯିବ ?

ଆଚାର୍ଯ୍ୟ - କିଏ କହିଲା ଏ କଥା ? ଏ ଭୁଲ୍ କଥା କିଏ ପ୍ରଚାର କରୁଚି । (ମକୁନ୍ଦକୁ) ତମର କିଛି ଭୟନାଇଁ । ଆମ ଆଖିରେ ସମସ୍ତେ ସମାନ - ଆଉ ଯଦି କେହି ତମକୁ ଭୟ ଦେଖାଏ; (ରାଧୁକୁ) ତମେ ପରା ଆମର ଏଜେଣ୍ଟ ଥିଲ - ତମର ଏସବୁ କଥା ଲୋକଙ୍କୁ ବୁଝାଇବା ଉଚିତ୍ ....

ଦେବାନନ୍ଦ - ଚାଲନ୍ତୁ..... ଡ୍ରାଇଭର୍....

ସତ୍ୟ - ଆପଣଙ୍କ ଗାଡ଼ି ତ ନାହିଁ ସୁରମା ଦେଈ ନେଇ ଯାଇଚନ୍ତି ।

ଆଚାର୍ଯ୍ୟ- ଆସନ୍ତୁ - ମୋ ଗାଡ଼ିରେ ଯିବେ । (ଦୁହେଁ ଚାଲିଗଲେ ) ।

ସତ୍ୟ - ଆପଣମାନେ ଯା'ନ୍ତୁ, ଘର ବନ୍ଦ ହେବ ।

ମନ୍ଦର - ଆମ କଥା ଟିକିଏ ବୁଝିବେ ବାବୁ - ଆମେ ମଳିମୁଣ୍ଡିଆ ଲୋକ -

ସତ୍ୟ - ଏଠି ମଳିମୁଣ୍ଡିଆଙ୍କର ସ୍ଥାନ ନାହିଁ ।

ରାଧୁ - (ରାଗିଯାଇ) କ'ଣ ଆପଣ ଏମିତି କହୁଚନ୍ତି - ଆମେ ଭୋଟ୍ ଦେଲୁ - ଆମ ଯୋଗୁଁ ସରକାର ଗଢ଼ାହେଲା । ଆମ ସ୍ଥାନ ଏଠିନାହିଁ ?

ସତ୍ୟ - ଲେକ୍‌ଚର ଦିଅନାହିଁ - ମୋ କଥା ଶୁଣ । ତମେ ଭୋଟ୍ ଦେଇଥିଲ ଏଇ ଧୋବଧାଉଳିଆ ବାବୁଙ୍କୁ - ଏଠି ତ ଦେଖିଲ ତମ ମଳିମୁଣ୍ଡିଆଙ୍କୁ କେହି ପଚାରିଲେ ନାହିଁ । ଧୋବଧାଉଳିଆଙ୍କ କଥା ଆଗେ ବୁଝାଗଲା । ସେଇଥିପାଇଁ କହୁଚି - ଆଗେ ଧୋବଧାଉଳିଆ ସାଜ, ତା'ପରେ ଏଠିକି ଆସ...(ଚାଲିଗଲା)

ମକୁନ୍ଦ - ମୋ ଦାଉ ଲୋ....

ରାଧୁ - ଏଗୁଡ଼ାକ ସବୁ ନିମକ୍‌ହାରାମ - ଯାହାର ଖାଇବେ ତା'ରି ଗାଇବେ, ନା' କ'ଣ ଆଜ୍ଞା -

ମନ୍ଦର - କିଛିନାହିଁ ରାଧୁ - ମୁଁ ଖାଲି ଭାବୁଛି ବୁଦ୍ଧି ଶିଖିବ ତ ସିଧା ଏଇଠିକି ଚାଲିଆସିବ !....ହଁ-ନିଅ ରାଧୁ ତାଲିକାଟି ରଖ ।

ରାଧୁ - ୨୫ ତାରିଖରେ ପରା ଦେଖାକରିବା ?

ମନ୍ଦର - ପାଞ୍ଚଦିନର ବସା ଖର୍ଚ୍ଚ ଅଛି ତ ?

ରାଧୁ - (ମକୁନ୍ଦକୁ) ତୁ ପରା କ'ଣ ଟଙ୍କା ଆଣିଥିଲୁ ?

ମକୁନ୍ଦ - ମୁଁ ଟଙ୍କା ଆଣିଥିଲି ମୋ ଦୋକାନ ସଉଦା ନବାକୁ ନା ଟଙ୍କାଦେଇ ଏଠି ବୁଦ୍ଧି ଶିଖିବାକୁ ?

ମନ୍ଦର - ଏଠି ପୁଣି କ'ଣ ଲେଖାହେଇଚି.......ଦେଖ ରାଧୁ - (ପଢ଼ିଲେ) "ଆପଣଙ୍କର ଯଦି କିଛି ଆପତ୍ତି ଅଭିଯୋଗ ଥାଏ, ଲେଖି ଏହି ବାକ୍‌ସରେ ଗଳାଇ ଦିଅନ୍ତୁ ।"

ରାଧୁ - ଏ ତାଲିକା ଖଣ୍ଡକ ଏଥିରେ ଗଳେଇଦେଇ ଯିବା କି ?

ମନ୍ଦର - କିଛି ଲାଭ ହେବନାଇ ରାଧୁ, ପାଞ୍ଚବର୍ଷ ପରେ ଯେଉଁ ଭୋଟ୍ ବାକ୍‌ସ ଯିବ, ସେଇଥିରେ ଆମ ଅଭାବ ଅଭିଯୋଗ ଲେଖି ଗଳାଇବା; ଆସ ତାଙ୍କ ଘର ବନ୍ଦହବ ।

ରାଧୁ - ମକୁନ୍ଦା ।

(ମକୁନ୍ଦ ସେତେବେଳକୁ ଖୁବ୍ ଫୂର୍ତ୍ତିରେ ଘର ସାରା ପଏଁତରା ମାରୁଚି ।)

ମକୁନ୍ଦ - କ'ଣ ?

ରାଧୁ - ସୁଟ୍‌କେଶ ବିଛଣା ଉଠା (ମକୁନ୍ଦ ରାଧୁ ଆଡ଼କୁ ତରାଟିକରି ଚାହିଁଲା) କିରେ ବୋକାଙ୍କ ଭଳି ଅନେଇଚୁ କ'ଣ - ଉଠା, ଉଠାବେ....

ମକୁନ୍ଦ - ମୋ ଦାଉ ଲୋ.....

ରାଧୁ - ଉଠେଇବୁନାଇଁ ?

ମକୁନ୍ଦ - ହାମ୍ ଉଠାତା ନେହି....

(ନିଜ ବ୍ୟାଗ୍‌ଟି ଓ ମନ୍ଦରଙ୍କ ବିଛଣାଟି ଧରିଲା, ରାଧୁ ତା ସୁଟ୍‌କେଶ୍‌ଟି ଧରିଲା)

ରାଧୁ - ଆଚ୍ଛା ତୁ ଗାଆଁକୁ ଚାଲ୍ -

ମକୁନ୍ଦ - ଚାଲ ଗାଁକୁ । ଘିଅ ମହୁରେ ଭସେଇଦବୁ ବୋଲି ଗାଁବାଲାଙ୍କୁ ଜବାବ ଦେଇ କୋଠପାଣ୍ଠିରୁ ବାଟଖର୍ଚ୍ଚ ଆଣି ଆଇଥିଲୁ - ଚାଲ - ଫେରିଚାଲ - ଗାଁବାଲା ସମସ୍ତଙ୍କ ଯଦି ଦି'ଦିନ କରି ହଳ ନବୁଲେଇଚୁ, ତେବେ ତୋର ବରକତ୍ ନାହିଁ । ମତେ ପୁଣି ଧମକେଇବୁ ।

ମନ୍ଦର - ମୋ ବିଛଣାଟି ଆଉ କାହିଁକି ଧରୁଚ ମକୁନ୍ଦ ?

ମକୁନ୍ଦ - ଆପଣ ତ ନିରପେକ୍ଷ ଲୋକ । ଆପଣଙ୍କର କ'ଣ ଅଛି ?

ମନ୍ଦର - ହଉ ଚାଲ - ଆଜି ରାତିଟା କେଉଁଠି କଟାଇବାକୁ ହବ, ସେ ବ୍ୟବସ୍ଥା କରିବା ।

(ସମସ୍ତଙ୍କର ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

(ସହରର ଏକ ରାସ୍ତା, ପୂର୍ବବର୍ତ୍ତୀ ଦୃଶ୍ୟର ପରଦିନର ଘଟଣା - ବିଜୟ ସହିତ ମନ୍ଦର, ରାଧୁ ଓ ମକୁନ୍ଦ ଆସିଲେ - ସମୟ ସନ୍ଧ୍ୟା ।)

ବିଜୟ - ଆଜି ରାତିଟା ରହିଗଲେ ହୁଅନ୍ତାନାଇଁ !

ମନ୍ଦର - କାହିଁକି ମିଛଟାରେ ରହି ଖର୍ଚ୍ଚାନ୍ତ ହବୁ - ଦି'ଦିନ ହେଲା ଆଇଲୁଣି - ତେଣେ ଘର....ଦ୍ୱାର....

ମକୁନ୍ଦ - ରହିଯା'ନ୍ତୁ ନା ! ! ହେଲେ ଶୋଇବାକୁ ଯୋଉ ହରକତ - କାଲି ମନ୍ତ୍ରୀଙ୍କୁ ଦେଖାକରି ଆସି ହୋଟେଲ୍‌ରେ ଦି'ଦିଟା ଖାଇ ଧର୍ମଶାଳା ପିଣ୍ଡାରେ ଶୋଇଲୁ...ଯୋଉ ମଶା....

ବିଜୟ - ମୋ ବସାକୁ ଚାଲିଆସିଥିଲେ....

ମନ୍ଦର - ତମେ ତ ନିଜେ ଅସୁବିଧାରେ ଅଛ - ଆମେ ଆସିଥିଲେ ପୁଣି ବୋଝ ଉପରେ ନଳିତା ବିଡ଼ା ।

ମକୁନ୍ଦ - ସେଇ ଯୋଉ ଘର । ନାଇଁରେ ରାଧୁ, ଯୋଉ ଘରେ ଆମେ କାଲି ମନ୍ତ୍ରୀଙ୍କ ଅନୁସରଣରେ ବସିଥିଲେ ବା...ସେଇ ଘରଟା ଆମକୁ ଛାଡ଼ି ଦେଇଥା'ନ୍ତେ କି.....

ରାଧୁ - ଏତେ ଶୁଅନା ବା.. ସରକାରୀ ଘରେ ଭଏ ପୁଣି ଶୋଇବ, ଓଲୁ କାହାଁକା !

ବିଜୟ - ପଚିଶ ତାରିଖରେ ଦେଖାକରିବାକୁ କହିଚନ୍ତି !

ମନ୍ଦର - ଆମର ହେଇ ତମେ ଟିକିଏ ଯିବ - ତାଲିକାଟା ରଖିଲଟି ?

ବିଜୟ - ରଖିଲି ତ ! ହେଲେ ହବ କ'ଣ ? ସବୁ ଗାଁରୁ ଯଦି ଏମିତି ତାଲିକା ଆସେ - ସରକାର କରିବେ କ'ଣ ! ପ୍ରତିଦିନ ତ ଆମ ପାର୍ଟି ଅଫିସ୍‌କୁ ଶ'ଶ' ଚିଠି ଆସୁଚି - ଜମି ଦିଅ, ଘର ଦିଅ, ଖଜଣା ଜଳକର ଛାଡ଼କରେଇ ଦିଅ.... ସେଲ୍‌ଟିକ୍‌ସ୍ ଉଠେଇ ଦିଅ....

ରାଧୁ -ଏସବୁ ହବ ତ ?

ବିଜୟ - ହବାର ତ କଥା - ହେଲେ ଏତେ ଚଞ୍ଚଳ କେମିତି ହବ ?

ରାଧୁ - ନହବ ଯଦି, ଭୋଟବେଳେ ଲୋକଙ୍କୁ ଜବାବ ଦେଇଆସିଲେ କେମିତି ?

ବିଜୟ - ଜବାବ ତ ସମସ୍ତେ ଦିଅନ୍ତି....

ମକୁନ୍ଦ - (ରାଧୁକୁ) ତୁ କେମିତି ଗାଁବାଲାଙ୍କୁ ଜବାବ ଦେଇ ଆସିଥିଲୁ ?

ରାଧୁ - ମୁଁ ସିନା ଯାଙ୍କ ବଳରେ ଜବାବ ଦେଇଥିଲି ।

ମକୁନ୍ଦ - ସେ ସେମିତି ଆଉ କାହା ବଳରେ ଜବାବ ଦେଇଥିବେ....ତୁ କ'ଣ ଜାଣିବୁ ! କ'ଣ ସେ ସବୁ ବଡ଼ ବଡ଼ କଥା ତୁ କହୁଚି - ପଲିଟିସ୍ ପଲିଟିସ୍ କଥା ।

ବିଜୟ - ଯାହା ବା ହୁଅନ୍ତା - ଯେଉଁ ତିନିଟା ଦଳ ଏକାଠି ମିଳି ଭୋଟ୍‌ବେଳେ ଲଢ଼ିଥିଲେ, ସେ ବର୍ତ୍ତମାନ ଭିତରେ ଭିତରେ ଫାଟିଲାଣି ।

ମକୁନ୍ଦ - ଫାଟିବ ତ ! (ରାଧୁକୁ) ତମ ନିଜ ଘର କଥା ଦେଖୁନୁ ରାଧୁ - ତମେ ଏକା ମା' ପେଟର ତିନି ଭାଇ ଏକାଠି ରହିପାରିଲନାଇଁଟି - ଭିନେ ହେଇଗଲ ? (ଏତିକିବେଳେ ସେବାଟେ ଆସିଲା ଶଶି ।)

ବିଜୟ ଶଶିବାବୁ ! ନମସ୍କାର ।

ଶଶି - ନମସ୍କାର, ନମସ୍କାର..ଆପଣମାନେ କ'ଣ ସମସ୍ତେ ଏଠି ? କୁଆଡ଼େ ଆସିଥିଲେ ? ସର୍କସ ଦେଖି ?

ରାଧୁ - ଦି'ଦିନ ହେଲା ଆଇଲୁଣି - ଆପଣଙ୍କ ଭେଟ ପାଇ ନଥିଲୁ ।

ଶଶି - ମୁଁ ତ ଆଉ ଏଠି ରହୁନାଇଁ - ମଫସଲରେ ।

ବିଜୟ - ଚାଲି ଚାଲି ଯାଉଚନ୍ତି ଯେ ! ଗାଡ଼ି କ'ଣ ହେଲା ?

(ଏ ପର୍ଯ୍ୟନ୍ତ ମନ୍ଦର ମହାନ୍ତି ଏକ ଦୃଷ୍ଟିରେ ଶଶିକୁ ଚାହିଁ ରହିଥିଲେ ।)

ମନ୍ଦର - ହଇଓ ବାବୁ....

ଶଶି - କହନ୍ତୁ - କହନ୍ତୁ- (ମହାନ୍ତିଙ୍କର ମନେପଡ଼ିଗଲା ସେଠି ବିଜୟ ଅଛି । ସେ ହାର କଥା କହିଥା'ନ୍ତେ - କହିପାରିଲେ ନାହିଁ ।)

ମନ୍ଦର - ଯେ....ମୁଁ କହୁଥିଲି ଆମ ଆଡ଼େ ଆଉ ଯିବେନାଇଁ କି....

ଶଶି - ମୋର ତ ସେଇଆଡ଼େ କାମ - ଏଣିକି ବରାବର ଦେଖାହବ ।

ବିଜୟ - (ଶଶିଙ୍କୁ) କୁଆଡ଼େ ଏଣେ ଯାଉଚନ୍ତି ?

ଶଶି - ଦେବାନନ୍ଦ ସାମନ୍ତରାୟଙ୍କ ଘରକୁ - ନିମନ୍ତ୍ରଣ ଥିଲା - ତାଙ୍କ ଝିଅର ଆଜି ଜନ୍ମଦିନ....ଆପଣ ବି ତ.....

ବିଜୟ - ମୁଁ ? ନା, ମତେ ନିମନ୍ତ୍ରଣ ନାହିଁ ।

ମନ୍ଦର - ବାବୁ, ଆଜିକାଲି କ'ଣ କରୁଚନ୍ତି ?

ବିଜୟ - ଚାକିରି - ଗୋଟାଏ କମ୍ପାନୀରେ ବଡ଼ ଚାକିରି ।

ମକୁନ୍ଦ - ମୁଁ କହୁନଥିଲି - ସେତେବେଳେ ଉମେଦାରି ଥିଲେ - ମୁକରିର ହୋଇଗଲେଣି ।

ମନ୍ଦର - ତମେ ବି କିଛି ଗୋଟାଏ ଚାକିରି ବାକିରି କର ବିଜୟ - ଏମିତି ଦେଶକାମ କରୁଥିଲେ କେହି ପଚାରିବେନାହିଁ ।

ରାଧୁ - ବିଜୟବାବୁ ତେଣିକି ମନେକରୁନାହାନ୍ତି ବୋଲି ନା; ନଇଲେ ମନ୍ତ୍ରୀ ଯେମିତି ୟାଙ୍କୁ ଭଲପା'ନ୍ତି..........

ମନ୍ଦର - କି ଭଲପା'ନ୍ତି ହେ ? ଏଇ ଦେଖୁଚି ଶଶିବାବୁଙ୍କୁ ନିମନ୍ତ୍ରଣ - ଆଉ ବିଜୟକୁ.... ଛାଡ଼ ସେଥିରୁ କ'ଣ ମିଳିବ!

ମକୁନ୍ଦ - ହଁ ଆଜ୍ଞା - ଆପଣଙ୍କର ସେଥିରେ କ'ଣ ଅଛି - ଆପଣ ତ ନିରପେକ୍ଷ ଲୋକ... ଯିବା ଆସନ୍ତୁ । ଡେରିହେଉଚି.........

ମନ୍ଦର - ହଉ ତମେ ଯାଅ ବିଜୟ....ସେବବୋଉ କହିଚି..... ବେଳ କରି ଆମ ଆଡ଼େ ଟିକିଏ ବୁଲି ଆସିବ....ହଉ- ଯାଅ ବାପା - ଯାଅ । (ବିଜୟ ନମସ୍କାର କରି ଚାଲିଗଲା) ଚାଲ ରାଧୁ - ଆମର ଯିବା -

ରାଧୁ - ଯିବା ? ମୋ ଗୋଡ଼ ଆଜ୍ଞା ମୋଟେ ଚଳୁନାଇଁ ?

ମନ୍ଦର - କାଇଁକି ?

ରାଧୁ - ଗାଁବାଲା ବାଟ ଚାହିଁ ବସିଥିବେ । ପହଞ୍ଚିଲାକ୍ଷଣି ଡାହାଳ କୁକୁର ପରି ବେଢ଼ିଯିବେ - କ'ଣ କରିବା କହନ୍ତୁ -

ମକୁନ୍ଦ - ଆଜ୍ଞା ତ ନିରପେକ୍ଷ ଲୋକ - ତାଙ୍କୁ କାଇଁକି ୟା ଭିତରକୁ ଟାଣୁଚ! ତୋ କଥା ତ ବୁଝ -

ରାଧୁ - ଓଃ - ଭାରି ଗୋଟାଏ କୁହାଳିଆ ହେଇଯାଇଚି...

ମକୁନ୍ଦ - କାଇଁକି ହେବିନାଇଁ ? ଗାଡ଼ି ଉପରେ ନାହା ତ, ନାହା ଉପରେ ଗାଡ଼ି । ପୁଅ କାନତରାଟି ହବକୁ ଆଇଥେଲା... ଚାଲ ଗାଁକୁ - ଗାଁବାଲା କାନଧରି ଯେତେବେଳେ ଝିଙ୍କା ଉପରେ ଝିଙ୍କା ଦଉଥିବେ, ଆଖିତରାଟି ଭକ୍ ଭକ୍ କରି ଅନଉଥିବୁ - ପାଟିରୁ କଥା ବାହାରିବ ନାଇଁ । କାନତରାଟି ହବୁ, ନା ? ମୁଁ କହୁଚି ପରା ଛତା ସେତେବେଳେ ଠିକ୍ କଥା କହୁଥିଲେ -

ମନ୍ଦର - କ'ଣ କହୁଥିଲେ!!

ମକୁନ୍ଦ - କହୁଥିଲେ, ଏକାରାତିରେ କେହି ଦେଶଟାକୁ ଓଲଟେଇ ଦେବେନାଇଁ । ଲୋକେ ଲଢ଼ନ୍ତୁ - ସରକାର ଭିଡ଼ିବେ । ତେବେଯାଇ ଆମ ଦଶା ଫେରିବ । ଆଉ ଆଜ୍ଞା, ଏଇ ରାଧୁ ପାଣି - ଛାତି କୁଣ୍ଢେମୋଟ କରି କହିବୁଲୁଥାଏ - ପର-କଲମକୁ ଭୋଟ ଦେଇ ଘରେ ଘୁଙ୍ଗୁଡ଼ି ମାରି ଶୋଇପଡ଼ - ସରକାର ମୁଣ୍ଡ ଉପରେ ସୁନା ଛତି ଝୁଲାଇଦେବେ - ପାଟ ହାତୀରେ ଚଢ଼େଇ ଦେବେ - ଏବେ ଚଢୁଥା ହାତୀ ! ଆସନ୍ତୁ, ଡେରି ହଉଚି ।

(ସମସ୍ତେ ଚାଲିଗଲେ)

## ସପ୍ତମ ଦୃଶ୍ୟ

(ମନ୍ତ୍ରୀ ଦେବାନନ୍ଦଙ୍କ ବାସଗୃହ ସଂଲଗ୍ନ ଉଦ୍ୟାନ-ସମୟ ରାତି ପ୍ରାୟ ୯ଟା - ଅତି ସୁନ୍ଦର ଭାବରେ ସଜ୍ଜିତା ହେଇ ଆସିଲା ସୁରମା - ତା ସଙ୍ଗେ ସଙ୍ଗେ ଶଶି ମଧ ଆସିଚି । ସୁରମା ସ୍ୱଭାବତଃ ଚଞ୍ଚଳା - ଗୋଟିଏ ସ୍ଥାନରେ ସ୍ଥିର ହୋଇ ବସି ରହିବା ତା'ର ସ୍ୱଭାବ ବିରୁଦ୍ଧ ।)

ସୁରମା - (ଭିତରୁ କହି କହି) ନା, ନା, ଏ ଅନ୍ୟାୟ...ନିହାତି ଅନ୍ୟାୟ....

ଶଶି - ଅନ୍ୟାୟ ! ! କେମିତି ଅନ୍ୟାୟ ! ! କାହିଁକି ଅନ୍ୟାୟ ? ସ୍କୁଲ୍‌ରେ, କଲେଜ୍‌ରେ. ନାରୀ-ସଂଘ ସଦନରେ, ଲାଟ୍ ସାହେବଙ୍କ ବିଦାୟ ଉତ୍ସବରେ, ଆପଣ ଅସଂଖ୍ୟ ନାଚ ନାଚିଛନ୍ତି । ନାଚ ଆପଣଙ୍କର ଏତେ ପ୍ରିୟ ଯେ ନାଚୁ ନାଚୁ ଆରାମରେ ଶୋଇପଡ଼ିବାର ଇଚ୍ଛା ଆପଣଙ୍କର ହୁଏ ବୋଲି ମୁଁ ନିଜେ ଆପଣଙ୍କ ମୁହଁରୁ ଶୁଣିଚି, ଅଥଚ ଆଜି ୨/୪ ମିନିଟ୍ ନାଚିବା ପାଇଁ ଅନୁରୋଧ କରିବାକୁ ଆପଣ କହୁଚନ୍ତି - ଅନ୍ୟାୟ !

ସୁରମା - ନାଚ ସମ୍ବନ୍ଧରେ ଆପଣଙ୍କର କୌଣସି ଧାରଣା ଅଛି ?

ଶଶି - ମୋର ସେତକ ଥିଲେ ମୁଁ ଆପଣଙ୍କୁ........

ସୁରମା - ମୋର କଥା ଆଗେ ଶୁଣନ୍ତୁ । ନାଚ କେତେବେଳେ ହୁଏ, କାହିଁକି ହୁଏ ଓ କେଉଁ ସ୍ଥାନରେ ହୁଏ, ଆପଣ କହିପାରିବେ ?

ଶଶି - କହୁଚି, ତ ସ୍କୁଲ୍‌ରେ, କଲେଜ୍‌ରେ ହୁଏ ; ରାଜଭବନରେ ହୁଏ; ଦିନରେ ହୁଏ, ରାତିରେ ହୁଏ, ଆଉ ଶୁଣୁଚି ମୋଗଲସମ୍ରାଟ୍‌ମାନଙ୍କ ହାରେମ୍‌ରେ ଦିନରାତି ଚବିଶଘଣ୍ଟା ହୁଏ ।

ସୁରମା - ମୁଁ ସେଇ କଥା କହୁଚି....ଏଇଟା କ'ଣ ମୋଗଲସମ୍ରାଟ୍‌ଙ୍କ ରାଜତ୍ୱ ହେଇଚି - ମୁଖ୍ୟମନ୍ତ୍ରୀ ଏଠି ବସିବେ - ମୁଁ ନାଚିବି ? ମୋ ନାଚରୁ ସେ ବୁଝିବେ କ'ଣ ? କି ପ୍ରଶଂସା ତାଙ୍କଠାରୁ ମୁଁ ପାଇବି ?

ଶଶି - ତାଙ୍କ ପ୍ରଶଂସା ଆମର ଦରକାର ନାହିଁ । ଦରକାର ଖଣ୍ଡେ ପ୍ରଶଂସାପାତ୍ର - ଆପଣ ମାନ୍ଦ୍ରାଜ ନାଚ ଶିଖିବାକୁ ଯିବେନା ?

ସୁରମା - ଯିବି ତ ?

ଶଶି - ସେଠି ଭର୍ତ୍ତିହେବା କିପରି କଷ୍ଟସାଧ ଆପଣ ତ ଜାଣନ୍ତି ?

ସୁରମା - ଜାଣେ ?

ଶଶି - କିନ୍ତୁ ଆଚାର୍ଯ୍ୟଙ୍କଠାରୁ ଖଣ୍ଡିଏ ପ୍ରଶଂସାପତ୍ର ପାଇଲେ ଆଉ କୌଣସି ଅସୁବିଧା ରହିବନାହିଁ । ଏ କଥା ଜାଣନ୍ତି କି ?

ସୁରମା - ଧରନ୍ତୁ, ଜାଣେ ।

ଶଶି - ସେଥିପାଇଁ ଆପଣ ନାଚିବେ ।

ସୁରମା - ତା' ହେଲେ ଟି'ପାର୍ଟି ହେଉଥିବାବେଳେ ନାଚର ବ୍ୟବସ୍ଥା ହେଲାନାହିଁ କାହିଁକି ? ସେଠି ତ ଅନେକ ଲୋକ ଥିଲେ । ସେମାନେ ଦେଖିଥା'ନ୍ତେ, ଆଚାର୍ଯ୍ୟ ମହାଶୟ ମଧ ଦେଖିଥା'ନ୍ତେ ।

ଶଶି - ଦେଖନ୍ତୁ ସୁରମା ଦେବୀ - ଆଜି ଆପଣଙ୍କ ଜନ୍ମଦିନ, ସମସ୍ତେ ଖାଇପିଇ ଆନନ୍ଦରେ ମାତିଲେ । ମୁଁ କି ଦୋଷ କରିଚି ଯେ ସନ୍ଧ୍ୟାବେଳୁ ରାତି ୯ଟା ବାଜିଲାଣି ମୁଁ ଆପଣଙ୍କ ପଛରେ ଧାଇଁଛି । ଆପଣଙ୍କ ବାପା ମୋତେ କହିଥିଲେ ବୋଲି ମୁଁ ଆପଣଙ୍କୁ ଅନୁରୋଧ କରୁଚି! ସେଠି କାହିଁକି ନାଚ ହେଲାନାଇଁ, ଏଠି କାହିଁକି ହବ - ଯାର ଉତ୍ତର ସେଇ ଦିଅନ୍ତୁ । ମୋର କ'ଣ ଅଛି.... ଏଠି ତ ସବୁ କଥାରେ ପଲିଟିକ୍ସ.... (ଦୂରକୁ ଚାହିଁ) ଏଇ ଦେଖନ୍ତୁ ସୁରମା ଦେବୀ, ମୁଖ୍ୟମନ୍ତ୍ରୀ ଓ ଆପଣଙ୍କ ବାପା ବୋଧହୁଏ ଏଣିକି ଆସିବେ ।

ସୁରମା - ଆସନ୍ତୁ ।

ଶଶି - ଆପଣ କିନ୍ତୁ ଯା'ନ୍ତୁ ।

ସୁରମା - ମୁଁ ନାଚିବି ପରା......

ଶଶି - ଆରେ ସେ ଆସନ୍ତୁ.... ନାଚିବାପାଇଁ ଆପଣଙ୍କୁ ରାଜିକରେଇବା ଅପେକ୍ଷା ନାଚ ଦେଖିବା ପାଇଁ ତାଙ୍କୁ ରାଜି କରାଇବା ଆହୁରି କଷ୍ଟସାଧ । ଆପଣ ଯା'ନ୍ତୁ । (ସୁରମା ଚାଲିଗଲା, ଆଚାର୍ଯ୍ୟ ଓ ଦେବାନନ୍ଦ ଆସିଲେ ।)

ଆଚାର୍ଯ୍ୟ - ଇସ୍‌ମାଇଲ୍ ଖାଁର ଖବର କ'ଣ ଶଶି ?

(ଶଶି ଯେପରି କିଛି ବୁଝିପାରିଲା ନାହିଁ ।)

ତମ ପ୍ରତି ତା'ର ବ୍ୟବହାର କିପରି ?

ଶଶି - ଖୁବ୍ ଭଲ ।

ଆଚାର୍ଯ୍ୟ - ତମେ ରହୁଚ କେଉଁଠି ? ମାନେ, ତମ ହେଡ୍‌ଅଫିସ୍ ?

ଶଶି - ବସ୍ତା ଷ୍ଟେସନ୍ ।

ଆଚାର୍ଯ୍ୟ - ଏଠିକି ଆସିଥିଲ କେବେ ?

ଶଶି - କାଲି ।

ଆଚାର୍ଯ୍ୟ - କେବେ ଫେରିବ ?
ଶଶି - ଆଜି ରାତି ମେଲ୍‌ରେ ।
ଆଚାର୍ଯ୍ୟ - ହଁ, ଦେବାନନ୍ଦ ବାବୁ, ଏଣିକି ଏ ସବୁ ଟି'ପାର୍ଟି ଆଉ ଡିନାର ପାର୍ଟି ପ୍ରଭୃତିରେ ମୁଁ କିପରି ଯୋଗ ଦେଇନପାରିବି ତା'ର ଉପାୟ ମତେ କହନ୍ତୁ....
ଦେବାନନ୍ଦ - କାହିଁକି ?
ଆଚାର୍ଯ୍ୟ - ଟି'ପାର୍ଟି ସରିଲା; କିନ୍ତୁ ମୁଁ ଯାଉନାହିଁ ବୋଲି କେହି ଯିବାରକୁ ନାରାଜ । ସମସ୍ତେ ଚାହାନ୍ତି ମୋ ସହିତ ଆଳାପ କରିବେ - (ହସିହସି) ଜଣେ ଭଦ୍ରମହିଳା ଅତି କାତର ସ୍ୱରରେ ତାଙ୍କ ଝିଅର ବିବାହ ପ୍ରସ୍ତାବ ଭାଙ୍ଗିଯିବା କଥା ମତେ ଜଣାଇଲେ । ସରକାରର ଦାୟିତ୍ୱ ଘେନି ଏ ସବୁ ସାମାଜିକତା ମୁଁ କିପରି ରକ୍ଷାକରିବି ବୁଝିପାରୁନି....
ଶଶି - (ଦେବାନନ୍ଦଙ୍କୁ) ସୁରମା ଦେବୀ.......
ଦେବାନନ୍ଦ - ସୁରମା କାହିଁ ? ଆପଣ ଜାଣନ୍ତି, ସୁରମା ନାଚ ଶିଖିବା ପାଇଁ ମାନ୍ଦ୍ରାଜ ଯାଉଚି !
ଆଚାର୍ଯ୍ୟ - ଶୁଣିଚି.... କେବେ ଯିବ ?
ଦେବାନନ୍ଦ - ଏଇ ସପ୍ତାହରେ - ଆପଣ ତା ନାଚ ଦେଖିଚନ୍ତି ?
ଆଚାର୍ଯ୍ୟ - ମୁଁ ?.....ମୁଁ କ'ଣ ନାଚ ଦେଖିବି ?
ଦେବାନନ୍ଦ - ମାନ୍ଦ୍ରାଜ ଯିବା ପୂର୍ବରୁ ସେ ଥରେ ତା ନାଚ ଆପଣଙ୍କୁ ଦେଖାଇବାକୁ ଚାହେଁ.... ।
ଆଚାର୍ଯ୍ୟ - ସତେ ! କିନ୍ତୁ ମତେ ବେଳ କାହିଁ ?
ଶଶି - ଆଜି....ଏଇଠି....
ଆଚାର୍ଯ୍ୟ - ଏଇଠି ?
ଦେବାନନ୍ଦ - ଆପଣ ତା'ର ଗୁରୁଜନ - ସେ ଆପଣଙ୍କ ଆଶୀର୍ବାଦ ଭିକ୍ଷା କରୁଚି !
ଆଚାର୍ଯ୍ୟ - ବେଶ୍ - ବେଶ୍ - ସେଇ ବ୍ୟବସ୍ଥା ହେଉ ।

(ଶଶି ଚାଲିଗଲା)

ଏଠି କିଛି ସମୟ ହେଲେ ଏମିତି କଟିଯାଉ - ଘରେ ଫାଇଲଗଦା ଦେଖି ମୋର ଭୟହେଲାଣି....

(ନାଚ ଆରମ୍ଭ ହୋଇ ଶେଷ ହେଲା)

ଆଚାର୍ଯ୍ୟ - ଆଶ୍ଚର୍ଯ୍ୟ ! ସୁରମା ଏତେଦୂର ଆଗେଇଚି - ବାସ୍ତବିକ୍ ତାକୁ ଧନ୍ୟବାଦ ଦବାର କଥା !
ଶଶି - ତାଙ୍କୁ ଖଣ୍ଡେ ସାର୍ଟିଫିକେଟ୍ ଆପଣ ଦେବେ -
ଆଚାର୍ଯ୍ୟ - ନିଶ୍ଚୟ ଦେବି....
ଶଶି - ସୁରମା ଦେଈଙ୍କ ଜନ୍ମଦିନକୁ ଆଜି ସମସ୍ତେ ଆସିଲେ । ଏକା ଖାଁ ସାହେବ ଆସିପାରିଲେ ନାହିଁ ।
ଆଚାର୍ଯ୍ୟ - ଖାଁ ସାହେବ ! ଓ, ଇସ୍‌ମାଇଲ୍ ଖାଁ....

ଶଶି - ହଁ, ବିଚରା ଗ୍ୟାସ୍‌ଟ୍ରିକ୍ ଅଲସର୍ ଭୋଗୁଚନ୍ତି । ଏଠି ଆପଣଙ୍କୁ ଆଜି ଦେଖାକରିବାର ଆଶା ତାଙ୍କର ଖୁବ୍ ଥିଲା ।

ଆଚାର୍ଯ୍ୟ - ହୁଁ, ଦେବାନନ୍ଦବାବୁ ! ଇସ୍‌ମାଇଲ୍ ଏଣ୍ଡ୍ କୋ.ର ସେଇ ଫାଇଲ୍‌ଟା ?

ଦେବାନନ୍ଦ - ମୋ ପାଖରେ ଅଛି - ଆପଣ ମୋର ମତ ଚାହିଁଥିଲେ ।

ଆଚାର୍ଯ୍ୟ - ଆପଣଙ୍କର Suggestions କ'ଣ ?

ଦେବାନନ୍ଦ - ସେମାନେ ଛ'ମାସପାଇଁ ଲାଇସେନ୍‌ସ ଚାହଁଥିଲେ - କିନ୍ତୁ ମୋର ମତ ତିନିମାସ ପାଇଁ ଏ ସୁବିଧା ତାଙ୍କୁ ଦିଆଯାଉ ।

ଆଚାର୍ଯ୍ୟ - ହୁଁ । ବଙ୍ଗଳାରେ ତ ଦୁର୍ଭିକ୍ଷ ଦେଖାଦେଇଚି ।

ଦେବାନନ୍ଦ - ପଡ଼ୋଶୀ ରାଜ୍ୟ ହିସାବରେ ବର୍ତ୍ତମାନ ବଙ୍ଗଳାକୁ ସାହାଯ୍ୟ କରିବା ଆମର ଉଚିତ୍ । ଏ ବ୍ୟବସ୍ଥା ଦ୍ୱାରା ବଙ୍ଗଳାକୁ ସାହାଯ୍ୟ ଦିଆଯିବ । ତା'ଛଡ଼ା.....

ଆଚାର୍ଯ୍ୟ - ତା'ଛଡ଼ା... ?

(ଆଚାର୍ଯ୍ୟ, ଦେବାନନ୍ଦ ଓ ଶଶି - ସମସ୍ତଙ୍କ ସହିତ ସମସ୍ତଙ୍କର ଦୃଷ୍ଟି ବିନିମୟ ଫଳରେ ପ୍ରଶ୍ନର ଉତ୍ତର ମିଳିଗଲା - ଆଚାର୍ଯ୍ୟ ଟିକିଏ ଅସ୍ଥିର ହେଲେ ପଦଚାରଣ କରିବାକୁ ଲାଗିଲେ ।)

ଦେବାନନ୍ଦ - ଫାଇଲ୍‌ର ଚଞ୍ଚଳ ଅର୍ଡ଼ର୍ ହୋଇଯିବା ଉଚିତ୍ ।

ଆଚାର୍ଯ୍ୟ - ହୁଁ, ବୁଝିଲି । ଫାଇଲ୍‌ଟା କାହିଁ ?

ଦେବାନନ୍ଦ - ଏଇଠି ଅଛି - ମୋ ଘରେ ।

(ଆଚାର୍ଯ୍ୟ ଆହୁରି କ୍ଷିପ୍ର ଭାବରେ ବୁଲାଚଲା କରିବାକୁ ଲାଗିଲେ - କିପରି କାମ ହାସଲ ହେବ ସେଥିପାଇଁ ଦେବାନନ୍ଦ ଓ ଶଶି ବ୍ୟଗ୍ର ହୋଉଉଠୁଥା'ନ୍ତି ।)

ଦେବାନନ୍ଦ - ଅର୍ଡ଼ର୍‌ଟା....

ଆଚାର୍ଯ୍ୟ - ଆଃ.... ଆପଣଙ୍କ ଘରେ ଫାଇଲ୍ ରହିଲେ ମୁଁ ଅର୍ଡ଼ର୍ କିପରି ଦେବି ? ଏଇଠିକି ଅଣାନ୍ତୁ....

ଦେବାନନ୍ଦ - ଶଶିବାବୁ.... (ଶଶି ଚାଲିଗଲା)

ଆଚାର୍ଯ୍ୟ - ମୁଁ ଶୁଣୁଚି, ଆପଣ ସେକ୍ରେଟାରୀମାନଙ୍କୁ ଭୟ କରୁଚନ୍ତି ? କାହିଁକି ? ସେମାନେ ଖୁବ୍ ବଡ଼ ଅଫିସର୍ ବୋଲି ?

ଦେବାନନ୍ଦ - ନା, ନା, ମୁଁ ଭୟକରିବି କାହିଁକି ? ଅନେକ ସମୟରେ ସେମାନେ ଭାରି ଗୋଳମାଳିଆ ନୋଟ୍ ଦିଅନ୍ତି । ତା'ଛଡ଼ା ସେମାନଙ୍କୁ ତ ହାତରେ ରଖିବାକୁ ହେବ !

ଆଚାର୍ଯ୍ୟ - ହାତରେ ରଖିବାକୁ ହେଲେ ସତରଶ' ଟଙ୍କା ଦରମା ଉପରେ ତିନିଶ ଟଙ୍କା ସ୍ପେଶାଲ ଦରମା ମଞ୍ଜୁର କରାଯାଇପାରେ; କିନ୍ତୁ ମୁଁ ଏଥିରେ ଆପଣଙ୍କୁ କ'ଣ ଉପଦେଶ ଦେବି ?

ଦେବାନନ୍ଦ - ଶୁଣିଲି - ଆପଣ ସେ ଯେଉଁ ସତର ହଜାର ଟଙ୍କା ମଞ୍ଜୁର କରିଚନ୍ତି, ସେଥିରେ

Finance Secretary କୁଆଡ଼େ ଆପତ୍ତି ଉଠାଉଛନ୍ତି - ଏ ଟଙ୍କା Provide କରିବା ପାଇଁ ବଜେଟ୍‌ରେ କୌଣସି ହେଡ୍‌ ନାହିଁ ବୋଲି ସେ କହୁଚନ୍ତି ।

ଆଚାର୍ଯ୍ୟ - Tell him that he has no head! ବଜେଟ୍‌ରେ ହେଡ୍‌ ନାହିଁ ! ହେଡ୍‌ ନାହିଁ ତ ହେଡ୍‌ ତିଆରି କରିବାକୁ ହେବ । ତାଙ୍କର ଜାଣିବା ଉଚିତ୍‌ - It is my order. It is Chief Minister's order and he has to obey it! ଜାଣନ୍ତି ତ ଏଇ ଇସ୍‌ମାଇଲ୍‌ କୋମ୍ପାନୀର ଫାଇଲ୍‌କୁ ନେଇ ପଟ୍ଟନାୟକ, ଫୁଡ୍‌ ସେକ୍ରେଟାରୀ....

ଦେବାନନ୍ଦ - ହଁ, ଜାଣେ - ସେଇଥିପାଇଁ ତ ବିଚରାକୁ ରାଜଧାନୀ ଛାଡ଼ି ଦୁଇଦିନ ଭିତରେ ମାଳ ଅଞ୍ଚଳକୁ ଯିବାକୁ ପଡ଼ିଲା....

(ଶଶି ଫାଇଲ୍‌ ଆଣିଲା - ସଙ୍ଗରେ ଗୋଟାଏ ଦୁଆତଦାନୀ ଓ ଗୋଟାଏ ବଡ଼ ପର-କଲମ ।)

ଆଚାର୍ଯ୍ୟ - ଏ କ'ଣ - ଏ ପର-କଲମ ?

ଦେବାନନ୍ଦ - ଇଲେକ୍‌ସନ ପରଠାରୁ ମୁଁ ପର-କଲମ ଛଡ଼ା ଅନ୍ୟ କୌଣସି କଲମରେ ଲେଖୁନାଇଁ ।

ଆଚାର୍ଯ୍ୟ - ସତେ ନା କ'ଣ ?

ଦେବାନନ୍ଦ - ମୁଁ ଏକା ନୁହେଁ - ଘରେ ମୋର ପିଲାଠାରୁ ଆରମ୍ଭ କରି -ପି.ଏ.ପର୍ଯ୍ୟନ୍ତ ସମସ୍ତେ ପର-କଲମ ବ୍ୟବହାର କରୁଚନ୍ତି ।

ଆଚାର୍ଯ୍ୟ - ବାଃ, A novel idea - ଏ ପର-କଲମଟା.... ହାତରେ ଧରିଲେ ମନ ଭିତରେ ଗୋଟାଏ ବିଜୟର ଉନ୍ମାଦନା ଖେଳିଯାଉଚି । ଆଜିଠାରୁ ମୁଁ ମଧ୍ୟ କେବଳ ଏଇ ପର-କଲମ ବ୍ୟବହାର କରିବି - (ଫାଇଲ୍‌ଟା ଖୋଲିଲେ) ରାଜେନ୍ଦ୍ର ଏଠି ଥିଲେ ଏ ଫାଇଲ୍‌ ଅବସ୍ଥା କ'ଣ ହୋଇଥା'ନ୍ତା କହିପାରିବେ ?

ଦେବାନନ୍ଦ - ହୁଏତ କିଛି ହୋଇପାରିନଥା'ନ୍ତା - ସେ ଏଥିରେ ଆଦୌ ରାଜି ହୋଇନଥା'ନ୍ତେ ।

ଆଚାର୍ଯ୍ୟ - କିନ୍ତୁ ମୋର ଅର୍ଡ଼ର୍ ବନ୍ଦ ହୋଇନଥା'ନ୍ତା । ରାଜେନ୍ଦ୍ର ଆରମ୍ଭରୁ ଯେମିତି ମୋ ସହିତ ଖେଳିବାକୁ ଆରମ୍ଭ କଲାଣି, Food Secretary କୁ ସେଇ ତ ଏ ପରାମର୍ଶ ଦେଇଯାଇଥିଲା - କିନ୍ତୁ ତା'ର ବୁଝିବା ଉଚିତ୍ ଯେ ଆମେ ଏଠିକି Arm Chair Politician ହବାକୁ ଆସିନୁ - ଆସିଚୁ ଶାସନ କରିବାକୁ - ଆମ ପଛରେ ଲୋକମତ ଅଛି । ଆମେ ଡରିବୁ କାହିଁକି ? ଲୋକଙ୍କ ସେବା କେମିତି କରିବାକୁ ହୁଏ, ସେ କଥା କ'ଣ ଆମେ ଏଇ ବ୍ୟୁରୋକ୍ରାଟ୍ ସେକ୍ରେଟାରୀମାନଙ୍କଠାରୁ ଶିଖିବୁ ? ଇସ୍‌ମାଇଲ୍‌ କୋମ୍ପାନୀ ଲାଇସେନ୍‌ସ ପାଇବ ହିଁ ପାଇବ -No one can stop it.... ରାଜେନ୍ଦ୍ର ଆସି ଦେଖୁ ଯେ ଆଚାର୍ଯ୍ୟ କିଏ... ଆଚାର୍ଯ୍ୟ କ'ଣ କରିପାରେ ।

(ଫାଇଲ୍‌ରେ ଲେଖିବା ଆରମ୍ଭ କଲେ)

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ମନ୍ଦର ମହାନ୍ତିଙ୍କ ଅଳିନ୍ଦ - ରାତି ପ୍ରାୟ ୯ଟା - ବାହାରୁ ଶଶିର ସତର୍କ କଣ୍ଠସ୍ୱର ଶୁଣାଗଲା ।)

ଶଶି - (ବାହାରୁ)....ଘରେ କିଏ ଅଛି ? ମହାନ୍ତିଏ ? ....ମହାନ୍ତିଏ... (ହାତରେ ଲଣ୍ଠନଟା ଧରି ସେବତୀ ଆସିଲା - ତା'ର ଶରୀର ଅବସନ୍ନ) ।

ସେବତୀ - କିଏ ? ....କିଏ ଡାକୁଚି....

(ଲୁଚିଛପି ଆସିଲା ଭଳି ଶଶି ଆସିଲା । ସେବତୀକୁ ଦେଖି ତା'ର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ଯଦିଓ ମନରେ ତା'ର ପ୍ରଚ୍ଛନ୍ନ ଆଶଙ୍କା ।)

ଆପଣ ଏତେ ରାତିରେ କୁଆଡ଼େ ?

ଶଶି - ତମ ବାପା କାହାନ୍ତି ସେବତୀ ? (ସେବତୀ ଉତ୍ତର ଦେବାକୁ ଯେପରି କୁଣ୍ଠାବୋଧ କଲା) କୁହ, କାହାନ୍ତି ?

ସେବତୀ - ଦି'ପହରୁ ଚାଉଳ ପାଇଁ ଯାଇଛନ୍ତି । ଏଯାଏଁ ଫେରିନାହାନ୍ତି -

ଶଶି - ତମ ବୋଉ ?

ସେବତୀ - ଶୋଇପଡ଼ିଚି । ଆପଣ ବସିବେ ?

ଶଶି - ନା, ମୁଁ ଆସିଥିଲି.... ( କହିବାକୁ ଯାଇ କିଛି କହିପାରୁନଥାଏ)

ସେବତୀ - (ରୁଦ୍ଧ ଗଳାରେ) ଶଶିବାବୁ....

ଶଶି - କ'ଣ ହେଲା ସେବତୀ ?

ସେବତୀ - ଏ ଅବସ୍ଥା କାହିଁକି ହେଲା ?

ଶଶି - ଅବସ୍ଥା ?

ସେବତୀ - ମାସକ ଆଗରୁ ଧାନଚାଉଳ ଭାସୁଥିଲା - ଏଇନେ ସବୁ ଶୂନ୍ - ଲୋକେ କହୁଚନ୍ତି - ସରକାର ଗୋଟାଏ କମ୍ପାନୀକୁ ଲାଇସେନ୍ସ ଦେଲେ । କୋଉ କମ୍ପାନୀ ସେ ? ସରକାର କାହିଁକି ତାକୁ ଲାଇସେନ୍ସ ଦେଲେ ? ଚଢ଼ା ଦାମ୍ ଦେଇ ସବୁ ଧାନଚାଉଳ ବଙ୍ଗଳା ଦେଶକୁ ସେ ଏଠୁ ବୁହାଇ ନେଲାଣି । ଆମେ କିଣିଖିଆ, ଏଠି ଖାଇବାକୁ ନ ପାଇ ମରୁଚୁ । ଦୁର୍ଭିକ୍ଷ ତ ମାଡ଼ିଆଇଲାଣି । ଖାଇବାକୁ ନପାଇ ସାହୁ ବୁଢ଼ା ଆଜି ମରିଗଲା ।

ଶଶି - ତମେ ପିଲା ସେବତୀ... କିଛି ବୁଝିନ । ସରକାରଙ୍କ ବିରୁଦ୍ଧ ଲୋକେ ମିଛରେ ଦୁର୍ଭିକ୍ଷ ବୋଲି କହି ଲୋକଙ୍କୁ ମତଉଛନ୍ତି । ଧାନଚାଉଳ ଆଜି ମିଳୁନି - ହୁଏତ କାଲି ମିଳିବ ।

ସେବତୀ - କୋଉଠି ମିଳୁଚି ? ବେଳାକ ଆହାର ଯୋଗାଡ଼ କରିବାପାଇଁ ବାପା ତିନିବେଳା

ଦଉଡ଼ୁଛନ୍ତି ହେଲେ ପାରୁନାହାନ୍ତି । ଶାଗପତର ଖାଇ ଆମେ କେଇଦିନ ବଞ୍ଚିବୁ ? କାଲିଠୁ ପେଟପୂରା ମୁଠାଏ ଭାତ ନପାଇ ବୋଉ ହାଲିଆ ହୋଇ ଶୋଇପଡ଼ିଚି....ଆପଣ ପରା ସେ କମ୍ପାନୀର ଲୋକ, ଆପଣ ପରା ଚାଉଳ -ଡିପୁର ମାଲିକ ।

ଶଶି - ମାଲିକ ବୋଲି ତ ତମ ଦୁଃଖ ଶୁଣି ଏଠିକି ଧାଇଁ ଆସିଚି । ତମେ କିଛି ଚିନ୍ତା କରନା ସେବତୀ, ତମର ଯେତେ ଚାଉଳ ଦରକାର ତମକୁ ମୁଁ ଦେବି ।

ସେବତୀ - ଆପଣ ଜାଣନ୍ତି, ଆମ ଗାଁରେ ୨୧ ଘର କିଣିଖିଆ । ସେମାନେ ସମସ୍ତେ ଚାଉଳ ମୁଠାଏ ପାଇଁ ଛଟପଟ ହଉଚନ୍ତି.... ଭୋଟ୍ ବେଳେ ତାଙ୍କୁ କୁହାହେଉଥିଲା ଯାହାର ଜମିନାହିଁ ତାଙ୍କୁ ଜମି ଦିଆଯିବ....

ଶଶି - କିନ୍ତୁ ସେବତୀ, ଖାଲି ତମରି ମୁହଁକୁ ଚାହିଁ....

ସେବତୀ - ଯଦି ୨୧ ଘର କୁଟୁମ୍ବ ପାଇଁ ଚାଉଳ ଯୋଗାଡ଼ କରିପାରିବେ ତେବେ ଆପଣଙ୍କ ପାଖରେ ମୁଁ ହାତପାତି ଠିଆହେବି - ନଇଲେ ସେମାନେ ମରିବେ.....ଆମେ ବି ମରିବୁ । ପାରିବେ ?

ଶଶି - ଆଚ୍ଛା, ସେ ବ୍ୟବସ୍ଥା କରି ମୁଁ ତମକୁ ଜଣାଇବି - ମୁଁ ଆସୁଛି ।

(ଚାଲିଗଲା)

## ଦ୍ୱିତୀୟ ଦୃଶ୍ୟ

(ନନ୍ଦୀପୁର ମେଲଣପଡ଼ିଆ - ଦୂରରେ ଡାକବଙ୍ଗଳା । ମଞ୍ଚର ଟିକିଏ ପଶ୍ଚାତ୍‌ଭାଗକୁ ଗୋଟିଏ ଝଙ୍କାଳିଆ ଗଛର ଦୃଶ୍ୟ । କୃଷ୍ଣପକ୍ଷ ରାତିର ପ୍ରଥମ ପ୍ରହର ପ୍ରାୟ ଉତ୍ତୀର୍ଣ୍ଣ ହୋଇଯାଇଚି । ତାରାବିହୀନ ମେଘୁଆ ଆକାଶ । ଫଳରେ ଅନ୍ଧକାର ଦ୍ୱିଗୁଣ ଘନୀଭୂତ ହୋଇଯାଇଚି । ଯେଉଁ ସମୟରେ ଏଇ ଦୃଶ୍ୟର ଅବତାରଣା କରାଯାଇଚି, ସେଇ ସମୟରେ ଏଇ ଦୃଶ୍ୟବର୍ଣ୍ଣିତ ଗ୍ରାମକୁ ଘେନି ଏକ ବିରାଟ ଅଞ୍ଚଳ ଉତ୍କଟ ଖାଦ୍ୟାଭାବର କବଳରେ ପଡ଼ିଚି । ଖୁବ୍ ଦୂରରୁ ଶୁଣାଗଲା ମକୁନ୍ଦର ସ୍ୱର ।)

ମକୁନ୍ଦ - (ଦୂରରୁ) ବ-ଉ-ଳି.... ବଉଳି ଲୋ....ଆ...ଆ...

(ସ୍ୱର କ୍ରମେ ନିକଟରୁ ନିକଟତର ହେଲା - ମକୁନ୍ଦ ମେଲଣପଡ଼ିଆକୁ ଆସିଲା - ଅନ୍ଧକାରରେ ତା ଦେହର କ୍ଷୀଣ ରେଖାଟି କେବଳ ଦେଖାଯାଉଚି - ହାତରେ ପୁରୁଷେ ଉଚ୍ଚର ଠେଙ୍ଗା ।

ଗାଈଟା କୁଆଡ଼େ ଗଲା ? ରାତି ଆସି ପହଡ଼େ କି ପାଞ୍ଚଘଡ଼ି ହେଲାଣି ? (ପୁଣି ଡାକିଲା) ବଉଳି ଲୋ ଆ-ଆ-ଆ । କାଇଁ -ଥିଲେ ତ ହମାରଡ଼ି ଛାଡ଼ନ୍ତାଣି !....

(ଏତିକିବେଳେ ତା' ଦୃଷ୍ଟିପଡ଼ିଲା ଦୂରରେ ଥିବା କୌଣସି ପଦାର୍ଥ ଉପରେ ।)

ଏଇଟା କି ଆଲୁଅ ! ମିଞ୍ଜିମିଞ୍ଜି ହଉଚି ! (ଡାକିଲା) କିଏ ଆଉଚ ହୋ..... ଆଲୁଅ ହାତରେ କିଏ ଆଉଚ ?

ରାଧୁ - (ଦୂରରୁ) ମକୁନ୍ଦ କିରେ ?

ମକୁନ୍ଦ - ହଁ....ହଁ ।

ରାଧୁ - (ଦୂରରୁ) ମୁଁ ଯାଉଚି - ମୁଁ । (ଜଣାଗଲା ଯେପରି ରାଧୁର ସ୍ୱର ହଠାତ୍ ଭାଙ୍ଗିପଡ଼ିଲା, ସେ ଆଉ କିଛି କହିପାରିଲା ନାଇଁ ।)

ମକୁନ୍ଦ - (ପାଟିକରି) କିଏ ? (ମନକୁ ମନ) ମଲା, ଜବାବ ଦଉଥିଲା ପୁଣି ରହିଗଲା (ପାଟିକରି) କିଏ ଆଉଛ.... (ଟିକିଏ ପରେ) କିଏ, ରାଧୁ ପାଣି !

(ହାତରେ ଗୋଟିଏ ଲଣ୍ଠନ ଧରି ରାଧୁ ଆସିଲା, ତା'ର ସ୍ୱାସ୍ଥ୍ୟ ଅନେକ ଭାଙ୍ଗିପଡ଼ିଚି - ସେ ଆସି ମକୁନ୍ଦ କାନ୍ଧରେ ଭରାଦେଇ ଠିଆହେଲା - ପ୍ରଖର ନିଃଶ୍ୱାସ ଚାଲିଥାଏ) କ'ଣ ହେଲାରେ ରାଧୁ ? (ରାଧୁ ଚେଷ୍ଟାକରି ଯେମିତି ହଠାତ୍ କିଛି କହିପାରୁନଥାଏ ।)

ରାଧୁ - (କ୍ଷୀଣ ଗଳାରେ) ତୁ ଲବଙ୍ଗ ଖାଉ ପରା, ରଖିଚୁ ?

ମକୁନ୍ଦ - (ଅଣ୍ଟାରୁ କାଢ଼ି ଦେଲା) ହଁ, ନେ - ନେ -ଗୋଟାଏ ପାଟିରେ ପକା - ଜିଭ ଓଦା ହୋଇଯାଉ....

(ରାଧୁ ଲବଙ୍ଗ ଚୋବାଇବାରୁ କଥା କହିବାର କ୍ଷମତା ଯେପରି ଫେରିପାଇଲା ।)

କ'ଣ ହେଲା ତୋର ? ଜବାବ ଦେଇ ପୁଣି ରହିଗଲୁ କାହିଁକ ?

ରାଧୁ - ଏତେଗୁଡ଼ାଏ ବାଟ ଧସ୍‌ସି ଚାଲିଆସିଲି - ତଣ୍ଟି ଅଠା ହୋଇଗଲା ।

ମକୁନ୍ଦ - କୁଆଡ଼େ ଯାଇଥିଲୁ ?

ରାଧୁ - ଡିପୁକୁ ।

ମକୁନ୍ଦ - ଡିପୁକୁ ? ଚାଉଳପେଇଁ ?

ରାଧୁ - ହଁ ।

ମକୁନ୍ଦ - କ'ଣ ହେଲା ?

ରାଧୁ - (ପକେଟ୍‌ରୁ କାଗଜରେ ବନ୍ଧା ପୁଡ଼ିଆଟାଏ ବାହାର କରି) ଦେଖ୍ ଶଏ ଟଙ୍କା ନେଇ ଯାଇଥିଲି - ପାଞ୍ଚ - ଦଶ ଯାହା ପଡ଼ିଥା'ନ୍ତା, କିଳାପୋତେଇ ଦେଇ ସେଇ ସେର ଦି'ଟଙ୍କା ପଡୁପଛେ ପାଞ୍ଚ ଦଶ ସେର ଯାହା ମିଳିଥା'ନ୍ତା, ଆଣିଥା'ନ୍ତି ।

ମକୁନ୍ଦ - ଦେଲାନାଇଁ ?

ରାଧୁ - ପାଟି ଖୋଲୁନାଇଁ । ଡିପୁ ଚାରିପାଖେ ବନ୍ଧୁକ -ପୁଲିସ୍ ପହରା.... ସବୁ ଚାଉଳ କଲିକତା ଚାଲିଚି ।

ମକୁନ୍ଦ - ସେ ଶଶିବାବୁ ପରା ସେଠି ଥିଲା - ତାକୁ କହିଲୁ ନାଇଁ ?

ରାଧୁ - ଶଳା ନିଆଁଗିଳା - ନିମକ୍‌ହାରାମଟାଏ -କୋଉଠି ଲୁଚିଲା ଦେଖାପାଇଲି ନାହିଁ ।

ମକୁନ୍ଦ - ଏ ରାଜ୍ୟକୁ କି ଗ୍ରହ ଗ୍ରାସିଲା - ଅନଉ ଅନଉ ମାସ ଦି'ଟାରେ ସବୁ ଧାନ ଚାଉଳ

ଉଭାନ୍ -

ରାଧୁ - ଉଭାନ୍ କାହିଁକି ହବ ରେ ? ଡିପୁକୁ ଦେଖିବୁ ଯା - ପର୍ବତ ପ୍ରମାଣ ଗଦେଇ ଦେଇ କଲିକତା ରପ୍ତାନି କରୁଛନ୍ତି ।

ମକୁନ୍ଦ - ବଙ୍ଗଳା ଦେଶରେ ତ ଦୁର୍ଭିକ୍ଷ ପଡ଼ିଛି କହୁଚନ୍ତି । ମିଦିନାପୁର ଆଡୁ ଆସି ଭର୍ତ୍ତି ହୋଇଗଲେଣି । ଯୋଉ ଯବାନ୍ ଟୋକାଗୁଡ଼ାକ ଚାଉଳ ମୁଠାଏ ପାଇଁ ଯାହା ହଉଚନ୍ତି, ରେଳଗାଡ଼ିରେ ପୁଲିସ୍ ତାଙ୍କୁ ଯେଉଁ ଅବସ୍ଥା କରୁଚି - ଓହୋ...ହୋ....ଆଖି ଦେଖିବ ନାହିଁ । ବଙ୍ଗଳା ଦେଶରେ କୁଆଡ଼େ ବେଶି ମରୁଚନ୍ତି - ଲକ୍ଷକୁ ପାଇଲାଣି ।

ରାଧୁ - ଦୁର୍ଭିକ୍ଷ ପଡ଼ିଗଲା । ମକୁନ୍ଦ ! ଆମର ଏଠି ସେଇ ଦୁର୍ଭିକ୍ଷ ।

ମକୁନ୍ଦ - ତୁ ସିନା ଜାଣିଶୁଣି ଏ ଅଛଟାରେ ପଡ଼ିଲୁ - ତୋର ତ ଧାନ ବର୍ଷକ ଯାଏ ।

ରାଧୁ - ଲୋଭ ସମ୍ଭାଳି ପାରିଲି ନାଇଁ । ବେପାରୀ ଭାଉ ବଢ଼ାଇଦେଲା, ବସ୍ତା ପଚିଶ-ତିରିଶ । ଆଖିବୁଜି ଧାନ ମପେଇଦେଲି - ମୁଠା ମୁଠା ଟଙ୍କାର ଲୋଭ ।

ମକୁନ୍ଦ - ମୋ ଦାଉ ଲୋ - ମୁଠା ମୁଠା ଟଙ୍କା - ଟଙ୍କାକୁ ଚାଟୁଥା ।

ରାଧୁ - ଘରକୁ ଯିବାକୁ ମୋ ଗୋଡ଼ ଚଲୁନାଇଁ - ଛୁଆଗୁରାକ ଦିନକେ ତିନିଥର ଖାଉଥିଲେ - ତିନ ଦିନକେ ଥରେ ପାଉନାହାନ୍ତି । ଚଢ଼ା ଦରରେ ଧାନ ବିକିଦେଇ ଭାବିଥିଲି, ଘର ଖର୍ଚ୍ଚକୁ ନିଅଣ୍ଟ ପଡ଼ିଲେ ହାଟ ବଜାରରୁ ଚାଉଳ କିଣି ଚଳେଇ ଦେବି । ହେଲେ ମୋରି ପରି ଲୋଭରେ ସମସ୍ତେ ହାତରୁ ଧାନ ଛାଡ଼ିଦେଇଚନ୍ତି । କେଉଁଠି ମିଳୁନାହିଁ । ପିଲାଗୁରାକ ଶାଗପତର ଖାଇ କେଇ ଦିନ ବଞ୍ଚିବେ - ? ସତେ କ'ଣ ତାଙ୍କୁ ଆଉ ବଞ୍ଚେଇ ପାରିବି ନାହିଁ ? ଆଖି ଆଗରେ ଏମିତି ମରିଯିବେ ? ଖାଇବାକୁ ନ ପାଇ ଶୁଖି ଶୁଖି ସଳିତା ହୋଇ ମରିଯିବେ ? ମୋ ଜମିରେ ଧାନ ଫଳିଥିଲା - ମୋ ବାକ୍ସରେ ଟଙ୍କା ଅଛି - ମୋ ପିଲା ଏମିତି ଅଛଟରେ ପଡ଼ି ମରିଯିବେ !!

(ହଠାତ୍ ମକୁନ୍ଦର ହାତକୁ ଧରି ଉଚ୍ଛ୍ୱସିତ ଭାବରେ ।)

ମକୁନ୍ଦ ! ତୁ ସାହା ମକୁନ୍ଦ - ମୁଁ ସିନା ତୋ ପାଖରେ ଦୋଷୀ । ଛୁଆଗୁରାକ ତ କିଛି କରିନାହାନ୍ତି - ପାଞ୍ଚ ପାଞ୍ଚଟା ଅଜ୍ଞାନ ଶିଶୁ - ତୁଇ ତାଙ୍କୁ ବଞ୍ଚା - ତୁ ନ ଚାହିଁଲେ ସେ ପୋକ ମାଛି ପରି ମରିଯିବେ ରେ....

(ମକୁନ୍ଦ ସ୍ଥିର ଦୃଷ୍ଟିରେ ତା'ଆଡ଼େ ଚାହିଁଥାଏ - ତା ଆଖିରେ ଲୁହ ।)

ମକୁନ୍ଦ - ତୋର ମନେଅଛି ରାଧୁ - ଭୋଟ ସଭା ଦିନ ଏଇଠି - ଏଇ ମେଳଣପଡ଼ିଆରେ ତୁ ମୋ ହାତ ଧରି କହିଥିଲୁ - ମକୁନ୍ଦ ପର-କଲମ ବାକ୍ସରେ ଅଲବତ୍ ଭୋଟ ଦବୁ - ମୁଁ କହିଥିଲି ହରଗିଜ୍ ଦେବିନାଇଁ....

ରାଧୁ - ଆଜି ବି ତୁ ସେଇଆ କହିବୁ ? ମୋ ଛୁଆଙ୍କ ମୁହଁରେ ଦାନା କାଣିଚାଏ ପକେଇବୁନାଇଁ ?

ମକୁନ୍ଦ - ମୁଁ ବା କୋଉ ମଣିଷରେ ଗଣା ! ଅମାର·ଖୋଲି ତୁ ଧାନ ମପେଇ ଦେଲାବେଳେ -

ନ'ପ୍ରାଣୀ କୁଟୁମ୍ବକୁ ବଞ୍ଚେଇବା ପାଇଁ ମୁଁ ଓଳିଆ କେତୁଟା ବାନ୍ଧିଥିଲି । ତୋ ଚାଳକୁ ମୋ ଚାଳ ଲାଗିଚି - ତୋ ହାଣ୍ଡିରେ ସୋରିଷ ଫୁଟିଲେ ମୋ ଦୁଆରକୁ ବାସ ହବ । ତୋ ଛୁଆ ଯେତେବେଳେ ଭାତ ମୁଠାଏ ନ ପାଇ ଗଡ଼ି ମରୁଥିବେ - ମୋ ଛୁଆଙ୍କ ପେଟରେ ଭାତ ହଜମ ହବ କେମିତି ? ତୋ ଆଖିରେ ମୁଁ ଯେତେ ନିର୍ବୁଦ୍ଧିଆ, ଯେତେ ହୁଣ୍ଡା ହେଲେ ବି ମୋ ମନକୁ ତ ଏକଥା ପାଉନାଇଁ -

ରାଧୁ - ମୁଁ ଜାତିରେ ବ୍ରାହ୍ମଣ - ହେଲେ ତୋତେ କଲ୍ୟାଣ କରିବାର ଦମ୍ଭ ମୋର ନାହିଁ । ଏଇ ଅଧ-ରାତି ଉପରେ ଧର୍ମସାକ୍ଷୀ - ସେଇ ତୋ'ର ମଙ୍ଗଳ କରିବେ -

ମକୁନ୍ଦ - ହଉ ତୁ ଘରକୁ ଯା - ମୁଁ ଗାଈଟାକୁ ଖୋଜି ପଛରେ ଯାଉଚି । ଡରିବୁ ନାଇଁ ତ ?

ରାଧୁ - ମରିବାକୁ ତ ଯାଉଥିଲି - ଆଉ ଡରିବି କାହାକୁ ? ବାଟରେ ତ ଗୋଟାଏ ମଡ଼ା ଦେଖିଆସିଚି....

ମକୁନ୍ଦ - ହଉ, ଯା...

(ଦୁହେଁ ବିପରୀତ ଦିଗରେ ଗଲେ - ମଞ୍ଚ ଖାଲି - ସଙ୍ଗେ ସଙ୍ଗେ ରାଧୁ ବିକଟ ଚିତ୍କାର କରି ଫେରିଆସିଲା - କ'ଣ ହେଲା ରାଧୁ ?)

ରାଧୁ - ଏଇଟା କିଏ - ଇଆଡ଼କୁ ଆସୁଚି ?

(ଦୁହେଁ ଆତଙ୍କିତ ହୋଇ ଅପେକ୍ଷା କରି ରହିଲେ - କ୍ଷଣକ ପରେ ସେଇ ଅନ୍ଧାର ଭିତରୁ ବାହାରି ଆସିଲା ଗୋଟାଏ କଙ୍କାଳସାର ମୂର୍ତ୍ତି । କିଏ ତାକୁ ମଣିଷ ବୋଲି ବିଶ୍ୱାସ କରିବ । ସମସ୍ତ ଦେହଟାରେ କେବଳ ହାଡ଼ ଓ ଚମ ଝୁଲୁଚି । ଅଣ୍ଟା ଚାରିପାଖରେ କନା ଖଣ୍ଡେ ଗୁଡ଼ା ହେଇଛି - ମୁହଁରେ ବୋଝେ ଦାଢ଼ି - ହାତରେ ଖଣ୍ଡେ ଖପରା - ସେ ତା' ପାଦ ଦି'ଟାକୁ ଘୋଷାରି ଘୋଷାରି ଏମାନଙ୍କ ଆଡ଼କୁ ଆସିଲା) ଦେଖୁଚୁ ମକୁନ୍ଦ.... ।

ମକୁନ୍ଦ - କିଏ ? କିଏ ସେ ?

(ମୂର୍ତ୍ତିଟା କିଛି ଦୂର ଆସି ଅଟକି ଏମାନଙ୍କ ଉଦ୍ଦେଶ୍ୟରେ ହାତଟେକି ପ୍ରଣାମ ଜଣାଇଲା - କଥା କହିବାକୁ ଚେଷ୍ଟା କରି ସେ କେବଳ ଗଁ ଗଁ ହେଉଥାଏ । ମକୁନ୍ଦ ରାଧୁ ହାତରୁ ଲଣ୍ଠନଟା ନେଇ ଟିକିଏ ଆଗେଇ ଗଲା ।)

ରାଧୁ - ତା' ପାଖକୁ ଯା' ନା -

ମକୁନ୍ଦ - ମଣିଷଟାଏ, ଦେଖୁନୁ ଭାଇ ପଡ଼ିଚି -

(ମକୁନ୍ଦ ଲଣ୍ଠନଟା ଟେକି ତା' ମୁହଁ ପାଖକୁ ଟେକି ଧରିଲାମାତ୍ରେ ମକୁନ୍ଦ ଓ ରାଧୁ ଦୁହେଁ ଆତଙ୍କରେ ଶିହରି ଉଠିଲେ - ସମସ୍ତ ମୁହଁଟା ଭୀଷଣ ମାଡ଼ ଯୋଗୁଁ ବିକଳାଙ୍ଗ ହୋଇଯାଇଚି ।)

ଓଃ, ମୁହଁଟା ଏକାବେଳକେ ଛେଚି ହୋଇଯାଇଚି । ହଇରେ ତୁ ସପନାଟି ?

ସପନା - (ଗଁ ଗଁ ଶବ୍ଦ ସହିତ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।)

ରାଧୁ - କୋଉ ସପନା ?

ମକୁନ୍ଦ - ଆମ ଗାଁ ସପନା ବାଉରି ବା ।

ରାଧୁ - ମଡ଼କରେ ତା ଭାରିଜା ମରିଗଲା -

ମକୁନ୍ଦ - ବାପ ପୁଅ ଦୁହେଁ ଶୁଦ୍ଧି ହୋଇପାରିଲେ ନାହିଁ । ପେଟ ବିକଳରେ କୁଆଡ଼େ ପଳେଇଲେ । ପୁଅ ତ ତିନିଦିନ ହେଲା ଆଇଲାଣି । ଏ କୁଆଡ଼େ ଥିଲା ? କଥା କହିପାରୁନାଇଁ - ହଇରେ କ'ଣ ଧରିଚୁ -(ଖପରା ଭିତର ଦେଖି) ଶୁଖିଲା ଭାତ ଦି'ଟା....ଖାଉନୁ - ଖା....

(ଖାଇବା ପାଇଁ ସପନା ମୁହଁ ପାଖକୁ ହାତନେଲା- କିନ୍ତୁ ପାଟି ମେଲାକଲାବେଳକୁ ଭୀଷଣ କଷ୍ଟରେ ଗଁ ଗଁ ଚିତ୍କାର କଲା - ଖାଇପାରିଲା ନାହିଁ ।)

ବିଚରା ପାଟିକୁ ଭାତ ନେଇ ବି ଖାଇପାରୁନାଇଁ - କିଏ ତାକୁ ଏ ଦଣ୍ଡ ଦେଲା ?

ରାଧୁ - ଏଇ ସପନାକୁ ମୁଁ ଭୋଟବେଳେ କେତେ ଲୋଭ ଦେଖେଇଥିଲି - ଜମି ଦିଆଯିବ - ଘର ଦିଆଯିବ ।

ମକୁନ୍ଦ - କ'ଣ ମିଳିବ ସେଥିରୁ ? ଯାକୁ ନେଇ କେମିତି ଯା ଘରେ ପହଞ୍ଚିବା କହ ? ନଇଲେ ତ ଏଇଠି କୋଉଠି ପଡ଼ି ମରିଯିବ - ହେ ସପନା ଚାଲ - ତୋ ଘରକୁ ଚାଲ ।

(ତାକୁ ଧରି ଧରି ନେଲା । ରାଧୁ ଆଗେ ଆଗେ ଲଣ୍ଠନ ଦେଖାଇ ଚାଲିଲା । ସେମାନେ ଚାଲିଯିବାର ଟିକକ ପରେ ମଞ୍ଚରେ ଟର୍ଚ୍ଚ ଆଲୁଅ ପଡ଼ିଲା - ଯେପରି ଉଡ଼ାଳରେ ଥାଇ ସ୍ଥାନଟା ନିରାପଦ କି ନୁହେଁ କେହି ଜାଣିବାର ଚେଷ୍ଟା କରୁଚି - ସେଇପରି ଟର୍ଚ୍ଚ ପକାଇ ପକାଇ ଆସିଲା ଶଶି - ମନରେ ସଂଶୟ ଭାବ । କିଛିକ୍ଷଣ ପରେ ସେଠିକି ଆସିଲା ସେବତୀ, ସେ ଯେପରି ଏକ ଯନ୍ତ୍ରଚାଳିତ ମୂର୍ତ୍ତି । ଶଶିକୁ ଦେଖି ତା ମନରେ କୌଣସି ଭାବର ଉଦୟ ହୋଇନି । ଆଲୁଅକୁ ତଳେ ଥୋଇଦେଇ ସେ ଶଶିକୁ ନମସ୍କାର ଜଣାଇଲା ।)

ଶଶି - ମୁଁ ଜାଣିଥିଲି ସେବତୀ, ତମେ ନିଶ୍ଚୟ ଆସିବ । କିନ୍ତୁ ଆଖିରେ ନ ଦେଖିବାଯାଏ, ମନରୁ ବିଶ୍ୱାସ ତୁଟି ଯାଉଥିଲା ।

ସେବତୀ - ଦିଅନ୍ତୁ ।

ଶଶି - ଦେବାପାଇଁ ତ ଏ ତିନିମାଇଲ ବାଟ ଆସିଛି । ...ତମେ ଏଠିକି ଆସିଚ, କେହି ଜାଣନ୍ତି ?

ସେବତୀ - କାହାକୁ ଜଣାଇ ମୁଁ ଆସିନି ।

ଶଶି - ଧନ୍ୟବାଦ ! ଏ ଭୟଙ୍କର ନିର୍ଜନ ରାତି - ଏଠି ଜଣେ ପୁରୁଷକୁ ଏ ଅବସ୍ଥାରେ ଭେଟିବାର ଯେଉଁ ଦୁଃସାହସ ତମେ ଦେଖାଇଚ - ଏହା ଯେପରି ଏକ କାହାଣୀର କଳ୍ପନା । ନିଜେ ଅଙ୍ଗେ ନଲିଭାଇଲେ ବିଶ୍ୱାସ କରିବା ଅସମ୍ଭବ । ତମକୁ ଦେଖି ମୋର ଆଜି ଆଉ ଗୋଟିଏ ବାଳିକାର କଥା ମନେପଡୁଚି - କେଦାରଗୌରୀ ଉପାଖ୍ୟାନର - ଗୌରୀ ।

ସେବତୀ - ଏସବୁ କ'ଣ ଆପଣ କହୁଛନ୍ତି ?

ଶଶି - କ୍ଷମାକର ସେବତୀ - ଗୋଟାଏ ଉଚ୍ଛ୍ୱାସରେ ମୁଁ କଥାଟା କହିପକାଇଥିଲି । ହଁ, ତମ ଗାଁରେ ଏକୋଇଶିଟି ପରିବାରର ପ୍ରାୟ ଶହେ ଜଣ ଲୋକଙ୍କର ଧାନ ଚାଉଳର ଅଭାବ ପଡ଼ିଚି ?

ସେବତୀ - ହଁ, ପ୍ରାୟ ଶଏ ଜଣ-

ଶଶି - (ପକେଟ୍‌ରୁ ଖଣ୍ଡିଏ କାଗଜ ବାହାର କରି) ଏଇ ପରମିଟ୍ - ଏଥିରେ ସେମାନଙ୍କ ପାଇଁ ଅନ୍ତତଃ ଛ'ମାସର ଚାଉଳର ବ୍ୟବସ୍ଥା କରାଯାଇଛି । ଏ ଖଣ୍ଡକ କାଲି ଡିପୋକୁ ପଠାଇଦେବ - କମ୍ପାନୀର ଟ୍ରକ୍ ଚାଉଳ ଆଣି ତମର ଏଠି ପହଞ୍ଚାଇ ଦେଇଯିବ । କିନ୍ତୁ ମୁଁ ଏଥିରେ ଅଛି, ଯାର ବିନ୍ଦୁ ବିସର୍ଗ କେହି ଯେପରି ନ ଜାଣନ୍ତି ?

(ପରମିଟ୍ ଖଣ୍ଡିକ ଦେଖି ସେବତୀର ମୁହଁ ଉଜ୍ଜ୍ୱଳ ହୋଇଉଠିଲା ।)

ସେବତୀ - ଜନ୍ମ ଜନ୍ମ ହୋଇ ସାତ ଜନ୍ମ ପାର ହୋଇଗଲେ ଆପଣଙ୍କର ଏ ଋଣ ଶୁଝିହେବନାଇଁ ।

ଶଶି - କିନ୍ତୁ ସେବତୀ, ମୁଁ ତ ସାତଜନ୍ମ ଅପେକ୍ଷା କରିପାରିବି ନାଇଁ -

ସେବତୀ - ଆପଣଙ୍କ ଦୟାରୁ ଏକୋଇଶିଟି ପରିବାର ମରୁ ମରୁ ବଞ୍ଚିଯିବେ । ମୋ'ଆଖିରେ ଆପଣ ମଣିଷ ନୁହଁନ୍ତି, ସ୍ୱୟଂ ଭଗବାନ୍ -

ଶଶି - (ହସିହସି) ଏତେ ସହଜରେ ଭଗବାନ୍ କ'ଣ ମିଳନ୍ତି ? ସେଥିପାଇଁ ବହୁ ସାଧନା - ବହୁ ତ୍ୟାଗ ଦରକାର - ତା'ର କାଣିଚାଏ ତ ତୁମେ କରିନ!

ସେବତୀ - ପରିମିଟ୍‌ଟା ଦିଅନ୍ତୁ - ମୁଁ ଯିବି - ରାତି ବେଶି ହଉଚି - ଦିଅନ୍ତୁ -

(ହାତ ବଢ଼ାଇଲା -ଶଶି ଏହାର ସୁଯୋଗ ନେଲା - ତା'ହାତମୁଠାରେ ସେବତୀର ହାତ । ଏ କ'ଣ ଶଶିବାବୁ - ହାତ ଟାଣିନେଲା ।)

ଶଶି - ସେଦିନ ସଭା ପରେ ଏଇ ପଡ଼ିଆରେ ମୁଁ ତମକୁ କହିଥିଲି ତମର ପ୍ରାଣ ଅଛି - ହୃଦୟ ଅଛି । କିନ୍ତୁ ତମର ଯାହା ମୋ ଆଖିରେ ପ୍ରଥମେ ଧରାପଡ଼ିଥିଲା - ସେ କଥା କହିବାର ସୁଯୋଗ ମୁଁ ପାଇନଥିଲି.... (ସେବତୀର ଉନ୍ନତ ବକ୍ଷ ଉପରେ ଲାଳସାଦୀପ୍ତ ଚକ୍ଷୁ ରଖି) ମୁଁ ଜାଣେନା ସେବତୀ - ଏ ମୋର ଆଖିର ଦୋଷ ନା ତମର ଏଇ ଉଦ୍ଧତ ଯୌବନର ଦୋଷ । ଓଃ.... ଭୁଲିହୁଏନା...ଭୁଲିହୁଏନା ତମକୁ ସେବତୀ- ଏ ଛ'ମାସ କାଳ ତମେ ମୋତେ ଜଳାଇ ପୋଡ଼ାଇ ରଖିଚ....

ସେବତୀ - ଛି....ଛି, ଶଶିବାବୁ - କୁଳର ଝିଅ ମୁଁ । ଆପଣଙ୍କୁ ବିଶ୍ୱାସ କରି ପେଟ ବିକଳରେ ଆପଣଙ୍କ ପାଖକୁ ଏ ନିଶୂନ ରାତିରେ ଧାଇଁ ଆସିଥିଲି -

ଶଶି - ମୋର ମଧ ଠିକ୍ ସେଇ ଅବସ୍ଥା ସେବତୀ । ଦୀର୍ଘ ଛ'ମାସର ଭୋକିଲା ପ୍ରାଣନେଇ ମୁଁ ତମ ପାଖକୁ ଧାଇଁଆସିଚି, ଶଏଟି ଜୀବନ ବଞ୍ଚାଇବା ବ୍ୟବସ୍ଥା ମୁଁ କରିଚି... ମୋର ଏଇ ଗୋଟିଏ ଜୀବନ ପ୍ରତି ଆଖିଫେରାଇ ତମେ ଚାହିଁବ ନାହିଁ ?

ସେବତୀ - ଏଇ ଆପଣଙ୍କର ଶେଷ କଥା ?

ଶଶି - ତମ ପାଖରେ ଏମିତି ଠିଆହୋଇ ରହିବାର ଲୋଭ ମୋର ଏତେ ବେଶି ଯେ ଏଡ଼େ ଚଞ୍ଚଳ ଶେଷ କଥାଟା ମୁଁ ଭାବିପାରୁନି -

ସେବତୀ - ଆପଣ ଯା'ନ୍ତୁ.... ଚାଲିଯା'ନ୍ତୁ । ଦିନେ ଆପଣଙ୍କୁ କହିଥିଲି ଆପଣଙ୍କ ପାଇଁ ମୋ ପ୍ରାଣ ଦେବାକୁ ମୁଁ ପ୍ରସ୍ତୁତ.... କିନ୍ତୁ ଆଜି...

ଶଶି - ଆଜି ଏ ଦେହଟା ଉପରୁ ଲୋଭ ଛାଡ଼ିପାରୁନ ?

ସେବତୀ - ଆପଣ ଯା'ନ୍ତୁ....ଯା'ନ୍ତୁ.... ! ! ଏ ଦୁର୍ଭିକ୍ଷରେ ହଜାର ହଜାର ମରୁଛନ୍ତି.... ଆଉ ଶହେଜଣ ମରିଲେ....

ଶଶି - ମରନ୍ତୁ । କିନ୍ତୁ ସେବତୀ ଯେତେ ଛୋଟ ବା ହୀନ ବୋଲି କହିଲେ ସୁଦ୍ଧା 'ଦବା ଆଉ 'ନବା' କଥା ଦୁଇଟିକୁ ଛାଡ଼ିଦେଲେ କେହି ପାଦଟିଏ ସୁଦ୍ଧା ଚାଲି ପାରିବନି ! ବିନା ପାଉଣାରେ ଏ ପରମିଟ୍ ମୁଁ ଦେଇପାରିବି ନାଇଁ । ତମରି କଥା ହେଉ, ହଜାର ହଜାର ଲୋକ ମରୁଛନ୍ତି - ସେଥି ସଙ୍ଗେ ତମ ଗାଁର କେତେଜଣ ମରିବେ - ଆଉ ମରିବେ ତମର ବାପା...ବୋଉ....

ସେବତୀ- ଓଃ, କି ନିଷ୍ଠୁର ଆପଣ - କି ନିଷ୍ଠୁର !

ଶଶି - ଟିକିଏ ଆଗରୁ ମୁଁ ଥିଲି ଦୟାର ଅବତାର - ବର୍ତ୍ତମାନ ମୁଁ ନିଷ୍ଠୁର କାହିଁକି ? ତମେ ଯାଅ ସେବତୀ - ତମ ବାପା ବୋଉଙ୍କପାଇଁ ମୁଠାଏ ଦାନାର ବ୍ୟବସ୍ଥା ହୁଏ ତ କେଉଁଠୁ କରିବ...(ନିଜେ ଯିବାକୁ ଉଦ୍ୟତ ହେଲା)

ସେବତୀ - ପରମିଟ୍‌ଟା ଦିଅନ୍ତୁ ।

ଶଶି - ସେବତୀ !

ସେବତୀ - ଆପଣଙ୍କ ପ୍ରସ୍ତାବରେ ମୁଁ ରାଜି - ପରମିଟ୍‌ଟା ଦିଅନ୍ତୁ ।

ଶଶି - ଆଉଥରେ ଚିନ୍ତା କରିବାର ସୁବିଧା ମୁଁ ତମକୁ ଦଉଚି ।

ସେବତୀ - ଆପଣଙ୍କ ପରି ନରରାକ୍ଷସଙ୍କ କଥାରେ ଭୁଲି ଯେଉଁ ଭୁଲ୍ ମୁଁ କରିଥିଲି, ତା'ରି ପ୍ରାୟଶ୍ଚିତ୍ତ ମୁଁ କରୁଚି....

ଶଶି - ନୀତି କଥା ଶୁଣିବାର ବେଳ ମୋର ନାହିଁ ସେବତୀ... ଏଇ ତମର ପରମିଟ୍ - ପରମିଟ୍‌ଟା ପକେଟ୍‌ରୁ ବାହାର କରି ସେବତୀର ପଣତରେ ବାନ୍ଧିଦେଲା) ଏଠିକି ଆଜି ଆସିଲାବେଳେ କଳ୍ପନା କରୁଥିଲି ତମଠାରୁ ପଦେ କଅଁଳ କଥା ଶୁଣି ପାଦତଳେ ନିଜକୁ ଲୁଟାଇଦେବି । କିନ୍ତୁ ତମେ ତା କରାଇଦେଲନି । ଭୋକର ଜ୍ୱାଳା ସହିନପାରି ମଣିଷ ଆଜି ମଣିଷ ମାଂସ ଖାଉଚି - ମୋର ଆଜି ସେଇ ଅବସ୍ଥା ।

(ସେବତୀର ଦୁଇ ବାହାକୁ ଚାପିଧରିଲା - ଆତଙ୍କରେ ସେବତୀର ଆଖି ଦୁଇଟା ମୁଦି ହୋଇଗଲା ।)

ସେବତୀ - ଭଗବାନ୍ ! (ପୁଣି ଉଚ୍ଚସ୍ୱରରେ) ଭଗବାନ୍ ! !

(ଶଶିର ହିଂସ୍ରତା ବୃଦ୍ଧି ପାଇଥାଏ..... ଠିକ୍ ଏତିକିବେଳେ ଗଛର ପଛପଟୁ ବାହାରି ଆସିଲା ମୁକୁନ୍ଦ - ଠେଙ୍ଗାଟାକୁ ଉଞ୍ଚେଇ କରି ।)

ମକୁନ୍ଦ - ଛାଡ୍ ତାକୁ -ଛାଡ୍- ମୁଣ୍ଡ ଫଟେଇଦେବି ।

(ଶଶି ସେବତୀକୁ ବୁଲାଇ ଦେଇ ତା'ପଛ ଆଡ଼େ ଆଶ୍ରୟ ନେଲା । ମୁହୂର୍ତ୍ତକ ମଧରେ ପକେଟ୍‌ରୁ ରିଭଲଭର୍‌ଟା ବାହାର କରି ମକୁନ୍ଦକୁ ଲକ୍ଷ୍ୟ କରି ଆଗେଇ ଆସିଲା ।)

ଶଶି - ହୁସିଆର କହୁଚି - ଠେଙ୍ଗାଟା ପକେଇ ଦେ'....

ମକୁନ୍ଦ - ପକେଇଦେବି ! ଆଉ ତୋ ମୁଣ୍ଡ କିଏ ଫଟେଇବ ?

ଶଶି - ତା ଆଗରୁ ତୋ ନିଜ ମୁଣ୍ଡଟା ଛତୁ ହୋଇଯାଇଥିବ -

ଏଇଟା କ'ଣ ଜାଣୁ ? ରିଭଲଭର୍ - ବନ୍ଧୁକ !!

ମକୁନ୍ଦ - ବନ୍ଧୁକ ! ମତେ ମାରିବୁ ? ଆଚ୍ଛା ! ସେବତୀ ତୁ ପଳା -ପଳା କହୁଛି !!

ଶଶି - ଯାଅନାହିଁ ସେବତୀ - ଗଲେ ମକୁନ୍ଦ ବଞ୍ଚିବନାହିଁ ।

(ସେବତୀ ଯାଇପାରିଲାନାହିଁ ।) ମକୁନ୍ଦ, ଭଲରେ କହୁଚି - ଠେଙ୍ଗାଟା ରଖିଦେ' ।

ମକୁନ୍ଦ - (ଖୁବ୍ ବଡ଼ପାଟିରେ) ମହାନ୍ତିଏ ହୋ....

ଶଶି - ହେ -ଏ....ମୁଁ ଶେଷଥର ପାଇଁ କହୁଚି - ପାଟି କରନା - ଆଉ ସେ ଠେଙ୍ଗାଟା ....(ନିଜେ ମକୁନ୍ଦ ହାତରୁ ଠେଙ୍ଗାଟା ଛଡ଼ାଇଆଣିଲା) ବେଶ୍ ଏଥର ଦୁହେଁଯାକ ଚାଲ-

ମକୁନ୍ଦ - କେଉଁଠିକି ?

ଶଶି - ରାସ୍ତା ଉପରେ ମଟର ଥୁଆହୋଇଚି ।

ସେବତୀ - ଶଶିବାବୁ ! ଆମକୁ ଏ ଶାସ୍ତି ଦଉଚନ୍ତି ?

ଶଶି - ଚୁପ୍‌କର ।

ମକୁନ୍ଦ - ଅଇଁଠାଚଟା କୁକୁର....

(ଶଶି ଭ୍ରୂକ୍ଷେପ ନ କରି ସେମାନଙ୍କୁ ଯିବାକୁ ନିର୍ଦ୍ଦେଶ ଦେଲା.... ସେମାନେ ଆଗେ ଆଗେ ଚାଲିଲେ - ପଛରେ ଶଶି - ଏଇ ସମୟରେ ଅପ୍ରତ୍ୟାଶିତ ଭାବରେ ସେଠାକୁ ଆସିଲା ବିଜୟ - ତା' ହାତରେ ଗୋଟାଏ ଚାବୁକ । ମୁହୂର୍ତ୍ତକରେ ସମସ୍ତ କଥା ସେ ବୁଝିପାରିଲା ଓ ସଙ୍ଗେ ସଙ୍ଗେ ଶଶି ହାତରେ ରିଭଲଭର୍ ଲକ୍ଷ୍ୟକରି ଚାବୁକରେ ଏକ ପ୍ରହାର ଦେଲା, ଫଳରେ ରିଭଲଭର୍ ଫୁଟିବା ସଙ୍ଗେ ସଙ୍ଗେ ତା ହାତରୁ ଖସି ତଳେ ପଡ଼ିଗଲା - ଶଶି ପଛକୁ ଫେରିଚାହିଁବା ମାତ୍ରେ ବିଜୟ ଚାବୁକରେ ତାକୁ ଘନଘନ ପ୍ରହାର କରିବାକୁ ଲାଗିଲା । ଏହା ସତ୍ତ୍ୱେ ଶଶି ରିଭଲଭର୍‌ଟିକୁ ଉଠାଇନେବାକୁ ଯାଉଥିବାବେଳେ ମକୁନ୍ଦ ଅପ୍ରତ୍ୟାଶିତ ଭାବରେ ପଛରୁ ଆକ୍ରମଣ କଲା; ଫଳରେ ଶଶି ପରିବର୍ତ୍ତେ ବିଜୟ ରିଭଲ୍‌ଭର୍‌ଟା ଉଠାଇନେଲା ।)

ମକୁନ୍ଦ - (ବଡ଼ପାଟିରେ) ମହାନ୍ତିଏ ହୋ.... ଧାଇଁଆସ - ଧାଇଁଆସ (ଶଶି ଜୋର୍ କରି ମକୁନ୍ଦ କବଳରୁ ନିଜକୁ ମୁକ୍ତ କରିନେଲା - କିନ୍ତୁ ମକୁନ୍ଦ ସଙ୍ଗେସଙ୍ଗେ ଠେଙ୍ଗାଟା ଉଠାଇନେଇ ଶଶିକୁ ଆଘାତ କରିବାକୁ ଯାଉଥିବାବେଳେ ବିଜୟ ବାଧା ଦେଲା ।)

ବିଜୟ - ମକୁନ୍ଦ - ତାଙ୍କୁ ମାରନାହିଁ -

ମକୁନ୍ଦ - ତମେ ଜାଣିନ ବିଜୟବାବୁ-

ବିଜୟ - ମୁଁ ସବୁ ଜାଣେ ମକୁନ୍ଦ - ଟିକିଏ ଅପେକ୍ଷା କର ।

ଶଶି - ବିଜୟବାବୁ! ମୋ ରିଭଲ୍‌ଭର୍‌ଟା ।

ବିଜୟ - କ'ଣ ? ଫେରାଇଦେବି ? (ଶଶି ପଳାଇ ଯିବାର ସୁବିଧା ଖୋଜିଲା) ମୋ ହାତରେ ଏଇଟାକୁ ଦେଖି ସୁଦ୍ଧା ଆପଣ ପଳାଇ ଯିବାକୁ ବସିଛନ୍ତି ?

ମକୁନ୍ଦ - ଖବରଦାର କହୁଚି - ସେଇଠି ଠିଆହୋଇଥା' - ଟିକିଏ ହୁଙ୍କିଲେ ଗୋଡ଼ ଛୋଟା କରିଦେବି!

(ଏପର୍ଯ୍ୟନ୍ତ ସେବତୀ ନୀରବରେ ଠିଆ ହୋଇଥାଏ ।)

ବିଜୟ- ସେବତୀ! (ସେବତୀ କିଛି କହିପାରିଲାନାଇଁ - ବିଜୟର ପାଦ ଦୁଇଟାକୁ ଧରି କେବଳ କାନ୍ଦିବାକୁ ଲାଗିଲା- ଫଳରେ ବିଜୟ ମକୁନ୍ଦ ଦୁହେଁ ଟିକିଏ ଅନ୍ୟମନସ୍କ ହୋଇପଡ଼ିଲେ । ଏଇ ଅବସରରେ ଶଶି ପଳାଇଯିବାକୁ ଉଦ୍ୟତ ହେଲାବେଳେ ସେ ସାମ୍‌ନାସାମ୍‌ନି ଭେଟିଲା ରାଜେନ୍ଦ୍ରଙ୍କୁ । ରାଜେନ୍ଦ୍ରଙ୍କ ସହିତ ଆସିଚି ଡାକବଙ୍ଗଳାର ଚୌକିଦାର - ହାତରେ ତା'ର ଗୋଟାଏ ଲଣ୍ଠନ । ରାଜେନ୍ଦ୍ରଙ୍କୁ ଦେଖି ଶଶିର ସମସ୍ତ ଦମ୍ଭ କୁଆଡ଼େ ଉଭେଇଗଲା । ରାଜେନ୍ଦ୍ରଙ୍କୁ ନମସ୍କାର କରିବା ଉଦ୍ଦେଶ୍ୟରେ ତା ହାତ ଦୁଇଟା ଆପେ ଆପେ ଉପରକୁ ଉଠିଗଲା ।)

ଶଶି - ଆ....ପ....ଣ!!

ରାଜେନ୍ଦ୍ର - କିନ୍ତୁ ଏତେ ରାତିରେ ତମେ ଏଠି କ'ଣ କରୁଚ ? ବିଜୟ....ସେବତୀ ? ସେବତୀ କାନ୍ଦୁଚି କାହିଁକି ? ବନ୍ଧୁକ କାହିଁକି ଫୁଟିଲା ? (ରାଜେନ୍ଦ୍ର ଆସିବା ପରେ ପରେ ସେବତୀ ଉଠି ଠିଆ ହୋଇଚି ।)

ମକୁନ୍ଦ - ଜୁହାର ଆଜ୍ଞା! ଆପଣ ଆଇଚନ୍ତିଟି ? ଏଇଟାକୁ ଶୂଳୀରେ ଚଢ଼େଇଦିଅନ୍ତୁ -

ରାଜେନ୍ଦ୍ର - କଥା କ'ଣ ? ଶଶିବାବୁ କ'ଣ ହେଇଚି ?

ବିଜୟ - ମୁଁ କହୁଚି ଶୁଣନ୍ତୁ । ଆଜି ସନ୍ଧ୍ୟାରେ ଆପଣ ଏଇ ଡାକବଙ୍ଗଳାକୁ ଆସିଚନ୍ତି ବୋଲି ମୁଁ ଶୁଣିଲି । ଆପଣଙ୍କ ସହିତ ଦେଖାକରିବାକୁ ଆସିବା ବାଟରେ ମୁଁ ସେବତୀଙ୍କ ଘରକୁ ଗଲି - ସେଠି ସେବତୀକୁ ପାଇଲିନାହିଁ - ପାଇଲି ଏ ଚିଠି ଖଣ୍ଡକ-

ରାଜେନ୍ଦ୍ର - କି ଚିଠି ? କିଏ ଲେଖିଚି ?

ବିଜୟ - ଏଇ ଶଶିବାବୁ ଲେଖିଚନ୍ତି ସେବତୀ ପାଖକୁ । (ଚିଠି ଖଣ୍ଡିକ ରାଜେନ୍ଦ୍ରଙ୍କ ହାତକୁ ବଢ଼ାଇଦେଲା - ରାଜେନ୍ଦ୍ର ପଢ଼ିଲେ ।)

"ଶ୍ରୀମତୀ ସେବତୀ ଦେଈ,

କର କମଳେଷୁ -

ତମ ଗାଁର ଯେତେ ଲୋକ ଦୁର୍ଭିକ୍ଷ ଯୋଗୁଁ ଅନ୍ନକଷ୍ଟ ଭୋଗୁଛନ୍ତି, ସେ ସମସ୍ତଙ୍କ ପାଇଁ ଚାଉଳର ବନ୍ଦୋବସ୍ତ ନହେଲେ ତମେ ନିଜପାଇଁ ମୋ'ଠାରୁ କୌଣସି ସାହାଯ୍ୟ

ନେବନାହିଁ ବୋଲି ଲେଖିଚ । ତମର ଏ ଦେଶପ୍ରୀତି ମୋତେ ମୁଗ୍ଧ କରିଚି । ବାସ୍ତବିକ୍ ତମେ ଏ ଦେଶର 'ଜୋଆନ ଅଫ୍ ଆର୍କ' । କେବଳ ତମର ଖାତିରିରେ ମୁଁ ଅଢ଼େଇ ଶହ ମହଣ ଚାଉଳ ବନ୍ଦୋବସ୍ତ କରିଚି, କିନ୍ତୁ ତମ ମୋ ଛଡ଼ା ଅନ୍ୟ କେହି ଏହା ଜାଣିଲେ ସର୍ବନାଶ ! ଆଜି ରାତି ୧୦ଟା ପରେ ତମେ ମେଲଣପଡ଼ିଆକୁ ଆସି ମୋଠାରୁ ପରିମିଟ୍‌ଟା ନେଇଯିବ । ମୋତେ ତମେ ଯଦି ବିଶ୍ୱାସନକର, ମୁଁ ନାଚାର । ଚିଠିଟା ପଢ଼ିସାରି ନଷ୍ଟ କରିଦେବ । ଇତି ।

ତମର ଶୁଭାକାଂକ୍ଷୀ -

ଶଶିଭୂଷଣ

ହୁଁ ସେବତୀ...! ତମେ ଏକା ଏଠିକି ଆସିଥିଲ ?

ସେବତୀ - ହୁଁ ।

ରାଜେନ୍ଦ୍ର - ତା'ପରେ ?

ମକୁନ୍ଦ - ତା' ପରେ ଯାହା ହେଲା ଆଜ୍ଞା କ'ଣ କହିବି ସେଗୁରା ! ଯୋଗକୁଁ ମୁଁ ଆସି ହାବୁଡ଼ିଯାଇ ନଥିଲେ ସେବତୀ ଆଜି ତିନିପାଞ୍ଚିରୁ ଯାଇଥା'ନ୍ତା । ମନ୍ଦର ମହାନ୍ତିଙ୍କ କୂଳରେ କଳଙ୍କ ରଚିଥା'ନ୍ତା...... । ଏମିତି ବେଳପଡ଼ିଚି ଯେ ଝିଅଟା ପେଟପୂରା ମୁଠାଏ ଖାଇବାକୁ ପାଉନି । ତାକୁ ଚାଉଳ ଲୋଭ ଦେଖାଇ ରାତି ଅଧରେ ଏଠିକି ଶିଖେଇ ଆଣି... ଛି-ଛି-ଛି ଏଇଟା ଏଡ଼େ ଦୋଷୀ - ଏଡ଼େ ପାପୀ - ପୁଣି ଆଜ୍ଞା ବନ୍ଧୁକ ଦେଖେଇ ମତେ ଆଉ ସେବତୀକୁ ଏଠୁ ନେଇଯାଉଥିଲା ।

ରାଜେନ୍ଦ୍ର - ଶଶିବାବୁ, ଏସବୁ ସତ !!

ଶଶି - ଆପଣ ମୋ ସହିତ ଡିପୋକୁ ଚାଲନ୍ତୁ, ସେଇଠି ଶୁଣିବେ ।

ରାଜେନ୍ଦ୍ର - ନା' ଏଇଠି କହ ।

ଶଶି - ମତେ ଏଠି ଏମିତି ଅଟକ ରଖିବାର ଅଧିକାର କାହାର ନାହିଁ । (ଯିବାକୁ ଆଗେଇଲା)

ରାଜେନ୍ଦ୍ର - ଶଶି, ଠିଆ ହୁଅ ।

ମକୁନ୍ଦ - ଘୁଞ୍ଚିଯା'ନ୍ତୁ ଆଜ୍ଞା ! ମୁଁ ତା ମୁଣ୍ଡ ଛତୁ କରିଦିଏଁ ।

(ଏତିକିବେଳେ ଅଳ୍ପ ଦୂରରୁ ମନ୍ଦର ମହାନ୍ତି ଓ ସୀତାର କଣ୍ଠସ୍ୱର ଶୁଣାଗଲା ।)

ସୀତା - ସେବ - ସେବ, ତୁ କୁଆଡ଼େ ଗଲୁ ଲୋ ସେବ....

ମନ୍ଦର - ମକୁନ୍ଦରେ - ମକୁନ୍ଦ !

ମକୁନ୍ଦ - ଏଇଠି ଆଜ୍ଞା - ଏଇଠିକି ଆସ....

(ମନ୍ଦର ଓ ସୀତା ଆସିଲେ)

ସେବତୀ - ବୋଉ....

ସୀତା - (ସେବତୀକୁ କୁଣ୍ଢାଇ) ଏ ବୁଦ୍ଧି ତୋତେ କିଏ ଦେଲା ଲୋ ସେବ ?

ମକୁନ୍ଦ - ନାନୀ, ଏଇ ମଉନମୁହାଁ ସେବକୁ ଶିଖେଇ ଆଣିଥିଲା !!

ହେଲେ ସେ ପରା ତୋ ଝୁଅ - ତା'ର କିଏ କ'ଣ କରିବ ?

ଝୁଅକୁ ନେଇ ତୁ ଘରକୁ ଯା.....

ମନ୍ଦର - ସେ ଚିଠି କ'ଣ ହେଲା ବିଜୟ ? (ଶଶିକୁ) ହଇଓ ବାବୁ ଶେଷକୁ ତମେ ଏଇଆ କଲ ? ଏଇଥିପାଇଁ ତାକୁ ସୁନାହାର ଦେଇଥିଲ ?

ସୀତା - ତା'ରି ଦୁଆରେ ଯାଇ ଦଉଡ଼ି ଦେଇ ମରିବି । ମୋ ଝିଅକୁ ସେ କାହିଁକି ଚିଠି ଲେଖିଲା ?

ରାଜେନ୍ଦ୍ର - ମୋ କଥା ଟିକିଏ ଶୁଣନ୍ତୁ ।

ମନ୍ଦର - କ'ଣ ଶୁଣିବୁ ଆଜ୍ଞା ! ଆପଣ ଆଇଚନ୍ତି - କୀର୍ତ୍ତି ଦେଖିଯା'ନ୍ତୁ । ପାଟିରୁ ତ ଦାନା କାଢ଼ିନେଲ, ଘରୁ ଝୁଅ ବୋହୂକୁ କାଢ଼ି ଆଣିଲ - ଆଉ କ'ଣ ବାକି ରହିଲା - କୁହ । ଜବାବ ଦିଅ ।

ମକୁନ୍ଦ - କହିଲେ ଦୋଷ ହବ । ଆପଣଙ୍କୁ କାହିଁକି ସେ ଜବାବ ଦେବେ - ଆପଣ ତ ନିରପେକ୍ଷ ଲୋକ ।

ମନ୍ଦର - (ଦି'ଗାଲରେ ନିଜେ ଚଟକଣା ମାରିହେଇ) ଆଉ - ଆଉ ନିରପେକ୍ଷ ! ଉପରେ ଉପରେ ନିରପେକ୍ଷ କହି ଭିତରେ ଭିତରେ ଛୁରୀ ଚଲେଇଥିଲି - ଧର୍ମ ସହିଲା ନାହିଁ ଏ ଫଳ ଭୋଗୁଚି । ନଇଲେ ମୋ ଝିଅ ପୁଣି ରାତିଅଧରେ ଘରୁ ଗୋଡ଼କାଢ଼ି ଆସନ୍ତା ।

ରାଜେନ୍ଦ୍ର - ଶୁଣନ୍ତୁ - ସେବତୀ ଖାଲି ନିଷ୍କଳଙ୍କ ନୁହେଁ, ତା'ର ଗାଁ ଲୋକଙ୍କୁ ବଞ୍ଚାଇବାକୁ ଯାଇ ସେ ତା ନିଜ ସ୍ୱାର୍ଥକୁ ଯେପରି ଭାବରେ ଜଳାଞ୍ଜଳି ଦେଇଚି, ସେଥିପାଇଁ ସେ ଏକା ମୋର ନୁହେଁ, ଏ ସମସ୍ତ ଦେଶର ସେ ନମସ୍ୟା.... । ଆପଣ ତାକୁ ନେଇ ଘରକୁ ଯା'ନ୍ତୁ ।

ମକୁନ୍ଦ - ହଁ, ଆଜ୍ଞା । ଝିଅକୁ ନେଇ ତେମେ ଘରକୁ ଯାଅ; ଆମେ ଏଣେ ତା'କଥା ବୁଝୁଚୁ....

ମନ୍ଦର - ବିଜୟ-

ବିଜୟ - ଆପଣ ତାକୁ ନେଇ ଘରକୁ ଯା'ନ୍ତୁ - ମୁଁ ପରେ ଯାଉଚି ।

(ମନ୍ଦର ମହାନ୍ତି, ସୀତା ଓ ସେବତୀ ଚାଲିଗଲେ ।)

ରାଜେନ୍ଦ୍ର - ମନ୍ଦର ମହାନ୍ତିଙ୍କ ଅଭିଯୋଗର କି ଉତ୍ତରଦେବ ଶଶିବାବୁ ? ଯିଏ ପେଟଭର୍ତ୍ତି ଭାତ ମୁଠାଏ ପାଉନାହିଁ - ତାକୁ ନେଇ ତମେ ପ୍ରଣୟର ସ୍ୱପ୍ନ ଦେଖିଲ କିପରି ? ତମର ହୀନ ଲାଳସା ମେଣ୍ଟାଇବାକୁ ଯାଇ ତମେ ଖାଦ୍ୟକୁ ଅସ୍ତ୍ର ରୂପେ ବ୍ୟବହାର କଲ ?

ମକୁନ୍ଦ - କହୁନ ବାବୁ - ତେମେ ସିନା ଦି'ବେଳା ବାସ-ପତ୍ରି ଚାଉଳର ଭାତ ଖାଉଚ ଯେ ତମ ପେରେମ ଉଛୁଳିପଡୁଚି; ସିଏ ତ ବେଳାଏ ଖାଇଲେ ବେଳାଏ ଉପାସ ରହୁଚି, କ'ଣ ଆଉ କହିବି ? ମୁଁ ସେ ଭୋଟ୍‌ସଭା ଦିନୁ ଜାଣିଚି ପରା - ପର-କଲମକୁ ନିଜର କରିବା ଯାଙ୍କର ପେଶା । (ରାଜେନ୍ଦ୍ରଙ୍କୁ) ଆଜ୍ଞା ହୁକୁମ୍ ଦିଅନ୍ତୁ ! ମୋ କାମ ବଢ଼େଇ ଦିଏ....

ରାଜେନ୍ଦ୍ର - ଥାନାଟା ବେଶି ଦୂର ନୁହେଁ ମକୁନ୍ଦ, ଚାଲ ତାଙ୍କୁ ନେଇ ମୁଁ ନିଜେ ତମ ସହିତ

ଥାନାକୁ ଯିବି - ହଁ, ବିଜୟ ।

ବିଜୟ - ଦୁଇବର୍ଷ ତଳେ ଗଣଶକ୍ତି ଦଳଙ୍କ ହାତରେ ଶାସନ ଥିଲାବେଳେ ଆପଣମାନଙ୍କ ଶିକ୍ଷାରେ ଆମେ କଲେଜ୍‌ରେ ଷ୍ଟ୍ରାଇକ୍ କଲୁଁ । ସେତିକିବେଳେ ଜଣେ ପୁଲିସ୍ ଅଫିସର୍‌ଙ୍କଠାରୁ ଏ ଚାବୁକ୍ ମୁଁ ଛଡ଼ାଇ ଆଣିଥିଲି - ଆଜି ଆପଣମାନେ ଏ ଦେଶର ଶାସକ - ଚାବୁକର ଆଉ ଦରକାର କ'ଣ ? ଏଇଟା ମୁଁ ଆଣିଥିଲି ଆପଣଙ୍କୁ ଫେରାଇ ଦେବାପାଇଁ ।

ରାଜେନ୍ଦ୍ର - ସୁଇଜରଲାଣ୍ଡରୁ କଲିକତା ଆସିଲି - କଲିକତାରୁ ମୁଁ ସିଧା ଆସିଚି ଏଠିକି, ମୁଁ ଜାଣେନା ବିଜୟ, କାହିଁକି କେମିତି ଏ ଦୁର୍ଭିକ୍ଷ ସମ୍ଭବ ହେଲା ? ଏ କିଏ ? (ସପନା ଆସିଲା)

ମକୁନ୍ଦ - ସେ ସପନା, ଆମ ଗାଁ ବାଉରି - ପେଟ ବିକଳରେ ଏଇ ଶଶିବାବୁଙ୍କ ଚାଉଳ ଡିପୁକୁ ଯାଇଥିଲା - ସେଠି ଢେଲାମାଡ଼ ଖାଇ ତା ମୁହଁ କେମିତି ହେଇଚି, ଦେଖନ୍ତୁ... ସପନା, ଏ ବାବୁଙ୍କୁ ଚିହ୍ନିପାରୁଚୁ - ଚାଉଳବାବୁ ।

(ସପନା ଶଶିକୁ ଚାହିଁଲା - ତାକୁ ଚିହ୍ନିପାରି ହାତରେ ଧରିଥିବା ଛେଲୁଆରେ ତାକୁ ମାରିବା ପାଇଁ ଧାଇଁଯିବାବେଳେ ନିଜେ ପଡ଼ିଗଲା - ଯନ୍ତ୍ରଣାରେ କିଛିକ୍ଷଣ ଗାଁ ଗାଁ ହେବାପରେ ତା'ର ପ୍ରାଣବାୟୁ ଉଡ଼ିଗଲା - ଶଶି ସହିତ ଅନ୍ୟମାନେ ତା'ପାଖରେ ବସିପଡ଼ିଲେ ।)

ଶଶି - ସପନା...ସପନା

ମକୁନ୍ଦ - ନାଃ- ଚାଲିଗଲା-

ରାଜେନ୍ଦ୍ର - ଆମର ଏଇ ସୁଜଳା-ସୁଫଳା ଶସ୍ୟଶ୍ୟାମଳା ପ୍ରଦେଶ - ଆମର ବଳାକ ପ୍ରଦେଶ । ଏଠି ଭାତପାଇଁ ଲୋକେ ବାଟଘାଟରେ ପଡ଼ି ମରୁଚନ୍ତି - କାହିଁକି ? ....ନା- ନା ବିଜୟ ! ଏ ଚାବୁକ ତମେ ଫେରାଇଦିଅନାଇଁ - ଯଦି ମୁଁ ନପାରେ ତେବେ ଏ ଚାବୁକ ସାହାଯ୍ୟରେ ତମେ ଖୋଜି ବାହାର କରିବ, ଏଥିପାଇଁ ଦାୟୀ କିଏ ? କିଏ ଦାୟୀ... ?

## ତୃତୀୟ ଦୃଶ୍ୟ

(ରାସ୍ତା - ଜଣେ ଲୋକ ଗୀତ ଗାଇ ଗାଇ ଆସିଲା - ଦେଶର ଏ ପରିସ୍ଥିତିରେ ଯେପରି ସେ ଉଦ୍‌ଭ୍ରାନ୍ତ ହୋଇପଡ଼ିଛି ।)

(ଗୀତ)

ଦାୟୀ କିଏରେ....ଦାୟୀ କିଏରେ
କାହାକୁ କହିବ ଦଇବ.....
ତୁ ପଚାରୁଛୁ ମୁଁ ପଚାରୁଛି ସେ ପଚାରୁଛି ଦାୟୀ କିଏ
(ଖାଲି)

(ଆରେ) ସଭିଏଁ ତ ପରସବ କଷଣ ପାଇଲେ
ଅନ୍ତୁଡ଼ି ଶାଳରେ ବସି କୁନ୍ଥାଇଲେ
ସବୁ ପେଟ ଭାରି ନ ହୁଏ ଠଉରି
ସଚ୍ଚା ଅଣିରା କି ମାଈ କିଏ ?
ଲଇଖଣିଆ ପଚାରୁଛି ନବଘନିଆ ପଚାରୁଛି
ନୁଙ୍ଗୁପୁଙ୍ଗିଆ ପଚାରୁଛି ଦାୟୀ କିଏ ? (ଖାଲି) ।୧ ।
ଯାହାକୁ ଗାଦିକି ଟେକିଲୁ କୁଦିକି
ସେଇ ଗୋଛି ତୋର ହାଣିଲା ଛେଦିକି
ଯା ଗୋଡ଼ ଧଇଲୁ ଗୋଇଠା ଖାଇଲୁ
ତେବେ ବି ନ ମଲା ତୋର ମନଗଲୁ ।
(ରହିଲୁ ଚଦିକି) (ସବୁ) ଘର ଘଇତା ତ ମଧୁଆ ବୋପାରେ
କିଏ ଚିହ୍ନିବ ଅସଲ ଭାଇକିରେ
ଚଟୁଚଲା ପଚାରୁଛି ଆଗବୋଲା ପଚାରୁଛି
ବଡୀପେଲା ପଚାରୁଛି ଦାୟୀ କିଏ ? ।୨ ।
ବିଲୁଆ-ପଲ ତୋର ହାଲୁଆ ତୁ ମିଳି
ସ୍ୱାଧୀନ ସ୍ୱାଧୀନ ଛାଡ଼ିଲୁ ବୋବାଳି
ବାପ ଦାଦିଙ୍କର ପାଣ୍ଠି ମୂଳପୋଛ
କରି ସାଉଁଳିଲୁ ପେଗା ଭାଇ ମୁଛ
(ହୁକୁମ ସମ୍ଭାଳି) ସବୁ କପଟିଆ ଚରଣଚୁଟିଆ
କରିବ ଆହା ତୋ ପାଇଁ କିରେ
କରିବାବାଲା ପଚାରୁଛି ମାରିବାବାଲା ପଚାରୁଛି
ପାରିବାବାଲା ପଚାରୁଛି ଦାୟୀ କିଏ ? ।୩ ।

## ଚତୁର୍ଥ ଦୃଶ୍ୟ

(ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟଙ୍କ ଅଫିସ୍ ସଂଲଗ୍ନ ରିସେପସନ୍ ଗୃହ । ମଝିରେ ଗୋଟିଏ ଲମ୍ବା ଟେବୁଲ୍, ଟେବୁଲ୍‌ର ଦୁଇ ଧାରରେ କେତେଖଣ୍ଡ ଚୌକି - ଟେବୁଲ୍ ଉପରେ ଗୋଟିଏ ବଡ଼ ଫୁଲଦାନୀ - କେତେଖଣ୍ଡି ଖବରକାଗଜ - ଗୋଟିଏ ଦୁଇଟି ଫାଇଲ୍ - ଗୋଟିଏ ଦୁଆତଦାନୀ । ଗୋଟିଏ ପର-କଲମ ଓ କେତୋଟି ପେପରଓଏଟ୍ । ଦୃଶ୍ୟାରମ୍ଭରେ ଅଛନ୍ତି ଆଚାର୍ଯ୍ୟ ଓ ଦେବାନନ୍ଦ । କୌଣସି ଏକ ବିଶେଷ କାରଣ ଯୋଗୁଁ ଆଚାର୍ଯ୍ୟ ଚିନ୍ତିତ ହେବା ଅପେକ୍ଷା ବେଶି ଉତ୍ତେଜିତ ହୋଇପଡ଼ିଛନ୍ତି ।)

ଆଚାର୍ଯ୍ୟ - କେହି ଯାକୁ ବରଦାସ୍ତ କରିପାରେ ନା- କୌଣସି ଗଭର୍ଣ୍ଣମେଣ୍ଟ, କୌଣସି ସଭ୍ୟ ଦେଶର ଗଭର୍ଣ୍ଣମେଣ୍ଟ୍ ଏ ଅତ୍ୟାଚାରକୁ ପ୍ରଶ୍ରୟ ଦେଇପାରେନା ।

ଦେବାନନ୍ଦ - ସେ ଦୁଇଜଣ ଛାତ୍ରନେତାଙ୍କୁ ଡାକି ଆପୋଷ ମିଳାମିଶା କରିବାର ଚେଷ୍ଟା କରିବା ଆମର ଭୁଲ୍ ହୋଇଚି ।

ଆଚାର୍ଯ୍ୟ - ଖାଲି -ସେତକିନୁହେଁ - ସେମାନଙ୍କୁ ନେତା ବୋଲି ସ୍ୱୀକାର କରିବାରେ ଆମର ଭୁଲ ହେଇଚି । ଅଠର, ଉଣେଇଶି ବର୍ଷର ଦୁଇଜଣ ଦୁଧଖିଆ ପିଲା - ଏତେ ବଡ଼ ଗୋଟିଏ ଆନ୍ଦୋଳନ ଚଳାଇବାର ନିଜର ବୁଦ୍ଧି ସେମାନଙ୍କର ହୋଇପାରେନା । ଏ କଥା ଶୁଣିଶୁଣି ସେମାନଙ୍କୁ ଏଠିକି ଡାକି ଖୋସାମତ୍ କରିବାର ଫଳ ଆମେ ଭୋଗୁଚୁ ।

(ବାହାରେ ମଟରର ଶବ୍ଦ । ଦେବାନନ୍ଦ ଉଠିଯାଇ ଚାହିଁଲେ ।) କିଏ ଆସିଲା - ରାଜେନ୍ଦ୍ର ?

ଦେବାନନ୍ଦ - ନା, ଆଉ ଦଳେ ମିଲିଟାରୀ ପୁଲିସ୍ ! !

ଆଚାର୍ଯ୍ୟ - What's this going on!! ଛାତ୍ରମାନେ କଲେଜ୍ ଘେରାଉ କରିବେ - ମିଲିଟାରୀ ପୁଲିସ୍ ଆମକୁ ଏଠି ଜଗିବସିବେ ? ନା - ମୁଁ ନିଜେ ସେଠିକି ଯିବି ।

ଦେବାନନ୍ଦ - ନା-ନା- ଆପଣ ସେଠିକି ଆଦୌ ଯିବା ଉଚିତ୍ ନୁହେଁ - ସେମାନେ ଉତ୍ତ୍ୟକ୍ତ ।

ଆଚାର୍ଯ୍ୟ -Damn it! ଦଳେ ଛାତ୍ରଙ୍କୁ ଯଦି ମୁଁ କରାୟତ୍ତ କରିନପାରେ....

ଦେବାନନ୍ଦ - ସେଠି ତ ଖାଲି ଛାତ୍ର ନାହାନ୍ତି - ବାହାରର ଲୋକେ ମଧ୍ୟ ଅଛନ୍ତି, ଆଉ ଧାନ ଚାଉଳ ଅନଟନର କଥାଟା ସେମାନେ ତ ଭୁଲିପାରିନାହାନ୍ତି !

ଆଚାର୍ଯ୍ୟ - କାହିଁକି ? ଚାଉଳର ଅଭାବ ତ ବର୍ତ୍ତମାନ ଆଉ ନାହିଁ - ଯଥେଷ୍ଟ ମିଳୁଚି -

ଦେବାନନ୍ଦ - କିନ୍ତୁ ଲୋକଙ୍କ ମନରୁ ସେ ଦାଗ କ'ଣ ଏତେ ଚଞ୍ଚଳ ନିଭିଲାଣି ! ! ତା'ଛଡ଼ା ଆପଣ ସେଠିକି ଯିବେ କାହିଁକି ? ସେଠି କଲେଜ୍‌ର ପ୍ରିନିସ୍‌ପାଲ୍ ଅଛନ୍ତି....

ଆଚାର୍ଯ୍ୟ - ପ୍ରିନ୍‌ସିପାଲ୍ ଥାଇ କରିବେ କ'ଣ ? ସେ ତ ଝରକା କବାଟ ବନ୍ଦ କରି ଅଫିସ୍ ଘରେ ନିରାପଦରେ ଅଛନ୍ତି -

ଦେବାନନ୍ଦ - District Magistrate, S.P.

ଆଚାର୍ଯ୍ୟ - Dist. Magistrate, S.P.,I.G. ସମସ୍ତେ ତ ଅଛନ୍ତି - But what the hell they are doing there! ପାଞ୍ଚ ପାଞ୍ଚ ଘଣ୍ଟା ଧରି ପଞ୍ଚାଏ ପିଲା କଲେଜ ଆକ୍ରମଣ କରିବେ - ଆଉ ସେମାନେ ସେଠି ଠିଆହୋଇ ମଜା ଦେଖୁଥିବେ ! ! They are all out of their heads ।

ଦେବାନନ୍ଦ - ଆପଣ ଏପରି ଅସ୍ଥିର ହୁଅନ୍ତୁ ନାହିଁ ।

ଆଚାର୍ଯ୍ୟ - କିନ୍ତୁ ସ୍ଥିର ହୋଇ ରହିପାରୁଚି କେଉଁଠି ? ସେ ବ୍ୟବସ୍ଥା କରୁଚି କିଏ ?

ଦେବାନନ୍ଦ - ସେ ବ୍ୟବସ୍ଥା ଆପେ ଆପେ ହୋଇଯିବ ।

(ରାଜେନ୍ଦ୍ର ଆସିଲେ ?)

ଆଚାର୍ଯ୍ୟ - ରାଜେନ୍ଦ୍ର - ତମେ କେଉଁଠୁ ଆସିଲ ?

ରାଜେନ୍ଦ୍ର - କଲେଜରୁ ।

ଆଚାର୍ଯ୍ୟ - କଲେଜ୍‌ରୁ ? ତମେ ତେବେ ଥିଲ ସେଠି ।

ରାଜେନ୍ଦ୍ର - ଆପଣଙ୍କୁ ଫୋନ୍ କରିବାର ଚେଷ୍ଟା କଲି - କିନ୍ତୁ ପାରିଲିନାହିଁ । ଲାଇନ୍ ସେମାନେ କାଟି ଦେଇଚନ୍ତି ।

ଆଚାର୍ଯ୍ୟ - ବର୍ତ୍ତମାନ ଅବସ୍ଥା କ'ଣ ?

ରାଜେନ୍ଦ୍ର - ସେମାନେ କଲେଜ୍ ଛାଡ଼ି ଚାଲିଗଲେଣି ।

ଆଚାର୍ଯ୍ୟ - ସମସ୍ତେ ?

ରାଜେନ୍ଦ୍ର - ହଁ ।

ଆଚାର୍ଯ୍ୟ -Thanks! କିପରି ଗଲେ ?

ଦେବାନନ୍ଦ - Firing ହୋଇଥିଲା ?

ରାଜେନ୍ଦ୍ର - ହଁ ।

ଆଚାର୍ଯ୍ୟ - Firing ହେଇଚି ? କାହିଁକି Firing ହେଲା ? କିଏ ଅର୍ଡ଼ର୍ ଦେଲା ? କେହି ମରିଚନ୍ତି ?

ରାଜେନ୍ଦ୍ର - ନା - ସେମାନଙ୍କୁ ଘଉଡ଼ାଇବା ପାଇଁ ପୁଲିସ୍ Blank Fire କଲା -

ଦେବାନନ୍ଦ - ତା'ପରେ ସେମାନେ ଚାଲିଗଲେ ?

ରାଜେନ୍ଦ୍ର - ନା - ସେମାନଙ୍କର ତରଫରୁ ପୁଲିସ୍ ଉପରକୁ ସୋଡ଼ା ବୋତଲ ଓ ପଥର ବୃଷ୍ଟି ଚାଲିଲା - ଦୁଇଜଣ କନ୍‌ଷ୍ଟେବଲ୍ ଓ ଜଣେ S.I. ଙ୍କ ଦେହରେ ଆଘାତ ଲାଗିଚି ।

ଦେବାନନ୍ଦ - ଏସବୁ ଗୁଣ୍ଡାମାନଙ୍କର କାମ ! ସେମାନଙ୍କୁ ମତେଇ ସେଠି ରଖାଯାଇଛି ! !

ରାଜେନ୍ଦ୍ର - ହୋଇପାରେ ! ପାଞ୍ଚ ହଜାର ଲୋକଙ୍କ ମଧ୍ୟରୁ କିଏ ଗୁଣ୍ଡା, କିଏ ଛାତ୍ର ଜାଣିବାର ଉପାୟ କ'ଣ ?

ଆଚାର୍ଯ୍ୟ - ତା'ପରେ କ'ଣ ହେଲା ?

ରାଜେନ୍ଦ୍ର - ତା' ପରେ ତ ଗଣ୍ଡଗୋଳକାରୀମାନଙ୍କ ଉପରକୁ ପୁଲିସ୍‌ର ଗୁଳି ଚଳାଇବାର କଥା - କିନ୍ତୁ -

ଆଚାର୍ଯ୍ୟ - କିନ୍ତୁ ?

ରାଜେନ୍ଦ୍ର - ମୁଁ ବାଧାଦେଲି - ଛାତ୍ର ପ୍ରତିନିଧିମାନଙ୍କୁ ଡକାଇ ମୁଁ ଶୁଣାଇଦେଲି ଯେ, ସେମାନଙ୍କର ଦାବି ସରକାର ଗ୍ରହଣ କରିବେ - ପ୍ରଫେସର୍ ମହାନ୍ତିଙ୍କୁ ଏଠୁ ବଦଳି କରାଯିବ ନାହିଁ - ସେ ଏହି କଲେଜ୍‌ରେ ରହିବେ !

ଆଚାର୍ଯ୍ୟ - ତା'ପରେ ଛାତ୍ରବାହିନୀ ଆନନ୍ଦରେ ଇନ୍‌କିଲାବ୍ ଜିନ୍ଦାବାଦ୍ ଧ୍ୱନି କରି ସେଠୁ ଚାଲିଯାଇଥିବେ - ପୁଲିସ୍‌ବାହିନୀ ସ୍ୱସ୍ତିର ନିଶ୍ୱାସ ମାରିଥିବେ - କଲେଜ୍ ସ୍କୋୟାର୍‌ରେ ଶାନ୍ତିର ଢେଉ ଖେଳିଯାଇଥିବ । ରାସ୍ତାମାନଙ୍କରେ ଯାନବାହନ ଚଳାଚଳ ଆରମ୍ଭ

ହୋଇଯାଇଥିବ'- ସନ୍ଧ୍ୟା ପୂର୍ବରୁ ଲୋକମାନଙ୍କୁ ଏଉ ସୁସମ୍ବାଦଟା ଜଣାଇବାପାଇଁ ଖବରକାଗଜ ସମ୍ପାଦକମାନେ ତତ୍ପର ହୋଇ ଉଠିଥିବେ.... କିନ୍ତୁ ରାଜେନ୍ଦ୍ର ବାବୁ...

ରଜେନ୍ଦ୍ର - କୁହନ୍ତୁ !

ଆଚାର୍ଯ୍ୟ - ତମେ ଜଣେ Cabinet Minister - ତମ ହାତରେ ଶିକ୍ଷା ବିଭାଗ - ଅତଏବ ଏ ନିଷ୍ପତ୍ତି କରିବାର ଅଧିକାର ତମର ରହିଛି, କିନ୍ତୁ ଏ ନିଷ୍ପତ୍ତି ତମେ ଆଠଦିନ ପୂର୍ବରୁ ନେଲନାଇଁ କାହିଁକି ? ମୋ ପରାମର୍ଶ କାହିଁକି ମାଗିଲ - ଛାତ୍ରମାନଙ୍କର ଦାବି ଗ୍ରହଣ ନକରିବାକୁ ପରାମର୍ଶ ମୁଁ ତମକୁ ଦେଇଥିଲି କାହିଁକି ? ଆଠଦିନଧରି କଲେଜ୍‌ରେ ଷ୍ଟ୍ରାଇକ୍ ଆଉ ଆଜି ଏ ଗଣ୍ଡଗୋଳ ହେଲା କାହିଁକି ? Can you justify ?

ରାଜେନ୍ଦ୍ର - ମୁଁ ମାନୁଚି - ଏହା ଆମ ସରକାରଙ୍କର ଏକ ପରାଜୟ । ଶାସନ ଦୃଷ୍ଟିରୁ - ଅନ୍ୟ କଥାରେ Diplomacy ଦୃଷ୍ଟିରୁ ମୁଁ ଯାହା କରିଚି, ତା ହୁଏତ କେହି ପସନ୍ଦ କରିବେନାହିଁ । କିନ୍ତୁ ଏ ସମସ୍ତ ଗଣ୍ଡଗୋଳର ମୂଳରେ ଅଛି ସେଇ ଧାନ ଚାଉଳ ଅଭାବର ଯନ୍ତ୍ରଣା । ମାତ୍ର ଦିନ କେତେଟାର କଥା - ଖାଇବାକୁ ନପାଇ ଅସଂଖ୍ୟ ଲୋକ ମରିଚନ୍ତି - ମଡ଼ାଗନ୍ଧ ଏ ପର୍ଯ୍ୟନ୍ତ ଏ ଦେଶରୁ ଯାଇନାହିଁ - ଏ ଅବସ୍ଥାରେ ମଣିଷ ଜୀବନ ଆଜି ଯେତେ ଶସ୍ତା ହେଲେ ସୁଦ୍ଧା ଆଉ କେତେଜଣ ନିର୍ବୋଧ ଛାତ୍ରଙ୍କୁ ମାରିଦେବା ଦୃଶ୍ୟ ମୁଁ ଦେଖିପାରି ନଥା'ନ୍ତି ।

ଆଚାର୍ଯ୍ୟ - କିନ୍ତୁ ମୋତେ ଅପମାନିତ କରିବାର ଦୃଶ୍ୟଟା ତମେ ବେଶ୍ ଦେଖିପାରିବ ।

ଦେବାନନ୍ଦ - ଆପଣ ସେଠିକି ଗଲେ କାହିଁକି ? ସେଠିକାର ଅବସ୍ଥା ସମ୍ଭାଳିବାର ଦାୟିତ୍ୱ ଯେଉଁମାନଙ୍କର ସେମାନେ ତା ତୁଲେଇଥା'ନ୍ତେ । ସାଧାରଣ ଶାସନ କାର୍ଯ୍ୟରେ ହସ୍ତକ୍ଷେପ କରିବାର ଆମର ତ ଆଦୌ ଉଚିତ୍ ନୁହେଁ -

(ରାଜେନ୍ଦ୍ର କେବଳ କଟାକ୍ଷରେ ଦେବାନନ୍ଦଙ୍କୁ ଚାହିଁଲେ - ସତ୍ୟବାଦୀ ଆସିଲା ।)

ସତ୍ୟ - ଶ୍ରୀଯୁକ୍ତ ମହାପାତ୍ର ଓ ଶ୍ରୀଯୁକ୍ତ ଶର୍ମା !

ଆଚାର୍ଯ୍ୟ - ଦେଖାକରିବାକୁ ଚାହାନ୍ତି ?

ସତ୍ୟ - ଆଜ୍ଞା !

ଆଚାର୍ଯ୍ୟ - କହିଦିଅ - ଦେଖା ହେଇପାରିବ ନାହିଁ ।

(ସତ୍ୟବାଦୀ ଚାଲିଯାଉଥିଲା)

ରାଜେନ୍ଦ୍ର - ଶୁଣି । (ସତ୍ୟବାଦୀ ଅଟକିଲା)

(ଆଚାର୍ଯ୍ୟଙ୍କୁ) ଶ୍ରୀଯୁକ୍ତ ମହାପାତ୍ର ବର୍ତ୍ତମାନ ବିରୁଦ୍ଧ ଦଳର ନେତା - ତାଙ୍କୁ.....

ଆଚାର୍ଯ୍ୟ - କିନ୍ତୁ ବର୍ତ୍ତମାନ ତାଙ୍କର ଏଠି କାମ କ'ଣ ?

ରାଜେନ୍ଦ୍ର - ଦେଶର ଅବସ୍ଥା ସମ୍ବନ୍ଧରେ ଆଲୋଚନା କରିବାର ଅଧିକାର ତାଙ୍କର ସବୁ ସମୟରେ ଅଛି ।

ଆଚାର୍ଯ୍ୟ - ବିରୁଦ୍ଧ ଦଳର ନେତା ହିସାବରେ ତାଙ୍କର ଅଧିକାର ଥାଉ ବା ନ ଥାଉ ତମ ସହିତ

ତାଙ୍କର ରକ୍ତର ସମ୍ବନ୍ଧ......

ରାଜେନ୍ଦ୍ର - ଆଚାର୍ଯ୍ୟ ମହାଶୟ ! !

ଆଚାର୍ଯ୍ୟ - (ସମ୍ମତିର ଇଙ୍ଗିତ ଦେଲେ - ସତ୍ୟବାଦୀ ଚାଲିଗଲା - ଟିକିଏ ପରେ ମହାପାତ୍ର ଓ ଶର୍ମା ଆସିଲେ) ବସନ୍ତୁ ! (ଟେବୁଲ୍‌ର ଗୋଟିଏ ପାଖରେ ଏ ତିନିଜଣ ଓ ଅନ୍ୟ ପାଖରେ ସେ ଦୁଇଜଣ ବସିଲେ - ଟିକିଏ ପରେ ଜଣେ ଗୋଟିଏ Bearer ଟ୍ରେ'ରେ ପାଞ୍ଚଗ୍ଲାସ୍ ପାନୀୟ ପଦାର୍ଥ ଆଣି ଏମାନଙ୍କ ସମ୍ମୁଖରେ ରଖିଦେଇଗଲା - ତା'ପୂର୍ବରୁ ସେମାନଙ୍କ କଥାବାର୍ତ୍ତା ଆରମ୍ଭ ହୋଇଯାଇଥାଏ ।)

ଆଚାର୍ଯ୍ୟ - ଆପଣମାନେ ତ ଜିତିଛନ୍ତି - ଆଉ ଆସିଲେ କାହିଁକି ?

ମହାପାତ୍ର - ଆମେ ଜିତିଛୁ ?

ଆଚାର୍ଯ୍ୟ - ଛାତ୍ରମାନଙ୍କର ଦାବି ଯେତେବେଳେ ଆମେ ଗ୍ରହଣ କରିନେଇଚୁ....

ଶର୍ମା - ବୁଝିଲୁ - ଏଇଟା ଯଦି ଆମର ବିଜୟ ହୋଇଥାଏ, ତେବେ ଧରିନିଅନ୍ତୁ ଆମେ ଆପଣଙ୍କ କୃତଜ୍ଞତା ଜଣାଇବାକୁ ଆସିଛୁ -

ଆଚାର୍ଯ୍ୟ - କୁହନ୍ତୁ, ଆପଣମାନଙ୍କର କ'ଣ କହିବାର ଅଛି ।

ଶର୍ମା - କଲେଜ୍‌ରୁ ଜଣେ ପ୍ରଫେସର୍‌ଙ୍କର ବଦଳି ଆଦେଶ ହେଲା, ଏହା ସାଧାରଣ କଥା । ଛାତ୍ର ଦାବି କଲେ - 'ନା- ଏ ପ୍ରଫେସର୍ ଏଠୁ ଯାଇପାରିବେ ନାହିଁ' - ଏହା ମଧ୍ୟ ଏକ ସାଧାରଣ କଥା; କିନ୍ତୁ ଏଇ ସାଧାରଣ କଥାଟା ସଭା ସମିତି, ଷ୍ଟ୍ରାଇକ୍, ଗୁଳି-ବନ୍ଧୁକ, ଢେଲା ଓ ସୋଢ଼ାବୋତଲ ମଧ୍ୟ ଦେଇ ଏପରି ଏକ ଅସାଧାରଣ ରୂପ ନେବାର ଏକମାତ୍ର କାରଣ ହଉଚି ଯେ ଆରମ୍ଭରୁ ସରକାରଙ୍କୁ 'ଆମ ଭୂତ' ଅର୍ଥାତ୍ ଏହି ମହାପାତ୍ର -ଶର୍ମା ଆଦିଙ୍କର ଭୂତ ଗ୍ରାସିଲା । ଫଳରେ ପିଲାମାନଙ୍କ ପଢ଼ାପଢ଼ି, ପ୍ରଫେସର୍‌ଙ୍କ ବଦଳି - ଏସବୁ କଥା କୁଆଡ଼େ ଉଭେଇଗଲା - କେବଳ ରହିଗଲା ଆମ ଉପରେ ସରକାରଙ୍କ ତୀକ୍ଷ୍ଣ ଦୃଷ୍ଟି, ଯଦିଓ ଆମେ ଏହାର ବିନ୍ଦୁବିସର୍ଗ କିଛି ଜାଣୁନା -

ଆଚାର୍ଯ୍ୟ - ଅବଶ୍ୟ ଆମର ବୋକାମି ଯୋଗୁଁ ଆପଣମାନଙ୍କୁ ଏ କଥା କହିବାର ସୁଯୋଗ ମିଳିଲା... ନା, ରାଜେନ୍ଦ୍ର ବାବୁ !

ମହାପାତ୍ର - ଶୁଣନ୍ତୁ ଆଚାର୍ଯ୍ୟ ମହାଶୟ ! ଗତ ପାଞ୍ଚ ବର୍ଷ ଧରି ଏଇ ରିସେପସନ୍ ଘରେ ବହୁବାର ମୁଁ ଆପଣଙ୍କୁ ଭେଟିଛି - ଆମ ବିରୁଦ୍ଧରେ ଆପଣଙ୍କ ଅଭିଯୋଗ ଶୁଣିଛି -କିନ୍ତୁ ଏ ଇଲେକ୍‌ସନ୍‌ରେ ଆପଣମାନେ ଜିତିଲା ପରେ ମୁଁ ଭଗବାନ୍‌ଙ୍କ ନିକଟରେ ଏଇ ପ୍ରାର୍ଥନା ଜଣାଇଲି ଯେ, ବିରୁଦ୍ଧ ଦଳରେ ଥାଇ ଆମେ କିଛି କରୁ ବା ନକରୁ, ଆପଣଙ୍କ ସରକାର ବିରୁଦ୍ଧରେ ଏଇସବୁ ଅଭିଯୋଗ ଆଣିବାର ଦୁର୍ଭାଗ୍ୟ ଯେପରି ଆମର ନରହେ; କିନ୍ତୁ ଆପଣ ତା' କରାଇଦେଲେ ନାହିଁ । ଅଥଚ ଆମ ବିରୁଦ୍ଧରେ ବୃଥା ଅଭିଯୋଗ ହେଉଛି ଯେ ଛାତ୍ରମାନଙ୍କର ନେତୃତ୍ୱ ଆମେ ନେଇଛୁ -

ଦେବାନନ୍ଦ - ଏଥିରେ କାହାରି ହାତ ନଥିଲେ, କୋମଳମତି ଛାତ୍ରମାନେ ଏପରି ଏକ ବିପ୍ଳବ

କରିବାକୁ ସାହସ କରନ୍ତେ ନାହିଁ ।

ଶର୍ମା - ସାହସ କରନ୍ତେ କି ନାହିଁ, ଆପଣ ନିଜେ ନିଜକୁ ପଚାରନ୍ତୁ । ବିଲେଇକି ହାତକାମୁଡ଼ା ଶିଖାଇଲା କିଏ ? ଗଲା ପାଞ୍ଚବର୍ଷ ଭିତରେ ଏଇପରି ପ୍ରାୟ ପଚିଶଟି ଗଣ୍ଡଗୋଳରେ ଆପଣମାନେ ଛାତ୍ରମାନଙ୍କୁ ହାତ-ବାରିସି ପରି ବ୍ୟବହାର କରିଚନ୍ତି । ଆଜି ସେଇ ବାରିସି ଓଲଟିପଡ଼ିଛି । ଆମ ଦେଶର ନେତାମାନଙ୍କଠାରୁ ଛାତ୍ରମାନେ ଆଉ କିଛି ଶିଖନ୍ତୁ ନଶିଖନ୍ତୁ - ଇନ୍‌କିଲାବ୍ ଜିନ୍ଦାବାଦ୍‌ଟା ବେଶ୍ ଶିଖିପାରିଛନ୍ତି ।

ଆଚାର୍ଯ୍ୟ - Stop it please! - ଆପଣମାନଙ୍କର ଆଉ କ'ଣ କହିବାର ଅଛି

ମହାପାତ୍ର - ଏତେବଡ଼ ଗୋଟାଏ ଦୁର୍ଭିକ୍ଷ ହୋଇଗଲା - କିନ୍ତୁ ଏ ଦୁର୍ଭିକ୍ଷ କାହିଁକି ହେଲା - ଏଥିପାଇଁ ଦାୟୀ କିଏ - ଆମେ ବାରମ୍ବାର ଦାବି କରୁଥିଲେ ସୁଦ୍ଧା ଏ କଥା ସରକାର ଏ ପର୍ଯ୍ୟନ୍ତ ଦେଶବାସୀଙ୍କୁ ଜଣାଇ ନାହାନ୍ତି -

ଶର୍ମା - ଆଉ ଆଜି ମୁଁ ବ୍ୟକ୍ତିଗତ ଭାବେ ରାଜେନ୍ଦ୍ରବାବୁଙ୍କୁ ଏଇ କଥା ଚେତାଇଦେବାକୁ ଆସିଚି ଯେ, ସେଦିନ ଆସେମ୍ବ୍ଲିରେ ତାଙ୍କ ଦଳ ଖାଦ୍ୟନୀତି ଉପରେ ଇଲେକ୍‌ସନ୍ ଲଢ଼ିବେ ବୋଲି ଆମକୁ ସେ ଚାଲେଞ୍ଜ୍ କରିଥିଲେ । ଅଳ୍ପଦିନ ତଳେ - ନନ୍ଦିପୁର ମେଲଣପଡ଼ିଆରେ, ଗଲା ଭୋଟ୍ ଯୁଦ୍ଧର ଜଣେ ବୀର ସୈନିକ ଶ୍ରୀ ଶଶିଭୂଷଣ ସରକାରଙ୍କର ଖାଦ୍ୟନୀତିରେ ଏକ ସନ୍ତୋଷଜନକ ସମାଧାନ କରି ଦେଇଅଛନ୍ତି । ସେଥିପାଇଁ ବୋଧହୁଏ ରାଜେନ୍ଦ୍ର ବାବୁ ଆଜି ନୀରବ ।

(ରାଜେନ୍ଦ୍ର ଉଠି ଚାଲିଗଲେ)

ଆଚାର୍ଯ୍ୟ - ଦୁଇଦିନ ପରେ ଆସେମ୍ବ୍ଲି - ଆପଣମାନଙ୍କର ଯାହା କିଛି କହିବାର ଥାଏ ସେଇଟି କହିବେ । ଆଉ ଆମର ଉତ୍ତର ଆପଣ ସେଇ ଆସେମ୍ବ୍ଲିରେ ପାଇବେ-

ଶର୍ମା - ଆଜି ତ ଛାତ୍ରମାନେ କଲେଜ୍ ଉପରେ ଚଢ଼ାଉ କରିଥିଲେ - ସେକ୍ରେଟାରିଏଟ୍ ଚଢ଼ାଉ କରିବେ ବୋଲି ନୋଟିସ୍ ଦେଇଥିଲେ - ଏ ଦୁଇଦିନ ଭିତରେ ସେମାନେ କୌଣସି କାରଣରୁ ଯେ ଆସେମ୍ବ୍ଲି ଉପରେ ଚଢ଼ାଉ ନକରିବେ, ତା'ର ଗ୍ୟାରେଣ୍ଟି କିଏ ଦେବ ?

ମହାପାତ୍ର - ଯିବା ପୂର୍ବରୁ ମୁଁ ଆପଣଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇ ଯାଉଚି ଯେ, ଆପଣଙ୍କ ସରକାରର ପ୍ରତ୍ୟେକ ଲୋକହିତକର କାମରେ ଆମେ ଆପଣଙ୍କୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିବୁ; କିନ୍ତୁ ତା ପୂର୍ବରୁ ଏ ଦୁର୍ଭିକ୍ଷ ଓ ଅନ୍ୟାନ୍ୟ ଗଣ୍ଡଗୋଳ ପାଇଁ ଆମେ ସରକାରଙ୍କଠାରୁ ଏକ ସନ୍ତୋଷଜନକ କୈଫିୟତ୍ ଚାହୁଁ ।

ଆଚାର୍ଯ୍ୟ - ଯଦି ଆମ କୈଫିୟତ୍ ସନ୍ତୋଷଜନକ ନହୁଏ ! !

ଶର୍ମା - ତା'ହେଲେ - ଗଲା ପାଞ୍ଚବର୍ଷରେ ଆପଣମାନଙ୍କ କାର୍ଯ୍ୟକଳାପ ପ୍ରତି ଥରେ ଦୃଷ୍ଟିପକାଇବାକୁ ମୁଁ ଆପଣଙ୍କୁ ଅନୁରୋଧ କରିବି ।

ମହାପାତ୍ର - ଆମ ହାତରେ ସରକାର ଥିଲାବେଳେ, ଆପଣମାନେ ଦାବି କରିଚନ୍ତି- ଏ ଆଇନ୍ ହେଲାନାହିଁ - ଅଥଚ ଆଇନ୍ ଯେତେବେଳେ ହୋଇଯାଉଚି ଆପଣମାନେ ପ୍ରଥମେ

ଚେଷ୍ଟା କରିଚନ୍ତି ସେ ଆଇନ୍‌କୁ ଭାଙ୍ଗିବାକୁ -

ଆଚାର୍ଯ୍ୟ - ଏକାନ୍ତ ନିର୍ଭୁଲ ଭାବରେ ଆପଣ ସରକାର ଚଳାଉଥିଲେ ଏଇକଥା ଆପଣମାନେ କହିବାକୁ ଚାହାଁନ୍ତି ।

ମହାପାତ୍ର - ନା ! କିନ୍ତୁ ଆମେ ଯେତିକି ଭଲ କରୁଥିଲୁ - ତା'ଠାରୁ ଦଶ ଗୁଣ ଚେଷ୍ଟା ଆପଣମାନେ କରୁଥିଲେ ଆମକୁ ଭୁଲ୍ ବାଟରେ ଚଳେଇବାକୁ -

ଶର୍ମା - କିନ୍ତୁ ଆପଣମାନେ ସରକାର ଗଢ଼ିବାର ମାତ୍ର ଛ'ମାସ ଭିତରେ ଏତେ ଦୁର୍ଘଟଣା ଘଟିଲେ ସୁଦ୍ଧା ଆମେ ଲୋକଙ୍କୁ ମତେଇନୁ କି ତତେଇନୁ - ବରଂ ନୀରବ ରହିଚୁ । କିନ୍ତୁ ଆସେମ୍ବ୍ଲିରେ ଆପଣଙ୍କ କୈଫିୟତ୍ ସନ୍ତୋଷଜନକ ନହେଲେ - 'ଇନ୍‌କିଲାବ୍ ଜିନ୍ଦାବାଦ୍', 'ଆଚାର୍ଯ୍ୟ ମନ୍ତ୍ରୀମଣ୍ଡଳ ଧ୍ୱଂସ ହେଉ,' 'ରୋଟି ଦୋ କପଡ଼ା ଦୋ - ନେହିଁ ତୋ ଗାଦି ଛୋଡ଼୍ ଦୋ' ଏଇ ଚିତ୍କାର କରି ଗଳି କନ୍ଦିରେ ଆମେ ଶୋଭାଯାତ୍ରା ବାହାର କରିବୁ କି ନା' ସେ ଉପଦେଶ ଆପଣ ଆମକୁ ଦେବେ ! !... ଆସେମ୍ବ୍ଲିରେ ଦେଖାହବ, ଆସୁଚୁ, ନମସ୍କାର !

(ଦୁହେଁ ଚାଲିଗଲେ)

ଦେବାନନ୍ଦ - ଦେଖିଲେ ତ ! ରାଜେନ୍ଦ୍ରକୁ ଚିହ୍ନିଲେ ତ ? ଛାତ୍ରମାନଙ୍କଠାରୁ ତ ବାହାବା ନେଇଆସିଲା - ଏଠି ଗୋଟାଏ ଆଲୋଚନା ଚାଲୁଥିଲାବେଳେ ଏପରି ଭାବରେ ଉଠିଯିବା ଦ୍ୱାରା ସେମାନେ ଏ ସବୁ କଥା କହିବାର ସୁଯୋଗ ପାଇଲେ । ମହାପାତ୍ରଙ୍କ ଝିଅକୁ ବିବାହ କରିବା କଲାଦିନୁ ମୁଁ ଜାଣିଥିଲି ସେ ଆମକୁ ଠକିବ; ଅଥଚ ଏଣେ ଆମ ଦଳର ଶହେ ଏକ ମେମ୍ବର ମଧ୍ୟରୁ ତା'ପକ୍ଷରେ ଅଛନ୍ତି ପ୍ରାୟ ଷାଠିଏ ଜଣ ।

ଆଚାର୍ଯ୍ୟ - ମୋର ଏଇ ପାଦ ପାଖରେ ବସି ବସି ରାଜେନ୍ଦ୍ର ରାଜନୀତି ଶିଖିଚି - ଏତେ ଚଞ୍ଚଳ ମୋ ଆଖିରେ ସେ ଧୂଳି ଦେଇପାରିବ ନାହିଁ । ବର୍ତ୍ତମାନ ଦିନ ଗୋଟାଏ ବାଜିଚି - ଆଜି ରାତି ୧୨ଟା ଭିତରେ ରାଜେନ୍ଦ୍ର ହାତମୁଠାରୁ ୬୦ ଜଣ ମେମ୍ବରଙ୍କ ମଧ୍ୟରୁ ଅନ୍ତତଃ ୫୦ ଜଣଙ୍କୁ ଟାଣିଆଣିବାକୁ ହେବ - ଆଜି ରାତି ୧୨ଟା ଭିତରେ ।

ଦେବାନନ୍ଦ - ଏ କ'ଣ ସମ୍ଭବ ହେବ ?

ଆଚାର୍ଯ୍ୟ - ସମ୍ଭବ ନହେଲେ ତମେ ରାଜନୀତି ଛାଡ଼ି, ଯାଅ ଘାସ କାଟିବ ! ସମ୍ଭବ ହେବନାହିଁ ! ! ଯଦି ପଚାଶ ଜଣ ମେମ୍ବରପାଇଁ ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ କରାଯାଏ -

ଦେବାନନ୍ଦ - ପାଞ୍ଚଲକ୍ଷ !

ଆଚାର୍ଯ୍ୟ - ହଁ, ପାଞ୍ଚଲକ୍ଷ । ତମେ ଯାଅ ଆଜି ରାତି ଭିତରେ କାମ ଶେଷ କରିବାକୁ ହେବ ।

ଦେବାନନ୍ଦ - କିନ୍ତୁ ଟଙ୍କା କାହିଁ ! ଟଙ୍କା ଯେ କଲିକତାରେ ।

ଆଚାର୍ଯ୍ୟ - ବିପଦବେଳେ ତମର ସବୁ ବୁଦ୍ଧି ବୃତ୍ତି ଲୋପପାଏ ମୁଁ ଦେଖୁଚି । ଆଜି ରାତି ୧୨ଟା ଭିତରେ ତମେ ତମ କାମ ହାସଲ କର - କାଲି ଦିନ ବାରଟା ବେଳେ ମୁଁ ତୁମକୁ ଟଙ୍କା ଦେବି - ଯାଅ -

ଦେବାନନ୍ଦ - ଆପଣ -

ଆଚାର୍ଯ୍ୟ - ତମେ ଫେରିବା ପର୍ଯ୍ୟନ୍ତ ଏଇଠି ଅପେକ୍ଷା କରି ରହିବି । ତମେ ଯାଅ....

(ଦେବାନନ୍ଦ ଚାଲିଗଲେ) । ମଞ୍ଚ ଅନ୍ଧକାର ହୋଇଗଲା - ସେଇ ଅନ୍ଧକାର ଭିତରେ ଆଚାର୍ଯ୍ୟ ବସିରହିଥା'ନ୍ତି - ଯନ୍ତ୍ର ସଙ୍ଗୀତର ସ୍ୱର ଶୁଣାଯାଉଥାଏ । ଅନ୍ତରାଳରୁ ଶୁଣାଗଲା ନନ୍ଦିପୁର ମେଲଣପଡ଼ିଆରେ ବୋଲାହୋଇଥିବା ଭୋଟ୍ ଗୀତରୁ ପଦେ - ସେଇ ସଙ୍ଗେ ସଙ୍ଗେ ଆଚାର୍ଯ୍ୟଙ୍କର ମୁହଁ ଉପରେ ମୁହୂର୍ତ୍ତକପାଇଁ ଆଲୋକପାତ ହୋଇ ପୁଣି ଆଲୋକରେଖା ଉଭେଇଗଲା - ପରେ ପରେ ଏଇ କ୍ରମରେ ଶୁଣାଗଲା -

ମକୁନ୍ଦ - "ଶୋଷ ସିନା ପାଣି ପାଖକୁ ଯାଏ, ପାଣି କେମିତି ଶୋଷ ପାଖକୁ ଆସୁଚି ।"

ମହାପାତ୍ର - ଏଇ ଦୁର୍ଭିକ୍ଷ ପାଇଁ ଆମେ ସନ୍ତୋଷଜନକ କୈଫିୟତ୍ ଚାହୁଁ ।

ଦେବାନନ୍ଦ - ମୁଁ ଜାଣିଥିଲି ରାଜେନ୍ଦ୍ର ଆମକୁ ଠକିବ । (ମିଳିତ କଣ୍ଠରେ 'ବିଭିନ୍ନ ସ୍ଲୋଗାନ')

(ଥରକୁ ଥର ସେ ବେଶି ବେଶି ଉତ୍ତ୍ୟକ୍ତ ହୋଇପଡୁଥା'ନ୍ତି । ମଞ୍ଚ ପୁଣି ସଂପୂର୍ଣ୍ଣ ଅନ୍ଧକାର ହୋଇଗଲା - ଦୂରରୁ ୧୨ଟା ବାଜିବାର ଘଣ୍ଟା ଧ୍ୱନି ଶୁଣାଗଲା - ଘଣ୍ଟାର ଶେଷ ଶବ୍ଦ ବେଳକୁ ମଞ୍ଚ ଆଲୋକିତ ହୋଇଚି - ଆଚାର୍ଯ୍ୟ ଉତ୍ତ୍ୟକ୍ତ ହୋଇ ବୁଲୁଛନ୍ତି ।)

ଆଚାର୍ଯ୍ୟ - (ବାହାରେ କାହାର ପାଦ ଶବ୍ଦ ଶୁଣି ) Who is there ? (ରାଜେନ୍ଦ୍ର ଆସିଲେ, ରାଜେନ୍ଦ୍ରଙ୍କୁ ଦେଖିଲେ ଜଣାଯାଏ ସେ ଯେପରି ଏକ ଗୁରୁତର କର୍ତ୍ତବ୍ୟ ସାଧନରେ ବ୍ରତୀ)

ଆଚାର୍ଯ୍ୟ - ତୁମେ ପ୍ରସ୍ତୁତ ହୋଇ ଆସିଚ ରାଜେନ୍ଦ୍ର! ତମ ବିରୁଦ୍ଧରେ state ର, ଏ ଗଭର୍ଣ୍ଣମେଣ୍ଟର ଯେଉଁ ଗୁରୁତର ଅଭିଯୋଗ ରହିଚି, ସେଥିପାଇଁ ତମେ ପ୍ରସ୍ତୁତ! କୁହ ଆଜି ସନ୍ଧ୍ୟା ୫ଟା ବେଳେ ତମେ ରାଜଭବନକୁ ଯାଇଥିଲ କାହିଁକି ? କାହିଁକି ତମେ ଲାଟ୍‌ଙ୍କ ସହିତ ସାକ୍ଷାତ କରିଥିଲ ? ତମେ ମୋ Cabinet ର ଜଣେ Minister, ମୋର ଅନୁମତି ନନେଇ ତମେ ଲାଟ୍‌କୁ ଦେଖାକଲ କାହିଁକି ? କେଉଁ ଅଧିକାରରେ ? Come up, speak out, speak out you Devil!

(ରାଜେନ୍ଦ୍ରଙ୍କ କାନ୍ଧକୁ ଜୋର୍‌ରେ ହଲାଇ ଦେଲେ - ଆଚାର୍ଯ୍ୟ ଏତେଦୂର ଯାଇପାରନ୍ତି - ଏହା ରାଜେନ୍ଦ୍ର କଳ୍ପନା କରିନଥିଲେ - ତଥାପି ସେ ନିଜକୁ ସମ୍ଭାଳିନେଲେ ।)

ରାଜେନ୍ଦ୍ର - ଆପଣ ସୀମା ଭିତରେ ଅଛନ୍ତି ତ ?

ଆଚାର୍ଯ୍ୟ - Stop bullying! ତମେ କୁହ, ଉତ୍ତର ଦିଅ ।

ରାଜେନ୍ଦ୍ର - ଇସ୍‌ମାଇଲ୍ ଏଣ୍ଡ୍ କୋ.କୁ ଫ୍ରି ଲାଇସେନ୍‌ସ ଦିଆଯାଇଥିଲା କାହିଁକି ?

ଆଚାର୍ଯ୍ୟ - It is the same old story! ଦେଶସାରା ସମସ୍ତେ ଏ ପ୍ରଶ୍ନ ପଚାରୁଛନ୍ତି, ତମେ ମଧ ପଚାରୁଛ ! କିନ୍ତୁ ବ୍ୟବସାୟ କରିବାପାଇଁ ଜଣେ ଲୋକକୁ ଲାଇସେନ୍‌ସ ଦେବାର ଅଧିକାର କ'ଣ ଗୋଟାଏ ଗଭର୍ଣ୍ଣମେଣ୍ଟର ନାହିଁ ।

ରାଜେନ୍ଦ୍ର - ଅଛି ! କିନ୍ତୁ ଖୋଲା ରପ୍ତାନୀ ଲାଇସେନ୍‌ସ ବଳରେ ଇସ୍‌ମାଇଲ୍ କମ୍ପାନୀ ମନଇଚ୍ଛା ଧାନ ଚାଉଳର ଦର ବଢ଼ାଇଦେବା ଦ୍ୱାରା ଲୋକେ ଆଗପଛ ନବିଚାରି ଧାନ ଚାଉଳ

ହାତରୁ ଛାଡ଼ିଦେଲେ । ଏଣେ ଖୋଲା ବାଣିଜ୍ୟ ନୀତି ଯୋଗୁଁ କମ୍ପାନୀ ଲକ୍ଷ ଲକ୍ଷ ବସ୍ତା ଚାଉଳ କଲିକତା ରପ୍ତାନୀ କଲା, ଫଳରେ ଏଠି ଖାଇବାକୁ ନପାଇ ଲୋକେ ମଲେ ।

ଆଚାର୍ଯ୍ୟ - ଏଇସବୁ ଚାର୍ଜ୍ ମୋ ବିରୁଦ୍ଧରେ ଆଣିବା ପାଇଁ ତମେ ସୁଇଜରଲାଣ୍ଡରେ ମାତ୍ର ମାସ ତିନିଟା ରହି ଏଠିକି ପଳାଇଆସିଲ ! ତମେ ଶିଶୁ ରାଜେନ୍ଦ୍ର, ଶିଶୁ ! ! ଗୋଟାଏ ଦୁର୍ଘଟଣାରେ ଯଦି କେତେକ ଲୋକ ମରିଯା'ନ୍ତି, ସେଥିପାଇଁ ମୁଁ କ'ଣ କରିବି ?

ରାଜେନ୍ଦ୍ର - ଯାହାକୁ ଆପଣ ଦୁର୍ଘଟଣା କହୁଚନ୍ତି, ତାକୁ ଯଦି ମୁଁ କହେ ଦୁର୍ଭିକ୍ଷ - ଆଉ ଏ ଦୁର୍ଭିକ୍ଷ ଆପଣ ନିଜେ ଡାକିଆଣିଛନ୍ତି -

ଆଚାର୍ଯ୍ୟ - You are a fool, a knave! ତମର ସ୍ୱରୂପ ମୁଁ ଆଜି ଛାତ୍ର ଗଣ୍ଡଗୋଳ ଘଟଣାରୁ ପାଇଚି ।

ରାଜେନ୍ଦ୍ର - କିନ୍ତୁ ତା'ର ବହୁ ଆଗରୁ ମୁଁ ଆପଣଙ୍କ ପରିଚୟ ପାଇପାରିଚି ।

ଆଚାର୍ଯ୍ୟ -Hang it up! ମୋ କଥାର ଜବାବ ଦିଅ - କୁହ କାହିଁକି ତମେ ଲାଟ୍‌ଙ୍କ ନିକଟକୁ ଯାଇଥିଲ ?

ରାଜେନ୍ଦ୍ର - ଆପଣ ଇସ୍‌ମାଇଲ୍ ଖାଁକୁ ମନଇଚ୍ଛା ଚାଉଳ ରପ୍ତାନୀ କରିବାର ଲାଇସେନ୍‌ସ ଦେଇଥିଲେ, ଆଉ ତା ବଦଳରେ ସେ ଆପଣଙ୍କୁ ବସ୍ତା ପିଛା ଦୁଇଟଙ୍କା କରି ଲାଞ୍ଚ ଦେଇଚି ।

ଆଚାର୍ଯ୍ୟ - ରାଜେନ୍ଦ୍ର ! !

ରାଜେନ୍ଦ୍ର - ଆଉ - ଏଇ କାରବାରରେ ଆପଣ ତା'ଠାରୁ ସତର ଲକ୍ଷ ଟଙ୍କା ପାଇଚନ୍ତି - ସେ ଟଙ୍କା କଲିକତାର ଗୋଟାଏ ବ୍ୟାଙ୍କ୍‌ରେ ଜମା ଅଛି ।

ଆଚାର୍ଯ୍ୟ - ତମେ ବୁଝିପାରୁଚ ରାଜେନ୍ଦ୍ର, ତମେ କାହାକୁ କ'ଣ କହୁଛ ?

ରାଜେନ୍ଦ୍ର - ତେବେ ଆପଣ ହିଁ କହନ୍ତୁ ଯେ, ମୁଁ ଯାହା କହୁଚି, ତା' ମିଛ । ମୋ ହାତରେ ସମସ୍ତ ପ୍ରମାଣ ଥିଲେ ସୁଦ୍ଧା ମୁଁ ଆପଣଙ୍କ ମୁହଁରୁ ଶୁଣିବାକୁ ଚାହେଁ ଯେ ମୋର ଅଭିଯୋଗ ସତ ନୁହେଁ - କହନ୍ତୁ...

ଆଚାର୍ଯ୍ୟ - ମୁଁ ଜାଣେନା ରାଜେନ୍ଦ୍ର - କେଉଁ ଦୁଷ୍ଟ ଗ୍ରହର ପ୍ରଭାବ ତମକୁ ଆଜି ମୋ ବିରୁଦ୍ଧରେ ଠିଆ କରେଇଚି ?.... ଇସ୍‌ମାଇଲ୍ ଖାଁଠାରୁ ମୁଁ ଟଙ୍କା ଆଣିଚି ସତ; କିନ୍ତୁ ତମ ପରି ନିର୍ବୋଧ କଥା କିପରି ବୁଝିବ ଯେ, ଏ ଟଙ୍କା ମୁଁ ଆଣିଚି ଆମ ଦଳକୁ ବଞ୍ଚାଇରଖିବା ପାଇଁ - ଏଥିର ତମର ସ୍ୱାର୍ଥ ମଧ ଅଛି....

ରାଜେନ୍ଦ୍ର - ମିଛ କଥା । ନିଜକୁ ବଞ୍ଚାଇବା ପାଇଁ ଆପଣ ପାର୍ଟିର ଦ୍ୱାହି ଦେଉଚନ୍ତି । ଆପଣ ଦେଖୁଥିଲେ ଲକ୍ଷପତି ହବାର ସ୍ୱପ୍ନ - ସେଥିପାଇଁ ଆଜି ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ କରି ମୋ ବିରୁଦ୍ଧରେ ପଚାଶ ଜଣ ମେମ୍ବରଙ୍କୁ ଖରିଦ କରିବାର ଚେଷ୍ଟା କରୁଥିଲେ.... ତିନିଟା ବିଭିନ୍ନ ମତର ବିଭିନ୍ନ ଦଳକୁ ଜୋର୍ କରି ଏକାଠି କରି ପୁଣି ତାକୁ ଭାଙ୍ଗିବାର ଚେଷ୍ଟା ଆପଣ କରୁଥିଲେ ।

ଆଚାର୍ଯ୍ୟ - ଓ....ତୁମେ ତା'ହେଲେ.... (ଚାଲି ଯାଉଥିଲେ)

ରାଜେନ୍ଦ୍ର – ଯାଇ ଲାଭନାହିଁ – ଆପଣଙ୍କର ସବୁ ଚେଷ୍ଟା ବ୍ୟର୍ଥ ହୋଇଛି –

ଆଚାର୍ଯ୍ୟ –What do you mean ?

ରାଜେନ୍ଦ୍ର – କଲିକତା ଇସ୍‌ମାଇଲ୍ ଖାଁର ଲୋକ ମଟରରେ ଟଙ୍କା ନେଇ ଏଠିକି ଆସୁଥିଲା – ରାତି ବାରଟା ଭିତରେ ଆପଣଙ୍କ ପାଖରେ ଟଙ୍କା ପହଞ୍ଚିବାର କଥା – କିନ୍ତୁ ଆପଣଙ୍କ ଦୁର୍ଭାଗ୍ୟ – ପୁଲିସ୍ ସେ ଟଙ୍କା, ମୋଟର୍, ସବୁ ଜବତ୍ କରିଚି.... ଏଣେ ଦେବାନନ୍ଦ ଜଣେ ହେଲେ ମେମ୍ବରଙ୍କୁ ହାତ କରିପାରି ନାହାନ୍ତି – । ଦଳର ସମସ୍ତ ମେମ୍ବର ଆଜି ଆପଣଙ୍କ ବିରୁଦ୍ଧରେ । ଆପଣଙ୍କର ସମସ୍ତ ଅପଚେଷ୍ଟା ସତ୍ତ୍ୱେ ଗଣତନ୍ତ୍ର ଶାସନ ଏ ଦେଶରେ ରହିବ ହିଁ ରହିବ ।

ଆଚାର୍ଯ୍ୟ – ରାଜେନ୍ଦ୍ର ! ରା...ଜେ...ନ୍ଦ୍ର...

(ଟେବୁଲ୍ ଉପରେ ଥିବା ଗୋଟିଏ ପେପରୱେଟ୍‌କୁ ରାଜେନ୍ଦ୍ରଙ୍କୁ ଲକ୍ଷ୍ୟ କରି ଫିଙ୍ଗିଲେ – ରାଜେନ୍ଦ୍ର ଅଳ୍ପକେ ବଞ୍ଚିଗଲେ – ସଙ୍ଗେ ସଙ୍ଗେ ସେଠିକି ଆସିଲା ଗୀତା ।)

ରାଜେନ୍ଦ୍ର – ଗୀତା, ତମେ ଏଠିକି କାହିଁକି ଆସିଲ ?

ଗୀତା – ନର ରୂପରେ ଯାହାଙ୍କୁ ମୁଁ ଦିନେ ଭଗବାନ୍‌ଙ୍କ ଅବତାର ବୋଲି ମାନିନେଇଥିଲି – କ୍ଷମତା ଆଉ ଟଙ୍କାର ଲୋଭରେ ସେ କିମିତି ପଶୁ ପାଲଟି ଯାଇଚନ୍ତି....

(ଆଚାର୍ଯ୍ୟ ଏକ ଭୀଷଣ ଦୃଷ୍ଟିରେ ଗୀତାକୁ ଚାହିଁଥାନ୍ତି ।)

ଆଚାର୍ଯ୍ୟ –This girl! This hyprocrite girl – ଏଇ ରାଜେନ୍ଦ୍ରକୁ ମୋଠାରୁ ନେଇଚି ।

ରାଜେନ୍ଦ୍ର – ଗୀତା ! ତମେ ଚାଲିଯାଅ ।

ଆଚାର୍ଯ୍ୟ – ହଁ ଚାଲିଯାଅ – ଚାଲିଯାଅ – କହୁଚି...ଚାଲିଯାଅ –

(ନିଜେ ଦରଜା ନିକଟକୁ ଗଲାବେଳେ, ସତ୍ୟବାଦୀ ଆସିଲା, ତା ହାତରେ ଗୋଟାଏ ବନ୍ଦ ଲଫାପା ।)

What's that ?

ସତ୍ୟବାଦୀ – ଗଭର୍ଣ୍ଣରଙ୍କଠାରୁ ଚିଠି – ସ୍ପେଶାଲ୍ ମେସେଞ୍ଜର ଆଣିଚି ।

ରାଜେନ୍ଦ୍ର – ଗଭର୍ଣ୍ଣରଙ୍କଠାରୁ ଚିଠି ?

ଆଚାର୍ଯ୍ୟ – (ଖୋଲୁଖୋଲୁ) ଗଭର୍ଣ୍ଣରଙ୍କ ଚିଠି । ପଢ଼ିଲେ –

(ପ୍ରଥମେ ତାଙ୍କ ମୁହଁ କଳାକାଠ ପଡ଼ିଗଲା)

Dismissed! I am dismissed! ମୁଁ ଜଣେ ବିଶ୍ୱାସଘାତକ ଦେଶଦ୍ରୋହୀ...A Traitor ଗଭର୍ଣ୍ଣର ମତେ ଡିସ୍‌ମିସ୍ କରିଚନ୍ତି..... (ହଠାତ୍ ଗର୍ଜିଉଠି) No No No.. ଏ ହୋଇପାରେନା – ମୁଁ ଏ ଆଦେଶ ମାନିବିନାହିଁ – (ଚିଠିଟି ଚିରିଦେଇ) Governor କିଏ ? ମତେ ସେ ଡିସ୍‌ମିସ୍ କରିପାରିବେ ନାହିଁ – ମୁଁ ଲୋକପ୍ରତିନିଧି – ମୁଁ ଇଲେକ୍‌ସନ୍‌ରେ ଜିତିଛି – ମତେ କିଏ ଡିସ୍‌ମିସ୍ କରିବ ? କୁହ ରାଜେନ୍ଦ୍ର, ମତେ କିଏ ଡିସ୍‌ମିସ୍ କରିବ ?

(ଟେବୁଲ୍ ଉପରେ ଝୁଙ୍କି ପଡ଼ିଲେ – ତାଙ୍କର ମାନସିକ ଉତ୍ତେଜନା ଘଟିବା ଲକ୍ଷଣ

ପରିସ୍ଫୁଟ ।)

ରାଜେନ୍ଦ୍ର - ଟଙ୍କାର ମୋହରେ ଗୋଟାଏ ଅସାଧାରଣ ପ୍ରତିଭା କିପରି ନଷ୍ଟ ହୋଇଯାଉଚି ।

ଆଚାର୍ଯ୍ୟ - (ପୁଣି ଡେଜିଉଠି) ଚପ୍ରାସୀ - ଚପ୍ରାସୀ ....କେହି ନାହାନ୍ତି ? ସତ୍ୟବାଦୀ - (ସତ୍ୟବାଦୀ ଆସିଲା)

ସତ୍ୟବାଦୀ - S.P. ଆସିଛନ୍ତି ।

ଆଚାର୍ଯ୍ୟ - S.P.! I want him - ମୋ ଟଙ୍କା କାହିଁକି ଜବତ୍ ହେଲା ? ସେ କୈଫିୟତ୍ ଦେବେ - କାହାନ୍ତି S.P. ? କାହାନ୍ତି....

ସତ୍ୟବାଦୀ - ୱାରଣ୍ଟ ଆସିଚି -

ଆଚାର୍ଯ୍ୟ - Warrant of arrest!! ମତେ ଆରେଷ୍ଟ୍ କରିବେ - (ଜୋର୍‌ରେ ହସିଉଠିଲେ) S.P. ମତେ ଆରେଷ୍ଟ କରିବାକୁ ଆସିଚି (ପୁଣି ହସିଲେ) ଓ I will arrest everybody - ମୁଁ ସମସ୍ତଙ୍କୁ ଆରେଷ୍ଟ୍ କରିବି - ସମସ୍ତଙ୍କୁ ଡିସ୍‌ମିସ୍ କରିବି । ପୃଥିବୀର କୌଣସି ଶକ୍ତି ମ ତେ ରୋକିପାରିବେ ନାହିଁ । ମୁଁ ଆଚାର୍ଯ୍ୟ - ମୁଁ ମୁଖ୍ୟମନ୍ତ୍ରୀ - ମୋ ଫାଇଲ୍ କାହିଁ - ମୁଁ ଅର୍ଡ଼ର୍ ଦେବି ।

(ଫାଇଲ୍‌ଟା ଟାଣିଆଣି ପାଖରେ ଥିବା ପର-କଲମଟାକୁ ଉଠାଇନେଲେ ।)

This bloody ପର-କଲମ - ଏଇଟା ନୁହେଁ - (ଫୋପାଡ଼ିଦେଇ) ମୋ କଲମନାହିଁ ? ମତେ ଗୋଟାଏ କଲମ ଦିଅ- ମୁଁ ଅର୍ଡ୍‌ର ଦେବି ।

(ଏଇ ସମୟରେ ସେଠାକୁ ଆସିଲେ ପୁଲିସ୍ ସୁପରିନ୍‌ଟେଣ୍ଡେଣ୍ଟ । ତାଙ୍କୁ ଦେଖିବାମାତ୍ରେ ଆଚାର୍ଯ୍ୟଙ୍କର କଥା ଅଟକିଗଲା.... ସେଇ ସଙ୍ଗେ ସଙ୍ଗେ ଉଭେଇଗଲା ତାଙ୍କର ସମସ୍ତ ଉତ୍ତେଜନା ।....ମୁହଁ ଉପରେ ତାଙ୍କର ଯେପରି ଗୋଟାଏ କଳାପର୍ଦ୍ଦା ଟାଣିହୋଇଗଲା । ଏକାନ୍ତ କରୁଣ ଦୃଷ୍ଟିରେ ସେ ରାଜେନ୍ଦ୍ରଙ୍କୁ ଚାହିଁଲେ ।)

ରାଜେନ୍ଦ୍ର - ଆଚାର୍ଯ୍ୟ -ମହାଶୟ !

(ଏକ ଗଭୀର ଦୀର୍ଘଶ୍ୱାସ ତ୍ୟାଗ କରିବା ଛଡ଼ା ଆଚାର୍ଯ୍ୟଙ୍କର ଆଉ କହିବାର କିଛି ନଥିଲା ।)

ଆଚାର୍ଯ୍ୟ -(S.P.ଙ୍କୁ) ଚାଲନ୍ତୁ । (S.P. ଓ ଆଚାର୍ଯ୍ୟ ଚାଲିଗଲେ ।)

(ରାଜେନ୍ଦ୍ର ଠିଆହୋଇରହିଥା'ନ୍ତି - ଆଖିରେ ତାଙ୍କର ଲୁହ - ଗୀତା ତାଙ୍କ ନିକଟକୁ ଆଗେଇ ଆସିଲା । ରାଜେନ୍ଦ୍ର କିଛି କହିବାକୁ ଚେଷ୍ଟା କରି ଯେପରି ପାରିଲେନାହିଁ । ଦୃଷ୍ଟି ତାଙ୍କର ଶୂନ୍ୟରେ ନିବଦ୍ଧ, ତାଙ୍କର ପୂଜ୍ୟନେତା ଆଚାର୍ଯ୍ୟ ଯେଉଁ ଐତିହାସିକ ଭୁଲ୍ କରିଗଲେ, ତା'ର ସଂଶୋଧନ ସେ କିପରି କରିବେ କେବଳ ଏଇ ଚିନ୍ତା ଯେପରି ତାଙ୍କ ମନରେ ସ୍ଥାନ ପାଇଥାଏ ।)

(ଏଇ ଅବସ୍ଥାରେ ନାଟକର ଅବସାନ ଘଟିଲା ।)

---o---

୧୯୪୬ ଓ ୪୭ ର ନାଟକୀୟ ପରିସ୍ଥିତି ଯୋଗୁଁ
ପଞ୍ଜାବ ଓ ନୂଆଖାଲିରେ
ଯେଉଁ ଶହ ଶହ ନାରୀ ଅତ୍ୟାଚାରିତା ହୋଇଥିଲେ
ସେଇମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ।

କଟକ ଜନତା ରଙ୍ଗମଞ୍ଚରେ ଅଭିନୀତ:
ଆରମ୍ଭ ଜନନୀ ୫ । ୯ । ୧୯୫୫

## ସଙ୍ଗଠନରେ

ନିର୍ଦ୍ଦେଶକ - ଶ୍ରୀ ନିରଞ୍ଜନ ଶତପଥୀ
ସହ-ନିର୍ଦ୍ଦେଶକ - ଶ୍ରୀ ଗୋବର୍ଦ୍ଧନ ପରିଡ଼ା
ସଙ୍ଗୀତ ଓ ସ୍ବର - କିଶୋର କବି ଶ୍ରୀ ଶ୍ୟାମସୁନ୍ଦର ଦାସ
ନୃତ୍ୟ - ବଟକୃଷ୍ଣ ସେଣ

## ଭୂମିକା

ଜ୍ଞାନୀନ୍ଦ୍ର - ଶ୍ରୀ ସତ୍ୟନାରାୟଣ ସିଂ
ଶ୍ୟାମ ଚୌଧୁରୀ - ଶ୍ରୀ ଗୋବର୍ଦ୍ଧନ ପରିଡ଼ା
ମଦନ - ଶ୍ରୀ ନିରଞ୍ଜନ ଶତପଥି
ପଙ୍କଜ - ଶ୍ରୀ ବାଲୁକେଶ୍ୱର ରଥ
ଭାସ୍କର - ଶ୍ରୀ ଶରତକୁମାର ମହାନ୍ତି
ଡ.ଦାସ - ଶ୍ରୀ ହୃଦାନନ୍ଦ କର
ସଞ୍ଜୀବ - ଶ୍ରୀ ବାଞ୍ଛାନିଧି ଦାସ
ସ. ଇନ୍‌ସପେକ୍ଟର - ଶ୍ରୀ ପ୍ରଫୁଲ୍ଲ କୁମାର ମିଶ୍ର
କନଷ୍ଟେବଲ୍ - ଶ୍ରୀ ପ୍ରାଣକୃଷ୍ଣ ପଟ୍ଟନାୟକ
ନୀଳମଣି - ଶ୍ରୀ ବୃନ୍ଦାବନ ବେହେରା
ଉର୍ବଶୀ - ମଣିମାଳା
ମଣିଅପା - ପୂର୍ଣ୍ଣଚାନ୍ଦ ଦେବୀ
ବୀଣା - କୃଷ୍ଣମଣି ଦେବୀ
ଗ୍ରାମ୍ୟ ବାଳିକା - ହେମ, ବାସନ୍ତୀ, ପ୍ରଭା
ନୃତ୍ୟରେ - ବଟକୃଷ୍ଣ, ଅନିରୁଦ୍ଧ, ଚକ୍ରଧର, ବାସନ୍ତୀ, କୃଷ୍ଣମଣି

# ଅଭିମତ

ବନ୍ଧୁ ଶ୍ରୀଯୁକ୍ତ ଗୋପାଳ ଛୋଟରାୟଙ୍କ 'ନଷ୍ଟ-ଉର୍ବଶୀ' ପଢ଼ିଲି ଏବଂ 'ଜନତା ରଙ୍ଗମଞ୍ଚ'ରେ ଅଭିନୀତ ହୋଇଥିବାର ଦେଖିଲି । ସିଦ୍ଧହସ୍ତ ଅଭିନେତା ଓ ଅଭିନେତ୍ରୀଙ୍କ କଳା-କୌଶଳ ଅଭିନୟକୁ ଜୀବନ୍ତ କରିଥିଲା ଏବଂ କଥାବସ୍ତୁ ଏପରି ସାବଲୀଳ ଭାବରେ ଗତିକଲା ଯେ ଦର୍ଶକ ମୂଳରୁ ଶେଷ ପର୍ଯ୍ୟନ୍ତ ନିଷ୍ପନ୍ଦ ଭାବରେ ବସିରହିଲା ।

ନାଟକ 'ଦୃଶ୍ୟ-କାବ୍ୟ' ହେଲେ ହେଁ 'ନଷ୍ଟ-ଉର୍ବଶୀ' ବିଶେଷ ପଠନୀୟ ହୋଇଛି । କଥାବସ୍ତୁ ପଲ୍ଲୀର ସରଳ ଜୀବନ ଏବଂ ସହରର ଜଟିଳ ମନୋବୃତ୍ତିର ଘାତ-ପ୍ରତିଘାତ ମଧ୍ୟରେ ଗତିକରିଛି । ପଲ୍ଲୀ ବାଳିକା-ସୁଲଭ ସରଳତା ଏବଂ ସାଧାରଣ ଗୃହସ୍ଥର ଅତିଥିପରାୟଣତାର ସୁଯୋଗ ନେଇ ସହରୀ-ସଭ୍ୟତାରେ ପୋଷିତ ମଦନ ଯେପରି ଭାବରେ ଉର୍ବଶୀର ଭବିଷ୍ୟତ ସହିତ ଖେଳିପାରିଲା, ତାହା ଗାଉଁଲି ସଭ୍ୟତାର ମହତ୍ତ୍ୱ ପ୍ରତିସ୍ତରରେ ଫୁଟାଇବା ସଙ୍ଗେ ସଙ୍ଗେ ସହରର କୃତ୍ରିମତାକୁ ଉପହାସ କରିଛି । ପ୍ରତ୍ୟେକ ସୋପାନରେ ଉର୍ବଶୀର ଚରିତ୍ରବତ୍ତା ଓ ବ୍ୟକ୍ତିଗତ ମହତ୍ତ୍ୱ ପ୍ରସ୍ଫୁଟିତ; କିନ୍ତୁ ନିରୀହା ବାଳିକା ସଦାସର୍ବଦା ଭାଗ୍ୟର କ୍ରୀଡ଼ନକ ହୋଇ ଅତ୍ୟାଚାରିତା ହୋଇଛି । ମଣିଅପା ଗାଉଁଲି ଓ ସହରୀ ସଭ୍ୟତାର ସଂଯୋଜକ । ନାଟ୍ୟକାର ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି, କିପରି ସହରୀ ଲୋକେ ନିଜ ଧନ ବଳରେ ପ୍ରଲୋଭନ ଦେଖାଇ ଗ୍ରାମ୍ୟ-ଶଠତାକୁ ଅକ୍ତିଆର କରି ପଲ୍ଲୀ ଜୀବନକୁ କଳଙ୍କିତ କରୁଛନ୍ତି । ମଣିଅପାର ବିନା ସାହଚର୍ଯ୍ୟରେ ମଦନର ଚକ୍ରାନ୍ତ ସଫଳ ହୋଇପାରିନଥା'ନ୍ତା । କଟକର ଡାକ୍ତରଖାନା ଓ ବମ୍ବେର ବ୍ୟବସାୟୀ ଜୀବନର ଚିତ୍ର ସହରୀ କୃତ୍ରିମତାକୁ ଉପହାସ କରି ପଲ୍ଲୀ ସଭ୍ୟତାର ଉତ୍କର୍ଷ ପ୍ରମାଣିତ କରିଛି । ନାୟକ ଜ୍ଞାନୀନ୍ଦ୍ରର ଭାବପ୍ରବଣତା ଓ ସରଳତା ଉଭୟ ଜୀବନର ସମନ୍ୱୟ କରିଛି ସତ୍ୟ; କିନ୍ତୁ ତା'ର ସାମୟିକ ଦୁର୍ବଳତା ବ୍ୟକ୍ତିଗତ ଜୀବନର ମହତ୍ତ୍ୱ ପ୍ରତିପାଦନ କରିପାରିନାହିଁ । ମଣିଅପାର ଅସାବଧାନତା ହେତୁ ମଦନର ମୃତ୍ୟୁ ନାଟ୍ୟକାରଙ୍କ ସୂକ୍ଷ୍ମ ଦୃଷ୍ଟିକୋଣ ଓ ଦର୍ଶନର ପରିଚୟ ଦିଏ ଏବଂ ସଂସ୍କୃତ କଥ୍ୟ "କଣ୍ଟେକେନୈବ କଣ୍ଟକମ୍"ର ସତ୍ୟତା ପ୍ରତିପାଦନ କରେ ।

ଭାଷା ସରଳ, ସୁବୋଧ ଓ ଉପଭୋଗ୍ୟ ହୋଇଛି । ବିଶେଷରେ ମଦନ ଓ ଜ୍ଞାନୀନ୍ଦ୍ରର କଥୋପକଥନ ମାଧ୍ୟମରେ ନାଟ୍ୟକାର ଜୀବନ-ଦର୍ଶନର ସୂକ୍ଷ୍ମଧାରା ସୂଚାଇପାରିଛନ୍ତି । ମଦନର ବାକ୍ୟାଳାପରୁ ନାଟ୍ୟକାରଙ୍କ ବିରୋଧାତ୍ମକ ଭାବଧାରା - ପ୍ରକାଶନ ବା Expression of Paradoxes ରେ କୌଶଳ ସୂକ୍ଷ୍ମ ।

ଏ ଯୁଗର ଦର୍ଶକ ଶସ୍ତା କୌତୁକ ଚାହେଁ ବୋଲି ଅନେକ ନାଟ୍ୟକାର ଅସଂଲଗ୍ନ ଚରିତ୍ରର ଅବତାରଣା କରିବା ଦେଖାଯାଉଛି; କିନ୍ତୁ ଶ୍ରୀଯୁକ୍ତ ଛୋଟରାୟ ପଙ୍କଜ, ଭାସ୍କର, ବୀଣା ଓ ମଣିଅପା ଚରିତ୍ରକୁ କୌତୁକପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ କଥାବସ୍ତୁର ଗଣ୍ଡି

ମଧ୍ୟରେ ଖଞ୍ଜିପାରିଛନ୍ତି । ଏହା ହିଁ ନାଟ୍ୟକାରଙ୍କ ପ୍ରତିଭା ।

ବନ୍ଧୁ ଛୋଟରାୟ ନାଟ୍ୟକାର ହିସାବରେ ଓଡ଼ିଶାରେ ସୁପରିଚିତ । ମୋର ଆଶା, ତାଙ୍କ ଲେଖନୀର ଭାବୀ ଅବଦାନ ସମପରିମାଣରେ କୃତକାର୍ଯ୍ୟ ହୋଇ ଚିରସ୍ଥାୟୀ ରଙ୍ଗମଞ୍ଚ ପ୍ରବର୍ତ୍ତନର ମହନୀୟ ପ୍ରଭାବ ଦର୍ଶକ ଓ ସାହିତ୍ୟିକମାନଙ୍କ ଉପରେ ପକାଇବ ।

ମହାଳୟା, ତା ୧୫ । ୧୦ ।୫୫

**ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ**
ଏମ୍.ଏ. (ପାଟ) ଡି.ଫିଲ୍. (ବର୍ଲିନ)
ଅଧ୍ୟାପକ, ରେଭେନ୍ସା କଲେଜ୍, କଟକ

୧୯୫୫ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ 'ନଷ୍ଟ-ଉର୍ବଶୀ' କଟକ ଜନତା ରଙ୍ଗମଞ୍ଚରେ ମୁକ୍ତିଲାଭ କଲା । ୬ ତାରିଖରେ ଭାଙ୍ଗିଲା ଐତିହାସିକ ଦଳେଇଘାଇ । ଫଳରେ କଟକ ଜିଲ୍ଲାର ଏକ ବିସ୍ତୃତ ଅଞ୍ଚଳ ତଥା କଟକ ସହରର ଅର୍ଥନୈତିକ ସଂସ୍ଥା ଭୁଶୁଡ଼ି ପଡ଼ିଲା ପରି ବୋଧକଲା । ଆଶଙ୍କା ହେଉଥିଲା, ଏଇ ଧକ୍‌କାରେ ନଷ୍ଟ-ଉର୍ବଶୀ ଜନତାରେ ସ୍ୱଳ୍ପାୟୁ ହୋଇପଡ଼ିବ । କିନ୍ତୁ ତା' ହେଲାନାହିଁ । ପ୍ରାୟ ସପ୍ତାହକ ପରେ ଅବସ୍ଥା ସୁଧୁରିଗଲା । ନାଟକଟି ପୂର୍ଣ୍ଣପ୍ରେକ୍ଷାଳୟରେ ଶତାଧିକ ରଜନୀ ଅଭିନୀତ ହେବାର ଗୌରବ ଲାଭ କରିଥିଲା ।

ଆଲାମଚାନ୍ଦ ବଜାର, କଟକ-୨ **ଗୋପାଳ ଛୋଟରାୟ**
୧୨-୨-୧୯୯୦

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ଆଶ୍ୱିନ ଶୁକ୍ଲ-ପକ୍ଷର ଗୋଟିଏ ରାତି । ଶରଣକୁଳ ଗାଁ ଦାଣ୍ଡରେ ଝିଅମାନଙ୍କର କୁଆଁରପୁନେଇଁ ନାଚ-ଗୀତ ଚାଲିଚି । ଝିଅମାନଙ୍କ ଭିତରେ ଅଛି ଏଇ ନାଟକର ନାୟିକା ଉର୍ବଶୀ - ଆଉ ଦେଖଣାହାରୀଙ୍କ ଭିତରେ ଅଛି ପ୍ରୌଢ଼ା-ବିଧବା ମଣି ଅପା । ରଙ୍ଗମଞ୍ଚରେ ଦେଖାଯାଉଚି ଉର୍ବଶୀର ଚାଳ ଘରର ଦୃଶ୍ୟ ।

(ଗୀତ)

ବରଷକର ଏ କୁଆଁରପୁନେଇଁ ଲୋ.......
ରଙ୍ଗ ରଙ୍ଗ ସଙ୍ଗ ବାହାରେ,
ଚଳନ୍ତି - ବଉଦ ଜଳାକବାଟିରେ....କୁଆଁରୀ ଚାନ୍ଦ ଲୋ
ଝାଙ୍କିଲା ଜୋଛନା ଛୁଆରେ
ଆ'ଆ' ଲୋ
ଅଶୋକାକଢ଼ୀ-ଚମ୍ପାଚାଙ୍ଗୁଡ଼ି-ବଉଳ-କ୍ଷୀରକୋଳି
କଣିକାକୁଡ଼ି ଲୋ ଚନ୍ଦ୍ରମଲ୍ଲୀ
ପୁଚି ଖେଳିବା ଲୋ ଚାଲିଆ-ଚାଲିଆ-ଚାଲିଆ-
ପୁଚି ଖେଳିବା
ତୋ'ର ଚହଟ-ଚିକ୍କଣ କୁମ୍ଭପକା ଶାଢ଼ି ଭିଡ଼ି ଦେ'
ଇଲୋ ନହକା ଅଣ୍ଟାରେ ଭିଡ଼ି ଦେ'
ଭିଡ଼ି ଦେ ମୟୂରଝାଲିଆ
ଶାଢ଼ି ତୋ'ର ନାଲିଆ କଦମ-ଫୁଲିଆ ଲୋ - ଚାଲିଆ
ପୁଚି ଖେଳିବା ଲୋ - ଚାଲିଆ ।
ଠିଆପୁଚି ନାରଙ୍ଗ ଗୋଡ଼ ଦି'ଟା ସାରଙ୍ଗ
ସାରଙ୍ଗ ବାରିକି ଯାଇଥିଲି ସାରଙ୍ଗ ଶୁଖୁଆ ଖାଇଥିଲି
ଅଧେ କଲି କଞ୍ଚା ଲୋ ଅଧେ କଲି ଭଜା.....
ପୁଚି ଖେଳିବା ।
ପୁଚି ଖେଳିବା ଲୋ ଚାଲିଆ ଚାଲିଆ - ପୁଚି ଖେଳିବା ।
ଦୂର ବନସ୍ତରେ କି କୁସୁବେଣ୍ଟିଆ ଲୋ - ଚାନ୍ଦ ଛୁଇଁଲା ।
ତାଳ ବାଉଁଶ ଲୋ - ବୁଢ଼ା ହେଲା ।
ଆଜିପରା ଦିନେ ଛେନା ଚକଟା କି ଏଡ଼େ ମହଙ୍ଗା ଲୋ

ହରଗଉରା ଲୋ - ଚମ୍ପାଟଉଁରା ଲୋ - କାଇଁଚମାଳି
ବସିବାନି ସହି ଚାନ୍ଦଲୋ - ଆମ୍ଭକଷି କରଛଡ଼ା ଦେଲା
ଲହୁଣି ପିତୁଳା ହେଲା ହାଲିଆ - ହାଲିଆ
ପୁଚି ଖେଳିବା ।
ପୁଚି ଖେଳିବା ଲୋ ଚାଲିଆ ଚାଲିଆ - ପୁଚି ଖେଳିବା ।
ପୁଚି ଲୋ - ଘୁଞ୍ଚ ଯା - ଘୁଞ୍ଚ ଯା - ଘୁଞ୍ଚ ଯା
ଆଣ୍ଠୁଆ ମାର, ଗେବୁଆ ମାର, ବଡ଼ ବୋହୂଙ୍କର ମଙ୍ଗଳବାର
ବଡ଼ବୋହୂ ରୁଷିଲେ - ବାହାର ପିଣ୍ଡାରେ ବସିଲେ,
ମହୁରିଆ ଭାଇ କିଏରେ, ମହୁରୀ ବଜାଇ ଦେଏରେ ।

ମଣି - ତମେ ସବୁ ରହତ - ଏ ଗୀତ ଏବେ ଭଲଲାଗୁନି । ଆଜି ତ ସମସ୍ତେ ଆଇଚ, ମୁଁ କହୁଚି ଗୋଟାଏ ବାହାଘର ଗୀତ...

ଉର୍ବଶୀ - ଧେତ୍ - ଖାଲି ବାହାଘର-ବାହାଘର ! ସବୁଦିନେ ଖାଲି ଅପାର ଏଇ କଥା । ମତେ ଯେ ବାହାଘର-ଫାଘର ଭଲଲାଗେ ନାହିଁ ।

ମଣି - ମା'ଲୋ ! ସତେ ଯେମିତି ଝିଅ-ରାଣୀ ଆମର ବାହାହେବେନାଇଁ ?

ଉର୍ବଶୀ - ଶୁଣୁଚୁ ରମା, ମଣିଅପାର କଥା ଶୁଣୁଚୁ ? ଆଚ୍ଛା ଅପା କୋଉଦିନ ଯାଇ ବାହାହେବି ବୋଲି ଆଜିଠୁଁ ଖାଲି ବସି ବସି ବାହାଘର ଗୀତ ଗାଉଥିବି ?

ମଣି - ଆଲୋ କଉଦିନ କାଇଁ ବା ? କୋଉ ଜନ୍ମର ତପସ୍ୟା ବଳରୁ କେଜାଣି - କାନଗୋଇ ଟୋକା ତ ତେଣେ ଦିନ ଗଣୁଚି - କେମିତି ଚଇତ ପୂରି ବଇଶାଖ ପଶିବ । ଆଉ ଏଣେ ଉର ତ ଆମର.... ତତେ କେତେ ହେଲା ଲୋ ଉର ? ଏଇ ଆଷାଢ଼କୁ କୋଡ଼ିଏ ଚାଲିଲାଟି ? ସତେ ଲୋ ରମା - ଉର ଦେହକୁ ଟିକେ ଅନାଇଲୁ, ରସାଳିଆ ଆମ୍ବ ପରି ଖାଲି ଯେମିତି ଫାଟିପଡୁଚି ।

ରମା - (ଉର ଉପରେ ଛେପ ପକାଇ) ଛି'ଅପା, ତୁ ତାକୁ ଆଖିଦଉଚୁ !

ମଣି - ମଲା ! ମୁଁ କଅଣ ଡାଆଣୀ ନା ପିତାସୁଣୀ ହେଇଛି କି ତାକୁ ଆଖିଦେବି ? ଆଖିକି ଦିଶିଲା ଭଳି ହୋଇଛି ବୋଲି ସିନା କହିଲି - ଆଉ କାହାକୁ କହିଲି ନାଇଁ ?

ରମା - ହଉ - ଆଉ ବକର ବକର ହ'ନା । କହିବୁଟି କି ବାହାଘର କରିବା ?

ମଣି - ରାମ ସୀତା ।

ରମା - ଉଁ, ସେଗୁଡ଼ାକ ଭାରି ଦିହଘଷା ହେଇଗଲାଣି ।

ମଣି - ତେବେ ଦ୍ରୁପଦୀ ସ୍ୱୟମ୍ବର ।

ଉର - ଦ୍ରୌପଦୀଙ୍କ କଥା ମତେ ମୋଟେ ଭଲଲାଗେନି - ଗୋଟାଏ ସ୍ତ୍ରୀ'କୁ ପୁଣି ପାଞ୍ଚଟା ସ୍ୱାମୀ । (ସମସ୍ତେ ହସିଉଠିଲେ)

ମଣି - ଉଁ - ଦେଇଙ୍କ ଢଙ୍ଗ ଦେଖ - ମେଟ୍ରିକ୍ ଯାଏ ପଢ଼ିଚି ବୋଲି ସବୁ ଯା'କୁ ଗନ୍ଧଉଚି ।

ସେ'ତ ପୁରାଣ କଥା, ତୋର ସେଥିରେ କ'ଣ ଅଛି ?

ରମା - (ଦୂରକୁ ଦେଖି) ମଣିଅପା, ଦେଖିଲୁଣି !

ମଣି - କ'ଣ ଲୋ ?

ରମା - ସେଇ ମଶାଣି ଭୂଇଁ ଆଡୁ କିଏ ଗୋଟେ ମାଡ଼ିଆସୁଚି ।

ମଣି - ଆଲୋ କାହିଁ ବା ?

ରମା - ମଲା, ତୋତେ କ'ଣ ଚାଳିଶା ଧରିଲାଣି ନା କ'ଣ ?

ହେଇ ଦେଖୁନୁ ? ପାଳଭୂତ ତ ନୁହେଁ ।

ମଣି - ଆଲୋ ଘୋଡ଼ାଭୂତ ଲୋ ! ଦେଖୁନୁ କେମିତି ନହସି ନହସି ଆସୁଚି - ଆଲୋ ଆସଲୋ ପଳେଇ ଯିବା । (ଯିବାକୁ ଲାଗିଲେ)

ଉର- ମୁଁ କହୁଚି ସମସ୍ତେ ରହିବା । ଭୂତ ଯଦି ହୋଇଥିବ, କ'ଣ ଗାଁ ଭିତରକୁ ପଶିଆସିବ ?

ରମା - ଆସିବନି ମନାକରିବ । ସେଥର କେମିତି ବଟିଅଜାଙ୍କ ଦାଣ୍ଡ ଦୁଆର ମୁହଁରେ ଈଶ୍ୱର ଭାଇକି ଭେଟଣା ହେଇଗଲା । ତୁ ଶୁଣିନୁଁ ଅପା - (ଦେଖି) ଏଁ! କିଏ କୁଆଡ଼େ ପଳେଇଗଲେଣି ଲୋ ବୋଉ, ଉର - ତୁ ତମ ଘରକୁ ପଳା ।

(ରମା ଚାଲିଗଲା । ଉର୍ବଶୀ ଘର ଭିତରକୁ ପଶିଯାଇ କବାଟ ବନ୍ଦ କଲାବେଳକୁ ସାଇକଲ ସହ ଆସିଲା ଜ୍ଞାନୀନ୍ଦ୍ର - ସୁସ୍ଥ ସୁନ୍ଦର ଯୁବକ ।)

ଜ୍ଞାନୀନ୍ଦ୍ର - ଟିକିଏ ଶୁଣନ୍ତୁ, ଟିକିଏ ଶୁଣିବେ । ମୁଁ ଏକରକମ ବିପଦରେ ପଡ଼ି ଏଠାକୁ ଆସିଚି । ଦୟାକରି ଦରଜାଟା ଟିକେ ଖୋଲିବେ ?

(ଉର୍ବଶୀ ଦରଜା ଅଳ୍ପ ଖୋଲି ଠିଆ ହେଲା)

ପହିଲେ ମୋତେ ଗ୍ଲାସେ ପାଣି ଦିଅନ୍ତୁ - ମତେ ଭାରି ଶୋଷ ହେଉଛି ।

(ଉର୍ବଶୀ ଘର ଭିତରକୁ ଯାଇ ପ୍ରାୟ ସଙ୍ଗେ ସଙ୍ଗେ ପାଣିଆଣି ଦେଲା ।)

ବହୁ ଧନ୍ୟବାଦ ଆପଣଙ୍କୁ - ମତେ ବଞ୍ଚେଇଲେ ଆପଣ । ଏ ଅଞ୍ଚଳରେ ମୁଁ ଏକାବେଳକେ ନୂଆ । ଭାରି ଅବେଳରେ ଆପଣଙ୍କର ଏଠି ପହଞ୍ଚିଚି, ଏଇ ରାତି କେଇଘଣ୍ଟା ଯଦି କୋଉଠି ଆଶ୍ରୟ ନେଇପାରନ୍ତି.......

(ଭିତରୁ ଡାକି ଡାକି ଆସିଲେ ଶ୍ୟାମ ଚୌଧୁରୀ ।)

ଶ୍ୟାମ - (ଭିତରୁ) ଉର, ଉର (ଆସି) କିଏ ଆସିଚି କହୁଥିଲୁ ମା' ? (ଜ୍ଞାନୀନ୍ଦ୍ରକୁ) ତୁମେ କିଏ ବାବୁ ?

ଜ୍ଞାନ - ମୁଁ ଜଣେ ବିଦେଶୀ.....

ଶ୍ୟାମ - ବିଦେଶୀ ? ଏତେ ରାତିରେ ? ଘର କୋଉଠି ?

ଜ୍ଞାନ - ଘର ତ ମୋର ବାଲେଶ୍ୱର ଟାଉନ୍ । ମୁଁ ଆମ ଖମାର ଗାଁ ମଧୁପୁର ଯାଇଥିଲି, ଆଜି ଘରକୁ ଫେରୁଚି ।

ଶ୍ୟାମ - ହୁଁ , କ'ଣ କହୁଚ ତମେ ?

ଜ୍ଞାନ ଏଇ ରାତିଟାପାଇଁ କୋଉଠି ଟିକେ ଆଶ୍ରୟ.........

ଶ୍ୟାମ - ଆଚ୍ଛା, ତୁମେ ଏଇ ଗାଁ ଦାଣ୍ଡେ ଦାଣ୍ଡେ ଯାଅ - ଗାଁ ସେ ମୁଣ୍ଡରେ ଜୋର । ଜୋର ସେପାଖେ ଗୋଟେ ବଡ଼ ବନ୍ଧ ତିଆରି ହେଉଛି । ଦିନ ରାତି ମାଟି କାମ ଚାଲିଛି । ସେଇଠିକି ଯାଅ, ଠିକାଦାରଙ୍କ ପାଖରେ ରାତିଟା ରହିଯିବ ।

ଜ୍ଞାନ - (ରହି ରହି) ଜୋର ସେପାଖରେ !

(ମନରେ ଆଶଙ୍କା ତଥାପି ଆଗେଇଲା ।)

ଶ୍ୟାମ - କ'ଣ ଡରିଯାଉଛ କି ବାବୁ ? ଆଚ୍ଛା ରାତି ତ ଆଉ ବେଶିନାହିଁ - ତମେ ଆସ, ଭିତରକୁ ଆସ । ହଁ ସାଇକେଲଟା ସେଇଠି ଥାଉ, ତୁମେ ଆସ ।

(ଚୌଧୁରୀଙ୍କ ସହିତ ଜ୍ଞାନୀନ୍ଦ୍ର ଭିତରକୁ ଗଲା । ଟିକିଏ ପରେ ଅତି ସନ୍ତର୍ପଣରେ ସେଠାକୁ ଆସିଲା ଜଣେ ପୂର୍ଣ୍ଣବୟସ୍କ ଯୁବକ-ମଦନ । ପ୍ରାୟ ପରେ ପରେ ଆସିଲା ମଣି ।)

ମଣି - (ଚପା ଗଳାରେ) କାନ୍ତରାଟି ବାବୁ ?

ମଦନ - (ଚମକି) କିଏ ?

ମଣି - ମୁଁ ଯିବି କୁଆଡ଼େ ଲୋ ମା ? ଏ ଦାଣ୍ଡରେ ତ ଆଜି ଗୋପଲୀଳା ଲାଗିଚି ।

ମଦନ - ଗୋପଲୀଳା ?

ମଣି - ମୁଣ୍ଡ ଖାଇବ ବାବୁ, ସତ କହିଲ - ଏତେ ରାତିରେ ତେମେ କୁଆଡ଼େ ଆଇଥେଲ ?

ମଦନ - ଜୋର କୂଳରୁ ଝିଅମାନଙ୍କର ଗୀତ ଶୁଣି ଲୁଚି ଛପି ଆସିଲା ଭଳି ଆସିଥିଲି । କିନ୍ତୁ ଆସି ଦେଖୁଚି ସବୁ ଶୂନ୍‌ଶାନ୍ !

ମଣି - ଆହା-ହା, ତେମେ ହେଲେ ସାଇକେଲ୍ ଚଢ଼ି ଆସିଥା'ନ୍ତ ?

ମଦନ - ମାନେ ?

ମଣି - ଏ ଘର କାହାର ଜାଣ ?

ମଦନ - କାହାର ?

ମଣି - କାଲି ଯାହାକୁ ଗାଧୁଆ ତୁଠରେ ଦେଖି ଆଜି ତମ ଆଖିରେ ନିଦନାହିଁ ।

ମଦନ - ସତେ ? ଏଇଟା ଉର୍ବଶୀର ଘର ? ଏ ସାଇକେଲ୍ ତେବେ କାହାର ? କିଏ ଆସିଚି ?

ମଣି - ଭୂତ !

ମଦନ - ଭୂତ ?

ମଣି - ହୁଁ - (ଭିତରୁ ଶ୍ୟାମଚୌଧୁରୀଙ୍କ ପାଟି ଶୁଭିଲା । ମଦନ ଓ ମଣି ଲୁଚିଗଲେ ।)

ଶ୍ୟାମ - (ଭିତରୁ) ଉର, ଉର....

ଉର - (ଭିତରୁ) କ'ଣ ହେଲା ବାପା ?

ଶ୍ୟାମ - (ପଦାକୁ ଆସି) ଦାଣ୍ଡରେ ଯିମିତି କାହାର ପାଟି ଶୁଭିଲା ! କାହିଁ, କେହି ତ ନାହିଁ ? (ଭିତରକୁ ଯାଇ) ଜ୍ଞାନୀନ୍ଦ୍ରବାବୁ - ତୁମେ ଶୋଇପଡ଼ । ଭୋର୍ ହେଲେ ମୁଁ ତୁମକୁ

ଉଠାଇଦେବି ।

(ମଦନ ଓ ମଣି ଆସିଲେ)

ମଦନ - କିଏ ଏଇ ଜ୍ଞାନୀନ୍ଦ୍ର ?

ମଣି - ମୁଁ ଭଲକରି ଜାଣେ, ଏ ନାଁରେ କେହି ହେଲେ ତାଙ୍କର ବନ୍ଧୁବାନ୍ଧବ ନାହାନ୍ତି ।

ମଦନ - ତା'ହେଲେ ?

ମଣି - ତୁମେ ଯଦି ହେମନ୍ତ ଦବ ବାବୁ, ତମରି ପାଇଁ ମୁଁ ନିଆଁକୁ ଡେଇଁବି । ରାତି ନପାହୁଣୁ ଏମିତି ସୂତ୍ର ଖଞ୍ଜିଦେବି ଯେ, କାନଗୋଇ ଆସି ଉର ବାପର ମହତ ଦି'କଡ଼ା କରିଦେଇଯିବ । କାନଗୋଇ ପୁଅ ସାଙ୍ଗରେ ଉର୍ବଶୀର ବାହାଘର ଠିକ୍ ହେଇଚି । ଆଜି ଏ ଜ୍ଞାନ ଆସି ଉର୍ବଶୀ ଘରେ କୁଣିଆ ହେଇ ରହିଚି ଜାଣିଲେ କାନଗୋଇ ନିଶ୍ଚେ ଏ ବାହାଘର ଭାଙ୍ଗିଦବ ।

ମଦନ - ସେଥିରେ ମୋର ଲାଭ ?

ମଣି - ଆହା - ହା - ହା କୋଉ ବୁଦ୍ଧିରେ ଏତେ ପଇସା ରୋଜଗାର କରୁଚ ବା ? ଆସ ।

ମଦନ - କୁଆଡ଼େ ?

ମଣି - ସିଏ ତ ତାଙ୍କ ଘରେ କୁଣିଆ ହୋଇଚି, ତୁମେ ଆସ ମୋ ଘରେ କୁଣିଆ ହବ, ତମର ଲାଭ କ'ଣ ବୁଝାଇଦେବି ଆସ । (ଦୁହେଁ ଚାଲିଗଲେ । ରଙ୍ଗମଞ୍ଚ ଅନ୍ଧାର ହୋଇଯିବା ପରେ ରାତି ଶେଷରେ ସୂଚନା ନେଇ ଯନ୍ତ୍ର-ସଙ୍ଗୀତ ଭାସିଆସିଲା । ପୁଣି ଆଲୋକ ଜଳି ଉଠିବା ପରି ଦେଖାଗଲା ଚୌଧୁରୀ କବାଟ ଖୋଲି ପଦାକୁ ଆସୁଚନ୍ତି - ପଛେ ପଛେ ଜ୍ଞାନୀନ୍ଦ୍ର ।)

ଶ୍ୟାମ - ଆସ ବାବୁ, ରାତି ପାହି ଫରଚା ହେଇଗଲାଣି । ତୁମେ ଏଥର ଧୀରେ ସୁସ୍ଥେ ଗଲେ ବି ବସ୍ ଧରିପାରିବ ।

ଜ୍ଞାନ - ବହୁ ଧନ୍ୟବାଦ୍ । ଆପଣଙ୍କର ଏ ଉପକାର ମୁଁ ଭୁଲିପାରିବିନି । ଆସୁଚି, ନମସ୍କାର । (ଚୌଧୁରୀ ଚାଲିଯିବା ପରେ ଜ୍ଞାନୀନ୍ଦ୍ର ଦେଖିଲା କବାଟ ଫାଙ୍କରେ ଠିଆ ହେଇଚି ଉର୍ବଶୀ । ଆଖିରେ ମମତାଭରା ଚାହାଣି ।)

ଜ୍ଞାନ - ଯିବା ପୂର୍ବରୁ ଆପଣଙ୍କ ସହିତ ଥରେ ଦେଖା କରିବାର ଭଦ୍ରତା ମୋର ନାହିଁ ବୋଲି ଆପଣ ନିଶ୍ଚୟ ଭାବୁଥିବେ । କିନ୍ତୁ, ଦେଖା ଯେତେବେଳେ ହୋଇଯାଇଛି; ଦୋଷ ଆପଣ ଦେଲେ ମଧ ମୁଁ ଦୁଃଖ କରିବି ନାହିଁ । ଆସୁଚି - ନମସ୍କାର ।

(ଜ୍ଞାନୀନ୍ଦ୍ର ଚାଲିଗଲା । ପ୍ରାୟ ପରେ ପରେ ଆସିଲେ ମଣି ।)

ମଣି - କିଏ ? ଉର କିଲୋ ?

ଉର - ଅପା, ଏତେ ଭୋରୁ କ'ଣ ଗାଧୋଇ ବାହାରିଲୁଣି ?

ମଣି - ହଁ ଲୋ ଝିଅ, ବୁଡ଼ଟାଏ ପକେଇଆସିଲେ ପୁଣି ଠାକୁର ଦୁଆର ଓଳାଇବି । ଏଠୁ ଯାଇ ମୁଁ କ'ଣ ରାତିରେ ଶୋଇଚି କିଲୋ ? ସେଇ ନିଆଁଲଗା ଭୂତ କଥା ମନେପଡ଼ି ଏତେବେଳ

ଯାଏଁ ଦେହଟା ମୋର ଚାଉଁ ଚାଉଁ ହେଇଯାଉଛି ।

ଉର - ଭୂତ କାହିଁମ ଅପା ? ସିଏ ପରା ଜଣେ......

ମଣି - କିଏମ ସିଏ ?

ଉର - ବିଦେଶୀ, ଜଣେ ବିଦେଶୀ ଭଦ୍ରଲୋକ ।

ମଣି - କୋଉ ଗାଁର ଲୋ ସେ ବିଦେଶୀ ?

ଉର - କହିପାରିବିନି - କୋଉଠି ଘର, କାହିଁକି ଆସିଥିଲେ, ମୁଁ କିଛି ଜାଣେନା, ବାପା ତାଙ୍କ ସାଥିରେ କ'ଣ କଥାବାର୍ତ୍ତା ହେଉଥିଲେ ।

ମଣି - ତମରି ଘରେ ସେ ତା' ହେଲେ ରାତିକ କୁଣିଆ ହେଇଥିଲେ ?

ଉର - କୁଣିଆ କଅଣମ ? ବିଦେଶୀ ଲୋକ.... ଜଣାଶୁଣା ଏଠି କେହିନାହିଁ - ଯୋଉଠି ପାଇଲେ ରାତିଟା ରହିଗଲେ । ଏଇନେ ତ ସାଇକେଲ୍ ଧରି ବାହାରିଗଲେ ।

ମଣି - ଓ ସେଇ ? ସେଇ ତା'ହେଲେ ଗଲେ ? ମୁଁ କହିଲି କି ଦଫାଦାର ଅବା ସାଇକେଲ୍ ଚଢ଼ି ଥାନାକୁ ଗଲା ! ତୁ ତାଙ୍କୁ ବଳେଇ ଦବାକୁ ଆସି ଏଠି ଠିଆହେଇ ଯାଇଛୁ ପରା ?

ଉର - କି କଥା କହୁଚୁ ଅପା ? ତାଙ୍କୁ ବଳେଇ ଦବାକୁ ଆସିବି କାହିଁକି ? ସେ ଚାଲିଗଲାରୁ ବାପା ମୋତେ କବାଟ ଦେଇଯିବାକୁ ଡାକିଦେଲେ । ତାଙ୍କ ସାଥିରେ ମୋର କଥା ନା ବାର୍ତ୍ତା ? ମୁଁ ତାଙ୍କୁ ଦେଖିଚିନା ଆଗ ଭଲକରି ?

ମଣି - ଝିଅର କଥା ଶୁଣ - ଦେଖିବାକୁ ବସିଥିଲେ କିଏ କ'ଣ ମନାକରୁଥିଲା ନା ସେଥିରେ ଦୋଷ ଲାଗିଯାଉଚି ?

ଉର - (ବିରକ୍ତ ହୋଇ) ମଣିଷଟାଏ ମଣିଷକୁ ଦେଖିବ, ସେଥିରେ ଦୋଷ କାହିଁକି ଲାଗନ୍ତା ଯେ ?

ମଣି - ସେଇୟା ତ ମୁଁ କହୁଚି । ହଁ, କ'ଣ ପାଣି ଜଳପାନି କରିଗଲେ ନା, ସେମିତି ଭୋକିଲା ପେଟରେ ଗଲେ ?

ଉର - ସକାଳୁ କ'ଣ ତୋର କିଛି କାମନାହିଁ ଅପା, ଆସିଲୁ ଏଇ ସବୁକଥା ମୋତେ କହିବାକୁ ? (ଚାଲିଗଲା)

ମଣି - ମରମ କଥା କହିଲେ ସମସ୍ତେ ଏମିତି ମୁହଁ ମୋଡ଼ନ୍ତି ଲୋ ଝିଅ; ତୁ କ'ଣ ଦୁନିଆ ବାହାର ?

## ଦ୍ୱିତୀୟ ଦୃଶ୍ୟ

(ଉର୍ବଶୀ ଘରର ଅଳିନ୍ଦ ।) ବାହାରୁ ଆସିଲେ ଶ୍ୟାମ ଚୌଧୁରୀ । ସେ ଯେପରି ଦୁଃଖରେ ଏକାବେଳକେ ଭାଙ୍ଗି ପଡ଼ିଚନ୍ତି ।)

ଶ୍ୟାମ - (ଡାକିଲେ) ଉର, ଉର । (ଉର୍ବଶୀ ଆସିଲା)

ଉର - ବାପା !

ଶ୍ୟାମ - ଶୂନ୍ୟରୁ ପୁଣି ଏମିତି ବଜ୍ରପାତ ହୁଏ ମା' ?

ଉର - ବଜ୍ରପାତ ? କ'ଣ ହେଇଚି ବାପା ? କୁହ କ'ଣ ହୋଇଛି ?

ଶ୍ୟାମ - କାନଗୋଇ ଆସିଥିଲା ।

ଉର - କାହିଁକି ?

ଶ୍ୟାମ - ଆଠଦିନ ଭିତରେ ଟଙ୍କା ନଦେଲେ ଡିଗ୍ରୀଜାରି ବାହାର କରିବ ।

ଉର - ଡିଗ୍ରୀଜାରି ?

ଶ୍ୟାମ - ମୋର ଦୋଷ କ'ଣ ଜାଣୁ ମା' ? କାଲି ରାତିରେ ଜ୍ଞାନୀନ୍ଦ୍ର ଆମ ଘରେ ଥିଲା ।

ଉର - ଜ୍ଞାନୀନ୍ଦ୍ର ଆମ ଘରେ ରହିଲେ ବୋଲି ଆମର ଏମିତି କି ଅପରାଧ ହେଲା ଯେ, ସେ ଏ କଥା କହୁଚନ୍ତି ?

ଶ୍ୟାମ - ସେଇ କଥା ମା' - ଏ ଖବର ତା କାନକୁ କିମିତି ଗଲା କେଜାଣି ? ରାତି ନପାହୁଣୁ ଆସି, ଗାଁ ମଝିଟାରେ ମୋ ଇଜ୍ଜତ୍ ମହତ୍ ନେଲାଣି । କହୁଚି କ'ଣ ନା....

(କ୍ଷୋଭରେ କଣ୍ଠ ରୁଦ୍ଧ ହୋଇ ଆସୁଥାଏ ।) ଜ୍ଞାନୀନ୍ଦ୍ର କ'ଣ ଖାଲି ମିଛଟାରେ ଆମ ଘରେ ଥିଲା । ସେ ନିଶ୍ଚୟ... (ଟିକିଏ ରହିଯାଇ) ନାଇଁ ମା', ମୁଁ ଆଉ କିଛି କହିପାରୁନାହିଁ ।

ଉର - ବାପା, ସେ ମହାଜନ ଆମେ ଖାତକ । ତାଙ୍କ ଋଣ ଯେତେବେଳେ ଆମେ ଶୁଝିପାରିନୁ - ସେ ଡିଗ୍ରୀଜାରି ବାହାର କରିବେ - ଏ ଘରଦ୍ୱାର ନେବେ, ଏତିକି ତ ?

ଶ୍ୟାମ - ନାଇଁ ମା', ଏତିକିରେ ସେ ରହିନି । ଇମିତି ଅବିବେକୀଟା ସେ - ଏଇ ସାମାନ୍ୟ କଥାରେ ସେ ଆଜି ତୋ ନାଁରେ.......

ଉର - ବାପା ! !

ଶ୍ୟାମ - ହଁ ମା', ସେ ତୋ ନାଁରେ କଳଙ୍କ ବୋଳିଦେଇ ଯାଇଚି । ଡାକି ବଜେଇ କହିଦେଇଗଲା - ତୁ - ତ ଗୋଟାଏ କଳଙ୍କିନୀ - ତା ଘରେ ବୋହୂ ହେବାର ଯୋଗ୍ୟା ତୁ ନହୁଁ । ମହାପ୍ରସାଦ ନିର୍ବନ୍ଧ କରି ବି ବାହାଘରଟା ସେ ଭାଙ୍ଗିଦେଇ ଗଲା । ତୁ କହିଲୁ ମା', ଏଥିକି ମୁଁ କି ବୁଦ୍ଧି କି ଉପାୟ କରିବି ।

ଉର - ଏଥିରେ ତ ତମର ଶାନ୍ତିରେ ନିଶ୍ୱାସ ମାରିବା କଥା ବାପା ! ଯୋଉ ଲୋକ ଏଇ କଥାରୁ ଏତେ ଦୂର ଯାଇପାରେ, ତା ଉପରେ କି ଭରସା ରଖିପାରନ୍ତ ବୋଲି ତୁମେ ଦୁଃଖ କରୁଚ ?

ଶ୍ୟାମ - ତୁ ଏ କଥା କହନା ମା' ? ତୋ ବୋଉ ଆଜି ଥିଲେ....

ଉର - ସେ ବି ଠିକ୍ ଏଇୟା କହନ୍ତା ! ୟା ନକହି ଆମର ଆଉ ଉପାୟ କ'ଣ ? ସହିବାର ଶକ୍ତି ଆମର ଯେତେ ଯାଏଁ ଥିବ ଆମେ ସହିଯିବା । ତା'ପରେ ଯାହା ଘଟିବ ତା'ର ସାକ୍ଷୀ ରହିବେ ଏକା ଭଗବାନ୍ । ହଁ ବାପା, ତମ ଗାଧୁଆବେଳ ହେଇଗଲାଣି, ମୁଁ ତେଲ ଆଣୁଚି, ତମେ ଗାଧୋଇ ଯାଅ । (ଏତିକିବେଳେ ମଦନର ଡାକ ଶୁଭିଲା)

ମଦନ - (ବାହାରୁ) ଘରେ କିଏ ଅଛନ୍ତି ?

ଉର - ବାପା - କିଏ ଡାକୁଚି ।

ମଦନ - (ବାହାରୁ) ଏଇଟା ଶ୍ୟାମ ଚୌଧୁରୀଙ୍କ ଘର ତ ?

ଶ୍ୟାମ - କିଏ ?

ଉର - (ବାହାରକୁ ଚାହିଁ ) ସେ ଖଞ୍ଜା ଭିତରକୁ ଆସୁଚନ୍ତି ବାପା (ସଙ୍ଗେ ସଙ୍ଗେ ଭିତରକୁ ଚାଲିଗଲା - ମଦନ ଆସିଲା ।)

ମଦନ - ଆପଣ ?

ଶ୍ୟାମ - ମୁଁ ଶ୍ୟାମ ଚୌଧୁରୀ ।

ମଦନ - (ନମସ୍କାର କରି) କିଛି ଭାବିବେ ନାହିଁ - ମୁଁ ବଳେ ବଳେ ଖଞ୍ଜା ଭିତରକୁ ପଶିଆସିଚି । ମୋତେ ବୋଧହୁଏ ଚିହ୍ନିପାରିବେ ନାହିଁ । ଆପଣଙ୍କ ଗାଁ ସେପାରି ଯେଉଁ ବନ୍ଧ କାମ ହଉଚି, ମୁଁ ତା'ରି କଣ୍ଟ୍ରାକ୍ଟର ?

ଶ୍ୟାମ - ଓ, ଆପଣ କଣ୍ଟ୍ରାକ୍ଟର ବାବୁ ?

ମଦନ - ଆଚ୍ଛା, ଆପଣ ଶଙ୍ଖାରି ସାହି ଗାଁର କାହାକୁ ଚିହ୍ନନ୍ତି ?

ଶ୍ୟାମ - ଶଙ୍ଖାରି ସାହି ?

ମଦନ - ହଁ, ସୋରୋ ଥାନା ଶଙ୍ଖାରି ସାହି ।

ଶ୍ୟାମ - ମୁଁ ଚିହ୍ନିବି ନାହିଁ ? ଶଙ୍ଖାରି ସାହି ଜମିଦାର ରାଧାମୋହନ ଦାସଙ୍କ ଘରେ ମୁଁ ପରା ସାତ ଆଠବର୍ଷ ଗୁମାସ୍ତାଗିରି କରିଚି । ସିଏ ଅବଶ୍ୟ କୋଡ଼ିଏ ପଚିଶ ବର୍ଷ ତଳର କଥା । ହେଲେ ବାବୁ ଶଙ୍ଖାରି ସାହି..... ?

ମଦନ - ଜମିଦାରଙ୍କ ପୁଅ... ?

ଶ୍ୟାମ - ଜମିଦାରଙ୍କ ପୁଅ ମଦନ, ସେତେବେଳକୁ ସେ ସାତ ଆଠ ବର୍ଷର ହୋଇଥିଲା ?

ମଦନ - ତାକୁ ଆପଣ ଚିହ୍ନିପାରୁନାହାନ୍ତି ?

ଶ୍ୟାମ - କାହାକୁ ?

ମଦନ - ମଦନକୁ ?

ଶ୍ୟାମ - କାହିଁ ସେ ?

ମଦନ - ତଥାପି ଚିହ୍ନିପାରୁନାହାଁନ୍ତି ?

ଶ୍ୟାମ - ମ-ଦ-ନ ! ! ସତେ ତ, ତୁ ମଦନ । ଆରେ ତୁ ଏଡୁଟିଏ ହେଇଗଲୁଣି ? ନା - ନା ଆପଣ...

ମଦନ - ଯାହାକୁ କାନ୍ଧରେ ବସାଇ କାକୁଡ଼ି ତୋଳି ଦେଉଥିଲେ, ତାକୁ 'ଆପଣ' କହିଲେ, ଅପରାଧ ଆପଣଙ୍କର ନହୋଇ ମୋର ହବ ।

ଶ୍ୟାମ - ହେଲେ ବାବୁ - ମୋର ଆଜି କି ସୌଭାଗ୍ୟ କହିଲୁ ? ତୋ ପାଦ ମୋ ଦୁଆରେ ପଡ଼ିଲା ?

ମଦନ - ଆପଣଙ୍କ ଦୁଆରେ ମୋ ପାଦ ପଡ଼ିଲା ବୋଲି ଆପଣଙ୍କର ସୌଭାଗ୍ୟ ! କାହିଁକି ?

ଶ୍ୟାମ - ହଁ ସୌଭାଗ୍ୟ । ମୋର ଯେତେ ଯାହା ରିଷ୍ଟ ଥିଲା ସବୁ କଟିଗଲା - ମୋର ଆଜି ପରମ ସୌଭାଗ୍ୟ । ଆରେ ତୁ ଏମିତି ଠିଆ ହୋଇ ରହିଲୁ ଯେ ? ଆଲୋ ଉର, ସପଟା ଆଣିଲୁ ମା' - ଆଉ ଏଣେ ଦେଖେ କିଏ ଆସିଛି । ହଁ ସତ କହିଲୁ ବାପ, ଏ ବୁଢ଼ାଟା କିମିତି ତୋ ମନେପଡ଼ିଲା ? କିମିତି ମତେ ଚିହ୍ନିଲୁ ?

ମଦନ - ବାପାଙ୍କ କଥାରେ ଆପଣ ଚାକିରି ଛାଡ଼ି ଚାଲି ଆସିଥିଲେ । ତା'ପରେ ଆପଣଙ୍କୁ ସମସ୍ତେ ଭୁଲିଯିବାର କଥା । ହୁଏତ ଭୁଲିଯାଇଛନ୍ତି । କିନ୍ତୁ ଗୋଟାଏ ସାତ ଆଠ ବର୍ଷ ଶିଶୁର ମନରେ ଆପଣ କି ଦାଗ ରଖିଆସିଥିଲେ କେଜାଣି, ଆପଣଙ୍କୁ ମୁଁ ଭୁଲି ବି ଭୁଲିପାରିନି । ଏଠିକି ମୁଁ ଚାରିଦିନ ହେଲା ଆସିଲିଣି - ଆଜି ହଠାତ୍ ଶୁଣିଲି ଏଇ ଶରଣକୂଳ ଗାଁରେ ଆପଣଙ୍କ ଘର । (ଭିତରକୁ ଦେଖି) ଉର୍ବଶୀ ଆପଣଙ୍କର ଝିଅ ନା ?

ଶ୍ୟାମ – ହଁ ।

ମଦନ - ସପଟା ତା' ହାତରୁ ଆଣନ୍ତୁ । ସେ ଲାଜ କରି ଏଠିକି ଆସୁନି ।

ଶ୍ୟାମ - ଏଁ ଲାଜ କରୁଚି ? ଆଲୋ ମା', କାହା ପାଖରେ ଲାଜ କରୁଚୁ ? ମଦନ ପାଖରେ ? ମଦନ ପାଖରେ ପୁଣି ଲାଜ ? (ସପ ଆଣି) ବସ ବାପା, ବସ ।

ମଦନ - ମୁଁ କାହିଁକି ଆସିଛି ଜାଣିଛନ୍ତି ?

ଶ୍ୟାମ – କାହିଁକି ?

ମଦନ – ଆପଣଙ୍କ ପ୍ରତି ବାପା ଯେଉଁ ଅନ୍ୟାୟ କରିଚନ୍ତି, ତା'ରି ପ୍ରାୟଶ୍ଚିତ୍ତ କରିବାକୁ ଆସିଛି ।

ଶ୍ୟାମ – ପ୍ରାୟଶ୍ଚିତ୍ତ ?

ମଦନ – ଆଚ୍ଛା, ଗୋଟାଏ କଥା ଆପଣ ମୋତେ କୁହନ୍ତୁ ତ, ମୁଁ ଆସିଲାବେଳେ ଲକ୍ଷ୍ୟ କରିଚି, ଆପଣ ଯିମିତି ଦୁଃଖରେ ଏକାବେଳକେ ଭାଙ୍ଗି ପଡ଼ିଥିଲେ । କାହିଁକି ? କ'ଣ ହେଉଚି ଆପଣଙ୍କର ?

(ବାହାରୁ ପାଟି କରି ଆସିଲା ମଣି)

ମଣି - ସବାଖାଇଏ - ତମର ପୁଣି ଏଡ଼େ ବହପ ! ମାଛିକି ଯିଏ ମ' ବୋଲି କହେନି, ତମେ ତା'ରି ନାଁରେ ବିଚାର ପକେଇଚ ? ଏ ଶାମ ଚୌଧୁରୀ ବୋଲି ସିନା ! ଆଉ କିଏ ହୋଇଥିଲେ ତୁମ ବସବାସ ଉଠେଇ ଦିଅନ୍ତାଣି । ଆରେ (ମଦନକୁ ଦେଖି) ଏଁ । ଠିକାଦାର ବାବୁ ଏଠି ବଇଚନ୍ତି ।

ମଦନ - ମଣି ଅପାକୁ ଆଉ ମଣିଷ ଦେଖାଯାଉନି ।

ମଣି – ଯାହା କହିଚ ବାବୁ ମୋ ଆଖି ଦି'ଟା ଫୁଟିଗଲାଣି ।

ଶ୍ୟାମ – ଠିକାଦାରବାବୁଙ୍କୁ ତୁ ଜାଣିଚୁ ମଣି ?

ମଦନ - ଯେଉଁଦିନ ମୁଁ ଏଠିକ ଆସିଲି ସେଇଦିନ ମୁଁ ମଣି ଅପାକୁ ଚିହ୍ନିଲି - ସେଇଦିନ ମୁଁ ଜାଣିଲି ଯେ, ମଣିଅପା ଏ ପାଞ୍ଚଖଣ୍ଡି ଗାଁର ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କର ମଣିଅପା ।

ମଣି - ହେଲେ ବାବୁ - ତୁମ ସୁଆରି ଏଠି କେମିତି ?

ମଦନ - ମଉସା ମୋର ଅତି ଆପଣାର ଲୋକ । ପିଲାଦିନେ ମୁଁ ତାଙ୍କରି କୋଳରେ ବଢ଼ିଛି ।

ମଣି - ସତେ ! ଯାହା କହନ୍ତି ଯୋଗକୁ ବ୍ରହ୍ମା ଖଟନ୍ତି । ବାବୁ ଯେତେବେଳେ ଆସି ନିଜେ ଶାମଭାଇ ପାଖରେ ଠିଆ ହେଲେଣି, ଆଉ ପରୁଆ କ'ଣ ? ହେଇଟି ବାବୁ, କାନଗୋଇ କଥା ଶୁଣିଲେଣିନା ?

ଶ୍ୟାମ - ସେ କଥା ଆଉ ମଣି - ତୁ ଗଲୁ ପାନ ଆଣିବୁ ।

ମଣି - ବାବୁ କ'ଣ ପାନ ଖାଆନ୍ତି କି ?

ମଦନ - ନାଁ - ମୁଁ ପାନ ଖାଏନା । କିନ୍ତୁ କାନଗୋଇ କଥା କ'ଣ ହେଇଚି ? କୋଉ କାନଗୋଇ ?

ମଣି - କହୁନମ ଭାଇ ? ଦାଣ୍ଡ ମଝିଟାରେ ସିଏ ତୁମ ମହତ ଦି'କଡ଼ାର କରିଦେଇଗଲା, ଆଉ ତେମେ କାଇଁକି ଗୁଁ ପୁଁ ହଉଚ ? ହେଇଟି ବାବୁ - ଏଇ ଆମ ଢୋର ସେପାରି ପାଟେଣୀ ଗାଁ କାନଗୋଇ ମ !

ଶ୍ୟାମ - ବାପାଙ୍କ ଅମଳରୁ ତା' ପାଖରେ ଆମର କରଜ ଗଡ଼ି ଆସୁଚି । ତିନିଟା ତମସୁକ ହେର୍‌ଫେର୍ ହୋଇ ଗଲାବର୍ଷ ସେ ମୋ ଉପରେ ମୂଳଜମା ତିନିଶହ ଟଙ୍କାକୁ ନ'ଶହ ଟଙ୍କା ଡିଗ୍ରୀ କରି ରଖିଚି ।

ମଣି - ତା'ରି ମଝିଆଁ ପୁଅ ମ- ପୁଅ ତ ନୁହେଁ, ମାଙ୍କଡ଼ଟାଏ; ଝଡ଼ା ବାଲୁଙ୍ଗା । ରାଣ୍ଡି ଖଣ୍ଡି ବି ତାକୁ ଝୁଅ ଦଉନଥିଲେ । ଉରକୁ ଦେଖି ସେ ପାଗଳ ହେଇଗଲା ପରା ! ତାକୁଇ ବାହା ହବାକୁ ଅଡ଼ି ବସିଲା । ପୁଅ ମୁହଁକୁ ଚାହିଁ କାନଗୋଇ ବି ଏଥିରେ ରାଜି ହେଇଗଲା ।

ଶ୍ୟାମ - କାନଗୋଇ ଯେତେବେଳେ ଏ ବିବାହ ପ୍ରସ୍ତାବ ଆଣିଲା, ମୁଁ ତ ମନାକରିପାରିଲିନି ।

ମଣି - ବାହାଘର ହେଲେ କାନଗୋଇ ଆଉ ଟଙ୍କା ଦାବି କରିବ ନାହିଁ - ଟଙ୍କା ଛାଡ଼ିଦେବ, ଏଇଆ ନା ?

ଶ୍ୟାମ - ହଁ !

ମଦନ - ବାଃ - ମନ୍ଦ ସଉଦା ତ ନୁହେଁ !....ଆଚ୍ଛା ମଉସା, ଆସନ୍ତୁ ଯିବା ।

ଶ୍ୟାମ - କୁଆଡ଼େ ?

ମଦନ - ମୋ କ୍ୟାମ୍ପକୁ ।

ଶ୍ୟାମ - କାହିଁକି ?

ମଦନ - ଆସନ୍ତୁ ବୁଲିଆସିବା, ମୁଁ ଗାଡ଼ିନେଇ ଆସିଚି ।

ଶ୍ୟାମ - ମୁଁ ଗାଧୋଇ ବାହାରିଥିଲି !

ମଦନ - ସେଇଠି ଗାଧୋଇନେବେ ଆସନ୍ତୁ ।

ମଣି - ଯାଅମ ଭାଇ ଯାଅ, ବାବୁ ଏତେ ଶରଧାରେ ଡାକୁଚନ୍ତି ଯାଅ ।

(ସେମାନେ ଚାଲିଯିବା ପରେ ଉର୍ବଶୀ ଆସିଲା)

ମଣି – କେମିତି ? ମନ ମାନୁଚି ?

ଉର – କୋଉ ଗୁଣ ଦେଖି କେଜାଣି ବାପ-ମା’ ନାଁ ଦେଇଥିଲେ ‘ମଣି’ ।

ମଣି – ମୋ ମା’ ଲୋ ! ଲାଜକୁଳୀ ଲତା ! କଥା ପଦକରେ ଖାଲି ଝାଉଁଳି ପଡୁଚି ! ! ଆଲୋ, ଏ ବୟସରେ ଥଟ୍ଟା ପରିହାସ ସହିବୁନି ତ ଆଉ ସହିବୁ କେବେ ?

ଉର – ତୋ ଜିଭଟା ଟିକିଏ କାଢ଼ିଲୁ ଅପା ଦେଖେ, କେଇ ପରସ୍ତ ଶାଣ ଦିଆହେଇଚି ।

ମଣି – ଆଲୋ ତୁ କ’ଣ ଦେଖିବୁ ବା ? ଏଇ ଠିକାଦାର ବାବୁ.... ସାଇଁ କରି ମଟର ଚଳେଇ ନଉଥେଲା । ମୋ ଦିହରେ ଟିକିଏ ପାଣି ଛିଟିକି ପଡ଼ିଲା । ସାଙ୍ଗେ ସାଙ୍ଗେ ଖୋଇଟି ଚଢ଼େଇ ଦେଲି – ‘ଏ ଜଙ୍ଗଲିବାବୁ, ଦେଖତା ନେଇଁ.... ମୁଁ ମାଇକିନା ଆଦିମି !’ ମୂଷାପରି ମଟରରୁ ଓହ୍ଲେଇପଡ଼ିଲା....ଜାଣିଚୁ ?

ଉର – ଆଉ ସେତିକିବେଳୁଁ ସେ ତୋ ପଣତ କାନିରେ ବାନ୍ଧିହୋଇ ରହିଚନ୍ତି ।

ମଣି – ଆହା....ହା, ମୋ ଦେଇଙ୍କି ପୁଣି ଏମିତି କଥା କହି ଆସେଚି ? ହେଲେ ମୁଁ ବାନ୍ଧି ରଖିପାରୁଚି କୋଉଠି ? ମୋ ପଣତ ପରା ଛୋଟ ହେଇଗଲାଣି । ଯାହାର ଲମ୍ବା ପଣତ, ତାକୁ ସିନା ଏ ବନ୍ଧାବନ୍ଧି ସାଜେ ।

ଉର – ତୋ ମୁହଁରେ କ’ଣ ବାଡ଼ବତା ରହୁନି ଅପା !

ମଣି – ହଉ ଥା ଲୋ ମା...ଥା’ ମୁଁ ଯାଉଚି । ବାରଦୁଆର ନହେଲେ ତ ମୋ କୃତ୍ୟ ଚଳିବନାଇଁ – ତୋ ସାଙ୍ଗେ ଗପିବାକୁ ମୋର ବେଳ କାଇଁ ? ମୁଁ ଯାଉଚି । (ଚାଲିଗଲା)

## ତୃତୀୟ ଦୃଶ୍ୟ

(ଚୌଧୁରୀଙ୍କ ଘର । ସେ କୁଆଡ଼େ ଯିବାକୁ ବାହାରୁଥା’ନ୍ତି ।)

ଶ୍ୟାମ – (ଡାକିଲେ) ଉର...ଉର । (ଉର୍ବଶୀ ଆସିଲା ।) ମୁଁ ଟିକିଏ ବନ୍ଧ କାମ ଆଡ଼େ ଯାଉଚି ।

ଉର – କାହିଁକି ?

ଶ୍ୟାମ – ହିସାବପତ୍ର ଗୁଡ଼ାଏ ବାକି ପଡ଼ିଯାଇଚି – ଆଜି ସଞ୍ଜରେ ସେସବୁ ଠିକ୍‌ଠାକ୍ କରିବାପାଇଁ ମଦନ ମୋତେ ବାର ବାର କହିଯାଇଥିଲା ।

ଉର – ସେ ପରା ତାଙ୍କ ଗାଁକୁ ଯାଇଚନ୍ତି ?

ଶ୍ୟାମ – ହଁ, ଗଲାବେଳେ ତ କହିଯାଇଥିଲା ।

ଉର – କେତେବେଳେ ଫେରିବ ?

ଶ୍ୟାମ – ଫେରୁ ଫେରୁ ଟିକିଏ ରାତି ହବ । ମୁଁ ଯାଉଚି – ବନ୍ଧ ପାଖରୁ ଦି’ଜଣ ମୂଲିଆଣୀ ପଠେଇଦେବି, ମୁଁ ଫେରିବାଯାଏଁ ସେମାନେ ଏଠି ରହିବେ ।

ଉର – ଏଇଟା ନେଇଯାଅ – ସେ ଆସିଲେ ତାଙ୍କୁ ଦେଇ ଦବ ।

ଶ୍ୟାମ - କ'ଣ ?

ଉର - ରୁମାଲ ତିଆରି କରିବା ପାଇଁ ଏ କନା ସେ କାଲି ଦେଇଯାଇଥିଲେ ।

ଶ୍ୟାମ - (ଦେଖି) କାହିଁ, ତିଆରି ତ ହେଇନାହିଁ ?

ଉର - ନା ।

ଶ୍ୟାମ - କାହିଁକି ?

ଉର - ମୁଁ ପାରିଲିନାଇଁ ।

ଶ୍ୟାମ - ପାରିଲୁନାହିଁ ? ତୁ କ'ଣ ଭାବିଛୁ ତୋ ହାତ ତିଆରି ରୁମାଲ ଖଣ୍ଡେ ପାଇଲେ ସେ ସ୍ୱର୍ଗକୁ ଯିବ ? ତା ଭଳିଆ ଲୋକ, ଏଇ ସାମାନ୍ୟ କଥାପାଇଁ ତୁଣ୍ଡ ହରେଇଥିଲା ଯେ, ତୁ କହୁଚୁ କ'ଣ ନା ପାରିଲି ନାହିଁ । ଏଇ ଜବାବ୍ ମୁଁ ତାକୁ ଦେବି ତ ? କ'ଣ ସେ ନକରିଚି ଆମ ପାଇଁ ? ମୋ ପାଟି ଫିଟିଛି କି ନା, ମୁଠା ମୁଠା ଟଙ୍କା ଗଣିଦେଇଗଲା । ସେଇ ଟଙ୍କାରେ କାନଗୋଇ ଭଳିଆ ଗୋଟାଏ ଯମ ହାତରୁ ମୁଁ ମୁକୁଳି ଆସିଲି । ଆଉ ତୁ....

ଉର - ସେଇ କଥା ତ ମୁଁ ବୁଝିପାରୁନି ବାପା.... କାହିଁକି ଜଣେ ଲୋକ ତା କଷ୍ଟ ଅର୍ଜିତ ଧନକୁ ଆମ ପିଛା ଏମିତି ବୁଣି ଦେଇଯିବ ?

ଶ୍ୟାମ - ସେଦିନ ପରା ଏଇଠି ତୋ ସାମ୍ନାରେ ସେ କହିଦେଇ ଗଲା - "ମଉସା, ବାପା ଅନ୍ୟାୟରେ ଆପଣଙ୍କ ଦାନା ନେଇଥିଲେ, ମୁଁ ସେଇ ପିତୃ-ଋଣ ଶୁଝୁଚି ।"

ଉର - କିନ୍ତୁ ସେ ଆମକୁ ସାହାଯ୍ୟ କରିବା କଥା ଆଉ ଯେମିତି କେହିନଜାଣନ୍ତି.... ଏ ତାଗିଦ୍ ସେ କରୁଚନ୍ତି କାହିଁକି ?

ଶ୍ୟାମ - ଏ ଟଙ୍କା କେଇଟା ତା ହାତର ମଳି । ଏମିତି ଛୋଟଲୋକ ସେ ନୁହେଁ ଯେ, ଏ କଥା ଯାଇ ଦାଣ୍ଡରେ ଗାଇବୁଲିବ ।

ଉର - ହେଲେ ଦାଣ୍ଡଲୋକ କ'ଣ ଗାଇବୁଲୁଚନ୍ତି ଶୁଣୁଚ ତ ?

ଶ୍ୟାମ - କ'ଣଟା ଗାଇବୁଲୁଚନ୍ତି ?

ଉର - ସମସ୍ତେ କହୁଚନ୍ତି - ପାଖରେ ଗୁଡ଼ାଏ ଟଙ୍କା ପଇସା ଥିଲା ବୋଲି ଚୋର ଡକାୟତଙ୍କ ଭୟରେ ଜ୍ଞାନୀନ୍ଦ୍ର ଶ୍ୟାମ ଚୌଧୁରୀ ଘରେ ରାତି କଟେଇଲା ଯେ, ବାପ ଝିଅଙ୍କ କୁହୁକ ବଳରେ ତା'ଟଙ୍କାତକ ଉଭେଇଗଲା - ଆଉ ସେଇ ଟଙ୍କାରେ ଶ୍ୟାମ ଚୌଧୁରୀ କରଜରୁ ମୁକୁଳିଲା ।

ଶ୍ୟାମ - ତୁନିହ । କୁଆଡ଼ର ଗୋଟାଏ କିଏ - ତାକୁ ଘରକୁ ଡାକିଆଣି ମୁଁ ଅକ୍‌କଲ ଶିଖିଚି ! ତାରିପାଇଁ ସବୁ ନିନ୍ଦା....ସବୁ ଅପବାଦ ! ତାରିପାଇଁ କାନଗୋଇ ମତେ ଦାଣ୍ଡର ଭିଖାରି କରିଥା'ନ୍ତା ! ! !

ଉର - ଏଥିରେ ତାଙ୍କର ଦୋଷ କ'ଣ ବାପା ?

ଶ୍ୟାମ - ନାଃ ! ଦୋଷଟା ମୋର ! ଦୋଷ ମଦନର ! ଆମେ ଅଥଳ ଦରିଆରେ ଭାସୁଥିବାବେଳେ

ସେ ଆମକୁ କୂଳରେ ଲଗେଇଚି କି ନା ?

ଉର - ତମେ ତା'ହେଲେ ଜାଣୁଚ ବାପା, ଯେ ଆମେ ଠିକ କୂଳରେ ନାଗିଯାଇଚେ ?

ଶ୍ୟାମ - ଆଚ୍ଛା, ଏତେ କଥା ତ କହିପାରୁଚୁ - ଗୋଟାଏ ବିବାହଯୋଗ୍ୟା ଝିଅର ବାପ କୌଣସି କୂଳ-କିନାରା ଖୋଜିପାଉନି.... ଏ ଚିନ୍ତା ତ ତୋ ମନକୁ ଆସୁନି ! ମଦନ ମତେ ଜବାବ ଦେଇଚି, ଭଲ ବର, ଭଲ ଘର ଦେଖି ସେ ତତେ ବାହା କରିଦେବ । ଆଉ ତୁ ଏଣେ...ଛାଡ଼ ଛାଡ଼ । (ଯାଉ ଯାଉ ଫେରି) ବୁଝିଲୁ ମା' ! ମଣିଷ ସବୁ ଛାଡ଼ିପାରେ.... ହେଲେ ତା' ମଣିଷପଣିଆକୁ ଛାଡ଼ିପାରେନା । ଜାଣି ଜାଣି ମୁଁ ନିମକହାରାମ ହେବିନାଇଁ । ଏଇ କୋଳରେ ତୁ ବଢ଼ିଚୁ, ଏଇ କୋଳରେ ମଦନ ବି ବଢ଼ିଚି - ଏତେ ଅବିଶ୍ୱାସ କଲେ କ'ଣ ଦୁନିଆ ଚଳେ ? ଏଥିରେ ମଣିଷ ତ ମଣିଷ, ନିଜେ ଭଗବାନ୍ ବି ଅସନ୍ତୁଷ୍ଟ ହେବେ ।

ଉର - ଭଗବାନ୍‌ଙ୍କ କଥା ଥାଉ ବାପା, ତାଙ୍କ ଅପେକ୍ଷା ମଣିଷ ଉପରେ ତୁମର ବେଶି ବିଶ୍ୱାସ । ....ସେଇଟା ଦେଇଯାଅ, କାଲି ରୁମାଲ ତିଆରି କରି ମୁଁ ପଠେଇଦେବି । ତୁମେ ଯାଅ ।

(ରୁମାଲ କନାଟା ଦେଇ ଚୌଧୁରୀ ଚାଲିଗଲେ । ଅସହାୟାଙ୍କ ଭଳି ଉର୍ବଶୀ ଠିଆହୋଇଥାଏ । ତା' ଆଖିଆଗରେ ଯେମିତି ଭାସିଉଠିଲା ଜ୍ଞାନୀନ୍ଦ୍ରର ଛବି - ମନ ଭିତରେ ଗୁଞ୍ଜରି ଉଠୁଥାଏ ତା'ର ବିଦାୟ ବେଳର ସେଇ କେଇପଦ କଥା । ସେ ବିଚଳିତା ହୋଇ ଫେରିପଡ଼ିଲା ବେଳକୁ ଦେଖିଲା ଠିଆହେଇଚି ମଦନ ।)

ଉର - ଆପଣ !.... ଆପଣ ଏତେବେଳେ ?

ମଦନ - ଆଠଦିନ ହବ ତୁମ ସହିତ ମୋର ପରିଚୟ । ଏ ଆଠଦିନ ଭିତରେ ଯୋଉଦିନ ମୁଁ ତମ ଘରକୁ ଆସିଚି, ଏଇ ସଞ୍ଜ ପରେହିଁ ଆସିଚି ।

ଉର - ବାପା......

ମଦନ - ଚାଲିଗଲେଣି - ମୁଁ ଦେଖିଚି ।

ଉର - ମୁଁ ତାଙ୍କୁ ଡାକେ ?

ମଦନ - ଡାକିବାର ହେଇଥିଲେ ମୁଁ ନିଜେ ଡାକିଥା'ନ୍ତି ।

ଉର - ଓ, ଆପଣ....କ'ଣ ବସିବେ ?

ମଦନ - ତା' ଅର୍ଥ ତୁମେ ମୋତେ ଏଠୁ ଚାଲିଯିବାକୁ କହୁଚ !

ଉର - ନା, ନା, ମୁଁ କହୁଥିଲି କ'ଣ କି....ବାପା ଆପଣଙ୍କ ବନ୍ଧ କାମ ପାଖକୁ ଯାଇଚନ୍ତି ।

ମଦନ - ମୁଁ ଜାଣେ ।

ଉର - ଆପଣ....ଆପଣ ଗାଁକୁ ଯାଇଥିଲେ ନା ?

ମଦନ - ହୁଁ ।

ଉର - ଆପଣ ତ ଫେରିଲେଣି, ମୁଁ ବାପାଙ୍କୁ ଡାକି ଆଣୁଚି ।

ମଦନ - ମୁଁ ଫେରିଆସିବି ବୋଲି ଜାଣିଶୁଣି ତୁମ ବାପାଙ୍କୁ ସେଠିକି ପଠେଇଦେଇଚି ।
ଉର - କାହିଁକି ?
ମଦନ - ଏ କାହିଁକିର ଉତ୍ତର କ'ଣ ତୁମେ ନିଜେ ଜାଣନା ?
ଉର - ମୁଁ ?
ମଦନ - ମୋ ରୁମାଲ ତିଆରି ହେଇଚି ?
ଉର - ରୁମାଲ !
ମଦନ - ମୁଁ ଜାଣେ ହେଇନି ।
ଉର - କାଲି କରିଦେବି ।
ମଦନ - ଏ ଜନ୍ମରେ ବି ପାରିବନି !
ଉର - ଆପଣ ବିଶ୍ୱାସ କରନ୍ତୁ...
ମଦନ - ଗୋଟାଏ ହାତରେ କନା ଆଉ ଗୋଟିଏ ହାତରେ ଛୁଞ୍ଚି ଥିବାବେଳେ ମନ ଭିତରେ ଉଙ୍କିମାରିବ ଜ୍ଞାନୀନ୍ଦ୍ର - ଫଳରେ ସିଲାଇ ତ ହବନି.....ହାତରେ ଛୁଞ୍ଚି ଫୁଟିବା ହିଁ ସାର ହେବ ।
ଉର - ଆପଣ କ'ଣ କହୁଚନ୍ତି ?
ମଦନ - ମୁଁ ଚପଳମତି ସ୍କୁଲ୍ ପିଲାନୁହେଁ କି ତୁମେ ଏକାନ୍ତ ସରଳା କିଶୋରୀନୁହଁ । ଆମ ଦୁହିଁଙ୍କ ଅବସ୍ଥା ଆମେ ଦୁହେଁ ଠିକ୍ ବୁଝିପାରୁଚେ । ପ୍ରଥମ କଥା ହେଉଚି ଜ୍ଞାନୀନ୍ଦ୍ରକୁ ଦେଖିବାମାତ୍ରେ ତୁମେ ତାକୁ ଭଲପାଇଚ.... ଅଥଚ ସେଇ ଜ୍ଞାନୀନ୍ଦ୍ର ପାଇଁ ତୁମେ ହେଉଚ କଳଙ୍କିନୀ । ତା'ପରେ ମୋ ସହିତ ପ୍ରଥମ ଦେଖାରେ ମୋ' ପ୍ରତି ତୁମ ମନରେ ଜାଗିଚି ବିରାଗ , ହୁଏତ ଘୃଣା । ଅଥଚ ମୋରି ଯୋଗୁଁ ତୁମେ କାନଗୋଇ କବଳରୁ ରକ୍ଷାପାଇଚ । ଏ ଅବସ୍ଥାରେ....
ଉର - ବାପା... ବାପା କେତେବେଳେ ଆସିବେ ?
ମଦନ - ହୁଏତ ଆଜି ନଆସିପାରନ୍ତି ।
ଉର - ଆସିବେନାହିଁ ! ଆଉ ସେ ଦି'ଜଣ ?
ମଦନ - କିଏ ? ଦି'ଜଣ ମୂଲିଆଣୀ ?
ଉର - ହଁ, ମୁଁ ଦେଖେ ସେମାନେ ଆସିଲେଣି କି ନା ?
ମଦନ - ଏତିକି ବୁଝିପାରୁନ ? ମୋରି ମୂଲ ଖାଇ ସେମାନେ ମୋରି ପାଖରେ ନିମକହାରାମି କରିବେ ? ସେମାନେ କେହି ଆସିବେନି ।
ଉର - ଆସିବେନି ?
ମଦନ - ଏତେବେଳେ ତା'ହେଲେ ତୁମେ ଠିକ୍ ବୁଝିପାରିଚ ଯେ, ଏ ଘରେ ବର୍ତ୍ତମାନ ତମ ଆଉ ମୋ ଛଡ଼ା କେହିନାହାନ୍ତି ।
ଉର - (ଦୃଢ଼ ଗଳାରେ) ହଁ ବୁଝିଚି, ଆଉ ବୁଝିଚି ବୋଲି କହୁଚି ଆପଣ ଚାଲିଯାଆନ୍ତୁ ।

ମଦନ - ଆଚ୍ଛା ଉର୍ବଶୀ, ମୋ ଉପକାରର କ'ଣ ଏଇ ପ୍ରତିଦାନ ପାଇବି ବୋଲି ମୁଁ ଏଠିକି ଆସିଥିଲି ?

ଉର - (ପୁଣି ଭାଙ୍ଗିପଡ଼ି) ମତେ କ୍ଷମାକରନ୍ତୁ! ମୁଁ ବୁଝିପାରୁନି ମୁଁ କ'ଣ କହୁଚି! କୁହନ୍ତୁ, ଆପଣ କାହିଁକି ଆସିଚନ୍ତି ?

ମଦନ - କହିବାର ସୁଯୋଗ ତୁମେ ମୋତେ କେବେ ଦେଇନ କି ଆଜି ବି ଦଉନ ।

ଉର - ଆପଣ ବସନ୍ତୁ, ମୁଁ ଆପଣଙ୍କ ପାଇଁ ଚା' କରି ଆଣେ ।

ମଦନ - ଦେଖ, ତୁମେ କରି ଆଣି ଅତିଥି ସତ୍କାର କରିବ। ଚା' ଖିଆ ସଙ୍ଗେ ସଙ୍ଗେ ଘର ବାହାର ଦେଶ ବିଦେଶର ପାଞ୍ଚକଥା ପଡ଼ିବ ।ତା'ପରେ ମୁଁ ଯିବି ମୋ କାମରେ ଆଉ ତୁମେ ରହିବ ତୁମ ଘରେ, ଏଇୟା ନା ? ଗାଧୁଆ ତୁଠରେ ଯେଉଁ ଉର୍ବଶୀକୁ ଦେଖି ମୋ ନିଜକୁ ମୁଁ ଭୁଲିଯାଇଥିଲି , ତା'ଠାରୁ କ'ଣ ଏଇ କୁଟୁମ୍ବିତା ଆଶାରେ ମୁଁ ଆଜି ଏଠାକୁ ଆସିଥିଲି ?

ଉର - ମଦନବାବୁ!!!

ମଦନ୍ - ମୋ ଗାଡ଼ିରେ ବସି ଆମ ଗାଁକୁ ଆଜି ବୁଲିଯିବାକୁ ମୁଁ ତମକୁ ଡାକିଥିଲି ।କିନ୍ତୁ ତୁମେ ରାଜିହେଇନି, କାହିଁକି ?

ଉର - ମୁଁ....ମୁଁ ତ ଆପଣଙ୍କ ଗାଡ଼ିରେ ବସିବାର ଯୋଗ୍ୟା ନୁହେଁ ।

ମଦନ - ଯୋଗ୍ୟା କି ନୁହଁ ତା'ର ବିଚାର କରିବା ଲୋକ ମୁଁ, ତୁମେ ନୁହଁ ।ଆଚ୍ଛା, ବର୍ତ୍ତମାନ ଆସ ।

ଉର - କୁଆଡ଼େ ?

ମଦନ - ତୁମ ବାରିପାଖ ତୋଟା ଭିତରେ ଗାଡ଼ି ଅଛି, ଆସ ।

ଉର - ନା-ନା, ମୁଁ ଯିବିନାହିଁ - ମୁଁ ଯିବିନାହିଁ ।

ମଦନ - ଡେରି ହଉଚି ଉର୍ବଶୀ, ତୁମ ବାପା ଫେରିବା ଆଗରୁ ଆମକୁ ଫେରିବାକୁ ହେବ - ଆସ (ହାତ ଧରି ଟାଣିଲା)

ଉର - (ପାଟିକରି) ବାପା-ବାପା!

ମଦନ - ଚିତ୍କାର କରି ଲୋକ ଡାକିବାକୁ ଚାହଁ ।ବେଶ୍, ସେମାନେ ଆସି ଏଇ ମୁହୂର୍ତ୍ତରେ ଦେଖିବେ ମୁଁ ଅଛି ତୁମ ପାଖରେ - ଆଉ ପରମୁହୂର୍ତ୍ତରେ ଜାଣିବେ ତୁମ ବାପାଙ୍କୁ ମୁଁ ଅନେକ ଟଙ୍କା ଦେଇଚି - ଏବେ ମଧ ଦଉଚି ।ତାଙ୍କୁ ମୋ ପାଖରେ ଚାକିରି ଦେଇଚି । ଫଳଟା କ'ଣ ହେବ କୁହ ।

ଉର - (କାନ୍ଦି କାନ୍ଦି) ମଦନବାବୁ, ଆପଣ ଆମକୁ ବଞ୍ଚେଇଛନ୍ତି, ପୁଣି ଆପଣ ଆମକୁ ମାରିଦେବେ ? ମୁଁ ଗୋଟାଏ ଅଭାଗିନୀ ସତ, ହେଲେ ଗୋଟାଏ ପରେ ଗୋଟାଏ କଳଙ୍କର ବୋଝ ବୋହି ମୁଁ କ'ଣ ଚାଲିପାରିବି ? କ୍ଷଣକର ଆନନ୍ଦ ପାଇଁ ଗୋଟାଏ ଜୀବନ ଆପଣ ଚିରଦିନ ପାଇଁ ନଷ୍ଟ କରିଦେବେ ? ଦୟା କରନ୍ତୁ ମଦନବାବୁ, ଆପଣ ବାପାଙ୍କ କଥା ଥରେ ଭାବନ୍ତୁ, ମୋର ଭବିଷ୍ୟତ କଥା ଥରେ ଚିନ୍ତା କରନ୍ତୁ ।

ମଦନ - ତୁମର ଭବିଷ୍ୟତ ଚିନ୍ତା ତୁମ ବାପା ମୋ ଉପରେ ଛାଡ଼ିଦେଇଛନ୍ତି ଉର୍ବଶୀ, ତମେ ଆସ ।

ଉର - (ମଦନର ପାଦତଳେ ପଡ଼ିଯାଇ) ଆପଣଙ୍କ ଗୋଡ଼ ଧରୁଚି ମଦନବାବୁ, ଆପଣ ମତେ ଛାଡ଼ିଦିଅନ୍ତୁ !

ମଦନ - ମୋ ଗୋଡ଼ ଧରିଲେ ତୁମକୁ ଗୋଇଠା ମାରିଲା ଭଳି ନିଷ୍ଠୁର ବି ହୋଇପାରେ ଉର୍ବଶୀ, ତୁମେ ଉଠ । ...ଉଠ କହୁଚି, ଉଠ !

ଉର - ବା-ପା ! !

(ଆଉ କିଛି କହିପାରିଲାନାହିଁ କି ଉଠିପାରିଲା ନାହିଁ, ସେଇଠି ଅଚେତ ହୋଇ ଲୋଟିପଡ଼ିଲା ।)

ମଦନ - ଉର୍ବଶୀ !....ଓଃ ଅଚେତ ହୋଇଯାଇଚି ?

(ସେଇ ଅବସ୍ଥାରେ ସେ ଉର୍ବଶୀକୁ ଦୁଇ ହାତରେ ଟେକିନେଇ ସେଠୁ ଚାଲିଗଲା ।)

## ଚତୁର୍ଥ ଦୃଶ୍ୟ

(ଉର୍ବଶୀର ଘର । ମଣି ଠିଆହୋଇ ରହିଚି - ଚୌଧୁରୀ ଅତି ଅସହାୟ ଭାବରେ ତା' ମୁହଁକୁ ଚାହିଁ ରହିଚନ୍ତି ।)

ଶ୍ୟାମ - କିଛି ତା'ହେଲେ କହିଲାନାଇଁ, ନା ?

ମଣି - ଇମିତି ମଉନମୁହାଁ ଏ ସାରା ସୃଷ୍ଟିରେ ପରା ଦେଖିନି । ଗୁମ୍ ହୋଇ ସେଇ ଘରଟାରେ ପଡ଼ିଚି....ଉଁ ନାହିଁ କି ଚୁଁ ନାହିଁ !

ଶ୍ୟାମ - ମୋର ଭାରି ଭରସା ଥିଲା, ତତେ କିଛି ହେଲେ କହିବ ।

ମଣି - ତମେ ଯାହା କହ ଶାମଭାଇ, ଇଏ ସେଇ ସାଇକେଲ୍ ଚଢ଼ା ଟୋକାର ଗୁଣ ।

ଶ୍ୟାମ - କିଏ, ଜ୍ଞାନୀନ୍ଦ୍ର ? ଜ୍ଞାନୀନ୍ଦ୍ର ଏ କାମ କଲା ?

ମଣି - ହଁ....ହଁ....ସେଇ ଗୁଣବନ୍ତ ଜ୍ଞାନୀନ୍ଦ୍ର ।

ଶ୍ୟାମ - ବଡ଼ଲୋକ...ଭଦ୍ରଲୋକର ପୁଅ ।

ମଣି - ତୁମେ କ'ଣ ଜାଣିଚମ ଭାଇ, ଯେତେ ବଡ଼ଲୋକ, ଭଦ୍ରଲୋକ ସବୁ ନିଉଛୁଣା କାମ ସେଇମାନେ କରନ୍ତି ।

ଶ୍ୟାମ - ଟୋକାଟାକୁ ବାହାରୁ ଦେଖିଲେ ତା' ଭିତରଟା ଏଡ଼େ ଖରାପ ବୋଲି ତ କେହି କହିବନାହିଁ । କି ସୁନ୍ଦର ଚେହେରା !

ମଣି - ସେଇ ନିଆଁଲଗା ଚେହେରାରେ ତ ଉର ଜଳି ପୋଡ଼ି ହୋଇ ମରିଚି । ଅଶିଣ ମାସରେ ସେ ଆସିଥିଲା...ଅଶିଣ ଗଲା, କାର୍ତ୍ତିକ ଗଲା, ମଗୁଶିର ଗଲା, ପୁଷ ପଶିଲା - ଠିକ୍ ତ ତିନିମାସ ହେଲା ।

ଶ୍ୟାମ - ଗାଁଯାକ ଏ କଥା ଜାଣିଲେଣି ମଣି ?

ମଣି - ଗାଁ ଯାକ କଥା କ'ଣ କଉଚମ ଭାଇ ? ଏ ପାଞ୍ଚଖଣ୍ଡ ଗାଁରେ ପରା ଡିଚିଡିଚି ବାଜୁଚି । ଦଫାଦାର ଚୌକିଆ କିଏ ନଜାଣିଚି ?

ଶ୍ୟାମ - ମୁଁ କ'ଣ କରିବି ମଣି ମୋତେ କହିଲୁ ?

ମଣି - କ'ଣ ଆଉ କରିବ ! ମୋ ଝିଅ ଯଦି ହୋଇଥା'ନ୍ତା ନା, କୋଉଦିନୁ ତାକୁ ଦିଗର କରି କାଟିସାରନ୍ତିଣି ।

ଶ୍ୟାମ -ସେଇତକ କାମ ମୁଁ କରିପାରୁନି ବୋଲି ତ ଏମିତି ଦହଗଞ୍ଜ ହୋଇ ମରୁଚି । ହଁ, ବନ୍ଧକାମ ଆଡ଼େ ଯାଇଥିଲୁ ମଣି ?

ମଣି -କାଇଁକି ?

ଶ୍ୟାମ - ମଦନ ଆସିନାହିଁ ?

ମଣି - ତାଙ୍କୁ କାହିଁକି ଖୋଜୁଚ ଯେ !

ଶ୍ୟାମ - ନାଇଁ ସେଇଦିନୁ ଯାଇଚି, ତିନିମାସ ହେଲାଣି, କାହିଁ ଆଉ ଫେରୁନାହିଁ ।

ମଣି - କାଲି ରାତିରୁ ଆଇଲେଣି ପରା.... କୁଆଡ଼େ କଲିକତା, ବମ୍ବେଇ ହେରିକା ବୁଲିଯାଇଥିଲେ । ତମର ଏଠିକି ଆସିନାହାନ୍ତି ?

ଶ୍ୟାମ - କାଇଁ ନାଁ ତ ।

ମଣି - ଆଉ ଆସିବେ ? ଏ କଥା ଶୁଣିଲେ ତ କାଉ କୁକୁର ବି ତୁମ ଦୁଆର ମାଡ଼ିବେ ନାହିଁ - ସେ ତ ମଦନବାବୁ କାନ୍‌ତରାଚି । ତହିଁକି ପୁଣି ତମ ଝୁଅ ଗୁଣମଣି ତାଙ୍କ ନାଁ ଶୁଣିଲେ ନାକ ଟେକନ୍ତି । ତପସ୍ୟା କରି ଏକା ଏମିତି ଝୁଅ ଖଣ୍ଡେ ତମେ ପାଇଥିଲ ଭାଇ ! (ଉର୍ବଶୀକୁ ଉଦ୍ଦେଶ୍ୟ କରି) କି କାଳ ବେଳାରେ ତୁ ଜନ୍ମ ହୋଇଥିଲୁ ଲୋ.... ଶରଣକୁଳ ଗାଁର ନାଁ ପକେଇଲୁ !

ଶ୍ୟାମ - ମଣି, କାହିଁକି ତୁ ଏଗୁରାକ କହୁଚୁ କହିଲୁ ?

ମଣି - ମଲା, ଚୋର ଚଣ୍ଡାଳ ତ କହିବେ - ମୁଁ କହିଲାରୁ ଏବେ ବାଧିଯାଉଚି କାହିଁକି ? ହେଲା ଏବେ, ମୋ କଥା ମୁଁ ଫେରେଇନଉଚି ।

ଶ୍ୟାମ - ତୋ କଥା ସିନା ତୁ ଫେରେଇନବୁ ମଣି... ହେଲେ ତୋ କଥାଗୁରାକ ମୋ ଛାତି ଭିତରେ ଯେଉଁ ଦାଗ କାଟିଦଉଚି, ତାକୁ ତ ଫେରେଇ ନେଇପାରିବୁ ନାହିଁ ?

(ଚାଲିଯାଉଥିଲେ)

ମଣି - କୁଆଡ଼େ ପୁଣି ଯାଉଚ ଯେ ?

ଶ୍ୟାମ - ସତେ ତ, କୁଆଡ଼େ ପୁଣି ଯିବି ! ଦାଣ୍ଡ ଆଡ଼େ ଯିବାର ତ ମୁହଁନାହିଁ.... (ଫେରି) ଏଇଆଡ଼େ ଯାଉଚି, ଏଇ ବାରିପଟେ ନଈକୂଳକୁ ।

ମଣି - ମଲା, ଏ ରାତିଟାରେ ନଈକୂଳ ଆଡ଼େ କାହିଁକି ଯିବ ?

ଶ୍ୟାମ - ମରିବାକୁ ଯାଉନି ମଣି.... ଯାହାର ମରିବାର କଥା ସିଏ ତ ଏଯାକେ ବଞ୍ଚିରହିଚି.....ମୁଁ

ଏତେ ଚଞ୍ଚଳ ମରିବି କିମିତି ?

ମଣି - କ'ଣ ଇମିତି ବାଉଳାଙ୍କ ପରି କହିଯାଉଚ ବା ?

ଶ୍ୟାମ - ହଁ ମଣି, ମୁଁ ମରିବି....ହେଲେ ମୋ ନିଜକୁ ମୁଁ ମାରି ଦେଇପାରିବିନି । ମୁଁ କେମିତି ମରିବି ଜାଣୁ ? ଏମିତି ତୋ ପରି ପାଞ୍ଚଲୋକ ମୋତେ ପାଞ୍ଚ କଥା କହିଯିବେ, ସେଇ କଥା ଶୁଣି ଶୁଣି ମୁଁ ତିଳ ତିଳ ହୋଇ ମରିବି । ହଁ, ମଣି - ମୋ ସୁନା ଭଉଣୀଟା ପରା, ତୁ ଟିକିଏ ତା' ପାଖକୁ ଯା' । ଦି'ଦିନ ହେଲା ନଖାଇ ନପିଇ ପଡ଼ିଚି । ତାକୁ କହିବୋଲି କ'ଣ ଦି'ଟା ଖୁଆ....ନହେଲେ ସିଏ ମରିଯିବ ଲୋ ମଣି । ଆଲୋ, ମୁଁ ମଲେ ସିନା ଗୋଟାଏ ପ୍ରାଣୀ ମରିବ, ସେ ମଲେ ତ ଏକାବେଳକେ ଦି'ଦିଟା ପ୍ରାଣୀ ମରିବେ.... ଦି'ଦିଟା ପ୍ରାଣୀ ! ! (ଚାଲିଗଲେ)

## ପଞ୍ଚମ ଦୃଶ୍ୟ

(ଶରଣକୁଳର ମଦନର କ୍ୟାମ୍ପ୍ ଘର । ମଦନ ଅସ୍ଥିର ହୋଇ ପଦଚାରଣ କରୁଥାଏ ।)

ମଦନ - (ଡାକିଲା) ମଣିଅପା !

ମଣି - (ଭିତରୁ) କ'ଣ ?

ମଦନ - ଶୁଣ୍ । (ମଣି ଆସିଲା) ତେବେ କାହାରି ନା ସେ କହୁନାହିଁ ?

ମଣି - ନା ।

ମଦନ - କାହାରି ନାଁ ?

ମଣି - କହୁଚି ପରା ନାଁ....

ମଦନ - ତୁ ନିଜେ ପଚାରିଥିଲୁ ?

ମଣି - ଶୁଣିବଟି... !

ମଦନ - କେବେଠୁ ଏକଥା ଜଣାପଡ଼ିଲାଣି ?

ମଣି - ପହରି ଦିନଠୁଁ ।

ମଦନ - ଆଚ୍ଛା ଅପା, ତୁ ଗୋଟେ କାମ କରିପାରିବୁ ?

ମଣି - କ'ଣ ?

ମଦନ - ତାକୁ ଟିକେ ଏଠିକି ଡାକି ଆଣିପାରିବୁ ?

ମଣି - କାହାକୁ ବା ?

ମଦନ - ଓଃ, ଉର୍ବଶୀକୁ ।

ମଣି - କାହିଁକି ଲୋ ମା' ?

ମଦନ - ମୁଁ ପଚାରୁଚି ଆଣିପାରିବୁ ?

ମଣି - ଆଡ଼ଆଖିରେ ଯିଏ ଚାହିଁଲାନି, ତା ଦୁଃଖ ପୁଣି ଏମିତି ବାଧୁଚି ? ତମେ ଏଡ଼ିକି ବାଇଆ ହେଲ ବାବୁ ? ସେଇଟା ପୁଣି ଏଠିକି ଆସିବ ? ସିଏ ତ ଆଜି କି କାଲି କନିଅର ମଞ୍ଜି ଖାଇବ ।

ମଦନ - ହଉ ତୁ ଯା'....ଗଲୁ ।

ମଣି - କୁଆଡ଼େ ?

ମଦନ - କୁଆଡ଼େ ଆଉ କ'ଣ - ତୋ ଘରକୁ ।

ମଣି - ଘରକୁ ଯାଆନ୍ତି ନାହିଁ ନା କ'ଣ ? ଏମିତି ତଡ଼ି ଦଉଚ କାହିଁକି ବା ?

ମଦନ - ଆଃ, ଏଥିରେ ତଡ଼ିଦେବାର କ'ଣ ରହିଲା ?

ମଣି - ଆଚ୍ଛା, ମୋ କାମରେ ମୁଁ ଭଲା ହେଳା କରିଚି ? ଇମିତି ସୂତ୍ର ଖଞ୍ଜିଦେଲି ଯେ, ଘଡ଼ିକରେ କାନଗୋଇ ମନ ଫାଟିଗଲା । ତେଣିକି ତା' ମନ ଯଦି ନଚାହିଁଲା - ସେ ଯଦି ତମକୁ ରାଜି ନହେଲା....

ମଦନ - ଆଃ, ମୁଁ ତୋତେ ହାତଯୋଡୁଚି ଅପା, ତୁ ଏଠୁ ଗଲୁ । ମୁଁ ଟିକେ ଶୋଇବି...ମୋ ମନ ଭଲ ଲାଗୁନି ।

ମଣି - ମନ ଭଲଥିଲେ ତ ମୋ ମୁଣ୍ଡରେ ଶିରିପା ବାନ୍ଧି ଦେଇଥା'ନ୍ତ ! ଏ ମିଣିପି ଜାତିଟା ଏଇୟା ହୋ । (ଚାଲିଯାଉଥିଲା)

ମଦନ - ଏ ଶୁଣ୍ ଶୁଣ୍ ! (ମଣି ଫେରିଲା) ତୁମର ସବୁ ବିଶ୍ୱାସ ଜ୍ଞାନୀନ୍ଦ୍ର ଏଥିରେ ଅଛି ?

ମଣି - ହଁ ।

ମଦନ - ମୁଁ କହୁଚି - ନା !!

ମଣି - ଏଁ !...

ମଦନ - ମୁଁ କହୁଚି - ନା !! ଆଉ ମୁଁ ଯାହା କହୁଚି, ତା ଠିକ୍ ।

ମଣି - ଆଉ ତେବେ କିଏ ?

ମଦନ - ତୁ ଜାଣିନୁ କିଏ ?

ମଣି - ତମେ ସପନ ଦେଖୁଚ କି ବାବୁ ?

ମଦନ - ସତ କହୁଚୁ ତୁ ଜାଣିନୁ ? ସତ କହୁଚୁ ? (ମଣି କାନ୍ଧକୁ ଧରି ଦୋହଲାଇଦେଲା ।)

ମଣି - ମରିଗଲି ଲୋ ବୋଉ..... ମରିଗଲି ! (ମଦନ ଛାଡ଼ିଦେଲା)

ମଦନ - ଥଟ୍ଟାରେ ଟିକିଏ ଡରେଇ ଦଉ ଦଉ ତୁ ଇମିତି ଛାନିଆଁ ହେଇଗଲୁଟି ?

ମଣି - ମୋ ହାଡ଼ ପଞ୍ଜେ ଭାଙ୍ଗି ଗୁଣ୍ଡାହୋଇଗଲାଣି....ତମକୁ ଥଟ୍ଟା ଲାଗିଚି ।

ମଦନ - (ହସି) ନାଇଁ ଅପା ତୁ ଠିକ୍ କହିଚୁ.... ସେଇ ଜ୍ଞାନୀନ୍ଦ୍ର ଏ କାମ କରିଚି - (ଖଣ୍ଡେ ଦଶଟଙ୍କିଆ ନୋଟ୍ ଦେଇ) ତୁ ଯା, ମୁଁ ଟିକିଏ ଶୁଏ ।

ମଣି - ବେଳକୁବେଳ ଛୋପରା ହେଇଯାଉଛନ୍ତି । (ଚାଲିଗଲା)

ମଦନ - ଡ୍ରାଇଭର୍ !

ଡ୍ରାଇଭର୍ - (ଆସି) ହଜୁର୍ ।

ମଦନ - ଗାଡ଼ି ବାହାର କର ମୁଁ ଯିବି ।

ଡ୍ରାଇଭର୍ - ବାଲେଶ୍ୱର ଯିବେ !

ମଦନ - ହଁ....ନା....ନା...ମୁଁ ଡାଇରେକ୍ଟ କଟକ ଯିବି....ନା....ଆଚ୍ଛା, ତମେ ଆଗ ଗାଡ଼ି ବାହାର କର ।

(ଡ୍ରାଇଭର୍ ଚାଲିଗଲା । ମଦନ ବନ୍ଧୁକଟା ଉଠେଇ ନେଇ ପରୀକ୍ଷା କରୁ କରୁ ଦେଖିଲା ଠିକ୍ ବନ୍ଧୁକ ସାମ୍ନାରେ ଠିଆ ହେଇଚି ଉର୍ବଶୀ ।)

ମଦନ - ଉର୍ବଶୀ ! !

ଉର୍ବଶୀ - ଭୁଲ୍‌ରେ ହେଲେ ଗୁଳିଟା ଫୁଟେଇ ଦେଇପାରିଲେ ନାହିଁ ?

ମଦନ - (ଏଣେତେଣେ ଚାହିଁ) କିମିତି ଆସିଲ ତୁମେ ?

ଉର - କେହି ଦେଖିନାହାନ୍ତି.... ଆପଣଙ୍କର ଆଦରିଣୀ ଅପା କି ଡ୍ରାଇଭର୍ ଦେଖିନାହାନ୍ତି । ଆଶ୍ଚର୍ଯ୍ୟ ହେଉଚନ୍ତି ? ତିନିମାସ କାଳ ଇମିତି ସମସ୍ତଙ୍କୁ ଠୁ ନିଜକୁ ଲୁଚାଇ ରଖି ରଖି ଏ ବିଦ୍ୟାଟା ମୋର ଅଭ୍ୟାସ ହୋଇଗଲାଣି ।

ମଦନ - ତୁମେ ବଡ଼ ଦୁର୍ବଳ ଜଣାପଡୁଚ ଉର୍ବଶୀ, ବସ ।

ଉର - ମଣିଅପା ସହିତ ଏ ଖେଳ ଖେଳୁଥିଲେ କାହିଁକି ?

ମଦନ - ଖେଳ ? ନା ଉର୍ବଶୀ, ଠିକ୍ ଖେଳ ମୁଁ ତା ସହିତ ଖେଳୁନଥିଲି । ମୁଁ ତାକୁ ସତକଥାଟା କହିଦେବାକୁ ଚାହୁଁଥିଲି ।

ଉର - ଆପଣ ଇମିତି ସତ୍ୟବାଦୀ ଯୁଧିଷ୍ଠିର କେବେଠୁ ହେଲେଣି ? ସତ କହି ଲାଭ କ'ଣ ପାଇଥା'ନ୍ତେ ?

ମଦନ - ଜାଣେନା, ତଥାପି ଚାହୁଁଥିଲି ସତକଥାଟା କହିଦେବାକୁ ।

ଉର - ନା, ଯେଉଁ ବାହାଦୁରୀଟା ନିଜେ ଆପଣ ନବାର କଥା, ସେଇଟା ବିଚରା ଜ୍ଞାନୀନ୍ଦ୍ର କାହିଁକି ନେବ - ଏଇଥିପାଇଁ ସତ କହୁଥିଲେ ?

ମଦନ - ତୁମେ କ'ଣ କେବଳ ଏଠିକି ଆସିବ ମୋ ସହିତ ଯୁକ୍ତି କରିବାକୁ ?

ଉର - ମୋ କଥାରେ, ମୋ ଯୁକ୍ତିରେ ଯଦି ଆପଣଙ୍କ ଦେହର ଶିରା-ପ୍ରଶିରା ସବୁ ଫାଟି ସେଥିରୁ ଧାର ଧାର ହୋଇ ରକ୍ତ ବୁହନ୍ତା, ତେବେ କେଜାଣ ମୁଁ ଖୁସିହୁଅନ୍ତି !

ମଦନ - ସେଦିନ ରାତିରେ ମୁଁ ତୁମକୁ ଆଣି ତୁମ ଘରେ ଛାଡ଼ିଦେବାବେଳେ ତୁମେ ଠିକ୍ ଏମିତି କହିଥିଲ ଯେ, ସୁବିଧା ଓ ସୁଯୋଗ ପାଇଥିଲେ ସେଦିନ ମୋତେ ତୁମେ ପ୍ରାଣରେ ମାରିଦେଇଥା'ନ୍ତ, କିନ୍ତୁ ଉର୍ବଶୀ, ସେଦିନ ତୁମେ ମୋତେ ମାରିପାରିନ କି ତୁମ ଦେହର ଶିରା-ପ୍ରଶିରା ସବୁ ଫାଟି ରକ୍ତବୋହୁନି । ଅତଏବ କୁହ, ଯା'ପରେ ତୁମର ଆଉ କ'ଣ କହିବାର ଅଛି ?

ଉର - କହିବାର ଆଉ କ'ଣ ଅଛି ? ଏମିତି ଅସହାୟ ଅବସ୍ଥାରେ ଆପଣ ଆଣି ମୋତେ ରଖିଛନ୍ତି ଯେ, କହିବାର କଥା ସୁଦ୍ଧା ମୁଁ ଭୁଲିଯାଉଚି ।

ମଦନ - ତୁମର ଏ ଅବସ୍ଥା ପାଇଁ ତୁମେ ମୋତେ ଦାୟୀ କରୁଚ ? କିନ୍ତୁ...

ଉର - କିନ୍ତୁ ?

ମଦନ - ବିପଦରେ ପଡ଼ି ତୁମେ ରାହା ଖୋଜି ପାଉନଥିଲାବେଳେ ଯିଏ ଅତି ଆପଣାର ହୋଇ ଠିଆହେଲା....

ଉର - ବୁଝିଲି । ଆପଣ ତ ବାପାଙ୍କୁ ସଫା କହି ପାରିଥା'ନ୍ତେ - "କାନଗୋଇ ଅପେକ୍ଷା ମୁଁ ବେଶି ଦାମ୍ ଦଉଚି, ଉର୍ବଶୀଙ୍କୁ ମୋତେ ବିକି ଦିଅନ୍ତୁ ।"

ମଦନ - ଯାହା ଅବାସ୍ତବ, ଅସମ୍ଭବ, ସେ କଥା କହି କିଛି ଲାଭ ନାହିଁ ଉର୍ବଶୀ !

ଉର - କିନ୍ତୁ ଗୋଟାଏ ନିରୀହା ବାଳିକା ଉପରେ ଜୋର୍ କରି ଅତ୍ୟାଚାର କରିବାଟା ସମ୍ଭବ ହେଲା !!

ମଦନ - ହଁ ଉର୍ବଶୀ, ତାହା ହିଁ ସମ୍ଭବ ହୋଇଛି । ତୁମେ ଜ୍ଞାନୀନ୍ଦ୍ରକୁ ଭଲପାଉଚ । କିନ୍ତୁ ତୁମ ପ୍ରେମର ପ୍ରତିଦାନ ଦେବାର ସୁଯୋଗ ସେ ପାଇନି । ତୁମେ ତାକୁ ଘୃଣା କରିଥିଲେ.... ସେ ହୁଏତ ନୀରବରେ ମଥାପାତି ଚାଲିଯାଇଥା'ନ୍ତା । କିନ୍ତୁ ଉର୍ବଶୀ, ତୁମ ପ୍ରେମ ପାଇଁ ମୁଁ ଯେମିତି ପାଗଳ ହୋଇଥିଲି, ତୁମେ ମୋତେ ଘୃଣା କଲ ବୋଲି ପ୍ରତିଶୋଧ ନେବାକୁ ମୁଁ ସେମିତି ହିଂସ୍ର ହୋଇଉଠିଲି । କାରଣ ସବୁ ମଣିଷ ଦେବତା ନୁହଁନ୍ତି କି ସବୁ ପୁରୁଷ ଜ୍ଞାନୀନ୍ଦ୍ର ନୁହଁନ୍ତି । ....ସେ ଦିନ ମଟର ଛୁଟୁଥାଏ - ଆଉ ଧୀରେ ଧୀରେ ତୁମର ଚେତନା ଫେରିଆସୁଥାଏ । ସେଇ ଅର୍ଦ୍ଧଚେତନ ଅବସ୍ଥାରେ ତମର ମନେହେଲା, ତୁମ ପାଖରେ ମୁଁ ନାହିଁ - ଅଛି ତୁମ ପ୍ରିୟ ପୁରୁଷ ଜ୍ଞାନୀନ୍ଦ୍ର । ସେଇ ଭୁଲ୍‌ରେ ତୁମେ ସବୁ ଭୁଲି କ୍ଷଣକପାଇଁ ନିଜକୁ ମୋ ଛାତିରେ ଲୁଟାଇଦେଲ । କିନ୍ତୁ ତା'ପରେ....

ଉର - ଆପଣ ଚୁପ୍ କରନ୍ତୁ । ମୋର ଚେତନା ଫେରିଆସିଲା ପରେ ଆପଣଙ୍କ ପାଦତଳେ ମଥା ପିଟିପିଟି ମୋ ମଥା ଫାଟି ରକ୍ତ ବାହାରିଚି, ତଥାପି ଆପଣଙ୍କର ଦୟା ହୋଇନି । ମଣିଷ ଉପରେ ମଣିଷ ଯେ ଇମିତି ପ୍ରତିଶୋଧ ନିଏ....

ମଦନ - ପ୍ରତିଶୋଧର ଅନ୍ୟରୂପ କ'ଣ ମୁଁ ଜାଣେନା ଉର୍ବଶୀ । ତୁମେ ବର୍ତ୍ତମାନ କୁହ ତୁମେ କାହିଁକି ଆସିଛ ?

ଉର - ଆପଣ ଜାଣନ୍ତି ମୁଁ କାହିଁକି ଆସିଚି ?

ମଦନ - ମତେ ବିବାହ କରିବାର ଦାବି ନେଇ ତୁମେ ଆସିଛ, ଏଇୟା ନା ?

ଉର - (ଅର୍ଦ୍ଧୋଚ୍ଚାରିତ ଭାବେ) ବିବାହ କରିବାର ଦାବି !!! (ଦୃଢ଼ ଗଳାରେ) ହଁ, ବିବାହ କରିବାର ଦାବି ।

ମଦନ - ତୁମେ ବୋଧହୁଏ ଜାଣନା ଉର୍ବଶୀ ଯେ, ମୁଁ ଏପର୍ଯ୍ୟନ୍ତ ବିବାହ କରିନି, ଆଉ ଯା ମଧ୍ୟ ତୁମେ ଜାଣନା ଯେ, ତୁମକୁ ବିବାହ କରିବାର ଗୋଟାଏ ବ୍ୟର୍ଥ ଲୋଭ ଦିନେ ମୋର ଥିଲା । କିନ୍ତୁ ଉର୍ବଶୀ, ଯିଏ ମୋତେ ଘୃଣା କରେ, ତାକୁ ମୁଁ ବିବାହ କରିବି କେମିତି ?

ଉର - କିନ୍ତୁ ଆପଣ ତ ମୋତେ ଭଲପାଆନ୍ତି ?

ମଦନ - ତେବେ କୁହ, ବିନିମୟରେ ତୁମେ ମୋତେ କିମିତି ଭଲପାଅ ?

ଉର - ଏ କଥାର କୌଣସି ଉତ୍ତର ମୁଁ ଦେଇପାରିବି ନାହିଁ । ମୁଁ ଆଜି ଆପଣଙ୍କୁ ଘୃଣା କରିବାକୁ ଏଠାକୁ ଆସିନି କି ଭଲ ପାଇବାକୁ ଆସିନି । ମୋର ଏଇ ଅବସ୍ଥା ନେଇ ମୁଁ ଆପଣଙ୍କ ପାଖକୁ ଆସିଚି । ହଏତ ମୋର ମରିବାର କଥା; କିନ୍ତୁ ମୁଁ ମରିପାରୁନି- ସେ ସୌଭାଗ୍ୟ ବୋଧହୁଏ ମୋର ନାହିଁ । କିନ୍ତୁ ମୁଁ ବଞ୍ଚିବି କେମିତି ? କାହାକୁ ସମ୍ବଳ କରି ? ଆପଣ ତଡ଼ିଦେବେ - ସମାଜରେ ସ୍ଥାନ ରହିବନାହିଁ - ତା'ପରେ ଏ ଦୁନିଆରେ ମୁଁ ଯାଇ ଯେଉଁଠି ଠିଆହେବି, କେବଳ ଚାଲିବ ଅତ୍ୟାଚାର, ନିର୍ଯ୍ୟାତନା । ଯେଉଁ ରୂପ ଦେଖି ଆପଣ ପାଗଳ ହୋଇଥିଲେ, ସେହି ରୂପ ଭେଦି ଦିନେ ଅସଂଖ୍ୟ ବ୍ୟାଧି ଫୁଟିଉଠିବ । ଆପଣଙ୍କର ଏଇ ସନ୍ତାନ - ମୁଠାଏ ଭାତପାଇଁ ହୁଏତ କାହାର ପାଦ ଧରି ଭିକ୍ଷା ଚାହିଁବ । ଏଇ ତ ମୋର ଭବିଷ୍ୟତ ! କିନ୍ତୁ ଏ କଳ୍ପନା ମୁଁ ସହିପାରୁନି ମଦନବାବୁ, ଆପଣ ମଧ ପାରିବେନାହିଁ । ସେଇଥିପାଇଁ ଆଜି ମୁଁ ସବୁ ଭୁଲି ଏଠିକି ଆସିଚି । ମୁଁ ଜାଣେ ଆପଣ ନିର୍ଦ୍ଦୟ ହେବେନି - ଆପଣ ମତେ....

ମଦନ - ମୁଁ ସ୍ୱୀକାର କରୁଚି ଉର୍ବଶୀ, ତୁମକୁ ବିବାହ କଲେ ମୁଁ ନିଜକୁ ଭାଗ୍ୟବାନ୍ ମନେକରନ୍ତି । କିନ୍ତୁ ସମାଜରେ ଟିକେ ମୁଣ୍ଡ ଗୁଞ୍ଜି ରହିବାପାଇଁ ତୁମେ ସବୁ ଭୁଲି ମୋତେ ବିବାହ କରିବାକୁ ଚାହୁଁଚ - ସେଇ ସମାଜ ଜାଣେ....

ଉର - କ'ଣ ?

ମଦନ - ତୁମ ସନ୍ତାନର ପିତା ମୁଁ ନୁହେଁ, ଜ୍ଞାନୀନ୍ଦ୍ର ।

ଉର - ମଦନବାବୁ ?

ମଦନ - ଆଜି ତୁମର ଗାଁ, ଭାଇ, ବନ୍ଧୁ, କୁଟୁମ୍ବ, ଏପରିକି ତମ ବାପା, କ'ଣ ସେମାନେ ଜାଣନ୍ତି ?

ଉର - କିନ୍ତୁ ଆପଣ ? ମୁଁ ଆପଣଙ୍କୁ ପଚାରୁଚି, ଆପଣ କୁହନ୍ତୁ ?

ମଦନ - ମୋ କଥାର ମୂଲ୍ୟ କେବଳ ତୁମ ପାଖରେ ଉର୍ବଶୀ, ଆଉ କେହି ମୋ କଥା ଶୁଣିବେନି । ରାଜ-ରାଜେଶ୍ୱରୀର ସମ୍ମାନ ଦେଇ ମୁଁ ଆଜି ତୁମକୁ ବିବାହ କଲେ ସୁଦ୍ଧା ତୁମର ଏ କଳଙ୍କ ଚିରଦିନପାଇଁ ରହିଯିବ - ଆଉ ଚିରଦିନ ପାଇଁ ମୋର ମାନ, ସମ୍ମାନ, ଖ୍ୟାତି ଧୂଳିସାତ୍ ହୋଇଯିବ ।

ଉର - ମଦନବାବୁ ! !

ମଦନ - ନା-ନା, ଉର୍ବଶୀ.... ଏ ବିବାହ ହୋଇପାରିବନି, ତୁମେ ଫେରିଯାଅ - ତୁମେ ଫେରିଯାଅ ଉର୍ବଶୀ ।

ଉର - ମଦନବାବୁ -

ମଦନ - ହଁ, ତୁମେ ଫେରିଯାଅ !

(ସୁଟ୍‌କେଶ ଓ ବନ୍ଧୁକଟା ନେଇ କ୍ଷିପ୍ରଗତିରେ ବାହାରିଗଲା)

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ଜେନେରାଲ୍ ହସ୍‌ପିଟାଲ୍‌ର ଗୋଟିଏ ୱାର୍ଡ଼ ସଂଲଗ୍ନ ଡିଉଟି ରୁମ୍ । ଜଣେ ଡାକ୍ତର-ଛାତ୍ର ତା' ଷ୍ଟେଥୋସ୍‌କୋପ୍‌ଟିକୁ ଆଙ୍ଗୁଳି ସାହାଯ୍ୟରେ ଘୂରାଇ ଘୂରାଇ ଖୁବ୍ ଫୂର୍ତ୍ତିରେ ଆସୁ ଆସୁ ଷ୍ଟେଥୋସ୍‌କୋପ୍‌ଟି ତା ହାତରୁ ଖସିପଡ଼ିଲା । ପଛେ ପଛେ ଆସୁଥିଲା ଗୋଟିଏ ନର୍ସ-ଛାତ୍ରୀ । ଛାତ୍ରୀଟି ଉଠାଇ ତା'ହାତକୁ ଦେଇଦେଲାବେଳେ ଦୁହେଁ ଦୁହିଁଙ୍କୁ ବିସ୍ଫାରିତ ନେତ୍ରରେ ଚାହିଁରହିଲେ । ଦୁହିଁଙ୍କ ହାତ ଥରୁଚି - ମନରେ ଚମକ । ....କାରଣ ଛାତ୍ରଟି ଜ୍ଞାନୀନ୍ଦ୍ର ଓ ଛାତ୍ରୀଟି ଉର୍ବଶୀ ।)

ଜ୍ଞାନୀନ୍ଦ୍ର - ମୋ'ର....ଭୁଲ୍ ହେଇନାହିଁ ତ ?

ଉର - ନା ।

ଜ୍ଞାନ - ତୁମେ ଏଠି ? ମୋର ଆଖିକୁ ତ ମୁଁ ବିଶ୍ୱାସ କରିପାରୁନାହିଁ ?

ଉର - କାହିଁକି, ଏଠି କ'ଣ ମୋ ପରି ଲୋକର ସ୍ଥାନ ନାହିଁ ?

ଜ୍ଞାନ - ତୁମେ ସିଧାସଳଖ ଉତ୍ତର ଦିଅ ଉର୍ବଶୀ - ତୁମେ ଏଠି କିପରି ? କେବେ ଆସିଲ ? କାହିଁକି ଆସିଲ ? ଏଠି କ'ଣ ତୁମେ....

ଉର - ଏକାବେଳକେ ଏତେଗୁଡ଼ାଏ ପ୍ରଶ୍ନ ଆପଣଙ୍କର, ମୁଁ କାହାର ଉତ୍ତର ଦେବି ? ଆଉ ତା'ଛଡ଼ା ଠିକ୍ ଏମିତି ଗୁଡ଼ାଏ ପ୍ରଶ୍ନ ମୋର ମଧ୍ୟ ଆପଣଙ୍କୁ ପଚାରିବା କଥା ।

ଜ୍ଞାନ - ମୁଁ ? ମୁଁ ତ ଏଠି ଷ୍ଟୁଡ଼େଣ୍ଟ, ମେଡ଼ିକାଲ୍ କଲେଜ୍‌ର ଛାତ୍ର, କିନ୍ତୁ ତୁମେ ?

ଉର - ଷ୍ଟୁଡେଣ୍ଟ !

ଜ୍ଞାନ - ନର୍ସ୍ - ନର୍ସ୍ ଷ୍ଟୁଡେଣ୍ଟ ?

ଉର - ହୁଁ....(ଗୋଟିଏ ରୋଗୀ ପାଖକୁ ଯାଇ ପାଟିରେ ଥର୍ମୋମେଟର ଦେଲା ।)

ଜ୍ଞାନ - କେବେଠୁଁ ?

ଉର - ଏଇ ସେସନ୍ ଆରମ୍ଭରୁ ।

ଜ୍ଞାନ - କିନ୍ତୁ କାହିଁ, ମୁଁ ତ ଏପର୍ଯ୍ୟନ୍ତ ତୁମକୁ ଏଠି କେବେ ଦେଖିଚି ବୋଲି ମୋର ମନେହେଉନି ।

ଉର - ଆପଣଙ୍କ ମନର ଖବର ମୁଁ କେମିତି ଦେବି କୁହନ୍ତୁ ।

ଜ୍ଞାନ - ତୁମେ ଭାରି ବଙ୍କା ବଙ୍କା କଥା କହୁଚ ଉର୍ବଶୀ !

ଉର - (କେବଳ ଜ୍ଞାନୀନ୍ଦ୍ର ମୁହଁକୁ ଚାହିଁ ଆଖିଫେରାଇ ନେଲା)

ଜ୍ଞାନ - ଆଚ୍ଛା, ତୁମେ ଆଗ କୁହ ତ, କାହିଁକି ତୁମେ ନର୍ସ୍ ଟ୍ରେନିଂ ପଢ଼ିବାକୁ ଆସିଲ ?

ଉର୍ବଶୀ - ନର୍ସ ହେବାପାଇଁ ।

ଜ୍ଞାନ - କି ମସ୍କିଲ୍ - ତୁମେ କ'ଣ ବୁଝିପାରୁନ ମୁଁ କ'ଣ ଜାଣିବାକୁ ଚାହେଁ ?

ଉର - (ରୋଗୀ ମୁହଁରୁ ଥର୍ମୋମେଟରଟି ଆଣି) ଦେଖନ୍ତୁ ତ, ଠିକ୍ ଶଏ ଦୁଇ ନା ?

ଜ୍ଞାନ - ହଁ ।

ଉର - ଧନ୍ୟବାଦ ।

ଜ୍ଞାନ - ମୁଁ ଯାହା ପଚାରିଥିଲି ।

ଉର - (କାନ୍ଥରୁ ଚାର୍ଟ୍ ଆଣି ଲେଖୁ ଲେଖୁ) ତେଣେ ଆପଣଙ୍କର କ୍ଲାସ୍ ।

ଜ୍ଞାନ - ଏତେବେଳେ ନଥାଏ । (ଉର୍ବଶୀ ହାତରୁ ଚାର୍ଟ୍ ନେଇ କାନ୍ଥରେ ଟଙ୍ଗାଇ) ତୁମ କାମ ଶେଷ ହେଇଚି, ବର୍ତ୍ତମାନ ମୋର ପ୍ରଶ୍ନର ଉତ୍ତର ଦିଅ । କୁହ, କାହିଁକି, କି ଦାୟରେ ପଡ଼ି ତୁମେ ଏଠାକୁ ଆସିଲ ।

ଉର - ଦେଖନ୍ତୁ, ପ୍ରାୟ ଦୁଇବର୍ଷ ତଳେ ଆପଣଙ୍କ ସଙ୍ଗେ ମୋର ଦେଖା । ତା'ପୁଣି ଖୁବ୍ ଅଳ୍ପ ସମୟ ପାଇଁ । ସେତିକିରେ ଆପଣ ମୋର କି ପରିଚୟ ପାଇଚନ୍ତି ଯେ, ମୋତେ ଏଠି ଦେଖି ଏମିତି ଆଶ୍ଚର୍ଯ୍ୟ ହୋଇଯାଉଛନ୍ତି ।

ଜ୍ଞାନ - ଓଃ....(ଉର୍ବଶୀ ଚାଲିଗଲା । ଜ୍ଞାନୀନ୍ଦ୍ର ଠିଆହୋଇ ରହିଥାଏ । ପୁଣି ଆସିଲା ଉର୍ବଶୀ)

ଉର - ଜ୍ଞାନୀନ୍ଦ୍ର ବାବୁ, ଆପଣ ଖୁବ୍ ଭାବୁଚନ୍ତି ବୋଧହୁଏ ?

ଜ୍ଞାନ - ଏଁ ? ହଁ, ଭାବୁଚି - ତୁମରି କଥା ହିଁ ଭାବୁଚି ।

ଉର - (ଯେମିତି ବିଚଳିତା ହୋଇପଡ଼ିଲା)

ଜ୍ଞାନ - କିଛି ମନେକରିବ ନାହିଁ ଉର୍ବଶୀ । ଓଡ଼ିଆ କରଣ ଘରର ଝିଅ ତୁମେ - ଗାଁ ଗହଳର ଜଳବାୟୁରେ ତୁମର ଜୀବନ ଗଢ଼ା । ଏଠି ତୁମକୁ ଏମିତି ଭାବରେ ଦେଖିବାର ଆଶା ହଉ ବା ଆଶଙ୍କା ହଉ ମୋର ନଥିଲା । ଏଠିକାର ଜଳବାୟୁକୁ ତୁମେ କିପରି ଭାବରେ ମାନିନେଇପାରିବ, ସେଇ କଥା ହିଁ ଭାବୁଚି ।

ଉର - ତା'ହେଲେ ଏଠିକି ଆସି ମୁଁ କ'ଣ ଭୁଲ୍ କରିଚି ?

ଜ୍ଞାନ - ଭୁଲ୍ ! ! !

ଉର - ଆପଣଙ୍କ ସହିତ ମୋର ଆଉ କେବେ ଦେଖାହେବ, ଏ ଧାରଣା ବୋଧହୁଏ ଆପଣଙ୍କର ନଥିଲା ।

ଜ୍ଞାନ - ନା', ତା ନଥିଲା । କିନ୍ତୁ ସେଦିନ ପ୍ରାୟ ସିନ୍ଦୂରାଫାଟି ନଥାଏ - ମୁଁ ତୁମ ଘରୁ ଆସିଲି । ସେଇ ନରମ ସକାଳର ଗୋଟାଏ ମନୋରମ ସ୍ମୃତି ଏବେବି ସମୟେ ସମୟେ ମୋ ମନ ମଧ୍ୟରେ ଜାଗିଉଠେ । (ଏତିକିବେଳେ ଆସିଲା ବୀଣା - ଆଉ ଜଣେ ନର୍ସ-ଛାତ୍ରୀ)

ବୀଣା - ଉର୍ବଶୀ, କ'ଣ କରୁଚୁ ଏଠି ? ତେଣେ ରମା ଦିଦି ବିରକ୍ତ ହେଉଚନ୍ତି ।

ଜ୍ଞାନ - ତୁମେ ଯାଅ ଉର୍ବଶୀ - ତେଣେ ରମା ଦିଦି ବିରକ୍ତ ହେଉଥିବେ । (ଉର୍ବଶୀ ଚାଲିଗଲା)

ବୀଣା - ଏଁ! ଆପଣ କ'ଣ ଉର୍ବଶୀର ଅଭିଭାବକ ? ମାନେ....

ଜ୍ଞାନ - କାହିଁ ? ନାଁ ତ ।

ବୀଣା - ଉର୍ବଶୀ ଏଠିକି ଆସିବାର ମୋଟେ ତିନି ମାସ ହେଲା ।

ଜ୍ଞାନ - ମୋଟେ ତିନି ମାସ ହେଲା ?

ବୀଣା - ହଁ, କିନ୍ତୁ ଏଇ ଅଳ୍ପଦିନ ଭିତରେ ତା ସହିତ ଆପଣଙ୍କର ତ ଖୁବ୍ ଆଳାପ ହୋଇଯାଇଛି ।

ଜ୍ଞାନ -ଆଉ କୁହ ତ, ତୁମ ସହିତ ଆଳାପ ହେବାକୁ ମୋତେ କେତେଦିନ ଲାଗିଥିଲା ?

ବୀଣା - ହାଓ ଫନି! ମୋ ସାଙ୍ଗେ ଆପଣଙ୍କର ମୋଟେ ଆଳାପ ହୋଇନି, ଅଥଚ ଉର୍ବଶୀ ଆସିବାର ବର୍ଷକ ଆଗରୁ ମୁଁ ଏଠିକି ଆସିଚି ।

ଜ୍ଞାନ - ସତେ ତ, ଭାରି ଭୁଲ୍ ହୋଇଯାଇଛି । ଆଚ୍ଛା, ତୁମ ନା କ'ଣ ଟି ?

ବୀଣା - ଏଁ। ମୋ ନାଁ ଆପଣ ଜାଣନ୍ତି ନାହିଁ ?

ଜ୍ଞାନ - ଆଚ୍ଛା, ମୁଁ ଉର୍ବଶୀକୁ ପଚାରି ବୁଝିନେବି ।

ବୀଣା - ନା-ନା, ମୁଁ କହୁଚି - ମୋ ନା ବୀଣା - ବୀଣା

ଜ୍ଞାନ - ବୀଣା । ବେଶ୍ ସୁନ୍ଦର ନାଁ ଟିଏ ତ ।

ବୀଣା - ଇଏସ୍!

ଜ୍ଞାନ - ଆଚ୍ଛା, ତୁମେ ଯାଅ ସିଷ୍ଟର, ତେଣେ ରମା ଦେବୀ ତୁମ ଉପରେ ବିରକ୍ତ ହେଉଥିବେ ।

ବୀଣା - ଆପଣ ମୋତେ ପୁଣି ସେଇ ସିଷ୍ଟର ବୋଲି ଡାକିଲେ ତ ?

ଜ୍ଞାନ - ଓହୋ, ବୀଣା - ବୀଣା । (ଉର୍ବଶୀ ଆସିଲା)

ବୀଣା - ହଁ, ସେଇଆ କୁହନ୍ତୁ । (ଯାଉ ଯାଉ) ଉର୍ବଶୀ, ରମା ଦେବୀ ମୋତେ ଖୋଜୁଥିଲେ ?

ଉର୍ବଶୀ- କାଇଁ ନାଇଁ ତ ।

ବୀଣା - ହାଓ ଫନି। (ବକ୍ର ଦୃଷ୍ଟିରେ ଜ୍ଞାନକୁ ଥରେ ଚାହିଁ ଚାଲିଗଲେ ।)

ଜ୍ଞାନ - ଉର୍ବଶୀ! (ଉର୍ବଶୀ ଟିକିଏ ରହି, କ'ଣ ଭାବି ପୁଣି ଚାଲିଗଲା । ଜ୍ଞାନ ସେଠି ଠିଆହୋଇଥାଏ । ଦୁଇଜଣ ଛାତ୍ର ଆସିଲେ, ଭାସ୍କର ଓ ପଙ୍କଜ । ସେମାନେ ବହୁ ପୂର୍ବରୁ ଏସବୁ ଘଟଣା ଅନ୍ତରାଳରେ ଲକ୍ଷ୍ୟ କରୁଥିଲେ । ଜ୍ଞାନକୁ ସେମାନେ ଏକ କୌତୂହଳଭରା ଦୃଷ୍ଟିରେ ଦେଖୁଥାଆନ୍ତି ।)

ଭାସ୍କର - (ଜ୍ଞାନକୁ) ହୁଁ, ଜିଭଟା ଦେଖି (ଦେଖିଲା) ପଙ୍କଜ ତୁ ନୋଟ୍ କର, ମୁଁ ସିମ୍‌ଟମ୍ ଡାକୁଚି - ଟଙ୍ଗ୍ ମାନେ ଜିହ୍ୱା, ଲାଳସାପୂର୍ଣ୍ଣ । ଫେସ୍ ଅର୍ଥାତ୍ ମୁଖମଣ୍ଡଳ, ହୁଁ, ମୁଖମଣ୍ଡଳରେ ଲଜ୍ଜା ଅରୁଣିମା - ପ୍ରେଜେଣ୍ଟ୍!! ତା'ପରେ ହାର୍ଟ୍! ହାର୍ଟ୍ ଅର୍ଥାତ୍ ହୃଦୟତନ୍ତ୍ରୀ- ହୃଦୟତନ୍ତ୍ରୀ ଆନନ୍ଦ ଉଲ୍ଲାସରେ ଅନୁରଣିତ ।

ପଙ୍କଜ - ଅନୁରଣିତ!!

ଭାସ୍କର - ଟିକେ ରହ, ଆଗେ ରୋଗ ହେବାର କାରଣ ଖୋଜି ବାହାର କରେ । ବୁଝିଲି, ସଙ୍ଗୀନ ବ୍ୟାପାର, ଡୁବିଚି - ମାନେ ଡୁବନ୍ ।

ପଙ୍କଜ - ପ୍ରଭୁ ଯୀଶୁ ତୁମ୍ଭର ମଙ୍ଗଳ କରନ୍ତୁ - ଏଇ ତୁବନ୍ ?

ଜ୍ଞାନ - ଓ ଫାଦର୍, ଫରଗିଭ୍ ଦେମ୍ - ଫର୍ ଦେ ନୋ' ନଟ୍ ହ୍ୱାଟ୍ ଦେ ଡୁ ।

ଭାସ୍କର - ନା ନା, ଏ ତୁବନ୍ ସେ ତୁବନ୍ ନୁହେଁ । ଏ ହଉଚି ଗୋଟାଏ ସଙ୍ଗୀନ୍ ଆଫେୟାର୍ । ଆଫେୟାର୍ ଉଇଥ୍ ଏ ମୋଲ୍ଲା...

ପଙ୍କଜ - ମୋଲ୍ଲା ! !

ଭାସ୍କର - ତୁ ଗଧ ନା ଗଣ୍ଡା ନା ହିପପଟାମସ୍ ! ମୋଲ୍ଲା ବୁଝୁନୁ ? ମୋଲ୍ଲାମାନେ ମିଆଁ ସାହେବ, ଯିଏ ଲୁଙ୍ଗି ପିନ୍ଧନ୍ତି, ଲୁଙ୍ଗି-ଅର୍ଥାତ୍ ଶାଢ଼ି ଓ ସାୟା - ଅର୍ଥାତ୍ ନାରୀ ! ! ନାରୀ ପ୍ରେମରେ ବନ୍ଧୁ ମୋର ବୁଡ଼ିଚି ।

ପଙ୍କଜ - ବର୍ତ୍ତମାନ ତେବେ ରୋଗର ନାଁ ଟା କହ ।

ଭାସ୍କର - ସେଇ ପୁରୁଣା ରୋଗ । ପ୍ରଥମ ଦର୍ଶନରେ ପ୍ରେମ - ଲଭ୍ ଆଟ୍ ଫାଷ୍ଟ୍ ସାଇଟ୍ ! ! ଆଚ୍ଛା, ତୁ ଆଉ ଖଣ୍ଡେ କାଗଜରେ ପ୍ରେସ୍କ୍ରିପସନ୍ ଲେଖ୍, ମୁଁ ଡାକୁଚି ଲେଖ୍, "ଫର୍ - ଏଲ୍.ଏ.ଏଫ୍. ଅର୍ଥାତ୍ ଲଭ୍ ଆଟ୍ ଫାଷ୍ଟ୍ ସାଇଟ୍ ! !

(ଏତିକିବେଳେ ଆସିଲେ ବୃଦ୍ଧ ଡାକ୍ତର ଦାସ ।)

ଦାସ - ହୁଁ, ଲିଟ୍‌ଲ ଡକ୍‌ଟରସ୍, କି କନ୍‌ସପିରେସି ଏଠି ଚାଲିଛି ?

ପଙ୍କଜ - ନା ସାର୍, କନ୍‌ସପିରେସି ନୁହେଁ, ପ୍ରେସ୍କ୍ରିପସନ୍ ! !

ଦାସ - ପ୍ରେସ୍କ୍ରିପ୍‌ସନ୍ ! ! ଦେଖି ଦେଖି, କି ପ୍ରେସ୍କ୍ରିପସନ୍ ! !

(ପଙ୍କଜ କୁଣ୍ଠାର ସହିତ ବଢ଼ାଇଦେଲା, ସେ ପଢ଼ିଲେ)

(ହୁଁ, ଫର୍ ଏ ପେସେଣ୍ଟ୍ - ଡିଜିଜ୍ - ଏଲ୍. ଏ.ଏଫ୍. ଏସ୍ ! ! ଏଁ ? ଏଲ୍.ଏ.ଏଫ୍.ଏସ୍ ପୁଣି ଗୋଟାଏ କି ରୋଗ ? ଭାସ୍କର, ଏଇଟା ପୁଣି କି ରୋଗ ?

ଭାସ୍କର - ସେ ହେଉଚି ସାର୍....ଏଲ୍.ଏ.ଏଫ୍.ଏସ୍. ମାନେ... ମାନେ.... ଲିଭର... ଲିଭର...

ଦାସ - ହୁଁ, କୁହ ଲିଭର....

ଭାସ୍କର - ଲିଭର.... ଆକ୍‌ସନ୍..... ଫେଲ୍‌ସ.... ଓ୍ୱୋଲି - ମାନେ ଏଲ୍. ଏ. ଏଫ୍. ଏସ୍ ! !

ଦାସ - ଖୁବ୍ ସାଂଘାତିକ ରୋଗ ତ ! କିନ୍ତୁ ଦେଖ, ଗୋଟାଏ କଥା ଅଛି, ଜଣେ ଡାକ୍ତର ଠିକ୍ ବ୍ୟବସ୍ଥାପତ୍ର ଲେଖେ । ଦୁଇଜଣ ଡାକ୍ତର ମତର ଅମେଳ । ତିନିଜଣ ଡାକ୍ତର, ରୋଗୀର ମୃତ୍ୟୁ । ଅତଏବ ତୁମେ ତିନିଜଣ ଡାକ୍ତର ମିଶି ଯୋଉ ପ୍ରେସ୍କ୍ରିପସନ୍‌ଟି କରିଚ, ସେଥିରେ ରୋଗୀର ନିଶ୍ଚୟ ମୃତ୍ୟୁ ହେବ । ଆଚ୍ଛା ଭାସ୍କର, ରୋଗୀଟି କାହାର ?

ଭାସ୍କର - ସାର୍ ଜ୍ଞାନର ।

ଦାସ - ଶୁଣ ଜ୍ଞାନ, ସେ ରୋଗୀଟିକୁ ନେଇ ତୁମେ ମୋ ନିକଟକୁ ଯିବ । ମୁଁ ତା'ର ଠିକ୍ ବ୍ୟବସ୍ଥା କରିଦେବି, ବୁଝିଲ । ଆଚ୍ଛା, ମେଡ଼ିକାଲ୍ କଲେଜ୍‌ର ତୁମେ ତିନିଜଣ ନାମ୍‌ଜାଦା ଛାତ୍ର ଆଜି ଏଠି ଉପସ୍ଥିତ ରହିଛ ? ଆଜି ତୁମମାନଙ୍କୁ ମୁଁ ଡାକ୍ତରୀ ବିଦ୍ୟା ପରିବର୍ତ୍ତେ ଖୋଦ୍ ଡାକ୍ତରମାନଙ୍କ ସମ୍ବନ୍ଧରେ କିଛି କହିବି ।

ଭାସ୍କର - କୁହନ୍ତୁ ସାର୍ - କୁହନ୍ତୁ !

ଦାସ - ଏ ପର୍ଯ୍ୟନ୍ତ ପୃଥିବୀରେ ଯେତେ କ୍ରାଇମ୍‌ଷ୍ଟୋରି ଅର୍ଥାତ୍ ଖୁଣି, ଡକାଏତି ବହି ସବୁ ଲେଖା ହୋଇଗଲାଣି - ସେଥିରେ ପ୍ରାୟ ଚାରିଭାଗରୁ ତିନିଭାଗ ବହିରେ ଡାକ୍ତରମାନଙ୍କୁ ଖୁଣି, ବଦ୍‌ମାସ ବୋଲି ଚିତ୍ର କରାହୋଇଛି । କହିପାରିବ ଯା'ର କାରଣ କ'ଣ ?

ଭାସ୍କର - ଡାକ୍ତରମାନେ ପ୍ରାୟ ଏହିପରି କାମ କରିଥା'ନ୍ତି ।

ଦାସ - ଏଇଟା ମେଟେରିଆ ମେଡ଼ିକାର ପ୍ରଶ୍ନ ନୁହେଁ ଭାସ୍କର ଯେ, ଏତେ ସହଜରେ ତୁମେ ଯା'ର ଠିକ୍ ଉତ୍ତର ଦେଇପାରିବ । ଜ୍ଞାନୀନ୍ଦ୍ର କ'ଣ କହୁଚ ?

ଜ୍ଞାନ - ମଣିଷକୁ ବଞ୍ଚାଇବା ପାଇଁ ଡାକ୍ତରମାନଙ୍କୁ ଯେତିକି ସୁବିଧା ଓ ସୁଯୋଗ ଦିଆଯାଇଛି, ମଣିଷକୁ ମାରିଦେବା ପାଇଁ ସେତିକି କିମ୍ବା ତା'ଠାରୁ ଅଧିକ ସୁବିଧା ଓ ସୁଯୋଗ ଦିଆଯାଇଛି । ସେଇଥିପାଇଁ ଲୋକମାନଙ୍କର ଧାରଣା ଯେ......

ଦାସ - ଡାକ୍ତରମାନେ ହିଁ ଏ ଦୁନିଆରେ ସବୁଠୁ ବେଶି ଖୁନ୍ କରିପାରିବେ !

ପଙ୍କଜ - ଠିକ୍ ଯେମିତି ସପ୍ଲାଇ ଡିପାର୍ଟମେଣ୍ଟ୍‌ରେ ଯେତେ ସାଧୁ ଉଦ୍ୟମ ନେଇ କାମ କଲେ ସୁଦ୍ଧା ଧରି ନିଆଯାଇଥାଏ ଯେ ସେମାନେ ସମସ୍ତେ ଅସାଧୁ !

ଦାସ - ଏକ୍‌ଜାକ୍‌ଟଲି ! !

ଭାସ୍କର - ତେବେ ତ ସାର୍ ଏ ଜିନିଷଟାକୁ ଗୋଟାଏ ସାଧାରଣ ସତ୍ୟ ବୋଲି ଧରିନିଆହୋଇଛି ?

ଦାସ - ଯଦିଓ ବାସ୍ତବ କ୍ଷେତ୍ରରେ - ଏ ସତ୍ୟଟା ବହୁ ପରିମାଣରେ ମିଥ୍ୟାବୋଲି ପ୍ରମାଣିତ ହୋଇଛି । କିନ୍ତୁ କଥା କ'ଣ ଜାଣ ଭାସ୍କର୍ - ଏତେବଡ଼ ଗୋଟାଏ ଲୋକ ସେବା ବ୍ରତ ନେଇ ଡାକ୍ତରମାନେ ଯେ ଏମିତି ଗୋଟାଏ ବଦ୍‌ନାମର ଭାଗୀ ହୁଅନ୍ତି, ସେଥିପାଇଁ ଡାକ୍ତରମାନେ ହିଁ ଦାୟୀ । ତାଙ୍କର ବିଦ୍ୟାକୁ ସେମାନେ ସୀମାବଦ୍ଧ କରି ରଖିପାରନ୍ତି ନାହିଁ । ଜୀବନର ଯେଉଁ କ୍ଷେତ୍ରରେ ଯେଉଁ ଅବସ୍ଥାରେ ବା ଯେଉଁ ସଂଘର୍ଷରେ ସେମାନେ ପରାଜିତ ହୁଅନ୍ତୁ ନା କାହିଁକି, ପ୍ରତିଶୋଧର ପ୍ରଶ୍ନ ଆସିଲେ ହିଁ ସେମାନଙ୍କ ଆଖି ଆଗରେ ନାଚିଉଠେ - ପୋଟାସିଅମ୍ ସାଇନାଇଟ୍ ହାଇପୋଡ଼ାରମିକ୍ ସିରିଞ୍ଜ୍, ପ୍ଲେଗ୍ ଇଞ୍ଜେକସନ୍ କିମ୍ବା ସ୍ଲୋ ପଏଜନ୍ ! ମୁଁ ମୋର ସେଇ ପ୍ରିୟ ଛାତ୍ରଟି କଥା କହୁଚି, ଯିଏ ପ୍ରେମରେ ପରାଜିତ ହୋଇ ଖାଇଲା ବିଷ ! ତା ହାତ ପାଖରେ ବିଷ ନଥିଲେ ବୋଧହୁଏ ସେ ନିଜକୁ ଏତେ ସହଜରେ ଖୁନ୍ କରିପାରିନଥା'ନ୍ତା ।

ଭାସ୍କର - ତା'ର ଆତ୍ମହତ୍ୟାପାଇଁ ଦାୟୀ ସେଇ ଝିଅଟି - ଯାହାପାଇଁ ସେ ବିଷ ଖାଇଲା ।

ଦାସ - ମୁଁ ଖାଲି ଡାକ୍ତରନୁହଁ ଭାସ୍କର, ଜଣେ ସାଇକୋଏନାଲିଷ୍ଟ୍ । ମନଃ- ସମୀକ୍ଷାର ଶକ୍ତି ମଧ୍ୟ ମୋର ଅଛି । ଯୋଉ ଝିଅମାନେ ଏଠିକି ଜନସେବାର ବ୍ରତ ନେଇ ଆସନ୍ତି, ସେମାନଙ୍କର ସହଜ ସରଳ ମନକୁ ତୁମେ କରିବ ବିଷାକ୍ତ - ଆଉ ସେମାନଙ୍କୁ ନପାଇଲେ ତୁମେ ଖାଇବ ବିଷ ! ଏଇଟା କୋଉ ଆଦର୍ଶର ପରିଚାୟକ ?

(ଠିକ୍ ଏତିକିବେଳେ ଉର୍ବଶୀ ସେଇବାଟେ ଗଲା ।)

ଏଇ ଝିଅଟି - ଯା'କୁ ତୁମେ ଜାଣ ଜ୍ଞାନୀନ୍ଦ୍ର !

ଜ୍ଞାନ - ମୁଁ....ମୁଁ....

ଦାସ - ମୁଁ ତାକୁ ଜାଣେ । କାହିଁ କୋଉ ସୁଦୂର ମଫସଲରେ ତା'ର ଘର । ଅବସ୍ଥାଚକ୍ରରେ ପଡ଼ି ସେ ଆସି ପହଞ୍ଚିଲା, ଡାକ୍ତରାଣୀ ମିସେସ୍ ଉଇଲିସନ୍‌ଙ୍କ ପାଖରେ !

ଜ୍ଞାନୀ- ମିସେସ୍ ଉଇଲ୍‌ସନ୍ ?

ଦାସ - ହଁ, ସେଇ ଦୟାଳୁ ଇଂରେଜ ମହିଳା , ତାକୁ ତାଙ୍କ ନିକଟରେ ଆଶ୍ରୟ ଦେଇଥିଲେ । ଆଉ ତାଙ୍କରି ଅନୁରୋଧରେ ମୁଁ ତାକୁ ନର୍ସ ଶ୍ରେଣୀରେ ଭର୍ତ୍ତି କରିଦେଇଚି । କିନ୍ତୁ ଉର୍ବଶୀକୁ ଦେଖି ମୋର କ'ଣ ମନେହୁଏ ଜାଣ ଜ୍ଞାନୀନ୍ଦ୍ର, ସେ କାହାର କୁଳବଧୂ ନହୋଇ ନର୍ସ୍ ହେବାକୁ ଆସିଲା କାହିଁକି ?

(ଉର୍ବଶୀ ପୁଣି ଆସିଲା)

ଉର୍ବଶୀ - ୧୦୭ ନମ୍ବର ରୋଗୀର ଅବସ୍ଥା ଖୁବ୍ ସାଙ୍ଘାତିକ ସାର୍, ଟିକିଏ ଦୟାକରି ଆସନ୍ତୁ ।

ଦାସ - ଚାଲ । (ଦୁହେଁ ଚାଲିଗଲେ)

ଭାସ୍କର - ଇଉରେକା ! ଇଉରେକା ! ! (ଆନନ୍ଦରେ ନାଚି ଉଠିଲା)

ପଙ୍କଜ - କ'ଣ ହେଲା ? ଏମିତି କାଇଁକି ହଉଚୁ ?

ଭାସ୍କର - ସେ ପ୍ରେସ୍‌କ୍ରିପ୍‌ସନ୍‌ଟା ଚିରି ଦେ ପଙ୍କଜ, ଡାକ୍ତର ଦାସ ଠିକ୍ ପ୍ରେସ୍‌କ୍ରିପସନ୍ କରିଦେଇଗଲେ ।

ପଙ୍କଜ - ମାନେ ?

ଭାସ୍କର - ମାନେ "ଉର୍ବଶୀ କୁଳବଧୂ ନହୋଇ ନର୍ସ୍ ହେବାକୁ ଆସିଲା କାହିଁକି ?" ଏଇ ହେଲା ଜ୍ଞାନୀନ୍ଦ୍ର ରୋଗର ଠିକ୍ ପ୍ରେସ୍‌କ୍ରିପସନ୍ ।

ଜ୍ଞାନ - ତୁ ସମୟେ ସମୟେ ଏମିତି କଥା କହୁ ଭାସ୍କର - ଯାହାର ମୂଲ୍ୟ ହୁଏତ ତୁ ନିଜେ ବି ବୁଝୁନା ।

ଭାସ୍କର - କିନ୍ତୁ ସତ କହିଲୁ ଜ୍ଞାନ, ତୁ ଉର୍ବଶୀକୁ ....ମାନେ ତୁ ତାକୁ -

ଜ୍ଞାନ - ତୁମେ ଦି'ଜଣ ଠିକ୍ ସର୍କସ୍‌ର କ୍ଲାଉନ୍‌ପରି ଅଭିନୟ କରୁଛ ।

ଭାସ୍କର - କିନ୍ତୁ ତୁମେ କହୁଛ ରିଙ୍ଗ୍‌ମାଷ୍ଟର୍,ସେଇ ଷ୍ଟେଥୋସ୍‌କୋପ୍ ଅର୍ଥାତ୍ ହୃଦୟ-ପରୀକ୍ଷକ ଯନ୍ତ୍ରଟି ତୋ ହାତକୁ ବଢ଼େଇଦବା ସଂଗେ ସଂଗେ ପ୍ରସ୍‌ପେକ୍‌ଟିଭ୍ କୁଳବଧୂଟି କ'ଣ ତା' ହୃଦୟଟି ତୋତେ ଦେଇଦେଇନି ? ଆଉ ସେତେବେଳେ ତୋର ଉଜ୍ଜ୍ୱଳ....

ପଙ୍କଜ - ପ୍ଲସ୍ ତା'ର ସଜଳ ଆଖି ।

ଭାସ୍କର - ତୋ'ର ଆନନ୍ଦ....

ପଙ୍କଜ - ପ୍ଲସ୍ ତା'ର ବିପଦ ଅବସ୍ଥା ।

ଭାସ୍କର - ତୋ'ର ପୁରୁଷସୁଲଭ ଦୁର୍ବଳତା....

ପଙ୍କଜ -ପ୍ଲସ୍ ତା'ର ନାରୀସୁଲଭ ଚଞ୍ଚଳତା....

ଭାସ୍କର - ଏଇ ସବୁକୁ ଅବଲୋକନ କରି....
ପଙ୍କଜ - କେଉଁ ମୂଢ଼ ଅର୍ବାଚୀନ ନକହିବ ଯେ....
ଜ୍ଞାନ - ପାଗଳାମି ରଖ - ମୁଁ ଚାଲିଲି ।
ପଙ୍କଜ - କୁଆଡ଼େ ?
ଜ୍ଞାନ - ୧୦୭ ନମ୍ବର ରୋଗୀକୁ ଦେଖିବାକୁ ।
ଭାସ୍କର - ରୋଗୀ ଦେଖିବାକୁ....
ପଙ୍କଜ - ନା, ରୋଗ ଦେଖାଇବାକୁ...
(ଜ୍ଞାନୀନ୍ଦ୍ର ହସିହସି ଚାଲିଗଲା ।)

## ଦ୍ୱିତୀୟ ଦୃଶ୍ୟ

(ମଙ୍ଗଳାବାଗ ଛକ । ସମୟ-ଆସନ୍ନ ସନ୍ଧ୍ୟା । ଭାସ୍କର ଓ ପଙ୍କଜ ବସ୍ ଅପେକ୍ଷାରେ ଅଛନ୍ତି । ପୂର୍ବବର୍ତ୍ତୀ ଦୃଶ୍ୟର ପ୍ରାୟ ଛ'ମାସ ପରର ଘଟଣା ।)

ଭାସ୍କର - ମୁଁ କହୁଚି ପଙ୍କଜ ଚାଲ ଖଣ୍ଡେ ରିକ୍‌ସା ଧରିବା, ଏ ବସ୍‌ର କିଛି ଠିକଣାନାହିଁ !
ପଙ୍କଜ - ତଥାପି ପାଞ୍ଚ ମିନିଟ୍ ଅପେକ୍ଷା କରାଯାଉ ।
ଭାସ୍କର - ତେବେ ସିଗ୍ରେଟ୍ ବାହାର କର ।
(ଦୁଇବନ୍ଧୁ ସିଗ୍ରେଟ୍ ଲଗାଇଲେ ।) ଜ୍ଞାନକୁ ଜର ହେଲା କାହିଁକି ?
ପଙ୍କଜ - ଜର ଆଉ କ'ଣ ? ସାମାନ୍ୟ ଟିକିଏ ଇନଫ୍ଲୁଏନ୍‌ଜା !
ଭାସ୍କର - କିନ୍ତୁ ଇନ୍‌ଫ୍ଲୁଏନ୍‌ଜା ହବ କାଇଁକିନା !
ପଙ୍କଜ - କାଇଁକି ନହେବ ଶୁଣେ ? କାଲି ରାତିସାରା ଯେ ବାବୁ ଛାତ ଉପରେ ବସି କଟାଇଛନ୍ତି !
ଭାସ୍କର - ସେଇଆ କହ, ଏ ସେଇ ଡୁବନ୍‌ର ଫଳ । ଜ୍ଞାନ-ଉର୍ବଶୀ ପ୍ରେମ କାହାଣୀର ଶେଷ ସମ୍ବାଦ କ'ଣ ଜାଣୁ ?
ପଙ୍କଜ - ଜାଣୁ ?
ଭାସ୍କର - ଜ୍ଞାନର ବିବାହ ପ୍ରସ୍ତାବକୁ ଉର୍ବଶୀ ଗ୍ରହଣ କରିବାକୁ ନାରାଜ ।
ପଙ୍କଜ - ଏ ଛ'ଟି ମାସ ସେମାନଙ୍କର ବେଶ୍ ଭଲରେ କଟିଯାଇଥିଲା । ଜ୍ଞାନ ହଠାତ୍ ବିବାହ ପ୍ରସ୍ତାବ ଉଠେଇଲା କାହିଁକି - ଆଉ ଉର୍ବଶୀ ବା ପ୍ରତ୍ୟାଖ୍ୟାନ କଲା କାହିଁକି ?
ଭାସ୍କର - ବିଶଦ ବିବରଣୀ ପ୍ରକାଶ ପାଇନାହିଁ, ଅତଏବ ତୋ' ପ୍ରଶ୍ନ ତୁ ଫେରାଇନେ ।
ପଙ୍କଜ - ତୁ ଯାହା କହ ଭାସ୍କର, ଅଜବ ଜାଗା ଏଇ ମେଡ଼ିକାଲ୍‌ର ହତା ଖଣ୍ଡକ ।
ଭାସ୍କର - ମେଡ଼ିକାଲ୍‌ର ହତା ସମ୍ବନ୍ଧରେ ହଠାତ୍ ଏ ନୂତନ ଆବିଷ୍କାର ?
ପଙ୍କଜ - ରୋଗ ଆଉ ପ୍ରେମର କି ଅଦ୍ଭୁତ ସମାବେଶ ଏଠି କହିଲୁ ? ରାତି ବାରଟା ପରେ

ଦେଖିବୁ ୱାର୍ଡ଼ ସବୁରେ ରୋଗୀମାନେ ଯେପରି ଛଟପଟ ହଉଛନ୍ତି, ହଷ୍ଟେଲ୍ ସବୁରେ ଛାତ୍ରଛାତ୍ରୀମାନେ ପ୍ରେମ ଯନ୍ତ୍ରଣାରେ ସେମିତି ଛଟପଟ ହଉଛନ୍ତି - ଖାଲି ଉଃ - ଆଃ- ଇଃ - ଦୀର୍ଘଶ୍ୱାସରେ ହଷ୍ଟେଲରେ ବାୟୁମଣ୍ଡଳ ପୂରି ରହିଛି । (ଦୂରକୁ ଦେଖି) "ଆସେ ନୀଳାଞ୍ଚଳ ହଲାଇ ହଲାଇ".... ଦେଖିଲୁ ଭାସ୍କର, କିଏ ଏମାନେ ?

ଭାସ୍କର - ହୁଁ, ଶ୍ରୀରାଧା ଆଉ ଚନ୍ଦ୍ରାବଳୀ ।

ପଙ୍କଜ - ଆଜି ତ ପ୍ରାୟ ଅଧିକାଂଶ ନର୍ସ ସିନେମା ଦେଖିବାକୁ ଯାଇଛନ୍ତି - ଏ ଦି'ଜଣ କିମିତି ପଛରେ ରହିଗଲେ ? (ଉର୍ବଶୀ ଓ ବୀଣା ଆସିଲେ ।)

ଭାସ୍କର - କ'ଣ ସାନ୍ଧ୍ୟ ଭ୍ରମଣରେ ?

ବୀଣା - ନା, ସେମାନେ ଚାଲିଗଲେ । ଆମର ଟିକେ ଡେରି ହୋଇଗଲା । ରିକ୍ସାରେ ଗଲେ ଠିକ୍ ସମୟରେ ପହଞ୍ଚିପାରିବୁ ତ ?

ଭାସ୍କର - କିନ୍ତୁ ଯିବେ କେଉଁଠିକି ?

ବୀଣା - ପ୍ରଭାତ ସିନେମା ।

ଭାସ୍କର - ରିକ୍ସାରେ ଗଲେ ନିଶ୍ଚୟ ଡେରିହେବ, ବସ୍‌ରେ ଗଲେ ହୁଏତ ଠିକ୍ ସମୟରେ ପହଞ୍ଚି ପାରିବ ।

ବୀଣା - କିନ୍ତୁ ବସ୍ କାହିଁ ?

ପଙ୍କଜ - ଏଇ ପ୍ରାୟ ଆସିଯିବ ।

ଉର୍ବଶୀ - ଆପଣମାନେ କ'ଣ ବସ୍‌କୁ ଅପେକ୍ଷା କରିଛନ୍ତି ?

ଭାସ୍କର - ହଁ ।

ଉର୍ବଶୀ - କୁଆଡ଼େ ଯିବେ ?

ପଙ୍କଜ - ଏଇ ଟିକେ ବଜାର ଆଡ଼େ ବୁଲି ବାହାରିଚୁ ?

ଭାସ୍କର - କି ଫିଲ୍ମ ଦେଖିଯାଉଛ ?

ବୀଣା - କୃଷ୍ଣ ଲୀଳା ।

(ପଙ୍କଜ ଓ ଭାସ୍କର ହସିଉଠିଲେ ।)

ଉର୍ବଶୀ - କ'ଣ ଭଲ ଫିଲ୍ମ ନୁହେଁ ।

ଭାସ୍କର - ନା-ନା, ଫିଲ୍ମ ଖୁବ୍ ଭଲ ।

ବୀଣା - ତେବେ ହସିଲେ କାହିଁକି ?

ଭାସ୍କର - ଏଇ କୃଷ୍ଣ ଲୀଳା ଦେଖିବାକୁ ପ୍ରାୟ ସ୍ତ୍ରୀଲୋକମାନେ ବେଶୀ ସଂଖ୍ୟାରେ ଯାଉଛନ୍ତି, କାରଣ କ'ଣ କହିପାରିବ ବୀଣା ?

ବୀଣା - କି ଅଦ୍ଭୁତ ଲୋକ ଆପଣ ! ! ବସ୍ ଆସୁଚି ବୋଲି କହି ଅପେକ୍ଷା କରିବାକୁ କହିଲେ, ବସ୍‌ର ଦେଖାନାହିଁ । ଅଥଚ ଏଇ ଛକଟା ଉପରେ ଠିଆହୋଇ ଯେତେ ସବୁ ବାଜେ କଥ ଗପିବାରେ ଲାଗିଛନ୍ତି ।

ଭାସ୍କର - ଦେଖ, ବସ୍‌ଟା ଆମର ଯିମିତି ଦରକାର, ତମର ସିମିତି ଦରକାର । ବସ୍ ପାଇଁ ଯେତେବେଳେ ଅପେକ୍ଷା କରିବାକୁ ହୋଇଛି ସମୟ କଟାଇବାପାଇଁ ଗଳ୍ପ କରିବାଟା ମଧ୍ୟ ଦରକାର । ଆଉ ସେଥିପାଇଁ ମଙ୍ଗଳାବାଗ୍ ପୁଲିସ୍ ଷ୍ଟେସନ୍‌ରୁ ଜଣେ କନ୍‌ଷ୍ଟେବଲ୍‌କୁ ଡାକିଆଣି ତା' ସହିତ ଗଳ୍ପ କରିବା ଅପେକ୍ଷା ମୁଁ ଆମ ନିଜ ନିଜ ଭିତରେ ଗଳ୍ପ କରିବାଟାକୁ ବେଶି ପସନ୍ଦ କରେ ।

ପଙ୍କଜ - ଆଉ ଗଳ୍ପ କରିବାପାଇଁ ମେଡ଼ିକାଲ୍ ହତା ଭିତର ଦେବଦାରୁ ଗଛ ତଳ ଅପେକ୍ଷା ମୁଁ ଏଇ ମଙ୍ଗଳାବାଗ୍ ଛକକୁ ଅଧିକ ସୁବିଧାଜନକ ସ୍ଥାନ ବୋଲି ମନେକରେ ।

ଭାସ୍କର - ଆଚ୍ଛା ବୀଣା, ଆଉ ଗୋଟାଏ ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟା କର ।

ବୀଣା - ମୁଁ କହୁଛି, ଆପଣ ଆଉ ମୋତେ ଚିଡ଼ାନ୍ତୁ ନାହିଁ ।

ପଙ୍କଜ - ସତେ, ତମେ ଯେମିତି ଚିଡ଼ିବାକୁ ଆରମ୍ଭ କଲଣି, ଜ୍ଞାନ ଯଦି ଏଠିଥା'ନ୍ତା...

ବୀଣା - କାହାନ୍ତି ସେ ?

ଭାସ୍କର - ବିଚରାକୁ ଆଜି ଜର ହୋଇଗଲା ।

ଉର୍ବଶୀ - (ଚମକି) ଜର ହୋଇଛି ।

ଭାସ୍କର - ଆଜି ସକାଳୁ ସେ ହସ୍‌ପିଟାଲ୍‌ରେ ଭର୍ତ୍ତି ହେଲାଣି, ତୁମେ ଜାଣନା ?

ଉର୍ବଶୀ - ମୁଁ ? ମୁଁ...କାହିଁକି ଜାଣନ୍ତି - ମୋର ତ ଆଜି ସାର୍ଜିକାଲ ୱାର୍ଡ଼୍‌ରେ ଡିଉଟି ଥିଲା ।

(କିଛିକ୍ଷଣପାଇଁ ସମସ୍ତେ ନୀରବ ।)

ପଙ୍କଜ - କ'ଣ ହେଲା ଆଜି ? ବସ୍‌ର ଦେଖାନାହିଁ କାହିଁକି ?

ଉର୍ବଶୀ - ମୁଁ କହୁଚି ବୀଣା, ବସ୍ ପାଇଲେ ବି ଆମେ ଠିକ୍ ସମୟରେ ପହଞ୍ଚିପାରିବା ନାହିଁ ।

ବୀଣା - ସିନେମା କ'ଣ ଆରମ୍ଭ ହୋଇଯିବଣି ?

ଭାସ୍କର - ହଁ, ହଁ ପ୍ରାୟ ପାଞ୍ଚମିନିଟ୍ ହବ ଆରମ୍ଭ ହୋଇଯିବଣି ।

ଉର୍ବଶୀ - ତା'ହେଲେ ଆଜି ଆଉ ଯାଇ ଲାଭନାହିଁ ।

ବୀଣା - କ'ଣ ତେବେ କରିବା ?

ଉର୍ବଶୀ - ଚାଲ୍ ହଷ୍ଟେଲ୍‌କୁ ଫେରିଯିବା - ସିନେମା ଆରମ୍ଭ ହୋଇଯାଇଥିଲେ ମୋତେ ଦେଖିବାକୁ ଭଲ ଲାଗେନି ।

ବୀଣା - ଫେରିଯିବା ? ହଉ ତେବେ ଚାଲ । ଆପଣମାନେ ବି ଆସନ୍ତୁ ଭାସ୍କର ବାବୁ, ବସ୍ ଆଜି ଆସିବ ନାହିଁ ।

(ଦୁହେଁ ଫେରିଗଲେ ।)

ପଙ୍କଜ - କ'ଣ ହେଲା ? ଆସିବ ନାହିଁ ! ବସ୍ ନଆସିଲେ ମୁଁ ଏସୋସିଏସନ୍ ନାଁରେ କେଶ୍ କରିଦେବି ।.....ଉର୍ବଶୀକୁ ଦେଖିଲୁ ତ ଭାସ୍କର ?

ଭାସ୍କର - ଦେଖିଲି ବୋଲି ତ ସିନେମା ଆରମ୍ଭ ହୋଇଗଲାଣି ବୋଲି ମିଛ କହି ହଷ୍ଟେଲ୍‌କୁ ଫେରେଇଦେଲି ।

ପଙ୍କଜ - କଥାଟା କିନ୍ତୁ ଭଲହେଲାନାହିଁ । ବିଚରା ଟିକେ ସିନେମା ଦେଖିଥା'ନ୍ତା - ତା'ର ଆଜିର ସନ୍ଧ୍ୟାଟାକୁ ତୁ ମାଟି କରିଦେଲୁ ?

ଭାସ୍କର - ନା-ନା (ଆବୃତ୍ତି ଭଙ୍ଗୀରେ)

ଆଜିର ସନ୍ଧ୍ୟା ହେଇନାହିଁ
ତା'ର ବସ୍ ଚଢ଼ିବାପାଇଁ ।
ଆଜିର ସନ୍ଧ୍ୟା ହେଇନାହିଁ
ତା'ର ସିନେମା ଦେଖିବାପାଇଁ
ଚିନାବାଦାମ ଖାଇବାପାଇଁ ।

ପଙ୍କଜ - ତେବେ ?

ଭାସ୍କର - ଆଜି ଏ ସନ୍ଧ୍ୟା ଆଜି ଏ ରାତି,
ଆମେ ସିନା ଭାଇ ବଜାର ଯାତ୍ରୀ,
ସିଏ କିନ୍ତୁ ତା'ର ଇନ୍‌ଫ୍ଲୁଏନ୍‌ଜା - ଦଗ୍ଧ - ପ୍ରିୟର ବ୍ୟଥା,
ଗିମୁଭ କରିବ,
କାନେ କାନେ କହି ଆସ୍ୱପ୍ନୋ - ନିନ୍ଦିତ କଥା,
ତେଣୁ କହେ ଆରେ ଭାଇ, ଆଜିର ସନ୍ଧ୍ୟା....

ପଙ୍କଜ - ଏଇ ଦେଖ ଆମ ବସ୍ ଆସୁଚି ଧାଇଁ ?

(ଚାଲିଗଲେ)

## ତୃତୀୟ ଦୃଶ୍ୟ

(ଡାକ୍ତରଖାନାର ଗୋଟିଏ କେବିନ୍ । ଜ୍ଞାନୀନ୍ଦ୍ର ଶୋଇଛି । ନିଃଶବ୍ଦରେ ଦରଜା ଖୋଲି ଉର୍ବଶୀ ଆସିଲା । କିଛି ସମୟ ସେ ମୁଗ୍ଧ ଅଥଚ କରୁଣ ଦୃଷ୍ଟିରେ ଜ୍ଞାନୀନ୍ଦ୍ରର ଶାନ୍ତ ମୁଖଛବିକୁ ଦେଖିବାକୁ ଲାଗିଲା - ତା'ପରେ ଖଟ ଉପରେ ବସି ଧୀରେ ଧୀରେ ଜ୍ଞାନୀନ୍ଦ୍ରର କପୋଳ ଆଉଁସିବାରେ ଲାଗିଲା । ଟିକିଏ ପରେ ଜ୍ଞାନୀନ୍ଦ୍ର ଆଖିମେଲି ଚାହିଁଲା - ପର ମୁହୂର୍ତ୍ତରେ ତା' ହାତମୁଠା ଭିତରେ ରହିଲା ଉର୍ବଶୀର ହାତ ।)

ଜ୍ଞାନ - କେତେବେଳୁ ଆସିଲଣି ଉର୍ବଶୀ ?

ଉର - ଏଇ ଅଳ୍ପ ସମୟ ହେଲା ଆସିଲି । ଏ କ'ଣ ? ତୁମେ ଉଠିଲ କାହିଁକି - ଶୁଅ ।

ଜ୍ଞାନ - ଶୋଇବି ? କାହିଁକି ? ବର୍ତ୍ତମାନ ତ ଜରନାହିଁ ।

ଉର - କିନ୍ତୁ ଏ ଜର ହେଲା କାହିଁକି ?

ଜ୍ଞାନ - କାହିଁକି ଆଉ କ'ଣ ! ବର୍ତ୍ତମାନ କେତେଟା ବାଜିବ ?

ଉର - ପ୍ରାୟ ବାରଟା ।

ଜ୍ଞାନ - ବାରଟା ! ରାତି ବାରଟା ବେଳେ, ତୁମେ ମୋ ନିକଟକୁ ଆସିଛ !

ଉର - ସନ୍ଧ୍ୟାବେଳେ ମୁଁ ଆସିଥିଲି, ତୁମେ ତ ଏଠି ନଥିଲ ।

ଜ୍ଞାନ - ଶୋଇ ଶୋଇ ଭଲ ଲାଗିଲାନି - ହଷ୍ଟେଲ୍ ଆଡ଼େ ଟିକେ ବୁଲିଯାଇଥିଲି ।

ଉର - ସକାଳୁ ଏଠିକି ଆସିଲଣି, ମୋତେ ଡାକି ପଠେଇଥିଲେ କ'ଣ କ୍ଷତି ହୋଇଯାଉଥିଲା ଯେ ?

ଜ୍ଞାନ - ଲାଭ ତ କିଛି ହେଇନଥା'ନ୍ତା । ମୁଁ ଡାକିଥିଲେ ତମେ ଆସିଥା'ନ୍ତ । ମୁଁ ଡାକି ନାହିଁ, ତୁମେ ଆସିଚ । କେବଳ ଆସିବାଟା ହିଁ ଯେତେବେଳେ ସବୁ - ସେତେବେଳେ ତୁମକୁ ଡାକିବା ନଡାକିବା ମୋ ପକ୍ଷେ ଦୁଇଟା ସମାନ ।

ଉର - ଏ ଅଭିମାନ ତୁମେ କାହିଁକି କରୁଚ କହିଲ ?

ଜ୍ଞାନ - ତୁମେ ଯଦି ବୁଝୁଥାଅ ଉର୍ବଶୀ ମୁଁ ଯେ ଅଭିମାନ କରୁଚି, ତେବେ ଏ ପ୍ରଶ୍ନ ପଚାରିବା ତୁମର ଉଚିତ୍ ନୁହେଁ । ଯେ ପର୍ଯ୍ୟନ୍ତ ମଣିଷ କିଛି ପାଇବାର ଆଶା ରଖେ ସେ ଯାଏଁ ସେ ଅଭିମାନ କରେ । ଆଉ ଏଇ ଯେ ଅଭିମାନ, ଯା'ର ନଗ୍ନ ରୂପ କ'ଣ ଜାଣ ? ଭିକ୍ଷା - ଅଳି ।

ଉର - ତୁମେ ବୁଝିପାରୁନ ଜ୍ଞାନୀନ୍ଦ୍ର, ତୁମେ ନିଜକୁ ନିଜଠାରୁ କେତେ ଦୂରକୁ ଟାଣିନଉଚ ।

ଜ୍ଞାନ - ମିଛକଥା ଉର୍ବଶୀ, ମୁଁ ନିଜକୁ ନିଜଠାରୁ ଦୂରେଇ ଟାଣିନଉନି । ଅଭିମାନ ଛଳରେ ଭିକ୍ଷାପାତ୍ର ହାତରେ ଧରି ମୁଁ ନିଜକୁ ଟାଣିଆଣିଚି କେବଳ ତୁମରି ପାଖକୁ ।

ଉର - ପାଞ୍ଚବର୍ଷର ପିଲା ପରି ତୁମେ ଜିଦ୍ ଧରିବସିଲେ ମୋର ଚାରା କ'ଣ ?

ଜ୍ଞାନ - ପାଞ୍ଚବର୍ଷର ପିଲା ହୋଇଥିଲେ ମୋତେ ହୁଏତ ତୁମେ ଆମ୍ବ ଛଳରେ ଆମ୍ବଡ଼ା ଦେଇ ସନ୍ତୁଷ୍ଟ କରିପାରିଥା'ନ୍ତ ।

ଉର - କ'ଣ କହି, କି ଉପାୟରେ ତୁମକୁ ମୋର ଅସହାୟ ଅବସ୍ଥାଟା ବୁଝାଇବି, ତା' ମୁଁ ନିଜେ ବୁଝିପାରୁନାହିଁ ।

ଜ୍ଞାନ - କିନ୍ତୁ ଉର୍ବଶୀ, ତୁମେ ଶୁଣି ହୁଏତ ଆଶ୍ଚର୍ଯ୍ୟ ହେବ ଯେ, ତୁମ ଅବସ୍ଥା କଥା ତୁମ ଅପେକ୍ଷା ମୁଁ ବେଶୀ ଜାଣେ । ତମ ଭିତରେ ଆଜି ଲାଗିରହିଛି ଗୋଟିଏ ଦ୍ୱନ୍ଦ୍ୱ । ଗୋଟାଏ ପାଖରେ ତୁମର ଆଦର୍ଶ, ଅନ୍ୟ ପାଖରେ ମୁଁ - ମୋର ପ୍ରେମ । ମୋର ହାତଧରି ବାଟ ଚାଲିଲେ ତୁମକୁ ହୁଏତ ତୁମ ଆଦର୍ଶରୁ ବାହାରି ଯିବାକୁ ପଡ଼ିବ- ଆଉ ଏଣେ ସାମାଜିକ ଘାତ-ପ୍ରତିଘାତରେ ପଡ଼ି କାଳେ ମୋତେ ଦିନେ ହରେଇବସିବ ଏଇ ଆଶଙ୍କା ହୋଇଛି ତୁମ ଅବସ୍ଥାର କାରଣ । ଅଥଚ ତୁମେ ତମ ଆଦର୍ଶକୁ ବାଦ୍‌ଦେଇ ପାରୁନ କି ମତେ ମଧ୍ୟ ବାଦ୍ ଦେଇ ପାରୁନ, କାରଣ ତୁମ ପାଖରେ ଆଜି ଦୁଇଟାଯାକ ବଡ଼ - ଦୁହିଁଙ୍କର ମୂଲ୍ୟ ଅଛି - ମର୍ଯ୍ୟାଦା ଅଛି ।

ଉର - ମୁଁ ଜାଣେ, ଜାଣେ - ସବୁ ଜାଣେ, ସବୁ ବୁଝିଛି । ଆଉ ତୁମକୁ ତ ମୁଁ କହିଛି, ଏସବୁ କଥା ମୋତେ ବୁଝେଇ ଲାଭନାହିଁ ।

ଜ୍ଞାନ - ତୁମକୁ ବୁଝେଇ ଲାଭନାହିଁ, ତୁମ ପାଖରେ ଅଳି କରି ଲାଭନାହିଁ, ତମ ପାଖରେ ଦାବି କରି ଲାଭନାହିଁ । ଲାଭ ଅଛି କେବଳ ତୁମରି ଜଡ଼ ପାଷାଣ ହୃଦୟର ଜଡ଼ତାକୁ ବୋକାଙ୍କ ଭଳି ସ୍ୱୀକାର କରିନେବାରେ ।

ଉର - ଆଃ, ଚିତ୍‌କାର କରନାହିଁ ଜ୍ଞାନୀନ୍ଦ୍ର ! ଏ ପାଖରେ ୱାର୍ଡ୍‌, ସେଠି ରୋଗୀ ଅଛନ୍ତି ।

ଜ୍ଞାନ - ମୁଁ ଜାଣେ ସେଠି ରୋଗୀ ଅଛନ୍ତି, ରୋଗ ଯନ୍ତ୍ରଣାରେ ସେମାନେ ବି ଚିତ୍କାର କରୁଛନ୍ତି । ସେମାନଙ୍କର ଚିତ୍କାରକୁ ତୁମେ ମାନିନେଇପାର - ଅଥଚ ମୋ ଚିତ୍କାର ତୁମକୁ ବାଧୁଚି ।

ଉର - ମୋର ଆଜି ଏଠିକି ଆସିବାଟା ହିଁ ଭୁଲ୍‌ ହୋଇଛି ।

ଜ୍ଞାନ - ଖାଲି ସେତିକି ନୁହେଁ, ତୁମର ଏଠିକି ନର୍ସ୍‌ ହୋଇ ଆସିବାଟା ମଧ ଭୁଲ୍‌ ହୋଇଛି - ଆଉ ସବୁଠୁଁ ବଡ଼ ଭୁଲ୍‌ହୋଇଛି - ମୋତେ ତୁମେ....

ଉର - ମୋର ତୁମକୁ ଭଲପାଇବା ! କିନ୍ତୁ ମୋର ମନ ଯଦି ମୋର ଇଚ୍ଛା ବିରୁଦ୍ଧରେ ଯାଇଥାଏ, ସେଥିପାଇଁ ତ ଦାୟୀ ମୋର ମନ ନୁହେଁ, ଦାୟୀ ମୋର ମନର ବିଧାତା । ମୁଁ ତୁମକୁ ଇଚ୍ଛା କରି ଭଲପାଇନି ଜ୍ଞାନୀନ୍ଦ୍ର । ନିଜକୁ ଛୋଟ ହୀନ ନଗଣ୍ୟ ମନେକରି ତୁମଠୁ ଦୂରେଇଯିବାକୁ ଇଚ୍ଛା କରିଛି, କିନ୍ତୁ ପାରିନାହିଁ । ତଥାପି ତୁମେ ଯଦି କହିବ ଯେ ମୁଁ ଭୁଲ୍‌ କରିଛି, ତେବେ ତୁମେ ହିଁ ମୋତେ ସଂଶୋଧନର ବାଟ ବତେଇଦିଅ - ମୁଁ ଆଜି ମୋର ବିଚାର ବୁଦ୍ଧି ସବୁ ହରେଇବସିଛି ।

ଜ୍ଞାନ - (ଦୂରକୁ ଅନାଇ) ଏଇ ଦେଖିପାରୁଛ ଉର୍ବଶୀ, ଖୁବ୍‌ ଦୂରରେ ସେଇ ଯେ ଆଲୁଅଟି ଜଳୁଛି ! ! ମୁଁ ନିଜେ ବର୍ତ୍ତମାନ ଅନ୍ଧକାରର ଯାତ୍ରୀ । କିନ୍ତୁ ଏଇ ଅସୀମ ଅନ୍ଧକାର ଭିତରେ ମୋ ପାଇଁ ଯେମିତି ଜଳିରହିଛି ସେଇ ଆଲୁଅଟି । ତାକୁଇ ଲକ୍ଷ୍ୟକରି ମୋତେ ବାଟି ଚାଲିବାକୁ ହେବ । ଠିକ୍‌ ଏତିକିବେଳେ ତୁମେ ଯଦି ତୁମପାଇଁ ମତେ ବାଟ ଖୋଜିଦେବାକୁ କୁହ, ତା'ହେଲେ ତୁମର ହାତ ଧରି ସେଇ ଆଲୁଅକୁ ଲକ୍ଷ୍ୟକରି ବାଟ ଚାଲିବା ଛଡ଼ା ମୋର ତ ଆଉ ଅନ୍ୟ ଉପାୟ ନାହିଁ ।

ଉର୍ବଶୀ - ତୁମ ପାଖରେ ମୁଁ ଯେତିକି ଦୃଢ଼ ହୋଇ ଠିଆହେଉଛି ଜ୍ଞାନୀନ୍ଦ୍ର, ସେତିକି ହାରିଯାଉଛି ।

ଜ୍ଞାନ - ଏଠି ତୁମର ହାରିଯିବାହିଁ ଗୌରବ ଉର୍ବଶୀ ! ସେଦିନ ଡା.ଦାସ କହୁଥିଲେ - ଉର୍ବଶୀ କୁଳବଧୂ ନହୋଇ ନର୍ସ୍‌ ହେଲା କାହିଁକି ?

ଉର୍ବଶୀ - ଏ ଦେଶର ତ ପ୍ରାୟ ସବୁ ଝିଅ କୁଳବଧୂ ହେଉଛନ୍ତି, ନର୍ସ୍‌ ହେଉଛନ୍ତି କେତେଜଣ ?

ଜ୍ଞାନ - କିନ୍ତୁ ମୁଁ ପଚାରେ ଉର୍ବଶୀ, ଯେଉଁ କେତେଜଣ ଏଠିକି ନର୍ସ୍‌ ହେବାପାଇଁ ଆସୁଛନ୍ତି, ସେମାନଙ୍କ ଭିତରୁ କୁଳବଧୂ ହବାର - ବିବାହ କରିବାର ଯୋଗ୍ୟତା ଅଛି କେତେଜଣଙ୍କର ?

ଉର - ନା -ନା, ତୁମେ ଜାଣନା ଜ୍ଞାନୀନ୍ଦ୍ର, ବିବାହ କରିବାର କୌଣସି ଯୋଗ୍ୟତା ମୋରନାହିଁ ।

ଜ୍ଞାନ - ଅଛି, ମୁଁ କହୁଛି ଅଛି । ବିବାହ କରିବାର ଯୋଗ୍ୟତା ଯଦି ତୁମର ନଥାଏ, ତା'ହେଲେ ମୁଁ କହିବି ଏ ଦେଶରେ କୌଣସି ଝିଅ ବିବାହର ଯୋଗ୍ୟାନୁହେଁ ।

ଉର - ନା ଜ୍ଞାନୀନ୍ଦ୍ର ଏ ବିବାହ ହୋଇପାରେନା ।

ଜ୍ଞାନ - ଉର୍ବଶୀ ! ବାରମ୍ୱାର ତୁମେ ମୋର ପ୍ରେମର ଆନ୍ତରିକତାକୁ - ପ୍ରାଣର ପ୍ରାଚୁର୍ଯ୍ୟକୁ ଯେପରି ଭାବରେ ଅବହେଳା କରିଯାଉଛ, ଆଉ କେହି ହୋଇଥିଲେ ତୁମକୁ କିଡ୍‌ନାପ୍ କରି ନେଇ ଗୋଟାଏ ଘରେ ବନ୍ଦ କରି ରଖି, ଜୋର୍ କରି ତୁମଠୁ କଥା ଆଦାୟ କରନ୍ତା ।

ଉର - (ହସି) ଆଉ ସେଥିରେ ଯଦି କିଛି ଫଳ ନହୁଏ, ତା'ହେଲେ ଶେଷକୁ ମତେ ଖୁନ୍ କରନ୍ତା - ଏଇଆ ନା ?

ଜ୍ଞାନ - ମୁଁ ଆଉ କିଛି କହିପାରୁନି ଉର୍ବଶୀ, ମୋର ସମସ୍ତ ମନଟା କେବଳ ବିଷାକ୍ତ ହୋଇଉଠୁଛି ।

ଉର - ତୁମ ମନର ସମସ୍ତ ବିଷକୁ ମୋ ଦେହକୁ ଟାଣିଆଣି ହସି ହସି ମରିବାରେ ମୋର ଆନନ୍ଦ ଅଛି ଜ୍ଞାନୀନ୍ଦ୍ର ।

ଜ୍ଞାନ - ତୁମର ସବୁ ଅଛି, ଉର୍ବଶୀ ତୁମେ ସବୁ କରିପାର- ହସିପାର, କାନ୍ଦିପାର, ମରିପାର- ଖାଲି ପାରନା ମତେ ବିବାହ କରି ।

ଉର - ନା, ତା'ପାରେନା ।

ଜ୍ଞାନ - କିନ୍ତୁ କାହିଁକି ? କି ଅପରାଧ ମୁଁ କରିଛି ? ମୁଁ ଜାଣେ ତୁମେ ମତେ ଭଲପାଅ । ମୁଁ ଜାଣେ ତୁମ କଠୋର ନିର୍ମମ ହୃଦୟର ଅନ୍ୟ ପାଖରେ ମୋ ପାଇଁ ଭରିରହିଛି ସ୍ନେହର ସ୍ୱର୍ଣ୍ଣ ସମୁଦ୍ର । ତଥାପି କାହିଁକି -କାହିଁକି.....

ଉର - ମୋତେ କ୍ଷମା କର ଜ୍ଞାନୀନ୍ଦ୍ର - ମୁଁ ଯା'ର କୌଣସି ଉତ୍ତର ଦେଇପାରିବି ନାହିଁ ।

ଜ୍ଞାନ - (ଉର୍ବଶୀକୁ ଧରି) ତା ହୋଇପାରେନା, ମୁଁ ଆଜି ସବୁକଥା ସ୍ପଷ୍ଟ ଜାଣିବାକୁ ଚାହେଁ, କୁହ କାହିଁକି ତୁମେ ପାରିବନାହିଁ ?

ଉର - ଏ ତୁମେ କ'ଣ କହୁଛ ? ତୁମେ ଭୁଲିଯାଉଛ ତୁମେ କିଏ ? ତୁମେ କେଉଁଠି ?

ଜ୍ଞାନ - (ପ୍ରକୃତିସ୍ଥ ହୋଇ) ଓଃ, ଆଚ୍ଛା । ତୁମେ ଆସ ମୋ ସାଥିରେ !

ଉର - କେଉଁଠିକି ?

ଜ୍ଞାନ - ପ୍ରଶ୍ନ କରନା, ଚୁପ୍ କରି ଚାଲିଆସ । ଆସ କହୁଛି ଆସ (ହାତଧରି ଟାଣି ନେଇଗଲା)

## ଚତୁର୍ଥ ଦୃଶ୍ୟ

(ମଙ୍ଗଳାବାଗ୍ ଛକ । ଭାସ୍କର ଓ ପଙ୍କଜ ଆସିଲେ । ପୂର୍ବ ଦୃଶ୍ୟର ପରମୁହୂର୍ତ୍ତର ଘଟଣା ।)

ଭାସ୍କର - ବେଶ୍ ରସଗ୍ରାହୀ ଲୋକ ଏକା ଏଇ ଡା.ଦାସ ।

ପଙ୍କଜ - ଆମ ପରି ଦୁଇଜଣ ରସଜ୍ଞାନ - ବିହୀନ ଟୋକାଙ୍କୁ ତାଙ୍କ ମଟରରେ ଗୋଟାଏ

ଲିଫ୍‌ଟ ଦେଇ ଆଣି ମଙ୍ଗଳାବାଗ ଛକରେ ଛାଡ଼ିଦେଇ ଯିବାଦ୍ୱାରା ସେ ଯେ କି ରସ ଗ୍ରହଣ କଲେ ମୁଁ ବୁଝିପାରୁନି ।

ଭାସ୍କର - ମୁଁ ସେ ରସ କଥା କହୁନାହିଁ ।

ପଙ୍କଜ - ତେବେ ?

ଭାସ୍କର - ଆଗେ ଖଣ୍ଡେ ସିଗ୍ରେଟ୍ ବାହାର କର । (ସିଗ୍ରେଟ୍ ଲଗାଇ) ମୁଁ ଦୀପ୍ତି ଦାସର ନାଚ କଥା କହୁଛି । ସେଇ ଯେଉଁ ଗୀତଟା ଗାଇ ଗାଇ ସେ ନାଚିଲା - "ରାଜପଥେ ତୁମେ ଆସନା ହେ ବନ୍ଧୁ , ଆସନା ପ୍ରଖର ଆଲୋକେ ।"

ପଙ୍କଜ - କିନ୍ତୁ ଏଇ ଅପ୍ରଖର ଛାପିଛାପିକା ଆଲୁଅରେ ଡାକ୍ତରଖାନା ଗେଟ୍ ଭିତରୁ ବାହାରି ଏମାନେ କିଏ ଯାଉଛନ୍ତି ଦେଖିଲୁ ?

ଭାସ୍କର - (ଆଶ୍ଚର୍ଯ୍ୟରେ) ଆରେ, ଏ କ'ଣ ? ଜ୍ଞାନୀନ୍ଦ୍ର ଆଉ ଉର୍ବଶୀ ।

ପଙ୍କଜ - କିନ୍ତୁ ଜ୍ଞାନୀନ୍ଦ୍ର ପରା ଆଜି ପେସେଣ୍ଟ୍ ?

ଭାସ୍କର - ପେସେଣ୍ଟ୍ ନୁହେଁ ବନ୍ଧୁ ଇମ୍‌ପେସେଣ୍ଟ୍ । ଇମ୍‌ପେସେଣ୍ଟ୍ ହୋଇ ସେ ହଷ୍ଟେଲ୍ ଛାଡ଼ି ଆଜି ପଳାଇ ଆସିଥିଲା ୱାର୍ଡ୍‌କୁ, ଉର୍ବଶୀ ସହିତ ଗୋଟାଏ ସମାଧାନ କରିବାକୁ ।

ପଙ୍କଜ - ଏତେ ବଡ଼ ଗୋଟାଏ ହସ୍‌ପିଟାଲ୍ ଥାଉ ଥାଉ ସେମାନଙ୍କୁ ସମାଧାନ ପାଇଁ ସ୍ଥାନ ମିଳିଲାନାହିଁ ଯେ, ସେମାନେ ଏହି କାଠଗୋଲା ଭିତରକୁ ଚାଲିଛନ୍ତି ।

ଭାସ୍କର - ଲଣ୍ଡନର ଦଶନମ୍ବର ଡାଉନିଂ ଷ୍ଟ୍ରିଟ୍ ଆଉ ୱାସିଂଟନ୍‌ର ହ୍ୱାଇଟ୍ ହଲ୍ ଥାଉ ଥାଉ ଚର୍ଚ୍ଚିଲ୍ ଓ ରୁଜ୍‌ଭେଲ୍‌ଟ ସମୁଦ୍ର ଭିତରେ ଗୋଟାଏ ଜାହାଜରେ ବସି ଆଟ୍‌ଲାଣ୍ଟିକ୍ ଚାର୍ଟର୍‌ରେ ଦସ୍ତଖତ କରିଥିଲେ । ମାନସିଂଙ୍କ କାବ୍ୟ-ନାୟିକାର ମିଳନସ୍ଥଳୀ ଥିଲା ସହକାର ତଳ । କେଦାର-ଗୌରୀଙ୍କ କଥା ତ ଜାଣୁ....ଘନଘୋର ଜଙ୍ଗଲରେ ତାଙ୍କର ମିଳନ ସମ୍ଭବ ହୋଇଥିଲା । ଏ ଅବସ୍ଥାରେ ଜ୍ଞାନୀନ୍ଦ୍ର ଆଉ ଉର୍ବଶୀ.... କିନ୍ତୁ ସେମାନେ ତ କାଠଗୋଲା ଛାଡ଼ି କ'ଣ ସେ ଜଙ୍ଗଲିଆ ରାସ୍ତା ଭିତରେ ପଶିଲେଣି ?

ପଙ୍କଜ - ସେମାନେ ତା'ହେଲେ ମହାନଦୀ କୂଳରେ - ସେହି ଛୋଟ ଘାଟଟିରେ ଯାଇ ପହଞ୍ଚିବେ ।

ଭାସ୍କର - ସେ ଘାଟ ଯଦି ଯିବେ, ତା'ହେଲେ ଆଉ ଟିକେ ଆଗକୁ ନଯିବେ କାହିଁକି ? ? ଯୋବ୍ରା ପର୍ଯ୍ୟନ୍ତ ! !

ପଙ୍କଜ - ଯୋବ୍ରା ପର୍ଯ୍ୟନ୍ତ ଯଦି ଯିବେ, ତେବେ ଆନିକଟ ପାଖ ପୋଲ ଉପରେ ଯାଇ ବସିବେ ।

ଭାସ୍କର - ଆନିକଟ ପାଖ ସେ ବାଲି ଜାଗାଟା ଏକା ଭାରି ସୁନ୍ଦର !

ପଙ୍କଜ - ବାଲିକୁ ଯଦି ଯିବେ, ତେବେ ସେ ବାଲି ଉପରେ ଚାଲି ଚାଲି ମହାନଦୀ ପର୍ଯ୍ୟନ୍ତ ନଯିବେ କାହିଁକି ? ପୋଲ ଉପରେ ଟ୍ରେନ୍ ଚାଲୁଥିଲାବେଳେ ସେମାନଙ୍କ ହୃଦୟ ଦୁର୍ ଦୁର୍ ହୋଇ କମ୍ପି ଉଠୁଥିବ - ବେଶ୍ ରୋମାଣ୍ଟିକ୍ ! ଅତଏବ ଭାସ୍କର ସେମାନେ ପୋଲ

ପର୍ଯ୍ୟନ୍ତ ଯା'ନ୍ତୁ ।

ଭାସ୍କର - ଯା'ନ୍ତୁ, ଯା'ନ୍ତୁ ପଙ୍କଜ । ଖାଲି ପୋଲ ପର୍ଯ୍ୟନ୍ତ କାହିଁକି ପୋଲ ପାରିହୋଇ ଯାଇ କାଳିଆବୋଦା ମଶାଣିରେ ବସି ମଶାଣି ଚଣ୍ଡୀଙ୍କ ପୂଜା କଲେ ମଧ ମୋର ଆପତ୍ତି ନାହିଁ, ସେମାନେ ଯା'ନ୍ତୁ ।

(ଏତିକିବେଳେ ଟଳିଟଳି ଜଣେ ମାତାଲ ଆସିଲା ।)

ମାତାଲ - ବଂଧୁଗଣ ! ମୁଁ ଠିକ୍ ରାସ୍ତାରେ ଚାଲିଚି ତ ?

ଭାସ୍କର - ଏକଦମ୍ ଠିକ୍ ରାସ୍ତାରେ । ଏଇ ସାମ୍ନାରେ ଡାକ୍ତରଖାନା ଗେଟ୍ ଦେଖାଯାଉଚି ।

ପଙ୍କଜ - ଡାକ୍ତରଖାନାରେ ପହଞ୍ଚିଲା ମାତ୍ରେ ଡିଉଟି ଅଫିସର୍ ଏକାପାନକେ ସବୁ ଠିକ୍ କରିଦେବ ।

ମାତାଲ - ଧେତ୍ତରି ! ମତେ କ'ଣ ମରିବାକୁ ଜାଗା ମିଳୁନାହିଁ ଯେ ଡାକ୍ତରଖାନାକୁ ଯିବି ?

ଭାସ୍କର - ତେବେ ଆଉ କୁଆଡ଼େ ଯିବ ବନ୍ଧୁ ?

ମାତାଲ - ବନ୍ଧୁ ! ସରି, ଭେରି ସରି, ବନ୍ଧୁ ବୋଲି କାହିଁକି ଡାକିଲ ? ପାଖରେ ତ ଗୋଟାଏ ବୋଲି ସିଗ୍ରେଟ୍ ନାହିଁ । ବୋତଲ ବି ଖାଲି ।

ପଙ୍କଜ - କୁଆଡ଼େ ଯିବ ତେବେ ?

ମାତାଲ - ମହାନଦୀ କୂଳକୁ ।

ଭାସ୍କର - କାହିଁକି ?

ମାତାଲ - ହାୱା ଖାଇବାକୁ ।

ପଙ୍କଜ - ହାୱାରେ ତ ଉଡୁଚ ? ଆଉ ହାୱା ଦରକାର କ'ଣ ?

ଭାସ୍କର - ମହାନଦୀ କୂଳରେ ଆଉ କ'ଣ ହାୱା ଅଛି ? ସବୁ ଏ ଆଡ଼କୁ ବହିଆସିଲାଣି ।

ମାତାଲ - ଝୁଟ୍ ବୋଲ୍ତେ ହୋ - ଏଇ ଯେ ଦୁଇଜଣ ହାୱା ଖାଇବାକୁ ଗଲେ ମୁଁ ଜରୁର୍ ଯିବି । (ଆଗେଇଲା)

ଭାସ୍କର - ସିଗ୍ରେଟ୍ ପ୍ଲିଜ୍ (ମାତାଲର ମୁହଁ ପାଖରେ ସିଗ୍ରେଟ୍ ଦେଖାଇଲା ।)

ମାତାଲ - ସୁକ୍ରିୟା ! ! ମ୍ୟାଚିସ୍ ପ୍ଲିଜ୍ ।

ଭାସ୍କର - (ଦିଆସିଲି ମାରିବାକୁ ଯାଇ) ଇସ୍ ତରଫ୍‌ସେ ହାୱା ଆତା ହେ -

ପଙ୍କଜ - ଇସ୍ ତରଫ୍‌ସେ ଯାତା ହେ -

ଭାସ୍କର - ଜେରା ଘୁମ୍ ଯାଇଏ ।

(ମାତାଲକୁ ବୁଲେଇଦେଇ ଦିଆସିଲି ମାରି ସିଗ୍ରେଟ୍ ଧରାଇଦେଲା । ଫଳରେ ମାତାଲ ଯେଉଁଆଡୁ ଆସିଥିଲା, ସେଇଆଡ଼କୁ ପୁଣି ଯିବାକୁ ଲାଗିଲା ।)

ମାତାଲ - ମୁଁ ଠିକ୍ ରାସ୍ତାରେ ଚାଲିଛି ତ ?

ଭାସ୍କର - ବିଲ୍‌କୁଲ୍ ଠିକ୍ ରାସ୍ତାରେ - ମଙ୍ଗଳାବାଗ୍ ଥାନା ଭିତରେ ବସି ହାୱା ଖାଉଥିବ । (ମାତାଲର ପ୍ରସ୍ଥାନ)

ପଙ୍କଜ - ବିଚରାକୁ କାହିଁକି ଭଲା ଇମିତି ହଇରାଣରେ ପକାଇଲୁ ?

ଭାସ୍କର - ଆରେ ସେ ମହାନଦୀ କୂଳକୁ ଯିବାକୁ ବସିଥିଲା ଯେ ! ଇମିତି ଦି'ଚାରିଜଣ ଯଦି ସେଠିକି ହାୱା ଖାଇବାକୁ ଯା'ନ୍ତି ତେବେ ସେମାନଙ୍କ ଅବସ୍ଥା କ'ଣ ହବ କହିଲୁ ? ...ପଙ୍କଜ ଚାଲ ଆମେ ଯିବା ।

ପଙ୍କଜ - କୋଉଠିକି ?

ଭାସ୍କର - ମହାନଦୀ କୂଳକୁ ।

ପଙ୍କଜ - ତୋର ବି କ'ଣ ହାୱା ଖାଇବାକୁ ଇଚ୍ଛା ହେଲାଣି ?

ଭାସ୍କର - ହଁ ।

ପଙ୍କଜ - ମାନେ·।

ଭାସ୍କର - ଆଇନ୍ ଷ୍ଟାଇନ୍‌ଙ୍କ ଥିଓରି ଅଫ୍ ରିଲେଟିଭିଟି ହେଇଛି ଯେ ମାନେ ବୁଝିପାରୁନୁ ? ରାତି ବାରଟାବେଳେ ଏମାନେ ମହାନଦୀ କୂଳକୁ ଯିବେ, କେତେବେଳେ ଯେ କି ବିପଦ ଆସି ପହଞ୍ଚିବ ।

ପଙ୍କଜ - ରାମ ସୀତାଙ୍କର କୁଟୀର ଦ୍ୱାର ଜଗି ରହୁଥିଲେ ଲକ୍ଷ୍ମଣ । କୁଞ୍ଜ ଦୁଆରେ ରାଧାକୃଷ୍ଣଙ୍କୁ ଜଗି ରହୁଥିଲେ ଲଳିତା । କିନ୍ତୁ ବନ୍ଧୁ, ମହାନଦୀ କୂଳରେ କୁଞ୍ଜନାହିଁ କି କୁଟୀର ନାହିଁ । ବିଲ୍‌କୁଲ୍ ଫାଙ୍କା ଜାଗା ।

ଭାସ୍କର - ଅଭଦ୍ରତା ଓ ଅସଭ୍ୟତାର ମାନେ ମୁଁ ବୁଝେ ପଙ୍କଜ, ଆଉ ଜ୍ଞାନୀନ୍ଦ୍ର ଓ ଉର୍ବଶୀକୁ ମୁଁ ଚିହ୍ନେ - ତୁ ବିନା ବାକ୍ୟବ୍ୟୟରେ ମୋ ପିଛା ଧର୍ ।

(ଦୁହେଁ ମହାନଦୀ କୂଳଆଡ଼େ ଗଲେ)

## ପଞ୍ଚମ ଦୃଶ୍ୟ

(ମହାନଦୀ କୂଳ, ଉର୍ବଶୀ ଓ ଜ୍ଞାନୀନ୍ଦ୍ର ଠିଆହୋଇ ରହିଛନ୍ତି ।)

ଉର୍ବଶୀ - ତୁମେ କ'ଣ ବୁଝିପାରୁନ ଜ୍ଞାନୀନ୍ଦ୍ର, କେତେବଡ଼ ବିପଦକୁ ତୁମେ ଡାକିଆଣୁଛ ! ଆମେ ଏଠିକି ଆସିବା କଥା କାହାରିକୁ ଅଛପା ରହିବ ନାହିଁ । ତା'ପରେ ମୋ କଥା ଛାଡ଼, ତୁମ ଅବସ୍ଥା କଥା ଭାବିଲ !

ଜ୍ଞାନ - ତୁମେ ଖୁବ୍ ପୁରୁଣା ଆଉ ପିଲାଳିଆ କଥା କହୁଛ ଉର୍ବଶୀ; ଆମେ ଏଠିକି ଆସିଛୁ ବୋଲି ଆମର ଅବସ୍ଥା କ'ଣ ହେବ, ସେଇକଥା ତୁମେ ଖାଲି ଭାବୁଚ - କିନ୍ତୁ ଆମେ ଏଠିକି କାହିଁକି ଆସିଛୁ, ସେ କଥା ଭାବିବାର ଅବସର ତମର ନାହିଁ ।

ଉର୍ବଶୀ - ଭାବିବାର ମୋର ଆଜି ଅନେକ ଅଛି ଜ୍ଞାନୀନ୍ଦ୍ର; କିନ୍ତୁ ମୋର କିଛି କରିବାର ନାହିଁ । ମୋର ଜନ୍ମଜନ୍ମାନ୍ତରର ସାଧନାର ଫଳ ଯିଏ ତାକୁ ମୁଁ ପାଇ ମଧ୍ୟ ପାଇପାରୁନାହିଁ, ଏ ଭାବନାର ଯନ୍ତ୍ରଣା ମୁଁ ଭୋଗିପାରେ - କିନ୍ତୁ କରିବାର ତ ମୋର କିଛି ନାହିଁ ।

ଜ୍ଞାନ - ମୁଁ ବୁଝିପାରୁଛି ଉର୍ବଶୀ - ତୁମେ ଜାଣି ଜାଣି ନିଜର ଜୀବନ୍ତ ସମାଧିକୁ ଡାକିଆଣୁଛ ।

ଉର୍ବଶୀ - ହୁଏତ ସେଇଥିରେ ମୋର ଶାନ୍ତି ।

ଜ୍ଞାନ - ମିଛ କଥା, ବ୍ୟର୍ଥତା କେବେ ମଣିଷକୁ ଶାନ୍ତି ଆଣି ଦେଇପାରେନା, ମୁଁ ତାହା କେବେହେଲେ କରେଇ ଦେବିନାହିଁ । ଜାଣି ଶୁଣି ମୁଁ ତୁମ ଜୀବନକୁ ବ୍ୟର୍ଥ ହେବାକୁ ଦେବିନାହିଁ ।

ଉର୍ବଶୀ - ତୁମେ କ'ଣ ତା' ପାରିବ ଜ୍ଞାନୀନ୍ଦ୍ର ?

ଜ୍ଞାନ - ମୋ କାମଟା ତୁମେ ମୋ ଉପରେ ଛାଡ଼ିଦିଅ ଉର୍ବଶୀ । ତୁମେ ଖାଲି କୁହ, ଏ ବିବାହରେ ତୁମର କୌଣସି ଆପତ୍ତିନାହିଁ । କୁହ....

ଉର୍ବଶୀ - କିନ୍ତୁ....

ଜ୍ଞାନ - କ୍ଷମାକର ଉର୍ବଶୀ, ସେ ଶବ୍ଦଟା ତୁମେ ଫେରେଇ ନିଅ ।

ଉର୍ବଶୀ - ମୁଁ କହୁଥିଲି.... ମୋର ପରିଚୟ !

ଜ୍ଞାନ - ଏ ପର୍ଯ୍ୟନ୍ତ ମୁଁ ଯଦି ତୁମର ପରିଚୟ ପାଇନି ବୋଲି ଭାବୁଥାଅ, ତେବେ ଆଜି ମୁଁ ଠିକ୍ ପାଇଛି । ସରଳତା ଓ ମନୁଷ୍ୟତାର ରୂପ ନେଇ ମୋ ଆଖି ଆଗରେ ଆଜି ଠିଆହୋଇଛି ସ୍ୱର୍ଗର ଅନନ୍ତ ଯୌବନା ଉର୍ବଶୀ ।

ଉର୍ବଶୀ - ଅନନ୍ତଯୌବନା.....ଉର୍ବଶୀ !!!

ଜ୍ଞାନ - ଉପମାଟା ପାଇଁ କ୍ଷମା କର ଉର୍ବଶୀ, କ୍ଷଣକ ପାଇଁ ଆତ୍ମହରା ହୋଇ ମୁଁ ଭୁଲିଯାଇଥିଲି ଯେ ଉର୍ବଶୀ ଥିଲେ ସ୍ୱର୍ଗର ବାରାଙ୍ଗନା, ସେ ଥିଲେ ସନ୍ତାନର ମା' । କିନ୍ତୁ 'ଅନନ୍ତଯୌବନା' ଏଇ ପରିଚୟ ତଳେ ତାଙ୍କର ସବୁ କାଳିମା ଢାଙ୍କି ହୋଇଯାଇଛି ।

ଉର୍ବଶୀ - ମୋର ଇତିହାସ.....

ଜ୍ଞାନ - ଇତିହାସ ! ଇତିହାସ ଯଦି ତୁମର କିଛି ଥାଏ ଉର୍ବଶୀ, ତେବେ ତାହା ହେବ ମୋର ଗୌରବର ବସ୍ତୁ । କବି ଜ୍ଞାନୀନ୍ଦ୍ରଙ୍କ ଭାଷାରେ ମୁଁ କହିବି.......

"ମୋର ଜୀବନର ଥିଲା ସପନ,
ମୁହିଁ ଆଣିବି ଏସନ ନାୟିକା
ଯା'ର ଇତିହାସ ଥିବ ଅନେକ,
ଯେହୁ ହୋଇବ କରୁଣ ଗାୟିକା ।"

ଉର୍ବଶୀ - ତୁମେ...ତୁମେ ଏଡ଼େ ମହତ୍ !!

ଜ୍ଞାନ - ମୋର ସମସ୍ତ ମହତ୍ତ୍ୱ ଯେ ତୁମକୁ କେନ୍ଦ୍ର କରି ଉର୍ବଶୀ ।

ଉର୍ବଶୀ - ତେବେ ବି ଥରେ ମୋ କଥା ତମକୁ ଶୁଣିବାକୁ ହେବ ।

ଜ୍ଞାନ - ଶୁଣିବି ଉର୍ବଶୀ, କିନ୍ତୁ ଆଜି ନୁହେଁ । ଆଜି ମୁଁ ତୁମକୁ ପାଇଛି । ଏ ପାଇବାର ଆନନ୍ଦ ଆଜି ମୋର ଏକଚାଟିଆ । ଆଜି ମୁଁ କାହାରି କଥା ଶୁଣିବି ନାହିଁ । କାହାରିକୁ କିଛି

କୁହାଇଦେବି ନାହିଁ । କେବଳ ନିଜେ କହିଯିବି - ଅସଂଖ୍ୟ ଅସୁମାରି କଥା । ଏଇ ଦେଖ ଉର୍ବଶୀ; ମହାନଦୀର ସ୍ଥିର ପାଣିରେ କିମିତି ନିସ୍ତବ୍ଧ ଭାବରେ ନୌକା ସବୁ ଭାସିଚାଲିଛି । ଦୂରରେ ଦେଖାଯାଉଛି ମହାନଦୀର ପୋଲ । କିନ୍ତୁ ପୋଲ ଉପରେ ଆଜି ଗୋଟିଏ ସୁଦ୍ଧା ଟ୍ରେନ୍ ଦେଖାନାହିଁ । ଏ ପାଖରେ ଦେଖ, ନନ୍ଦିକେଶ୍ୱରୀ ପଠାର ଶାନ୍ତ ସୁନ୍ଦର ଛବି । ରାଜକୁମାରୀଙ୍କର ମୃତ ଆତ୍ମାର ଦୀର୍ଘଶ୍ୱାସ ଆଜି ତା'ର ସତ୍ତା ହରାଇ ବସିଛି । ଏସବୁକୁ ଦେଖି ମୋର କ'ଣ ମନେହେଉଛି ଜାଣ ଉର୍ବଶୀ, ସମସ୍ତ ପ୍ରକୃତି ଆଜି ଯିମିତି ଶବ୍ଦଶୂନ୍ୟ ହୋଇ ଚାହିଁରହିଛି କେବଳ ମୋରି କଥା ଶୁଣିବାକୁ ।

ଉର୍ବଶୀ - ମୁଁ ଦେଖୁଛି, ତୁମେ ହୁଏତ ପାଗଳ ହୋଇଯିବ ?

ଜ୍ଞାନ - ପାଗଳ ହେବା ତ ଦୂରର କଥା, ପାଗଳ ହେବାର ଛଳନା ମୁଁ ଯଦି କରିପାରନ୍ତି, ତେବେ କେଜାଣି ଆଉରି ଅନେକ କଥା ମୁଁ କହିପାରନ୍ତି । ଦିନେ ହୁଏତ ମୋରି ଅବସ୍ଥାରେ ପଡ଼ି କବି ରବୀନ୍ଦ୍ରନାଥ କହିଥିଲେ -

ଏଇ ତନୁଲତା ମତେ ସଁପି ଦିଅ ବାଳା,
ପଞ୍ଚଦଶ ବସନ୍ତର ପରିପୂର୍ଣ୍ଣ ମାଳା ।
ଆଉ କବି ଓମର ଖେୟାମ କହିଥିଲେ -
ଏହିଠାରେ ଏହି ତରୁତଳେ
ତୁମେ ଆଉ ମୁହିଁ କୁତୂହଳେ
ଜୀବନର ବାକି କେଇଟା ଦିନ କଟାଇଦେବା ପ୍ରିୟେ ।
ସେମାନଙ୍କ ପରି ମୋ କଣ୍ଠ ବି ଆଜି ଗାନମୁଖର ହୋଇଉଠୁଛି ।

(ଗୋଟାଏ ଉଲ୍ଲାସରେ ଭାସିଯାଇ ଗୀତ ଗାଇଲା ।)

ଆଜିର ଏ ନିରୋଳା ଲଗନେ,
ତୁମେ ଆଉ ମୁଁ                ମୁଁ ଆଉ ତୁମେ
ଚାହିଁଚି ଚାନ୍ଦ ଗଗନେ ।
ବୁକୁ ପାଶେ ଲାଗିଥାସ ସହି
ନୁହେଁ....ଆଜିପାଇଁ,
ଯୁଗ ଯୁଗ ଧରି ସାଥି ଆମେ,
ଜନମେ ଜନମେ ଜନମେ ।
ଚାହିଁ ଦିଗବୁଡ଼ା ନୀଳିମାର
ମମତା ଦୂରେ.... ଦୂରେ
ଢଳିଚି ଯହିଁ ଧରଣୀର ସବୁଜ
ସୋହାଗ ଅଭିସାରେ

ଉସା ବଉଦ ସାଥେ ଆସ.... ଭାସିଯିବା ସହି
ନିଖିଳ ଆଖିର ସେ ପାରେ
ଏଇ ଶାନ୍ତ ନୀଳିମା ଯହିଁ
ଧରଣୀ ତୁମେ....ତୁମେ
ତୁମେ ଆଉ ମୁଁ ମୁଁ ଆଉ ତୁମେ

(ଗୀତ ଶେଷ ଆଡ଼କୁ ଜଣେ ପୁଲିସ୍ ସବ୍‌ଇନ୍‌ସପେକ୍ଟର ଓ ତାଙ୍କର ଜଣେ ସହକାରୀ ଆସି ପହଞ୍ଚିଲେ ।)

ସ.ଇ. - Excuse us for the interruption.

ଜ୍ଞାନ - କିଏ ?

ସ.ଇ. - Two Officers of the Orissa Police.

ସହକାରୀ - On duty.

ଜ୍ଞାନ - ଓ.... (ଚାଲି ଯାଉଥିଲା)

ସ.ଇ.- ଆପଣ ଚାଲିଯାଉଛନ୍ତି ଯେ ? କହିଲି ପରା ଆମେ on duty !

ଜ୍ଞାନ - ବେଶ୍ ତ, ଆପଣ ଆପଣଙ୍କର duty କରନ୍ତୁ ।

ସ.ଇ.- କିନ୍ତୁ ଆପଣ ଚାଲିଗଲେ ଆମେ କି duty କରିବୁ ?

ଜ୍ଞାନ - ମୁଁ ବୁଝିପାରୁନି ଆପଣ କ'ଣ କହୁଛନ୍ତି ?

ସ.ଇ - ଟିକିଏ ଅପେକ୍ଷା କରନ୍ତୁ, ସବୁ ବୁଝିପାରିବେ ।

ଜ୍ଞାନ - ମାଫ୍ କରନ୍ତୁ । ରାତି ଅନେକ ହେଲାଣି-ମୁଁ ଆଉ ଅପେକ୍ଷା କରିପାରିବିନାହିଁ । ତା' ଛଡ଼ା ସାଙ୍ଗରେ ମୋର...

(ଆଉ କହିପାରିଲାନାହିଁ )

ସ.ଇ.- ହଁ କୁହନ୍ତୁ, କୁହନ୍ତୁ, ସାଙ୍ଗରେ ଆପଣଙ୍କର କିଏ ? ଏ କ'ଣ ? ଏମିତି କାହିଁକି ହଉଛନ୍ତି ? (ଜ୍ଞାନୀନ୍ଦ୍ର ଚାଲି ଯାଉଥିଲା) Sorry ! ଆପଣ ଯାଇପାରିବେ ନାହିଁ ।

ଜ୍ଞାନ - ତା'ମାନେ ଆପଣ ମୋତେ ଜୋର୍ କରି ଅଟକାଇବେ ?

ସ.ଇ. - ଆପଣ ଯେ ମୋତେ ବାଧ କରୁଛନ୍ତି ଜୋର୍ କରି ଅଟକାଇବାକୁ ।

ଜ୍ଞାନ - ମୁଁ ଆପଣଙ୍କୁ ବାଧ କରୁଛି ! !

ସ.ଇ.- ବେଶ୍, ତା'ହେଲେ କୁହନ୍ତୁ, ଆପଣଙ୍କ ସାଙ୍ଗରେ ସେ କିଏ ଅଛନ୍ତି ?

ଜ୍ଞାନ - ଏ ପ୍ରଶ୍ନ ପଚାରିବାର କୌଣସି ଅଧିକାର ଆପଣଙ୍କର ନାହିଁ ।

ସ.ଇ. - ଜଣେ ପୁଲିସ୍ ଅଫିସରଙ୍କ ଅଧିକାର ସମ୍ବନ୍ଧରେ ଆପଣ ଆଦୌ ପ୍ରଶ୍ନ କରିପାରିବେ ନାହିଁ ।

ଜ୍ଞାନ - କାରଣ ?

ସହକାରୀ - କାରଣ ? କାରଣ, ସେ ହେଉଛନ୍ତି ଜଣେ ପୁଲିସ୍ ଅଫିସର୍ ।

ଜ୍ଞାନ - କିନ୍ତୁ, କାହିଁକି ଆପଣମାନେ ମୋ ପ୍ରତି ଏପରି ବ୍ୟବହାର କରୁଛନ୍ତି ? ନଈକୂଳରେ ବୁଲିବାର ସ୍ୱାଧୀନତା କ'ଣ ମୋରନାହିଁ ?

ସ.ଇ.- ନିଶ୍ଚୟ ଅଛି ।

ଜ୍ଞାନ - ତେବେ ?

ସହକାରୀ - ଆପଣ ନିଜକୁ ଯେତେ ବେଶୀ ସ୍ୱାଧୀନ ବୋଲି ଜାହିର୍ କରିବେ, ଆପଣଙ୍କୁ ସନ୍ଦେହ କରିବାର ଅବକାଶ ଆମର ସେତିକି ବଢ଼ିଉଠିବ ।

ଜ୍ଞାନ - ସନ୍ଦେହ! ମୋ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ? କାହିଁକି ଆପଣମାନେ ମୋତେ ସନ୍ଦେହ କରୁଛନ୍ତି ?

ସ.ଇ.- ଆପଣ ତ ନିଶ୍ଚୟ ଖବରକାଗଜ ପଢୁଥିବେ । ରାତି ବାରଟା ପରେ ଏ ନିର୍ଜନ ମହାନଦୀ କୂଳକୁ ଆପଣ ଆସିଛନ୍ତି । ବନ୍ଧତଳେ ଅକାତକାତ ପାଣି – ମାନେ, କିଡ୍‌ନାପ୍ -ଏଲୋପମେଣ୍ଟ୍ - ସୁଇସାଇଡ୍ ପ୍ରଭୃତି ପାଇଁ ଏ ହଉଛି ପ୍ରଶସ୍ତ ସ୍ଥାନ ।

ଜ୍ଞାନ - ବୁଝିଲି । ମୋର ଯେତେଦୂର ଧାରଣା - ମୁହଁ ଦେଖି ଲୋକ ଚିହ୍ନିବା ପୁଲିସ୍ ସର୍ଭିସ୍‌ର ଗୋଟାଏ ଅଙ୍ଗ । ସେତକ ବୋଧହୁଏ....

(ଉର୍ବଶୀ ସାଥିରେ ଚାଲିଯାଉଥିଲା ।)

ପୁଲିସ୍ - ଶୁଣନ୍ତୁ ଶୁଣନ୍ତୁ । (ଏତିକିବେଳେ ଖୁବ୍ ଉଚ୍ଚ ସ୍ୱରରେ ପାଟିକରି ଆସିଲେ ଭାସ୍କର ଓ ପଙ୍କଜ! ଏ ଦୁହେଁ ଅଟକିଗଲେ । ପ୍ରକୃତରେ ଏ ପାଟି କଳିକଜିଆ ସେ ଦୁହିଁଙ୍କର ଏକ ଛଳନା ।)

ଭାସ୍କର - କ'ଣ ଆଉ ଶୁଣିବି ? ତୁମ ଘରେ ଝିଅ ଦେଇଛୁ ବୋଲି କ'ଣ ମୁଣ୍ଡ ବିକିଦେଇଛୁ ?

ପଙ୍କଜ - ନାଇଁ, ଆମେ ଯାଇ ତୁମ ଗୋଡ଼ ଧରିବୁ! କଥା ଶୁଣ! କିଛି ନକହିଲାରୁ ମୁହଁ ବଢ଼ିଯାଉଛି ।

ଭାସ୍କର - ସଟ୍ ଅପ୍! ପାଠଶାଠ ପଢ଼ି ଏମିତି ଅଭଦ୍ର ଭଳି କ'ଣ କଥା କହୁଛ ।

ପଙ୍କଜ - ଆଉ ତୁମେ ଖୁବ୍ ଭଦ୍ରତାର ପରିଚୟ ଦଉଛ ।

ସ.ଇ.- ଟିକେ ଶୁଣନ୍ତୁ । କ'ଣ ହୋଇଛି, କ'ଣ ହୋଇଛି ଆପଣମାନଙ୍କର!

ଭାସ୍କର - ଓ - ଆପଣ! ନମସ୍କାର ।

ପଙ୍କଜ - ନମସ୍କାର ଆଜ୍ଞା!

ଭାସ୍କର - ଆଜ୍ଞା, ଆପଣ ବିଚାର କରନ୍ତୁ - ଏ (ଉର୍ବଶୀକୁ ଦେଖାଇ) ହଉଚି ମୋର ସାନ ଭଉଣୀ । ଆଉ ଇଏ ହଉଛନ୍ତି ତାଙ୍କର- ଆପଣ ତ ବୁଝିପାରୁଥିବେ!

ସ.ଇ.- (ପଙ୍କଜକୁ) ଆପଣଙ୍କର ପରିଚୟ ?

ପଙ୍କଜ - ମୁଁ ହଉଛି (ଜ୍ଞାନୀନ୍ଦ୍ରକୁ ଦେଖାଇଦେଲେ) ଏ ବାବୁଙ୍କ ସାନଭାଇ ।

ପୁଲିସ୍ - ଅର୍ଥାତ୍ ଜଣେ ଶ୍ରୀମାନଙ୍କ ଭାଇ ଓ ଆଉ ଶ୍ରୀମତୀଙ୍କ ଭାଇ । ଏତେ ମଧୁର ସମ୍ପର୍କ ଯେଉଁଠି, ସେଠି ଏମିତି ମୁହଁ ଫୁଲାଫୁଲି କାହିଁକି ?

ଭାସ୍କର - ଶୁଣନ୍ତୁ ଆଜ୍ଞା, ବାବୁଙ୍କର ମନ ଖରାପ ଥିଲା ବୋଲି ଟିକେ ସାଙ୍ଗହୋଇ ନଈକୂଳକୁ ବୁଲିଆସିଥିଲେ । ଯୋଗକୁ ଏତିକିବେଳେ ମୁଁ ଯାଇ ତାଙ୍କ ଘରେ ପହଞ୍ଚି ଦେଖେ ତ, ତାଙ୍କ ବାପା ରାଗି ଏକାବେଳକେ ଅଗ୍ନିଶର୍ମା । 'ଗଲା ଗଲା ସବୁ ଗଲା - ଘର ନଥିଲା ଭଳି ରାତି ବାରଟାବେଳେ ଯାଇ ନଈକୂଳରେ ବୁଲିବେ' ଇମିତି କେତେ କଥା !

ପଙ୍କଜ - କହିବେନାହିଁ ଆଜ୍ଞା ? ମୁରବି ହୋଇଛନ୍ତି ଟିକିଏ ଶାସନ କରିବେ ନାହିଁ !

ଭାସ୍କର - ନା ।

ପଙ୍କଜ - ନା ?

ଭାସ୍କର - ଉର୍ବଶୀ ଆଉ ତମ ଘରକୁ ଫେରିବନାହିଁ । ଚାଲ ଉର୍ବଶୀ ଆମ ଘରକୁ ।

ପଙ୍କଜ - ଭାରି ନେଲାବାଲା ?

ଭାସ୍କର - ନାଇଁ, ତୁମେ ଅଟକେଇଦବ ?

ପଙ୍କଜ - ଅଲବତ୍ ଅଟକେଇଦେବି ।

ଭାସ୍କର - ମୁଁ ଜରୁର୍ ତାକୁ ନେଇଯିବି ।

ପଙ୍କଜ - ହୁସିୟାର କହୁଛି, ମୁଁ କେଶ୍ କରିଦେବି, ନିଜେ ପୁଲିସ୍ ଅଫିସର୍ ସାକ୍ଷୀ ।

(ସ.ଇ. ସବୁ ବୁଝିସାରିଲେଣି)

ସ.ଇ. - (ଭାସ୍କରକୁ) ଆପଣ ମେଡ଼ିକାଲ୍ କଲେଜ୍‌ର ଜଣେ ଛାତ୍ର ନା ?

ଭାସ୍କର - ଆପଣ ତ ମୋତେ ଚିହ୍ନିଛନ୍ତି ଦେଖୁଛି ?

ସହକାରୀ - ମେଡ଼ିକାଲ୍‌ର ଫୁଟବଲ୍ ଖେଳ ଚାଲିଥିଲାବେଳେ, ଆପଣ ଫୁଟ୍‌ବଲ୍ ପଡ଼ିଆରେ ଚିଆରଅପ୍ ଚିଆର୍‌ଅପ୍ ବୋଲି ଖୁବ୍ ଜୋର୍‌ରେ ପାଟିକରନ୍ତି ନା ?

ଭାସ୍କର - ବିଶେଷତଃ ଯେଉଁଦିନ ପୁଲିସ୍ ଟିମ୍ ସାଥିରେ ଖେଳ ଥାଏ !

ସ.ଇ.- (ହସିହସି) ଆଚ୍ଛା, ଆପଣମାନେ ସମସ୍ତେ ଯା'ନ୍ତୁ । ବୁଝିଲେ ଭାସ୍କରବାବୁ, ଘରସଂସାର କଲେ ବେଳେ ବେଳେ ଇମିତି ହୋଇଥାଏ । ଏଥିପାଇଁ କ'ଣ ରାଗିଲେ ଚଳିବ ? (ଜ୍ଞାନୀନ୍ଦ୍ରକୁ) ଆଉ ଆପଣ ଶୁଣନ୍ତୁ - ମୁହଁ ଦେଖି ମଣିଷ ଚିହ୍ନିବା ପୁଲିସ୍ ସର୍ଭିସ୍‌ର ଯେମିତି ଗୋଟାଏ ଅଙ୍ଗ, ଲକ୍ଷଣ ଦେଖି ରୋଗ ଚିହ୍ନିବା ଡାକ୍ତରୀ ବିଦ୍ୟାର ସେମିତି ଗୋଟାଏ ଅଙ୍ଗ । ମୋ ବିଦ୍ୟା ମୁଁ ବୋଧହୁଏ ହାସଲ କରିପାରିଛି, ଆଉ ଆପଣଙ୍କ ବିଦ୍ୟା ?...ହଉ, ଆପଣ ଯା'ନ୍ତୁ, ନମସ୍କାର ! (ଭାସ୍କର, ପଙ୍କଜ, ଜ୍ଞାନୀନ୍ଦ୍ର ଓ ଉର୍ବଶୀ ଚାଲିଗଲେ ।)

ସହକାରୀ - ଏମାନେ ଯେ ସମସ୍ତେ ଚାଲିଗଲେ ସାର୍ ?

ସ.ଇ.- ଆଉ ରହନ୍ତେ କାହିଁକି ?

ସହକାରୀ - ଆପଣ ଏ ସମସ୍ତଙ୍କୁ....

ସ.ଇ. - ଚିହ୍ନି ନଥିଲେ ବି ଚିହ୍ନିବାକୁ ବାକି ରହିଲା କୋଉଠି ?

ସହକାରୀ - ଏତେବଡ଼ ଗୋଟାଏ ଚାନ୍‌ସ ହାତରୁ ଖସିଗଲା !!

ସ.ଇ.- ପୁଲିସ୍ ଚାକିରିଟା ଘୋଡ଼ାଦୌଡ଼ ନୁହେଁ ମଧୁସୂଦନ ଯେ ତୁମେ ଚାନ୍‌ସ ଉପରେ ସବୁବେଳେ ନିର୍ଭର କରି ନାଁ କରିବ । ଆସ ।

## ଷଷ୍ଠ ଦୃଶ୍ୟ

(ରାସ୍ତା - ପୂର୍ବବର୍ତ୍ତୀ ଦୃଶ୍ୟ ପରର ଘଟଣା, ଭାସ୍କର ଆସିଲା ।)

ପଙ୍କଜ - (ଭିତରୁ) ଭାସ୍କର.... (ଆସିଲା)

ଭାସ୍କର - କିରେ, ଏତେ ମଧୁର ଡାକ କାହିଁକି ?

ପଙ୍କଜ - ସମ୍ପନ୍ଧଟା ଯେତେବେଳେ ମଧୁର ହୋଇଗଲା......

ଭାସ୍କର - ମତେ ଚିଡ଼ାନା କହୁଛି ପଙ୍କଜ, ପୁଣି କଳିକଜିଆ ଆରମ୍ଭ କରିଦେବି । ସର୍ବମୋଟ ମୋର ସାତଟି ଭଉଣୀ । ଯୋଉଦିନ ସାତଟିଯାକ ଭଗ୍ନୀପତି ଆସି ଆମ ଘରେ ଠୁଳ ହୋଇଯା'ନ୍ତି ସେଦିନ ମୋର ଯୋଉ ଅବସ୍ଥା । ସେମାନଙ୍କ ଆଖିରେ ମୁଁ ଯେମିତି ଗୋଟାଏ ଚିଡ଼ିଆଖାନାର ହନୁ । ଜଣେ ପାଟି ଆଗରେ ଗୋଟାଏ ଫଳ ଦେଖାଉଥିବ ତ, ଆଉ କିଏ ଗୋଟେ ପିନ୍‌କଣ୍ଟାରେ ପଛଆଡୁ ଫୋଡ଼ିଦେବଣି । ଏତିକିରେ ଅଣ୍ଟିଲାନାହିଁ ଯେ- ଆଜି ପୁଣି ଜ୍ଞାନୀନ୍ଦ୍ରକୁ ଡାକିହାକି ଆଣି.... ଦୁର୍ଯୋଗ ! ଦୁର୍ଯ୍ୟୋଗ ! ! କୁଆଡ଼େ ପୁଣି ଗଲେ ?

ପଙ୍କଜ - ଉର୍ବଶୀକୁ ହଷ୍ଟେଲ୍‌ରେ ଛାଡ଼ି ଫେରୁଥିବ । ଆଜି ଯଦି ଉର୍ବଶୀ ବିବାହର ସମ୍ମତି ଦେଇ ନଥା'ନ୍ତା, ତେବେ ଜ୍ଞାନ ଯେ କ'ଣ କରିଥା'ନ୍ତା !

ଭାସ୍କର - ସେ ସବୁ କିଛି କରିପାରିଥା'ନ୍ତା - ଉର୍ବଶୀ ପାଇଁ ଜେଲ୍‌ଖାନାରେ କତା ବାଡ଼େଇବା ପର୍ଯ୍ୟନ୍ତ ସେ ରାଜି ଥିଲା । (ଜ୍ଞାନୀନ୍ଦ୍ର ଆସିଲା ।)

ଜ୍ଞାନ - ସେ ଦି'ଜଣଙ୍କ ସାଥିରେ ପୁଣି ଦେଖାହେଲା ।

ପଙ୍କଜ - କ'ଣ କହିଲେ ?

ଜ୍ଞାନ - କିଛି ନାହିଁ, ହସିଦେଇ ଚାଲିଗଲେ । ସବୁକଥା ସେମାନେ ଜାଣିପାରିଛନ୍ତି ।

ପଙ୍କଜ - ପୁଲିସ୍ ଚାକିରି କରି ରାତି ବାରଟା ବେଳେ ଡିଉଟି କରୁଛନ୍ତି ଏ ସବୁ କଥା ଜାଣିବାପାଇଁ । ନ ଜାଣନ୍ତେ କିପରି ?

ଭାସ୍କର - ହଉ, ଏବେ ଆମକୁ ଟିକେ ଜଣାଅ, ବାହାଘର ତାରିଖଟା କେବେ ?

ପଙ୍କଜ - ବାହାଘର ହେବ କେଉଁଠି ?

ଭାସ୍କର - ଆମ ହଷ୍ଟେଲ୍‌ରେ କଲେ କେମିତି ହୁଅନ୍ତା ?

ପଙ୍କଜ - ମାତ୍ର ତିନିଦିନ ତଳେ ହଷ୍ଟେଲ୍ ଛାତ ଉପରେ ଗୁଡ଼ି ଉଡ଼ାଉଥିଲୁ ବୋଲି ସୁପରିନ୍‌ଟେନ୍‌ଡେଣ୍ଟଙ୍କ ପାଖରେ ତିନି ମିନିଟ୍ ହାତଯୋଡ଼ି ଠିଆହୋଇଥିଲୁ, ଏକଥା ଭୁଲିଗଲୁଣି ?

ଭାସ୍କର - ବିବାହ ଉତ୍ସବରେ ଯୋଗଦେବାକୁ ସ୍ୱାସ୍ଥ୍ୟ ମନ୍ତ୍ରୀ ଆଉ ଡିରେକ୍‌ଟରଙ୍କୁ ନିମନ୍ତ୍ରଣ କର, ଦେଖିବୁ ସୁପରିନ୍‌ଟେନ୍‌ଡେଣ୍ଟଙ୍କ ପାଟି ଚୁପ୍ ।

ପଙ୍କଜ - ତୁ ଚୁପ୍ କଲୁ ।

ଭାସ୍କର - ଚୁପ୍ କରିବି କ'ଣ ? ମୋର ତ ମନହଉଚି - ଆମେ ତିନିଜଣଯାକ ଏଇଟୁ ଗୋଟେ ଗୀତ ଗାଇ ଗାଇ ହଷ୍ଟେଲ୍‌ର ସବୁ ପିଲାଙ୍କୁ ଉଠାଇ ଏ ଖୁସି ଖବରଟା ଶୁଣାଇ ଦିଅନ୍ତେ ।

ଜ୍ଞାନ - ବେଶି ଡେରିନାହିଁ ଭାସ୍କର, ମାତ୍ର ସାତଦିନ ପରେ....

ଭାସ୍କର - ଏଁ, ସାତଦିନ ପରେ ! ! ମାତ୍ର ସାତଦିନ ପରେ ଭାରତର ଜନସଂଖ୍ୟା ବୃଦ୍ଧି କରିବାରେ ସାହାଯ୍ୟ କରିବାପାଇଁ ଲାଇସେନ୍‌ସ ହାସଲ କରିବାକୁ ତୁ ମଥାରେ ମୁକୁଟ ହାତରେ ଦୂବ ଧାରଣ କରିବୁ ? ମାତ୍ର ସାତଦିନ ପରେ ! !

(ହସି ହସି ସମସ୍ତେ ଚାଲିଗଲେ ।)

## ସପ୍ତମ ଦୃଶ୍ୟ

(କଟକ ସହରସ୍ଥ ଗୋଟିଏ ଭଡ଼ାଘରର ଗୋଟିଏ ପ୍ରଶସ୍ତ କୋଠରି । ଏଇ ଘରେ ସେଦିନ ଜ୍ଞାନୀନ୍ଦ୍ର ଓ ଉର୍ବଶୀର ବିବାହ ସମ୍ପାଦିତ ହୋଇଯାଇଛି । ଉତ୍ତର ପାର୍ଶ୍ୱରେ ଥିବା ଦରଜା ମଧ୍ୟ ଦେଇ ଗୋଟିଏ ସୁସଜ୍ଜିତ ପଲଙ୍କ ଦେଖାଯାଉଛି । ଦୃଶ୍ୟ ଆରମ୍ଭରେ ଦେଖାଗଲା ନିମନ୍ତ୍ରିତ ଅତିଥିମାନେ ଏଇ କୋଠରିଟିରେ ଆସି ଠୁଳ ହୋଇଛନ୍ତି ।)

ଭାସ୍କର - ବନ୍ଧୁଗଣ, ଆପଣମାନେ ବୋଧହୁଏ ଜାଣନ୍ତି ଯେ ଏଇ ବିବାହ ଉପଲକ୍ଷେ ଗୋଟିଏ ନୃତ୍ୟର ଆସର କରାଯାଇଛି । ଆଉ ଅଳ୍ପ ସମୟ ପରେ ନୃତ୍ୟ ଆରମ୍ଭ ହେବ । (ଡାକ୍ତର ଦାସ ଆସିଲେ) ଆସନ୍ତୁ ସାର୍ ବସନ୍ତୁ । ...ଏଇ ନୃତ୍ୟର କଥାବସ୍ତୁ ହେଉଛି -

ଡା. ଦାସ - ତୁମେ ଟିକିଏ ରୁହ ଭାସ୍କର । (ଗୋଟିଏ ମୁଦି ଜ୍ଞାନୀନ୍ଦ୍ରକୁ ଓ ଆଉ ଗୋଟିଏ ଉର୍ବଶୀକୁ ପିନ୍ଧାଇ ଦେଇ) ଯେଉଁ ବିଶ୍ୱାସ ଓ ପ୍ରେମ ଯୋଗୁଁ ଏ ବିବାହ ଆଜି ସମ୍ଭବ ହୋଇପାରିଛି, ତା'ତୁମ ଦୁହିଁଙ୍କ ଜୀବନକୁ ମଙ୍ଗଳମୟ କରୁ, ଏଇ ଆଶୀର୍ବାଦ ମୁଁ କରୁଛି ।....ଆଚ୍ଛା, ମୁଁ ଏଥର ଆସେ ।

ଭାସ୍କର - ନାଚ ନଦେଖି ଆପଣ ଚାଲିଯିବେ ସାର୍ ?

ଡା.ଦାସ - କିନ୍ତୁ ଯେଉଁ ଉଦ୍ଦେଶ୍ୟରେ ଏ ନୃତ୍ୟଗୀତର ଆୟୋଜନ ମୁଁ ରହିଲେ ସେ ସବୁ ମାଟି ହୋଇଯିବ । ଏଇ କୋଠରିଟିରେ ଆଜି ଜାଗିଛି ନବ ବସନ୍ତର ଉନ୍ମାଦନା । ତମର ଏଇ ତରୁଣ ବନ୍ଧୁମାନେ ମୋର ଏଇ ତାରୁଣ୍ୟ-ଶୂନ୍ୟ ଶୀତ-ଜାକର- ଉପସ୍ଥିତିଟାକୁ ମୋଟେ ବରଦାସ୍ତ କରିପାରିବେନାହିଁ । (ହସି ହସି ଚାଲିଗଲେ)

ଭାସ୍କର - ବନ୍ଧୁଗଣ, ମୁଁ ଯାହା କହୁଥିଲି - ମହାଭାରତର ମହାସତୀ କୁନ୍ତୀ କେଉଁ ଘଟଣାରୁ କୁମାରୀ ଅବସ୍ଥାରେ ମହାବୀର କର୍ଣ୍ଣଙ୍କ ଜନନୀ ହୋଇଥିଲେ, ତାହାହିଁ ହେଉଛି ଏ ନୃତ୍ୟର କଥାବସ୍ତୁ । (ଏଣିକି ତେଣିକି ଚାହିଁ) କିନ୍ତୁ ସେ କୁଆଡ଼େଗଲେ ?

ପଙ୍କଜ - କିଏ ?

ଭାସ୍କର - ସେଇ ସରସ୍ୱତୀଙ୍କ ସିମ୍ବଲ୍ ?

ପଙ୍କଜ - ଓ, ବୀଣା ?

ଭାସ୍କର - ହଁ, ସେଇ ଟୁଂ ଟାଂ ତାରଯନ୍ତ୍ର ବୀଣା ! କୁଆଡ଼େ ଗଲେ ସେ ? (ବୀଣା ଆସିଲା) ଏଇ ଆସିଗଲେ ।

ବୀଣା - କ'ଣ କହୁଛନ୍ତି ?

ଭାସ୍କର - କୁଆଡ଼େ ଯାଇ ଟୁଂ ଟାଂ ହୋଇ ବୁଲୁଛ ? ସନ୍ଧ୍ୟାବେଳୁ ତମ ଦର୍ଶନ ମିଳୁନି ! କି କାମ କରୁଛ ଶୁଣେ ?

ବୀଣା - ଆପଣ କ'ଣ କରୁଛନ୍ତି ?

ଭାସ୍କର - ମୁଁ କିଛି କରୁନି ? ତମେ କେତେ ପ୍ଲେଟ୍ ଆଇସ୍‌କ୍ରିମ୍, କେତେ କପ୍ ଚା, କେତେଟା ସନ୍ଦେଶ ଆଉ କେତେ ପୁଞ୍ଜା ରସଗୋଲା ଗିଳିଛ ?

ବୀଣା - ସେ ସବୁ ପଙ୍କଜବାବୁ ଦେଖାଶୁଣା କରୁଛନ୍ତି ।

ଭାସ୍କର - କିନ୍ତୁ ତମେ କ'ଣ କରୁଛ ? ତମ ଉପରେ ନାଚର ଭାର ଦିଆହୋଇଥିଲା ନା ?

ବୀଣା - ହଁ, ଆମେ ସବୁ ପ୍ରସ୍ତୁତ ।

ଭାସ୍କର - ପ୍ରସ୍ତୁତ ! ଧନ୍ୟବାଦ ! ତେବେ ଯାଅ, ଆରମ୍ଭ କର । (ନୃତ୍ୟ ଆରମ୍ଭ ହୋଇ ଶେଷ ହେଲା)

ଭାସ୍କର - ବନ୍ଧୁଗଣ, ଆମର କାମ ଶେଷହୋଇଯାଇଛି । ବର୍ତ୍ତମାନ ନବଦମ୍ପତି ତାଙ୍କ ସୁଖ ନୀଡ଼ରେ ରୁହନ୍ତୁ - ତାଙ୍କର ଦାମ୍ପତ୍ୟ ଜୀବନ ସତ୍ୟ, ଶିବ ଆଉ ସୁନ୍ଦର ହେଉ ।

ନୀଳମଣି - (ବାହାରୁ) ବାବୁ ଅଛନ୍ତି ?

ଭାସ୍କର - କିଏ ?

ନୀଳ - ଜ୍ଞାନବାବୁ ଅଛନ୍ତି ?

ଜ୍ଞାନ - କିଏ ? ନୀଳମଣି !

ନୀଳ - ଆଜ୍ଞା !

ଜ୍ଞାନ - ଆସ ଭିତରକୁ ଆସ ।

(ନୀଳମଣି ଆସି ଖଣ୍ଡିଏ ଚିଠି ଓ ଗୋଟିଏ ଗହଣା ବାକ୍ସ ଜ୍ଞାନୀନ୍ଦ୍ର ହାତକୁ ବଢ଼ାଇଦେଲା ।)

ଭାସ୍କର - କିଏ ରେ ?

ଜ୍ଞାନ - ଆମ ଘରୁ ଆସିଛନ୍ତି ।

ଭାସ୍କର - କାହିଁକି ?

ନୀଳ - ବଡ଼ବାବୁ ପଠାଇଛନ୍ତି ।

ଜ୍ଞାନ - (ଚିଠିପଢ଼ି ଭାସ୍କର ହାତକୁ ବଢ଼ାଇଦେଲା) ନେ, ପଢ଼ ।

ଭାସ୍କର - (ପଢ଼ିଲା) ଆୟୁଷ୍ମାନ୍ ଜ୍ଞାନୀନ୍ଦ୍ର ! ତୋ'ର ବିବାହ ସମ୍ବନ୍ଧରେ ତୋ'ର ଆଉ ଡାକ୍ତର ଦାସଙ୍କର ଚିଠି ପାଇଲି । ମୋର ଇଚ୍ଛାବିରୁଦ୍ଧରେ ତୁ ବିବାହ କରିଛୁ - ଏଥିପାଇଁ ତୋ ବିବାହରେ ଯୋଗଦେବା ମୋ ପକ୍ଷେ ଅସମ୍ଭବ । କିନ୍ତୁ ଦୂରରେ ଥାଇ ମୁଁ ଆଶୀର୍ବାଦ କରୁଛି - ତୁମେ ଦୁହେଁ ସୁଖରେ ରୁହ । ତୋ' ବୋଉର ସମସ୍ତ ଅଳଙ୍କାର ଏଥି ସହିତ ପଠାଇଲି, ବୋହୂକୁ ଦେବୁ । ଇତି । ତୋର ବାପା ।

ହଁ, ଯା'କୁ ଯେ କହନ୍ତି ଯୋଗାଯୋଗ । ବୁଝିଲୁ ଜ୍ଞାନ, ଏ ତ ତୋ ବାପାଙ୍କ ଆଶୀର୍ବାଦ ନୁହଁ, ସ୍ୱୟଂ ଦେବତାଙ୍କ ଆଶୀର୍ବାଦ । (ନୀଳମଣିକୁ) ହଁ, ତୁମେ ବାବୁ ଭିତରକୁ ଯାଅ, ଏଇବାଟେ ଯାଅ । ପୂଝାରୀ, ଏ ବାବୁଙ୍କ କଥା ବୁଝ । ଆଚ୍ଛା ଜ୍ଞାନ, ଆମକୁ ଏଥର ବିଦାୟ ଦେ ।

(ଜ୍ଞାନୀନ୍ଦ୍ର ସହିତ ସେମାନେ ବାହାରିଗଲେ । ଭିତରେ ଥା'ନ୍ତି ଉର୍ବଶୀ ଓ ବୀଣା ।)

ବୀଣା - ଉର୍ବଶୀ, ଟିକେ ହସିଲୁ ।

ଉର - କାହିଁକି ?

ବୀଣା - ତୋତେ ମୋ ରାଣ ଉର୍ବଶୀ, ତୁ ଟିକେ ହସ ।

ଉର - ଆଲୋ କିଛି କଥାନାହିଁ, ହସିବି କାହିଁକି ?

ବୀଣା - ହଁ, ହସ....ହଁ...ଆହୁରି, ଆହୁରି (ଦୁହେଁ ହସିଉଠିଲେ) ତୋ ମୁହଁରେ ହସ ଦେଖି ମୁଁ ହସିବି ଉର୍ବଶୀ ! ସେଇଥିରେ ମୋର ଆନନ୍ଦ !

ଉର - ମୋର ଏ ହସ, ମୋର ଏ ଆନନ୍ଦ ଦେଖି ଦୁନିଆ ଲୋକେ ମୋତେ ଥଟ୍ଟା କରି ହସିବେ ନାହିଁ ତ ବୀଣା ?

ବୀଣା - କାହିଁକି ? ତୁ ଗୋଟିଏ ସାମାନ୍ୟ ନର୍ସ୍ ଆଉ ଜ୍ଞାନୀନ୍ଦ୍ର ବଡ଼ଲୋକର ପୁଅ ଡାକ୍ତର, ଏଇଥିପାଇଁ ତ ? କିନ୍ତୁ ଯେଉଁଦିନ ତୁ ତୋ ମୁହଁର ଏଇ ହସଟିକୁ ବନ୍ଦ କରିଦେବୁ, ସେଇଦିନ ଯାଇ ଦୁନିଆ ଲୋକେ ତୋତେ ଥଟ୍ଟା କରିବାର ସୁଯୋଗ ପାଇବେ । ହଁ, ତୋତେ ଗୋଟାଏ କଥା କହିବାକୁ ଭୁଲିଯାଇଛି..... ଏଇ ଦେଖ, ଏଠି ଅଛି ଫୁଲମାଳ, ଏଠି ଚନ୍ଦନ, ଏଠି ଅଗୁରୁ ଆଉ ସେଠି ଜଳୁଛି - କୁଳଦୀପ !

ଉର - କୁଳଦୀପ !

ବୀଣା - ହଁ, କୁଳଦୀପ - ତୋ' କୁମାରୀ ଜୀବନର ସାକ୍ଷୀ, ବୁଝିଲୁ ? ହଉ ମୁଁ ଆସୁଛି । (ସେ ଯିବାବେଳେ ଜ୍ଞାନୀନ୍ଦ୍ର ଆସିଲା)

ଜ୍ଞାନ - ବୀଣା ଯାଉଛ ? ଆଉ କେବେ ଆସିବ ?

ବୀଣା - (ହସି) ଯେବେ ନର୍ସ୍‌ର ଦରକାର ପଡ଼ିବ - ଉର୍ବଶୀ ମୋତେ ଟିକେ ଖବରଦେବ

ଯେ । ମୁଁ ଆସୁଛି.... ନମସ୍କାର ! (ଚାଲିଗଲା)

ଜ୍ଞାନ - ଉର୍ବଶୀ, ବାପା ଆଶୀର୍ବାଦ କରି ଚିଠି ଲେଖିଛନ୍ତି ।

ଉର - ବାପା ଆଶୀର୍ବାଦ କରିଛନ୍ତି ?

ଜ୍ଞାନ - ହଁ.... ଏଇ ତ ଚିଠି । ଆଉ ବୋଉର ସବୁ ଗହଣା ପଠାଇଛନ୍ତି, ତୁମରି ପାଇଁ । ନିଅ (ବାକ୍‌ସ ନେଇ ଉର୍ବଶୀ ମଥାରେ ଛୁଆଁଇ ରଖିଦେଲା ) କ'ଣ ପିନ୍ଧିବ ନାହିଁ ?

ଉର - ମୋ ପାଖକୁ ପଠେଇଛନ୍ତି, ସେଇ ମୋର ଯଥେଷ୍ଟ ।

ଜ୍ଞାନ - ହଁ ଉର୍ବଶୀ ! ଏ ନାଚ ତୁମକୁ କିପରି ଲାଗିଲା କୁହ ।

(ଗୋଟାଏ ଆତଙ୍କରେ ଉର୍ବଶୀ ଶିହରି ଉଠିଲା)

ବାସ୍ତବିକ ଉର୍ବଶୀ, ଆମ ଦେଶର ନାରୀମାନଙ୍କୁ ସମାଜରେ କିପରି ଉଚ୍ଚ ଆସନ ଦିଆଯାଇଛି, ଏଇ ନାଚ ହିଁ ତା'ର ଜ୍ୱଳନ୍ତ ପ୍ରମାଣ । ଗୋଟାଏ ଦୁର୍ଘଟଣାରୁ ହୁଏତ କୁନ୍ତୀ କୁମାରୀ ଅବସ୍ଥାରେ ମା' ହୋଇଥିଲେ; କିନ୍ତୁ ତାଙ୍କର ଚିରନ୍ତନ ନାରୀତ୍ୱ କ'ଣ କେବେ କଳଙ୍କିତ ହୋଇଥିଲା ? ଏ କ'ଣ ଉର୍ବଶୀ, ଆଜି ବି ତୁମେ ଏମିତି ଚୁପ୍‌ଚାପ୍ ରହିବ ! କିଛି କହିବ ନାହିଁ ? ଦେଖୁଚ ଉର୍ବଶୀ, ଏ ପଲଙ୍କକୁ ତୁମର ବନ୍ଧୁମାନେ କିପରି ସଜାଇଦେଇଛନ୍ତି ! ସତେ ଉର୍ବଶୀ, ଯେଉଁମାନେ ଏଇ ମଧୁଶଯ୍ୟା ରାତିର ପରିକଳ୍ପନା କରିଯାଇଛନ୍ତି, ସେମାନେ ପ୍ରତ୍ୟେକ ବରବଧୂର ନମସ୍ୟ ! (ଉର୍ବଶୀ ମୁହଁ ତଳକୁ କରି ଠିଆହୋଇଥାଏ) ଏତେ କଥା ମୁଁ କହିଯାଉଛି, ତୁମେ ତୁନିହୋଇ ଠିଆହୋଇଛ ?

ଉର - ମୋ' କଥା ତୁମେ ଶୁଣିବ ତ ?

ଜ୍ଞାନ - ତୁମ କଥାରୁ ଆଜି ଅମୃତ ଝରିବ ଉର୍ବଶୀ, ତୁମ ହସରେ ଫୁଟିବ ପାରିଜାତ !.... ଆରେ, ଏ ସବୁ କ'ଣ ? ଚନ୍ଦନ, ଅଗୁରୁ, ଫୁଲମାଳ, ଆଉ ଏଠି ଜଳୁଛି କୁଳଦୀପ ।

ଉର - (ଆତଙ୍କିତ କଣ୍ଠରେ) କୁଳଦୀପ ! !

ଜ୍ଞାନ - ହଁ ଉର୍ବଶୀ । ବହୁ ଉତ୍‌ଥାନ ପତନ ପରେ ସୁଦ୍ଧା ଆମ ସନାତନ ହିନ୍ଦୁଧର୍ମର ଏଇ ପ୍ରଥାଟି ଚିର ସୁନ୍ଦର, ଚିରସବୁଜ ହୋଇ ରହିଆସିଛି । ହିନ୍ଦୁ ଘରର କୁମାରୀ କନ୍ୟା, ତା'ର ସାତ ରାଜାର ଧନ କୁମାରୀ ଧର୍ମକୁ ଅତି ଯତ୍ନରେ ସାଇତି ରଖିଥାଏ ଏଇ ରାତିରେ ତା'ର ସ୍ୱାମୀକୁ ଉପହାର ଦେବାକୁ । ଅତି ପବିତ୍ର ଏଇ ରାତି - ଆଉ ତା'ର ସାକ୍ଷୀ ଏଇ...

ଉର - ଏଇ କୁଳଦୀପ - ଏଇ ଅଗ୍ନିଶିଖା - ଯା'କୁଇ ସାକ୍ଷୀରଖି ଆଜି.... କିନ୍ତୁ ମୁଁ କ'ଣ ତୁମକୁ ଦେବି ? କ'ଣ ମୋର ଅଛି ?

ଜ୍ଞାନ - ଉର୍ବଶୀ !

ଉର - ନା-ନା....ଏ ପବିତ୍ର ଲଗ୍ନକୁ ମୁଁ କଳୁଷିତ କରିପାରିବିନାହିଁ । ମୁଁ କୁଳବଧୂ ହେବାର ଯୋଗ୍ୟା ନୁହେଁ - ମୁଁ, ମୁଁ କୁମାରୀ ନୁହେଁ ।

ଜ୍ଞାନ - ଉର୍ବଶୀ ! !

(ସଙ୍ଗେ ସଙ୍ଗେ ବାହାରେ ବଜ୍ର-ବିଦ୍ୟୁତ୍‌ର ଚମକ ଖେଳିଗଲା ଓ କ୍ଷଣକ ପାଇଁ କୋଠରିଟିର ସମସ୍ତ ଆଲୁଅ ଲିଭିଗଲା । ଆଲୁଅ ଜଳିବା ପରେ ଦେଖାଗଲା ଉର୍ବଶୀର ଆଖିରେ ଲୁହର ଝର ଫିଟିଛି - ଜ୍ଞାନୀନ୍ଦ୍ର ଯେମିତି ତା'ର ସମସ୍ତ ସତ୍ତା ହରାଇବସିଛି । କାରଣ, ଏହା ଅବସରରେ ଉର୍ବଶୀ ତା'ର ଅତୀତର କାହାଣୀ ଜ୍ଞାନୀନ୍ଦ୍ରକୁ କହି ଚାଲିଥାଏ ।)

ଜ୍ଞାନ - ଆଉ ତମର ସେ ସନ୍ତାନ ?

ଉର - ତା'ର ଅଭାଗିନୀ ମା'ର ମୁହଁ ଦେଖିବାକୁ ବୋଧହୁଏ ସେ ଚାହିଁଲାନାହିଁ । ସେଥିପାଇଁ `ସେ ଗର୍ଭରୁ...(ଆଉ କହିପାରିଲାନାହିଁ)

ଜ୍ଞାନ - ବୁଝିଲି....ମୃତସନ୍ତାନ ! ....ଏ ଷ୍ଟିଲ୍ ବର୍ଣ୍ଣ ଚାଇଲଡ଼ !

ଉର - ସବୁକଥା ତ ତୁମକୁ ଫିଟାଇ କହିଲି....

ଜ୍ଞାନ - ଏ ଅଗୁରୁ, ଏ ଚନ୍ଦନ, ଏ ଅଗ୍ନିଶିଖା....

ଉର - ଗୋଟାଏ ଛେଳି ଛୁଆକୁ ହାଣମୁହଁକୁ ନେଲାବେଳେ ତାକୁ କିଏ ରକ୍ଷା କରିଥା'ନ୍ତା ? ସେଥିରେ ତା'ର ଦୋଷ କ'ଣ ?

ଜ୍ଞାନ - ଏଇ ଅଗ୍ନିଶିଖା ! ତୁମ କୁମାରୀ ଧର୍ମର ସାକ୍ଷୀ !! କିନ୍ତୁ ତୁମେ କୁମାରୀ ନୁହଁ !!!

ଉର - ମୁଁ ଜାଣେ, ମୁଁ ଆଗରୁ ଯଦି ଏ କଥା ତୁମକୁ କହି ପାରିଥା'ନ୍ତି ।

ଜ୍ଞାନ - ନା, ଉର୍ବଶୀ ! ତୁମର କିଛି କହିବାର ନାହିଁ - ତୁମେ କିଛି କହିପାରିବ ନାହିଁ । ସେ ଦିନର ସେ ନରମ ସକାଳର ସେଇ ମନୋରମ ସ୍ମୃତି - ଶିଶିରଧୁଆ ସଜଫୁଲ ପରି ତୁମର ସେ ଦିନର ସେଇ ମୁହଁ - ଆଜି ମଧ୍ୟ ଠିକ୍ ସେଇପରି ଅଛି ! ଭୁଲ୍ କେବଳ ତମର ଏ କାହାଣୀ, ତମର ଏଇ ମନଗଢ଼ା କାହାଣୀ । ତମେ କୁହ ଉର୍ବଶୀ, ତମେ ଯାହା କହିଛ ସବୁ ଛଳନା । ତମେ କୁହ - ତମେ ଜାରଜ - ସମାଜର ଆର୍ବଜନାରୁ ତୁମ ଜନ୍ମ ! ତମେ କୁହ - ତମ ଦେହରେ ଫୁଟିଉଠିଛି ଉକ୍‌ଟ ବ୍ୟାଧି ! ତମେ କୁହ - ତୁମେ ନରହତ୍ୟା, ଗୋହତ୍ୟା, ବ୍ରହ୍ମହତ୍ୟା କରିଛ । କିନ୍ତୁ ତମେ କୁହନା ଉର୍ବଶୀ ଯେ ତୁମେ କୁମାରୀନୁହଁ !! (ଉର୍ବଶୀ କାନ୍ଦୁଥାଏ) ଓଃ.... ତମେ ପାରିବନାହିଁ । ତମେ କୁମାରୀ - ଏ କଥା ତମେ କହିପାରିବନାହିଁ !! ବାପା ଆଶୀର୍ବାଦ କରିଛନ୍ତି, ବୋଉର ଏ ଅଳଙ୍କାର ଖାଲି ଅଳଙ୍କାର ନୁହେଁ - ସ୍ୱର୍ଗପୁରୀରୁ ତା'ର ମଧ୍ୟ ଏ ଆଶୀର୍ବାଦ, ତମେ ତା'ର କୁଳଲକ୍ଷ୍ମୀ !! କିନ୍ତୁ ତମେ କୁମାରୀ ନୁହଁ - ତମେ କୁମାରୀନୁହଁ - କୁମାରୀ ନୁହଁ !!!

(ଦ୍ରୁତଗତିରେ ଚାଲିଗଲା - ଉର୍ବଶୀ କାନ୍ଦି କାନ୍ଦି ଭୂଇଁରେ ଲୋଟିପଡ଼ିଲା ।)

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ବମ୍ବେ ସହରର ଗୋଟିଏ ଫ୍ଲାଟ୍‌ର ଏକ ପ୍ରଶସ୍ତ କୋଠରି । ସାଜସଜ୍ଜା ବେଶ୍ ସୁନ୍ଦର । ଜ୍ଞାନୀନ୍ଦ୍ର ଖଣ୍ଡେ ବହି ପଢୁଥାଏ ।)

ମଦନ - (ବାହାରୁ) ମୈଁ ଅନ୍ଦର ଆ' ସକ୍‌ତା ହୁଁ ?

ଜ୍ଞାନ - କୌନ ହେ ?

ମଦନ - ମୁଁ ଭିତରକୁ ଆସିପାରେ କି ?

(କହି କହି ଭିତରକୁ ଆସିଲେ ।)

ଜ୍ଞାନ - ଆରେ ଦାସ ସାହେବ । ଆସନ୍ତୁ, ଆସନ୍ତୁ ।

ମଦନ - ସତ କହିଲ ଡାକ୍ତର ରାୟ, ମୋ ହିନ୍ଦୀକଥା ଶୁଣି ମୁଁ ଜଣେ ଖାଣ୍ଟି ହିନ୍ଦୁସ୍ଥାନୀ ଆଉ ଓଡ଼ିଆ କଥା ଶୁଣି ମୁଁ ଜଣେ ଖାଣ୍ଟି ଉତ୍କଳୀୟ,ଏ ଧାରଣା ତୁମ ମନରେ ହୋଇଛି କି ନାହିଁ ? ମୁଁ ପାଞ୍ଚଟା ଭାଷାରେ କଥାବାର୍ତ୍ତା କରିପାରେ; କିନ୍ତୁ ଯେତେବେଳେ ଯେଉଁ ଭାଷାରେ କଥାବାର୍ତ୍ତା କରେ, ସେତେବେଳେ ଲୋକମାନେ ଧରିନିଅନ୍ତି ଯେ, ମୋର ସେଇଟା ହିଁ ମାତୃଭାଷା ।

ଜ୍ଞାନ - ବାସ୍ତବିକ୍, ଆପଣଙ୍କର ପ୍ରତିଭା ଅସାଧାରଣ ।

ମଦନ - କିନ୍ତୁ ତମେ ତ ମୋଟେ ସାଧାରଣ ନୁହଁ । ମାତ୍ର ଛ'ଟା ମାସ ଭିତରେ ତମେ ଏ ବମ୍ବେ ଭଳି ସହରରେ ଏମିତି ପପୁଲାର ହୋଇପାରିଲ କେମିତି ?

ଜ୍ଞାନ - ପପୁଲାର !!

ମଦନ - କାଲି ସନ୍ଧ୍ୟାରେ ତମେ ତମର ଘରର ଠିକଣା ମୋତେ କହିଥିଲ; କିନ୍ତୁ ଆଜି ସକାଳେ ଘର ନମ୍ବର ମୁଁ ଭୁଲିଗଲି ।

ଜ୍ଞାନ - ଘର ପାଇଲ ପୁଣି କେମିତି ?

ମଦନ - ଛକ ଉପରେ ଗୋଟିଏ ବହି ଦୋକାନୀକୁ ପଚାରିଲି - ସେ ନିଜ ଘର ଠିକଣା ପରି କହିଗଲା, ୭୧ ନମ୍ବର, ଫିଫ୍‌ଥଫ୍ଲୋର୍ ସେଇଠି ରହନ୍ତି ଡାକ୍ତର ରାୟ - ତମ ଚେହେରା ବି ସେ ଟିକିନିଖି କହିଗଲା । ସତେ ରାୟ, ମୁଁ ଭାରି ଖୁସି । ବିଦେଶରେ ଆସି ଓଡ଼ିଆ ଏମିତି ନାଁ କରୁ, ଏଇଠି ମୋର ଗର୍ବ ।

ଜ୍ଞାନ - ଗର୍ବ ଯଦି କରିବାର ଥାଏ, ତେବେ ଆପଣଙ୍କୁ ନେଇ କରିବାକୁ ହେବ । ହିମାଳୟାନ୍ କେମିକ୍ୟାଲ୍‌ସରେ ଚାକିରି କଲା ପରେ, ମୁଁ ଶୁଣିଲି ଯେ ଏ ବିରାଟ କମ୍ପାନୀର ସବୁଠୁଁ ବଡ଼ ଅଂଶୀଦାର ହେଉଛନ୍ତି ଦାସ୍ ସାହେବ । କିନ୍ତୁ ଦାସ୍ ସାହେବ ଜଣେ ଓଡ଼ିଆ ଏ କଥା ଯେମିତି ମୁଁ ବିଶ୍ୱାସ କରିପାରିଲି ନାହିଁ । ମୋର ସୌଭାଗ୍ୟ ଯେ ସେଇ ଦାସ ସାହେବଙ୍କୁ

କାଲି ଜୁହୁବିଚ୍‌ରେ ମୁଁ ଭେଟିଲି - ଆଉ ତାଙ୍କ ଘରକୁ ଯିବା ଆଗରୁ ମୋ ଫ୍ଲାଟ୍‌କୁ ଆସିଛନ୍ତି ।

ମଦନ - ଶୁଣ ରାୟ, ମୋହନଲାଲ ଦାରୁୱାଲା - କୁଲି ବସ୍ତିରେ ମାଠିଆ ମାଠିଆ ମଦ ବିକ୍ରି କରି ଆଜି ସେ ଜଣେ କୋଟିପତି । ପାଞ୍ଚବର୍ଷ ତଳେ ଦିନେ ସେ ମୋତେ ଥଟ୍ଟା କରି କହିଥିଲା - ଓଡ଼ିଆ ଆଉ ବ୍ୟବସାୟ, ଏ ଦୁହେଁ ହେଉଛନ୍ତି ତେଲ ଆଉ ପାଣି । ସେଇଦିନ ମୁଁ ପ୍ରତିଜ୍ଞା କରିଥିଲି, ବ୍ୟବସାୟ ପରି ବ୍ୟବସାୟ ମୁଁ କରିବି - ଆଉ ସେ ବ୍ୟବସାୟ କରିବି ଏ ବାଣିଜ୍ୟ ନଗରୀ ବମ୍ବେ ସହରରେ । ତା'ରି ଫଳରେ ଗଢ଼ିଉଠିଛି, 'ହିମାଳୟାନ୍ କେମିକ୍ୟାଲ୍‌ସ' । କିନ୍ତୁ ରାୟ, ହିମାଳୟାନ୍‌ରେ ଚାକିରି କରିଛ ବୋଲି ତୁମେ ଯଦି ଭାବ ମୁଁ ମୁନିବ ଆଉ ତୁମେ ଚାକର, ତା'ହେଲେ ଭାଇ.... (ଯିବାକୁ ବାହାରିଲେ)

ଜ୍ଞାନ - ଦାସ ସାହେବ....

ମଦନ - ତା'ହେଲେ ମୋତେ ବନ୍ଧୁ ବୋଲି ଗ୍ରହଣ କରୁଛ ତ ?

ଜ୍ଞାନ - ଆପଣ ବସନ୍ତୁ । (କଲିଂ ବେଲ୍ ବଜାଇଲା)

ମଦନ - ଧନ୍ୟବାଦ ।

ଜ୍ଞାନ - ହିମାଳୟାନ୍‌ରେ ମୁଁ ଛ' ମାସ କାମ କଲିଣି - ସବୁବେଳେ କେବଳ ଆପଣଙ୍କ ନାଁ ଶୁଣେ, କେବେ ଦେଖିନଥିଲି ।

ମଦନ - ପ୍ରଥମ କଥା ମୁଁ ପ୍ରାୟ, ଫ୍ୟାକ୍‌ଟରୀକୁ ଯାଏନା । ତା' ଛଡ଼ା ଏଇ କେତେଦିନ ହବ ମୁଁ ସିକନ୍ଦରାବାଦରେ ଥିଲି । ଏଇ ଦୁଇଦିନ ହେଲା ବମ୍ବେ ଫେରୁଛି ।

(ଜ୍ଞାନୀନ୍ଦ୍ରର ଚାକର ସଞ୍ଜୀବ ଆସିଲା ।)

ସଞ୍ଜୀବ - ସାହେବ !

ଜ୍ଞାନ - କଫି । (ସଞ୍ଜୀବ ଚାଲିଗଲା)

ମଦନ - ବମ୍ବେ ଆସିଲେ ତାଜ୍ ହୋଟେଲ୍‌ରେ ରହିବାର କ୍ଷମତା ମୋର ଅଛି, ହୁଏତ ସେଠି ମୁଁ ରହେ । କିନ୍ତୁ ନିଜ ଜନ୍ମଭୂମିର ଜଣେ ବନ୍ଧୁଙ୍କଠାରେ ଗୋଟାଏ କପ୍ କଫି ଖାଇବାର ଯେଉଁ ଆନନ୍ଦ......

ଜ୍ଞାନ - ଆପଣଙ୍କ ପିଲାମାନେ ଏଠି ରହନ୍ତି ତ ?

(ସଞ୍ଜୀବ କଫି ଆଣି ଦେଇଗଲା ।)

ମଦନ - ପିଲାମାନେ !! ତୁମର କ'ଣ ଧାରଣା ମୁଁ ବିବାହ କରିଛି ।

ଜ୍ଞାନ - ଧାରଣା କରି କ'ଣ କେହି କେବେ ଏକଥା କୁହେ ?

ମଦନ - ତା'ହେଲେ ତୁମେ ଧରିନେଇଚ ଯେ, ମୁଁ ବିବାହିତ ?

ଜ୍ଞାନ - ହଁ ।

ମଦନ - କାହିଁକି ?

ଜ୍ଞାନ - (ହସି) ଆପଣ ମୋତେ ସୋଜା କଥାଟା କହିଲେ, ଆପଣ ବିବାହ କରିଛନ୍ତି କି ନାହିଁ ?

ମଦନ - ନା । ମୁଁ ବିବାହ କରିନାହିଁ ।

ଜ୍ଞାନ - କରିନାହାନ୍ତି ? ମୋର ତା'ହେଲେ ଭୁଲ୍ ଧାରଣା ।

ମଦନ - କି ଭୁଲଧାରଣା ?

ଜ୍ଞାନ - ଆପଣ ସିଗାରେଟ୍ ନିଅନ୍ତୁ - ମୁଁ ଆଉ ଏତେକଥାର ଉତ୍ତର ଦେଇପାରିବି ନାହିଁ ।

ମଦନ - ଖସିଗଲେ ଚଳିବ ନାହିଁ ବନ୍ଧୁ । କାଲି ମୋ ଗାଡ଼ିରେ ଯିଏ ବସିଥିଲେ ତାଙ୍କୁଇ ଦେଖି ତୁମର ଧାରଣା ହେଲା ଯେ.....

ଜ୍ଞାନ - ବାସ୍ତବିକ୍, ମୋର ଭୁଲ୍ ହୋଇଛି । ମୁଁ ତାଙ୍କୁ ଆଦୌ ଦେଖିନି କହିଲେ ଚଳେ । କେବଳ ଏତିକି ଦେଖିଛି ଗାଡ଼ିରେ ଜଣେ ସ୍ତ୍ରୀଲୋକ ବସିଥିଲେ । ହୋଇପାରନ୍ତି ସେ ଆପଣଙ୍କର କେହି ବନ୍ଧୁ ।

ମଦନ - ବନ୍ଧୁ ନକହି ବାନ୍ଧବୀ କହିଲେ ମୁଁ ତୁମକୁ ଦୋଷ ଦେଉନି । ତମେ ଙ୍ଗି ଙ୍ଗି କଥା କହୁଛ କାହିଁକି ? ସେ ଭଦ୍ରମହିଳା କିଏ ଜାଣ ?

ଜ୍ଞାନ - ମୁଁ କେମିତି ଜାଣିବି ?

ମଦନ - ଜାଣିବାକୁ ଚାହଁ ?

ଜ୍ଞାନ - ଥିର ପାଣିରେ ପଥରଟିଏ ପକାଇ ତରଙ୍ଗ ଖେଳାଇଲା ଭଳି ଆପଣ ମୋ ମନରେ ଜାଣିବାର ଆଗ୍ରହଟା ଖେଳାଇଦେଉଛନ୍ତି । ନଜାଣିବାର ମୋର ଉପାୟ ଅଛି ? କୁହନ୍ତୁ ସେ କିଏ ?

ମଦନ - (ରସିକତା କରି) ନର୍ଗିସ୍‌ର ସାନଭଉଣୀ ।

ଜ୍ଞାନ - (ହସି) କିଏ ?

ମଦନ - ନା-ନା, ଭୁଲ୍ କହିଲି - ଗୀତବାଲିର ମାମୁଁ ଝିଅ ଭଉଣୀ ।

ଜ୍ଞାନ - ଅଦ୍ଭୁତ ଲୋକ ଆପଣ !

ମଦନ - କ'ଣ ବିଶ୍ୱାସ ହଉନି !

ଜ୍ଞାନ - ବିଶ୍ୱାସ ଅବିଶ୍ୱାସର କଥାନୁହେଁ - ଆପଣଙ୍କର କଥା ଶୁଣି ମୁଁ ଭାବୁଚି ଭଦ୍ରମହିଳା ଆଦୌ ମହିଳା ନୁହଁନ୍ତି ।

ମଦନ - ମାନେ ?

ଜ୍ଞାନ - ସେ ହଉଛନ୍ତି କୌଣସି ଶାଢ଼ି ଦୋକାନରେ ସଜା ହୋଇଥିବା କାଠ କିମ୍ବା କାର୍ଡ୍‌ବୋର୍ଡ୍‌ର ଶାଢ଼ିପିନ୍ଧା ମୂର୍ତ୍ତି - ସଉକରେ ଆପଣ ତାକୁ ଉଠାଇଆଣିଛନ୍ତି ।

ମଦନ - ତୁମେ ଠିକ୍ କହିଛ ଡକ୍‌ଟର, ସେ କାଠ ପାଷାଣଠାରୁ ବି ହୀନ । ତା'ନହେଲେ ତା' ଉପରେ ଏ ଅତ୍ୟାଚାର ?

ଜ୍ଞାନ - ଅତ୍ୟାଚାର ?

ମଦନ - ଲକ୍ଷ୍ୟ କରିଛ, ମୋ ଗାଡ଼ିରୁ ଓହ୍ଲାଇ ଟିକିଏ ଦୂରରେ ଠିଆହୋଇଥିଲେ ଜଣେ ବୟସ୍କ ଭଦ୍ରଲୋକ । ସେ ହଉଛନ୍ତି ସେଇ ଝିଅର ବାପା । ଘର ତାଙ୍କର ପାକିସ୍ଥାନରେ, ସେଠି ଜଣେ ଯୁବକ ଝିଅଟି ଉପରେ ଜୋର୍ କରି ଅତ୍ୟାଚାର କଲା ।

ଜ୍ଞାନ - ତା'ପରେ ?

ମଦନ - ତା'ପରେ, ସତୀତ୍ୱର ମର୍ଯ୍ୟାଦା ରକ୍ଷା କରିବାକୁ ଯାଇ ସେ ଝିଅଟି ସେ ଯୁବକକୁ ବିବାହ କରିବାକୁ ଚାହିଁଲା । କିନ୍ତୁ ସେ ଯୁବକ.....

ଜ୍ଞାନ - ରାଜିହେଲାନାହିଁ !

ମଦନ - ନା । ତା'ପରେ ବାପ ଝିଅ ଦୁହେଁ ହିନ୍ଦୁସ୍ଥାନକୁ ପଳାଇଆସିଲେ । ଏଠି ଜଣେ ଆଦର୍ଶବାଦୀ ଯୁବକ ସେ ଝିଅଟିକୁ ବିବାହ କଲା । କିନ୍ତୁ ସେ ଝିଅଟା ଏତେ ବୋକା, ମଧୁଶଯ୍ୟା ରାତିରେ ଗୋଟି ଗୋଟି କରି ସମସ୍ତ କଥା ତା'ର ସ୍ୱାମୀକୁ କହିଦେଲା । ଫଳରେ ଯୁବକଟି ସମସ୍ତ ଆଦର୍ଶକୁ ପଛକୁ ପକାଇ, ଘରଦ୍ୱାର, ସ୍ତ୍ରୀ ସମସ୍ତଙ୍କୁ ଛାଡ଼ି ସେଇ ମୁହୂର୍ତ୍ତରେ ହେଲା ଦେଶାନ୍ତରୀ ।

ଜ୍ଞାନ - (ବିଚଳିତ ହୋଇଉଠି) ଦାସ ସାହେବ !

ମଦନ - କ'ଣ ହେଲା ଡକ୍‌ଟର, ସେ ତ ପଳାଇଗଲା, ତୁମର ପୁଣି କ'ଣ ହେଲା ?

ଜ୍ଞାନ - ମୁଁ ଭାବୁଚି ସେଇ ବର୍ବର ପାକିସ୍ଥାନୀ ଯୁବକର କଥା । ଝିଅଟାର ସର୍ବସ୍ୱ ନେଇ ତା'ର କ'ଣ ଉଚିତ୍ ନଥିଲା ତାକୁ ବିବାହ କରିବାକୁ ?

ମଦନ - ମୁଁ କିନ୍ତୁ ଭାବୁଛି ସେଇ ଅବିବେକୀ ହିନ୍ଦୁସ୍ଥାନୀ ଯୁବକର କଥା । ତା'ର ସର୍ବସ୍ୱ ଫେରାଇ ଦେବାର ଆଶା ଦେଇ ପୁଣି ତାକୁ ଏମିତି ଆଶ୍ରୟହୀନା କରି ଛାଡ଼ିଆସିବା କ'ଣ ତା'ର ଉଚିତ୍ ହେଲା ?

(କିଛି ସମୟ ପାଇଁ ଦୁହେଁ ନୀରବ)

ଡାକ୍ତର.....

ଜ୍ଞାନ - କ'ଣ ?

ମଦନ - ଏଇ ଘଟଣାରୁ ଆମେ, ଏଇ ପୁରୁଷ ଜାତି, କିପରି ସ୍ୱାର୍ଥପର ଏହା କ'ଣ ପ୍ରମାଣିତ ହେଉନି ! ଆମେ ଦୁହେଁ ସେଇ ଯୁବକ ଦୁହିଁଙ୍କ କଥା ଭାବୁଛେଁ; କିନ୍ତୁ ସେ ଝିଅଟି କଥା ତ କେହି ଭାବୁନାହୁଁ ?

ଜ୍ଞାନ - ଆପଣ ଠିକ୍ ଓଲଟା କଥା କହୁଛନ୍ତି । ସେଇ ଝିଅଟି କଥାରୁ ତ ସବୁ ଚିନ୍ତା...

ମଦନ - କିନ୍ତୁ କୌଣସି କାରଣରୁ ସେ ଝିଅଟି ଯଦି ମରିଯାଇପାରନ୍ତା ତା'ହେଲେ ସମସ୍ତେ ବୋଧହୁଏ ଶାନ୍ତିରେ ନିଃଶ୍ୱାସ ମାରି ରୁହନ୍ତେ ।

ଜ୍ଞାନ - କିନ୍ତୁ ସେ ଝିଅଟି କାହିଁ ?

ମଦନ - ଅଛି । ସେ ପାକିସ୍ଥାନୀ ହିନ୍ଦୁସ୍ଥାନୀ ଦୁହେଁ ବି ଅଛନ୍ତି । କିନ୍ତୁ ଆମେ ଏଠି ରହି ଲାଭନାହିଁ, ଉଠ ।

ଜ୍ଞାନ - କୁଆଡ଼େ ?

ମଦନ - ଡାକ୍ତର ହୋଇ ବି ତୁମେ ଭାରି ସେଣ୍ଟିମେଣ୍ଟାଲ୍ ଦେଖୁଛି । ଗୋଟାଏ ଅଜଣା ଅଶୁଣା ଝିଅର କଥା ଶୁଣି ତୁମେ ଇମିତି ଭାଙ୍ଗିପଡୁଛ ! ! ତୁମେ ଆସ ।

ଜ୍ଞାନ - କିନ୍ତୁ କୁଆଡ଼େ ?

ମଦନ - This is Bombay Dr. Ray! ଏଠି କୁଆଡ଼େ ଆଉ 'କାହିଁକି'ର କିଛି ଅର୍ଥନାହିଁ, ଆସ । ଆରେ ନର୍ଗିସ୍ ଗୀତବାଲୀଙ୍କର ଭଉଣୀଙ୍କୁ କିଏ ପଚାରେ, ଖୋଦ ସେମାନଙ୍କ ସହିତ ଦଶ ପାଞ୍ଚ ମିନିଟ୍ ଆଳାପ କରିବାର ସୁବିଧା ଅଛି, ଆସ ।

ଜ୍ଞାନ - ଦେଖନ୍ତୁ, ସେମାନଙ୍କ ସହିତ ଆଳାପ କରିବାର ମୋହ ମୋର ଆଦୌନାହିଁ, ତଥାପି ମୁଁ ଯିବି - କିନ୍ତୁ ଆଜି ନୁହେଁ ।

ମଦନ - ତା'ହେଲେ ମୁଁ ତୁମକୁ ସେଇ ଆଦର୍ଶବାଣୀ ଶୁଣାଇ ସାବଧାନ କରିଦେଉଛି ଡକ୍‌ଟର୍, "When a man is tired of Bombay, he is tired of his life"! ଯେଉଁଦିନ ଏଇ ବମ୍ବେ ସହର ତୁମକୁ ପିତାଲାଗିବ, ସେଇଦିନ ଜାଣିବ ଏ ଦୁନିଆରେ ବଞ୍ଚି ତୁମର ଲାଭନାହିଁ । ହଁ, ଡାକ୍ତର, ତୁମେ ତ ମୋତେ ଏପର୍ଯ୍ୟନ୍ତ କହିଲନାହିଁ !

ଜ୍ଞାନ - କ'ଣ ?

ମଦନ - ତୁମେ ବିବାହ କରିଛ କି ନାହିଁ ।

ଜ୍ଞାନ - ବିବାହ ! (ପୁଣି ବିଚଳିତ ହୋଇପଡ଼ିଲା । ଏତିକିବେଳେ ଫୋନ୍ ବାଜିଉଠିବାରୁ ସେ ଯାଇ ଫୋନ୍ ଧରିଲା) Yes, Dr. Ray speaking, ଏଁ ! କବ୍ ? ଆଚ୍ଛା ମେଁ ଅଭି ଆଜାତା ହୁଁ । (ଫୋନ୍ ରଖି) ମୁଁ ଦଶ ମିନିଟ୍ ଭିତରେ ଫେରିଆସୁଛି । ଆପଣ ଦୟାକରି ଟିକିଏ ଅପେକ୍ଷା କରନ୍ତୁ ।

ମଦନ - ରୋଗୀଟି ପୁରୁଷ ନା ସ୍ତ୍ରୀ ?

ଜ୍ଞାନ - ଜଣେ ପ୍ରଫେସରଙ୍କ ଝିଅ, ଏଇ ପାଖରେ । କଲେଜ୍‌ରୁ ଫେରିଲାପରେ ଅଚେତ ହୋଇଯାଇଛି । (ପ୍ରସ୍ଥାନ)

ମଦନ - (ମନକୁ ମନ) ପ୍ରଫେସରଙ୍କ ଝିଅ ! ଦଶ ମିନିଟ୍ ବି ଶହେ ମିନିଟ୍ ହେବା ବିଚିତ୍ର ନୁହେଁ । ଆଚ୍ଛା, ଦଶ ମିନିଟ୍ ଅପେକ୍ଷା କରାଯାଉ ।

(ଘର ଭିତରେ ପଦଚାରଣ କରୁ କରୁ ତା'ଆଖି ପଡ଼ିଲା ଗୋଟିଏ ଫ୍ରେମ୍‌ରେ ବନ୍ଧାହୋଇଥିବା ଦୁଇଟି ଛବି ଉପରେ । ଉଠାଇ ଆଣି ଦେଖିଲା - ଜ୍ଞାନୀନ୍ଦ୍ର ଓ ଉର୍ବଶୀର ଛବି । ତଳେ ସେମାନଙ୍କର ନାମ ଲେଖାହୋଇଛି । ଆଶ୍ଚର୍ଯ୍ୟର ସୀମା ତା'ର ରହିଲାନାହିଁ - ସଞ୍ଜୀବ ଆସିଲା ।)

ସଂଜୀବ - ସଲାମ୍ ସାହେବ୍ (କପ୍ ପ୍ଲେଟ୍ ଉଠାଇନେଇ) ସଲାମ୍ ସାହେବ (ଚାଲିଗଲା)

ମଦନ - (ଛବିଟିକୁ ଦେଖୁ ଦେଖୁ) ଉର୍ବଶୀ....ଜ୍ଞାନୀନ୍ଦ୍ର ! ଜ୍ଞାନୀନ୍ଦ୍ର ! ! କିଏ ଏଇ ଜ୍ଞାନୀନ୍ଦ୍ର ! ! ! (ଛବିଟି ଯଥାସ୍ଥାନରେ ରଖିଦେଲା) ଇଏ ତେବେ ସେଇ ଶରଣକୁଳର ଜ୍ଞାନୀନ୍ଦ୍ର !

(ଡାକିଲା) ସଂଜୀବ ! (ସଂଜୀବ ଆସିଲା)

ସଂଜୀବ - ସଲାମ୍ ସାହେବ ।

ମଦନ - ତୁମ୍ ବମ୍ବାଇକେ ରହେନ୍‌ୱାଲେ ହୋ ?

ସଂଜୀବ - ଜୀ ସରକାର ।

ମଦନ - ତୁମ୍‌ହାରା ମେମ୍ ସାହେବ ? କାହାଁ ରହତି ହୈ ?

ସଂଜୀବ - ହଜୁର୍....ଓହି ଫ୍ରେମ୍‌କୀ ଅନ୍ଦର ।

ମଦନ - ତୁମ୍‌ନେ କଭି ଦେଖା ଉନ୍‌କୋ ?

ସଂଜୀବ୍ - ନେହିଁ, ମୈନେ ଅନ୍ଦାଜ କରଲିୟା ।

ମଦନ - ହୁଁ ! ! !.... ଆଚ୍ଛା, ସଂଜୀବ, ତୁମ୍‌ନେ କୈ ସଲାମ୍ କିୟା ?

ସଂଜୀବ - ତିନ୍ ସଲାମ୍ ହଜୁର ।

ମଦନ - ମୈ ଯା' ରହାହୁଁ - ବାବୁଜୀକୋ ବୋଲଦେନା !

ସଂଜୀବ -ସଲାମ୍ ସାହେବ । (ମଦନ ଚାଲିଗଲା) ଆହା, ଆହା ! ପାଞ୍ଚ ସଲାମ୍, ଦଶ ରୂପେୟା - ଗଙ୍ଗା ମାଈ, ଗନେଶ ଭାୟା !

(ସଂଜୀବ ଚାଲିଗଲା । ଟିକିଏ ପରେ ଆସିଲା ଜ୍ଞାନୀନ୍ଦ୍ର ।)

ଜ୍ଞାନ - ସଂଜୀବ । (ସଂଜୀବ ପୁଣି ଆସିଲା) ଓ ସାହାବ୍ ?

ସଂଜୀବ - ଅଭି ଅଭି ଚଲେଗୟେ ।

ଜ୍ଞାନ - ଆଚ୍ଛା ।

(ସଂଜୀବ ଭିତରକୁ ଚାଲିଗଲା । ଜ୍ଞାନୀନ୍ଦ୍ର ଫ୍ରେମ୍‌ଟି ଉଠାଇଆଣି ଦେଖିବାକୁ ଲାଗିଲା । ତା'ପରେ ସେ ଯାଇ ଠିଆ ହେଲା କାନ୍ଥରେ ଟଙ୍ଗା ହୋଇଥିବା ଗାନ୍ଧୀଜୀଙ୍କର ଗୋଟିଏ ଛବି ପାଖରେ ।)

ଜ୍ଞାନ - ନୂଆଖାଲି ଆଉ ପଞ୍ଜାବର ଶହ ଶହ ଅତ୍ୟାଚାରୀତା ନାରୀ କଳଙ୍କିତା ନୁହଁନ୍ତି । ସେମାନଙ୍କର ଧର୍ମ, ସେମାନଙ୍କର ସତୀତ୍ୱ ନଷ୍ଟ ହୋଇପାରେନା ବୋଲି ତୁମେ କହିଥିଲ ମହାତ୍ମା ! ତମର ସେ ବାଣୀ ମୋ ପ୍ରାଣକୁ ସ୍ପର୍ଶ କଲାନାହିଁ କାହିଁକି ? କାହିଁକି ମୁଁ ଏମିତି ଦୁର୍ବଳ ହୋଇପଡ଼ିଲି - କାହିଁକି ? ?

## ଦ୍ୱିତୀୟ ଦୃଶ୍ୟ

(ମଣି ଘରର ଅଳିନ୍ଦ । ମଣି ଖୁବ୍ ସତର୍କତାର ସହ କାନପାରି କ'ଣ ଶୁଣୁଥାଏ - ବାହାର ଦରଜାରେ ଠକ୍ ଠକ୍ ଶବ୍ଦ ହେଉଛି ।)

ମଣି - ଛମା ତ ଯିବିନାହିଁ । ଏଡ଼େ ସିଆଣା ! ଠକ୍ ଠକ୍ କରି କବାଟ ବାଡ଼େଇଲେ କବାଟ ଫିଟେଇଦେବି ପରା ! (ବଡ଼ ପାଟିରେ) ବଳିଆ, ବଳିଆରେ, ବଳିଆ ! ସିଏ କ'ଣ

ଉଠିବ କି ? ଶୋଇଥିଲେ ତ କୁମ୍ଭକର୍ଣ୍ଣ!..... ହେଇତି, ଭଲରେ କହୁଚି - ପଳା । ନଇଲେ ମହତ ସାରିଦେବି ।

ମଦନ - (ବାହାରୁ ଚପାଗଳାରେ) ମଣିଅପା, ମୁଁ!

ମଣି - କିଏ ବା ତୁ ?

ମଦନ - (ପୂର୍ବପରି) ମଣିଅପା ମୁଁ, କାନ୍ତରାଟି ବାବୁ ।

ମଣି - ଏଁ! କାନ୍ତରାଟି ବାବୁ! ମତେ ଫୁସୁଲୋଉଚୁ ! ହଇରେ, କାନ୍ତରାଟି ବାବୁ ତ ତିନିବର୍ଷ ହେଲା କୁଆଡ଼େ ଯାଇଛି, ତୁ କି କାନ୍ତରାଟିବାବୁ! ପଳା କହୁଚି ।

ମଦନ - ଆଲୋ ତୁ ଆଗ କବାଟ ଫିଟା, ମୁଁ ପରା ମଦନବାବୁ ।

ମଣି - ହଉ ଫିଟୋଉଛି, ତୁ ଯଦି କାନତରାଟି ହେଇଥିବୁ ତ ଭଲ । ନଇଲେ ତୋର ଦିନେ କି ମୋର ଦିନେ - (ହାତରେ ପନିକିଟାଏ ନେଇ, କବାଟ ଖୋଲି ମଦନଙ୍କୁ ଦେଖି) ତେମେ ବାବୁ ଭେଳିକି ଲାଣ କି ? ଏ ଅଧ ରାତିଟାରେ....

ମଦନ - ମୋ କଥା ଥାଉ । ତୁ ଆଗ କହିଲୁ.... ତୋର ସବୁ ଭଲ ତ ?

ମଣି - ମତେ ମରଣ ହଉ । ମୋ ଭଲରୁ କ'ଣ ମିଳିବ! ତମ କଥା କହିବଟି ?

ମଦନ - ମୋ କଥା ତୁ ଭାବନା, ମୋର ସବୁ ଭଲ । ତୁ ବର୍ତ୍ତମାନ ମୋ ସାଥିରେ ଆ' ।

ମଣି - କୁଆଡ଼େ ?

ମଦନ - କଟକ ।

ମଣି - କ-ଟ-କ!!

ମଦନ - ହଁ, ଡେରି ନ କରି ବାହାରିପଡ଼ ।

ମଣି - ଇଏ କୋଉ ରାଇଜର କଥା ତୁମେ କହୁଛ ବାବୁ!

ମଦନ - ମୋ ଉପରେ ତୋର ବିଶ୍ୱାସନାହିଁ ?

ମଣି - ମୁଁ କହିଲି ?

ମଦନ - ତା'ହେଲେ ଉଁ ଚୁଁ ନକରି ଯାଇ ଗାଡ଼ିରେ ବସ । ଆଚ୍ଛା ତୋର ଏ ଘର ସବୁଦିନେ କ'ଣ ଇମିତି ଥିବ ? ନୂଆ ଘର ତୋଳିବୁ ନାହିଁ ? ପୁଅ ବାହାଘର କରିବୁ ନାହିଁ ।

ମଣି - ଠାକୁରେ ତୁମକୁ କୋଟି ପରମାୟୁ ଦିଅନ୍ତୁ । ପାଏ ନପାଏ ଆସି ତିନିବର୍ଷ ହୋଇଗଲା, ବନ୍ଧ ହୋଇ ବନ୍ଧ ଭାଙ୍ଗିଗଲା - ସେଇଦିନୁ ଯାଇଛ ଯେ....

ମଦନ - ମୋ କଥା ଥାଉ ଅପା, ତିନିଦିନ ତଳେ ମୁଁ ଥିଲି ବମ୍ବେରେ, ଆଜି ଦେଖୁଚୁ ଏଠି । ହଁ, ତୁ ଆଉ ଡେରି କରନା ।

ମଣି - କ'ଣ ସେଇ ଉର କଥା କି ବାବୁ ?

ମଦନ - ଉର । ଉର କାହିଁ ?

ମଣି - ମୁଁ ଜାଣିଛି ? ବାପ ତ...ଯାହା କହନ୍ତି ମୂର୍ଚ୍ଛନା ଫାଟି ମଲା । ଆଉ ଏଇଟା କଥା ତ କିଏ କହୁଛି.... ପାଣିକି ଡେଇଁପଡ଼ିଲା - କିଏ କହୁଛି ରେଳ ପାହିଆ ତଳେ ମୁଣ୍ଡ

ଦେଖେଇଦେଲା - କିଏ କହୁଛି ଯାଇ କୋଉଠି ଚାକିରି କଲାଣି । ସତ କହିଲ ବାବୁ.....

ମଦନ - ତୁ ଆଗ କଟକ ଚାଲ, ସେଇଠି ସବୁ ଶୁଣିବୁ ।

ମଣି - ହଉ, ରାତିଟା ରହିଯାଅ, କାଲି ସକାଳେ...

ମଦନ - ତା'ହେଲେ ତୁ ଯିବୁ ନି ?

ମଣି - କି କଥା କହୁଚ ବାବୁ - ରାତି ଅଧଟାରେ ତୁମ ସାଙ୍ଗରେ ଘରୁ ଗୋଡ଼କାଢ଼ିଲେ ଲୋକ କ'ଣ କହିବେ ?

ମଦନ - ଭଗବାନ୍! ଏ ଦିନେ ବି ତୋର ବଦ୍‌ନାମକୁ ଭୟ ଅଛି ?

ମଣି - ଉଁ! ଛୋପରା ହୋଇ ଯାଉଚନ୍ତି ନା । ମୁଁ ସେଇତା କହିଲି ?

ମଦନ - ଆଚ୍ଛା ମଣିଅପା, ତୋର ପେଟମରା ରୋଗ ଥିଲା ପରା ?

ମଣି - ଭଲ ହୋଇଗଲାଣି ।

ମଦନ - ଧର, ପୁଣି ବାହାରିଛି । ତୁ ଚାଲ, ବଳିଆ ବି ଚାଲୁ । ବଳିଆ ତୋତେ ଛାଡ଼ିଦେଇ ଆସି ଏଠି କହିବ ଯେ, ବୋଉ ପେଟକୁ ମାଇଲା ବୋଲି ତାକୁ ଡାକ୍ତରଖାନାରେ ଛାଡ଼ିଦେଇ ଆସିଲି, ବୁଝିଲୁ । ଏଥର ବାହାରିପଡ଼.... ଆଉ କ'ଣ ଭାବୁଛୁ ?

ମଣି - ନାଇଁ, ଏଇ ଗୋବରୀ ନଈ, ବଟ ପଡ଼ିଆ, ନୂଆପୋଖରୀ ମାଛ, ଏଇ ଗ୍ରାହକ ଖାଲି ଆଖି ଆଗରେ ନାଚିବ ।

ମଦନ - ସେଠି ବି କାଠଯୋଡ଼ି ନଈ, କିଲାପଡ଼ିଆ, ଯୋବ୍ରାଘାଟର ମାଛ ଅଛି, ଚାଲ୍ ।

ମଣି - ହଁ ବାବୁ, ସେ ତ କଟକ ସହର, ମୁଁ ସେଠି ଚଳିପାରିବି ତ ?

ମଦନ - କାହିଁକି ?

ମଣି - ସେଠି ହଜାର ହଜାର ଲୋକଙ୍କ ଯା'ଆସ, ଦିନ ଦି' ପହରେ ଗଣ୍ଠି କାଟିନେବେ ।

ମଦନ - ଓଃ.... ତୋ' ମୁଣ୍ଡରେ ଭଗବାନ୍ ଯେଉଁ ବୁଦ୍ଧି ଦେଇଛନ୍ତି, ତୁ ମସ୍କୋ ସହରକୁ ଗଲେ ବି ସେଠିକା ଲୋକଙ୍କ ଚୁଟି କାଟିଦେଇପାରିବୁ ।

ମଣି - ଖାଲି ତମେ କହୁଚ ବୋଲି ବାବୁ ମୁଁ ଯାଉଚି, ନଇଲେ ଏ ଗାଁ ଛାଡ଼ିଯିବାକୁ ମୋ ଗୋଡ଼ ଚଳନ୍ତା!!!

## ତୃତୀୟ ଦୃଶ୍ୟ

(ଉର୍ବଶୀର କଟକ ଘର । ଭାସ୍କର ଗୋଟିଏ ଟେବୁଲ୍ ଉପରେ ବସି ଗୋଟିଏ ଚୌକି ଉପରେ ଖାଇବା ଜିନିଷ ସବୁ ରଖି ଖାଉଛି । ବୀଣା ଆସିଲା ।)

ବୀଣା - ହାଓ ଫନ୍ନି!! ଯେ'କ'ଣ ?

ଭାସ୍କର - (କିଛି ନ କହି ଖାଇବାରେ ଲାଗିଲା)

ବୀଣା - ଯେ କ'ଣ!

ଭାସ୍କର - ତୁମେ କ'ଣ ଏପର୍ଯ୍ୟନ୍ତ ଛ'ମାସର ଶିଶୁ ପରି ଫିଡ଼ିଙ୍ଗ୍ ବଟ୍‌ଲରୁ କ୍ଷୀର ଖାଉଛ ଯେ ଏ ଭୋଜନ ବିଦ୍ୟାଟା ବୁଝିପାରୁନା ?

ବୀଣା - ଭୋଜନଟା ଯେ ଏମିତି ଗୋଟେ ଅସାଧ ବିଦ୍ୟା, ଏ କଥା ଆପଣଙ୍କୁ ଏମିତି ଟେବୁଲ୍ ଉପରେ ବସି ଖାଇବାର ଦେଖି ମୁଁ ବୁଝୁଛି । ଆପଣ ନ ହେଲେ ଏ ସାଧନା କରିବ କିଏ ?

ଭାସ୍କର - ଏଇଟା କୋଉ ସ୍ଥାନ ?

ବୀଣା - କଟକ ।

ଭାସ୍କର - ଏଠି ଯଦି ମୁଁ ଉର୍ବଶୀକୁ ନିମନ୍ତ୍ରଣ କରିଥା'ନ୍ତି, ତେବେ ତାକୁ କ'ଣ ଖାଇବାକୁ ଦେଇଥା'ନ୍ତି ଜାଣ ? ପଲାଉ, କୁରୁମା, କଟ୍‌ଲେଟ୍, ଚପ୍ - ଯାହାକୁ ଟେବୁଲ୍ ଉପରେ ରଖି ଚେୟାର ଉପରେ ବସି ଖାଆନ୍ତି ।

ବୀଣା - କିନ୍ତୁ ଉର୍ବଶୀ ଏଠି ଆପଣଙ୍କୁ ନିମନ୍ତ୍ରଣ କରି ଖାଇବାକୁ ଦେଇଛି - ଛୁଞ୍ଚିପତ୍ର, ଚକୁଳି, ପୋଡ଼ପିଠା ।

ଭାସ୍କର - ତା'ହେଲେ ମୁଁ କାହିଁକି ଭାବିବିନାହିଁ ଯେ, ଏଇଟା କଟକ ସହର ନୁହେଁ, ଏଇଟା ଉର୍ବଶୀର ସେଇ ଶରଣକୁଳ ଗାଁ, ଯେଉଁଠି ଗୋଟେ ଉଚ୍ଚ ପିଢ଼ା ଉପରେ ବସି ତଳେ ଥାଳି ରଖି ମୁଁ ଖାଉଛି ।

ବୀଣା - ବେଶ୍ ଖାଆନ୍ତୁ । (ଉର୍ବଶୀ ଆସିଲା)

ଉର୍ବଶୀ - କ'ଣ କରୁଚୁ ବୀଣା, ଭାସ୍କରବାବୁଙ୍କୁ ଖୁଆଉଚୁ ?

ଭାସ୍କର - ଖୁଆଉନାହାଁନ୍ତି ଯେ, ଯାହା ଖାଉଛି ତାକୁ କିପରି ବାନ୍ତି କରିବି ସେଇ ବ୍ୟବସ୍ଥା କରୁଛନ୍ତି ।

ଉର୍ବଶୀ - କିନ୍ତୁ ଆପଣ ଆଉ ନଖାଇ ହାତଟେକି ବସିଲେ ଯେ ?

ଭାସ୍କର - ନା, ଖୁବ୍ ଖାଇଲିଣି, ଆଉ ଖାଇବି ନାହିଁ । ଜ୍ଞାନୀନ୍ଦ୍ର ତା' ଭୁଲ୍ ବୁଝିପାରି ଫେରିଆସୁଛି ବୋଲି ତୁମେ ଆମକୁ ପୋଡ଼ପିଠା, ସରୁ ଚକୁଳି, ଛୁଞ୍ଚିପତ୍ର ଇତ୍ୟାଦି କରି ଖାଇବାକୁ ଦଉଛ - ବହୁଦିନ ପରେ ଆଜି ତୁମ ମୁହଁରେ ହସ ଫୁଟିଉଠିଛି । ପଚାର, ବୀଣାକୁ ପଚାର, ମୁଁ କେତେଥର ତାକୁ କହିଛି ଯେ ଜ୍ଞାନୀନ୍ଦ୍ର ନଫେରି ରହିପାରେନା - ସେ ତା'ର ଭୁଲ୍ ବୁଝିପାରି ଦିନେ ନା ଦିନେ ଫେରିବ । ହଁ, ଆଜି ସତେଇଶି ତାରିଖ ନା ?

ଉର୍ବଶୀ - ହଁ ।

ଭାସ୍କର - ଜ୍ଞାନ କେବେ ଆସିବ ବୋଲି ଲେଖିଛି ?

ଉର୍ବଶୀ - ପ୍ରାୟ ପନ୍ଦର ଦିନ ଭିତରେ ?

ଭାସ୍କର - ଚିଠିରେ ମୋ କଥା କିଛି ଲେଖିଛି ?

ଉର୍ବଶୀ - ହଁ, ଲେଖିଛନ୍ତି, ଭାସ୍କରକୁ କହିବ....

ଭାସ୍କର - କ'ଣ କହିବ ? ଗାଡ଼ିରୁ ଓହ୍ଲାଇ ଲାଜରେ, ଭୟରେ ଆସିପାରିବନାହିଁ, ତାକୁ ଯାଇ ଗୋଟେ ପରଦାଦିଆ ଗାଡ଼ି ଭିତରେ ନେଇଆସିବ - ଏଇୟା ? ଆଚ୍ଛା ସେ ଆଗ ଆସୁ । ହଁ, ଡାକ୍ତର ଦାସ, ପଙ୍କଜ ଏମାନେ ସମସ୍ତେ ଖାଇଲେଣି ?

ଉର୍ବଶୀ - ହଁ ।

ଭାସ୍କର - ତୁମମାନଙ୍କର ସବୁ ଖିଆପିଆ ହେଲାଣି ?

ବୀଣା - ନା, ଆମେ ଖାଇନୁ ।

ଭାସ୍କର - ଖାଇନ ? ତେବେ ଯାଅ, ଆଉ ଡେରି କାହିଁକି ?

ବୀଣା - ଆପଣ କ'ଣ ଯିବେ ?

ଭାସ୍କର - କାହିଁକି ? ଯିବି କାହିଁକି ?

ବୀଣା - ବେଶ୍, ନଯାଆନ୍ତୁ ।

ଭାସ୍କର - ମୁଁ ଏଠୁ ଯିବିନାହିଁ । ତୁମେ ଖାଇସାରିବା ପର୍ଯ୍ୟନ୍ତ ମୁଁ ଏଠି ବସି ବସି ସେଇ ବିଖ୍ୟାତ ପଲ୍ଲୀ ଗୀତଟି ଗାଇବି ।

ବୀଣା - ହାଓ ଫନ୍ନି ! ଆପଣ ଗୀତ ଗାଇବେ ? ହଉ ଗାଆନ୍ତୁ । (ବୀଣା ଓ ଉର୍ବଶୀ ଚାଲିଗଲେ)

ଭାସ୍କର - (ସୁର ଧରି ଗାଇଲା)

ବନ୍ଧୁରେ.... ମନେପଡ଼େ କିବା ତୋ'ର ?

ଶୈଶବର ସେଇ ଜାମୁକୋଳି ଖିଆ କଥା;

ସେଇ ଆମ ଧୂଳିଘର ! !

ମଣି - (ବାହାରୁ ବଡ଼ପାଟିରେ) ଏଇ ଘରଟି ? ଏଇ ଘର ?

ଭାସ୍କର - କୋଉ ଘର ?

ମଣି - ହଁ, ତ ଏଇ ଘର । (କହି କହି ପଶିଆସିଲା)

ଭାସ୍କର - ଆପଣ - ଆପଣ କିଏ ?

ମଣି - (ଓଢ଼ଣାଟାଣି) ମୁଁ ଆପଣ ନୁହେଁ, ମୁଁ ପରା ତା' ପିଇସୀ ।

ଭାସ୍କର - ଓ..... ।

ମଣି - ତୁମେ କିଏ ବାପ ?

ଭାସ୍କର - ମୁଁ ? ମୁଁ...ମୁଁ ତମ ପୁତୁରା ।

ମଣି - ଏଁ ! ! (ଓଢ଼ଣା ଖୋଲିଦେଇ) ମତେ ମରଣ ହଉନି - ମୁଁ ପୁଣି ତମକୁ ଆଡ଼ ହଉଥିଲି ! ତମେ ପରା ବାପ ଏଠି ନଥିଲ ?

ଭାସ୍କର - ଏଠି ନଥିଲି ଆଉ କୋଉଠି ଥିଲି ?

ମଣି - ମୁଁ ଜାଣିଚି ?

ଭାସ୍କର - ମୁସ୍କିଲ୍ କଥା ! ଏଠି ନଥିଲି ତ ବୋର୍ଡ଼ିଂରେ ଥିଲି ।

ମଣି - ବୁଡ଼ଙ୍ଗୀ ! ସେ ପୁଣି କୋଉ ମୁଲକ ? କୋଉଦିନ ଆଇଲ ?

ଭାସ୍କର - (ଚିନ୍ତାକରି) ତମେ କାହା ପିଉସୀ କହିଲ ?

ମଣି - ଉରର ।

ଭାସ୍କର - ଉର ! ଓ, ଉର୍ବଶୀର ?

ମଣି - ହଁ, ହଁ ସେଇ ଉର୍ବଶୀ - ମୁଁ ତା ପିଉସୀ ।

ଭାସ୍କର - ମୁଁ ତା'ହେଲେ ତମ ପୁତୁରା ନୁହେଁ ।

ମଣି - ଏଁ....ମତେ ଆଗରୁ ସେ କଥା କହୁନା (ପୁଣି ଓଢ଼ଣା ଟାଣି ବଡ଼ପାଟିରେ ଡାକିଲା) ଉର, ଉର !

(ଉର୍ବଶୀ ଓ ବୀଣା ଆସିଲେ । ଉର୍ବଶୀ ମଣିକୁ ଦେଖି ଅଜଣା ଭୟରେ ଚମକି ଉଠିଲା) ମୋ ମା'ଟା ଲୋ ! ମୋ ମା'କୁ ମୁଁ କୋଉ କାଳୁ ଦେଖି ନଥିଲି । ଆହା -ହା - ମୁଁ ମରିଯାଉଥାଏ ଲୋ, ମୋ ଆଖି ଆଜି ପବିତ୍ର ହୋଇଗଲା । ମୋ ମା' ମୁହଁ କାହିଁକି ଶୁଖିଯାଇଛି, ଦିହ ହାତ କୁଆଡ଼େଗଲାଣି । କି ଭାଗ୍ୟ ମୋର ଆଜି ! ତୋତେ ପୁଣି ଦେଖିଲି । ଗାଁ -ଟା ଯାକ କହିବେ, ଯେତେବେଳେ ତୋ କଥା ପଡ଼େ, ସେତେବେଳେ ପରା ମଣି ଅପା ଆଖିରୁ ଝରଝର ହୋଇ ଲୁହ ଝରିପଡ଼େ ଲୋ !

ବୀଣା - ତମେ ତା'ହେଲେ ମଣିଅପା ?

ମଣି - ହଁ ।

ବୀଣା - ତମକୁ ତ ମୁଁ ଡାକ୍ତରଖାନାରେ ଦେଖିଥିଲି ।

ମଣି - ଦେଖିଥିବ । ପେଟକୁ ମାଇଲା ଯେ, ପୁଅ ଆଣି ମୋତେ ଡାକ୍ତରଖାନାରେ ଛାଡ଼ିଦେଇଗଲା । କ'ଣ କହିବି ଲୋ ଝିଅ ! ଏମିତି ମଣିଷମାରୁ ଏ ଡାକତରଗୁରାକ, ମୋତେ କହିଲେ ତୋଠି କିଛି ବେମାରିନାହିଁ, ତୁ ଏଠୁ ପଳା । ବାଟ ପଚାରି ପଚାରି ଏଠିକି ଆଇଚି ।

ଭାସ୍କର - ତମ ସାଙ୍ଗରେ ସେ କିଏ ଆସିଥିଲେ, ତମକୁ ଏଠି ଛାଡ଼ିଦେଇଗଲେ ?

ମଣି - ଏ କି ବାଟମାରଣା କଥାଗୁରାକ କହୁଚମ ବାବୁ ! ମୁଁ ତ ନିଆଶ୍ରୀ ଲୋକ- ମୋ ସାଙ୍ଗରେ କିଏ କାହିଁକି ଆସନ୍ତା ।

ଭାସ୍କର - ବୀଣା ମୁଁ ଯାଉଛି ।

ବୀଣା - ଟିକେ ଶୁଣନ୍ତୁ ।

ଭାସ୍କର - ନା, ଆଉ ଏଠି ରହିଲେ, ମଣିଷମାରୁ ବାଟମାରଣା ସାଙ୍ଗକୁ ମାରଣା ମଇଁଷି ପ୍ରଭୃତି ଅନେକ କଥା ଶୁଣିବାକୁ ପଡ଼ିବ । ମୁଁ ଯାଉଛି । (ଚାଲିଗଲା)

ବୀଣା - ଡାକ୍ତରଖାନାରୁ ତମେ ଏଠିକି ଆସିଲ କାହିଁକି ?

ମଣି - ଆଉ କୋଉଠିକି ଯା'ନ୍ତି ?

ବୀଣା - ହାଓ ଫନ୍ନି!! ତମ ଘରକୁ ।

ମଣି - କି, ଏଇଟା କ'ଣ ମୋ ଘରନୁହେଁ ? ଉର ତୁ କହିବୁଟି, ଏଇଟା ମୋ ଘରନୁହେଁ ?

ବୀଣା - ଉର୍ବଶୀ ଏଠି ଥାଏ ବୋଲି ତମେ ଜାଣିଲ କିମିତି ?

ମଣି - ଡାକ୍ତରଖାନାରେ ମାଇପିଟିଏ ମୋତେ କହିଲା ।

ବୀଣା - ଘରକୁ ପୁଣି କେବେ ଫେରିବ ?

ମଣି - ଇୟେ କିଏ କିଲୋ ଉର ? ତୋ'ର ନଣନ୍ଦ ଫଣନ୍ଦ ହବ କି ?

ଉର୍ବଶୀ - ସେ ଜଣେ ମୋର ବନ୍ଧୁ ।

ମଣି - ବନ୍ଧୁ! ଓ, ସାଙ୍ଗ । ହୁଅନ୍ତୁ ତୋ ସାଙ୍ଗ - ସିଏ ମୋତେ ଏତେ କଥା ପଚାରିବାକୁ କିଏ ? କି ଚେଁହେଙ୍କାଲୋ ମା'!

ବୀଣା - କି ଆଶ୍ଚର୍ଯ୍ୟ!

ଉର - ଗାଁରୁ କେବେ ଆସିଲୁ ଅପା ?

ମଣି - ଆଠଦିନ ହେଲା ?

ଉର - ଗାଁରେ ସବୁ ଭଲ ତ ?

ମଣି - (କାନ୍ଦି) ଭଲ ? କି ଭଲ ଲୋ । ମଣିଷଟାଏ ତ ଥିଲା ଶାମ ଭାଇ, ସେ ତ ମଲା । ତୁ ତ ଆଇଲୁ ଏଠିକି, ମୁଁ ତ ଏଇ ତୋ ପଛେ ପଛେ ଆଇଲି - ଆଉ ଗାଁରେ କିଏ ଭଲ ଲୋକଟେ ରହିଲା ଯେ ଭଲ ହେବ ?

ଉର - କାହିଁକି ?

ମଣି - ଓ, କାନ୍ତରାଟି କଥା କହୁଚୁଟି ? ତାଙ୍କର କ'ଣ କିଛି ଠିକ୍ ଠିକଣା ଅଛି ? ହଁ, ଉର, ତୋ ବରା ପରା....

ବୀଣା - ଉର୍ବଶୀର ସ୍ୱାମୀ ବମ୍ବେରେ ଚାକିରି କରନ୍ତି ।

ମଣି - ଟଙ୍କ ପଇସା ପଠାଏଟି ?

ବୀଣା - ହଁ । ଉର୍ବଶୀ, ମୁଁ ଯାଉଛି ।

ମଣି - ଯାଉଚ ? ହଉ ଯା' । ମୁଁ ତ ଆଇଲିଣି, ଆଉ କାହାର କ'ଣ ଦରକାର ଯେ-ଯା' ।

ଉର - ହସ୍‌ପିଟାଲରୁ ଟିକେ କାମ ସାରି ଆସିବୁ ବୀଣା ।

ବୀଣା - ହଉ । (ଚାଲିଗଲା)

ମଣି - ହଇଲୋ ଉର, ଏତେ ସାଙ୍ଗ ମୋହବତ ଭଲନୁହେଁ । ତାଙ୍କୁ ସବୁ ମନାକରିଦେ । ମୁଁ ତ ଆଇଲିଣି.....

ଉର - ଅପା, ତୁ ଏଠି ରହିବାକୁ ଆସିଚୁ ?

ମଣି - ହଁ ।

ଉର - କାହିଁକି ?

ମଣି - ଅକଳରେ ପଡ଼ି ଆଇଥେଲି ଲୋ ଝିଅ କହିବୁ ତ ଚାଲିଯିବି ।

ଉର - ହଁ ହଁ, ତୁ ଚାଲିଯା'....ଚାଲିଯା' ଏଠୁ....ଏଇକ୍ଷଣି ଏଠୁ ଚାଲିଯା' । (ନିଜେ ଭିତରକୁ ଚାଲିଗଲା)

ମଣି - ରାତି ଅଧରେ ପରପୁରୁଷକୁ ଆଣି ଘରେ ପୂରାଉଥିଲୁଟି....ମୁଁ ଆସିଲାରୁ କାହିଁକି ଅଡୁଆ ହଉଚି ବା ? ହେଲେ ମୁଁ କ'ଣ ଚାଲିଯିବାକୁ ଆଇଚି ଯେ ତୁ କହିଲେ ମୁଁ ଚାଲିଯିବି ! !

(ଉର୍ବଶୀର ପଛେ ପଛେ ଘର ଭିତରକୁ ଗଲା ।)

## ଚତୁର୍ଥ ଦୃଶ୍ୟ

(ଜେନେରାଲ ହସ୍‌ପିଟାଲ୍‌ର ଗୋଟିଏ ବାରଣ୍ଡା ।)

ଭାସ୍କର - ମଣିଷ ଫେଲ୍ ପଛେ ହୋଇଥା'ନ୍ତା, ଆଉ ବର୍ଷେ ଅଧେ ଷ୍ଟୁଡେଣ୍ଟ୍ ହୋଇ ରହିବାରେ ଆରାମ ଥିଲା ।

ପଙ୍କଜ - କିନ୍ତୁ ପାସ୍ କଲାପରେ , ତେଣେ ବାପା ବୋଉ ଯେ ଆରାମରେ ଗୋଡ଼ ଉପରେ ଗୋଡ଼ ପକାଇ ବସିପାରିଲେ ।

ଭାସ୍କର - ଆଉ ପୁଅ ଯେ ଏଣେ ହାଉସ୍ -ସର୍ଜନ ହୋଇ ଦିନକୁ ଦଶଘଣ୍ଟା ପରିଶ୍ରମ କରି ଓ୍ୱାର୍ଡ଼୍‌ର ଏପଟରୁ ସେପଟ ପଚାଶ ଥର ବୁଲି ଗୋଡ଼କୁ ଗୋଦର କଲାଣି....ଏ କଥା ବୁଝୁଚି କିଏ ? ଇମିତି ଗଧ ଖଟଣି ଫେର୍ ମଣିଷ ଭାଗ୍ୟରେ ଥିଲା ?

ପଙ୍କଜ - ହଉ ଚାଲ, ଏ ବାରଣ୍ଡାରେ ଠିଆହେଲୁ କାହିଁକି ?

ଭାସ୍କର - ସେ ତାର ଯନ୍ତ୍ର ଡିଉଟିରେ ଅଛି ନା ଗଲାଣି ?

ପଙ୍କଜ - ଗଲାଣି, କାହିଁକି ?

ଭାସ୍କର - ଉର୍ବଶୀ ଘର ଖବର କ'ଣ ? ସେଇ ପିଇସୀ-ପୁତୁରା ପର୍ବଠାରୁ ମୁଁ ଆଉ ସେଆଡ଼େ ଯାଇନି । ହଁ, ଜ୍ଞାନ କେବେ ଆସୁଚିଟି ?

ପଙ୍କଜ - ଆଜି ଦଶ ତାରିଖ ନା ?

ଭାସ୍କର - ହଁ ।

ପଙ୍କଜ - ତା' ଚିଠି ଅନୁସାରେ ତ ତା'ର ଆଜି କି କାଲି ଆସିବାର କଥା ।

ଭାସ୍କର - ଆଚ୍ଛା ପଙ୍କଜ, ତୁ କଳ୍ପନା କରିପାରୁଚୁ ?

ପଙ୍କଜ - କ'ଣ ?

ଭାସ୍କର - ଜ୍ଞାନ ବାହାହେଲା, ମାନେ ଗୋଟାଏ ଚମକ ଖେଳାଇ ଦେଇ ବାହାହେଲା-

ପଙ୍କଜ - ଏଇ କଥା କଳ୍ପନା କରିବି ?

ଭାସ୍କର - ନାଇଁ, ମଧୁଶଯ୍ୟା ରାତିରେ ସ୍ତ୍ରୀକୁ ଛାଡ଼ି ଚାଲିଯାଇ ଆଉ ଏକ ଚମକ ଖେଳେଇଦେଲା !

ପଙ୍କଜ - ଏଇନେ ପୁଣି ଫେରିଆସି ତିନି ନମ୍ବର ଚମକ ଖେଳେଇଦବ, ଏଇୟା ତ ?

ଭାସ୍କର - ଜ୍ଞାନୀନ୍ଦ୍ର ଆସି ଯେତେବେଳେ ଉର୍ବଶୀ ପାଖରେ ଠିଆହୋଇଯିବ....

ପଙ୍କଜ - ତୁ ହୁଏତ ସେତେବେଳେ ଗୋଟାଏ କୁକୁର କାମୁଡ଼ା ରୋଗୀ ପାଖରେ ଠିଆହୋଇଥିବୁ, ବୁଝିଲୁ ।

ଭାସ୍କର - ଉର୍ବଶୀ କଥା କହିପାରୁନଥିବ, ତା ଓଠ ଖାଲି ଥରିଉଠୁଥିବ ।

ପଙ୍କଜ - ଓଠ କାହାର ଥରେନା-ଥରେଇଲେ ବି ଥରିବ ନାହିଁ ।

ଭାସ୍କର - ସିଲେଇ କଳ ଚାଲିଲା ପରି ତ ଆଖିପତା ଖାଲି ଘନ ଘନ ପଡୁଥିବ ଉଠୁଥିବ । ଆଉ ପତା ତଳୁ ଝରିପଡୁଥିବ ଟୋପା ଟୋପା ଲୁହ । ସତେ ପଙ୍କଜ, ପ୍ରେମ ବୋଲି ଯଦି ଗୋଟାଏ କିଛି ଜିନିଷ ଥାଏ.....

ପଙ୍କଜ - ଇମିତି ଗୋଟାଏ ଜିନିଷ ନାହିଁ ବୋଲି ତୋର କ'ଣ ଧାରଣା ?

ଭାସ୍କର - ଆଛା, ସେ ଫେରୁ । (ଡାକ୍ତର ଦାସ ଆସିଲେ, ମୁହଁରେ ଦୁଃଖର ଛାୟା ।)

ଡା.ଦାସ - ମୁଁ ତୁମ ଦୁହିଁଙ୍କୁ ଖୋଜୁଥିଲି ।

ଭାସ୍କର - କାହିଁକି ସାର୍ ?

ଡା. ଦାସ - ଜ୍ଞାନୀନ୍ଦ୍ର...(କଣ୍ଠ ଯେମିତି ରୁଦ୍ଧ ହୋଇଆସିଲା)

ପଙ୍କଜ - କ'ଣ ହୋଇଛି ସାର୍ ?

ଡା.ଦାସ - କହିବାକୁ ମୋର ତୁଣ୍ଡ ଖୋଲୁନାହିଁ ପଙ୍କଜ । ତୁମର ପ୍ରିୟ ବନ୍ଧୁ ଜ୍ଞାନୀନ୍ଦ୍ର ....ଆଉ ନାହିଁ !!

ଭାସ୍କର, ପଙ୍କଜ - ସାର୍ !

ଡା. ଦାସ - ଏଇ ନିଅ - ଏ ପାର୍ଶଲ୍ ଆଉ ଚିଠି । ମୁଁ ଆଉ ଏଠି ଠିଆହୋଇପାରୁନି । ଉର୍ବଶୀକୁ ଏ ଖବର କିଏ ଦବ ? (ଚାଲିଗଲେ)

ଭାସ୍କର - (ଚିଠି ପଢ଼ି) ହିମାଳୟାନ୍ କେମିକ୍ୟାଲ୍ସର ଜେନେରାଲ୍ ମେନେଜର୍ ଏ ଚିଠି ଦେଇଛନ୍ତି - ଜ୍ଞାନୀନ୍ଦ୍ର ପ୍ଲେଗ୍‌ରେ ମରିଛି ।

ପଙ୍କଜ - ପ୍ଲେଗ୍‌ରେ ! ବମ୍ବେରେ ପ୍ଲେଗ୍ ରୋଗ ଆରମ୍ଭ ହୋଇଛି ବୋଲି ମୁଁ ଆଜି କାଗଜରେ ପଢୁଥିଲି । ସେଇ ପ୍ଲେଗ୍‌ରେ ମଲା ଜ୍ଞାନୀନ୍ଦ୍ର !!

ଭାସ୍କର - ଏ ସେଇ ମୁଦି - ଡା.ଦାସ ତାକୁ ବାହାଘର ଦିନ ପିନ୍ଧାଇ ଦେଇଥିଲେ ।

ପଙ୍କଜ - ଜେନେରାଲ୍ ମେନେଜର୍ ନିଜେ ଏ ଚିଠି ଦେଇଛନ୍ତି ?

ଭାସ୍କର - ହଁ, ଅଫିସିଆଲ୍ ଚିଠି । ଜ୍ଞାନୀନ୍ଦ୍ରର ଏ ଫଟୋ ଆଉ ହଜାରେ ଟଙ୍କା ନୋଟ୍ ଆସିଛି ।

ପଙ୍କଜ - କେତେ ତାରିଖରେ ଏ ଦୁର୍ଘଟଣା ଘଟିଲା ?

ଭାସ୍କର - ଏଇ ତ ଡାକ୍ତର ସାର୍ଟିଫିକେଟ୍ - ପାଞ୍ଚ ତାରିଖରେ ପ୍ଲେଗ୍ ଧରିଚି ସାତ ତାରିଖରେ ସେ ମରିଚି ।

ପଙ୍କଜ - ଜ୍ଞାନୀନ୍ଦ୍ର ଫେରିଆସୁଚି ବୋଲି ଗଲା ମାସ ସତେଇଶ ତାରିଖରେ ଉର୍ବଶୀ ଆମକୁ ଆନନ୍ଦରେ ପିଠାପଣା କରି ଖୁଆଉଥିଲା । ଆଜି ସେ ତା'ର ବାଟ ଚାହିଁ ବସିଛି - କିନ୍ତୁ

ସେ ଆଜି ଶୁଣିବ ଯେ...

ଭାସ୍କର - ପଙ୍କଜ, ମୋ ଜୀବନରେ ମୁଁ ଏଭଳି ଦୁଃସମ୍ବାଦ କେବେ ହେଲେ ପାଇନଥିଲି । ଜ୍ଞାନୀନ୍ଦ୍ର ମରିଗଲା ! ଦୁଇଟା ଭଙ୍ଗା ଜୀବନକୁ ଗଢ଼ି ତୋଳିବାର କଳ୍ପନା କରୁଥିବାବେଳେ...ଓଃ, ଭଗବାନ୍ ! !

## ପଞ୍ଚମ ଦୃଶ୍ୟ

(ଉର୍ବଶୀ ଘର । ପୂର୍ବବର୍ତ୍ତୀ ଦୃଶ୍ୟର ପ୍ରାୟ ଏକ ସପ୍ତାହ ପରର ଘଟଣା । ମଣି ହାତରେ ଗୋଟାଏ ତେଲ ବୋତଲ ଓ ପାନିଆ ଧରି ଠିଆହୋଇଛି ।)

ମଣି - ଆଲୋ ଆ'ବା ! କ'ଣ ଆଇଲୁ ନା ନାହିଁ ? କାହିଁକି ମତେ ଏମିତି ଦହଗଞ୍ଜ କରୁଚୁ କହିଲୁ ? ମୋ ସୁନାଟା ପରା, ଆ' ।

(ଉର୍ବଶୀ ଆସିଲା । ଦୁଃଖ ଓ ଶୋକରେ ସେ ଏକାବେଳକେ ଭାଙ୍ଗିପଡ଼ିଚି ।)

ମୋ ସୁନା ପସରୀଟା ପରା, ଆ' - ଏଇଠି ବ । ଅନଉ ଅନଉ ବେଳ ଗଡ଼ିପଡ଼ିବ, ବେଳ ଥାଉଁ ଥାଉଁ ମୁଣ୍ଡରେ ପାନିଆଟା ମାରିଦିଏଁ ।

ଉର୍ବଶୀ - ମୁଁ ତ କହିଚି ଅପା, ତୁ ଗାଁକୁ ଚାଲିଯା' - ମୋ ଜଞ୍ଜାଳ ଆଉ ତୋତେ ବାଧିବ ନାହିଁ ।

ମଣି - ଇଲୋ ତୋ ଜଞ୍ଜାଳ ସିନା ମୋତେ ବାଧିବ ନାହିଁ, ମୋ ମନ ପରା ମୋତେ ବାଧୁଚି । ତତେ ଛାଡ଼ି ମୁଁ ଯିବି କେମିତି କହିଲୁ ? ଆଠ ଦିନ ହୋଇଗଲା - ବଇଚୁ ତ ବଇଚୁ, ଶୋଇଚୁ ତ ଶୋଇଚୁ, ଖିଆ ନାହିଁ କି ପିଆ ନାହିଁ । ପିନ୍ଧାଲୁଗା ଖଣ୍ଡିକ ବଦଳିବାକୁ ତ ହୋସ୍ ହେଉନାହିଁ ! ମୁଣ୍ଡ ବାଳଗୁଡ଼ାକ ଫୁରୁଫୁରୁ ହୋଇ ଉଡ଼ିଲାଣି, ଆଉ କେଇଦିନ ଏମିତି ଚଳିବୁ କହିଲୁ ?

ଉର୍ବଶୀ - ଏ ସବୁ କଥା ମୋତେ ତୁ କହିପାରୁଚୁ ଅପା ?

ମଣି - ତୋ ଅବସ୍ଥା ଦେଖିଲେ ପାଷାଣ ବି ତରଳିଯିବ ଲୋ, ଯେତେ ଯାହାହେଲେ ବି ମୁଁ ତ ମଣିଷଟାଏ ।

(ମୁଣ୍ଡ କୁଣ୍ଡାଇ ଦେବାବେଳେ ଉର୍ବଶୀ ମଣିହାତକୁ ଆଡ଼େଇଦେଲା । ମଣି କିନ୍ତୁ କହି ଚାଲିଚି) । କାଆଲି ପରି ଆଖି ଆଗରେ ଜଳଜଳ ହେଇ ଦିଶିଯାଉଚି । ବଅସ ମୋର ସେତେବେଳକୁ କେତେ ହବ ! ଏଇ ଉଣେଇଶି କି କୋଡ଼ିଏ । ସେଇ ବଅସରେ ମୋର କପାଳ ଫାଟିଲା । (କାନ୍ଦିବାର ଛଳନା କରି) ଯିଏ ଦେଖିଚି ସିଏ କହିବଲୋ ଉର, ଦିନ ନାହିଁ ରାତି ନାହିଁ କାନ୍ଦି କାନ୍ଦି ମୋ ଆଖିରୁ ଲୁହ ସରିଯାଇଚି - ମୁଣ୍ଡ ଫାଟି ରକତ ମୁଣ୍ଡା ବାନ୍ଧିଚି । ଘର ବାହାର ସାହିପଡ଼ିଶା ସମସ୍ତେ ଦିନରାତି ଜଗିବସିଥା'ନ୍ତି - କାଳେ କେତେବେଳେ ଜୀବନ ହାରିଦେବି ।

(ଏଇ ଅବସରରେ ଉର୍ବଶୀକୁ ନିଜ କୋଳଆଡ଼କୁ ଟାଣିଆଣି ମୁଣ୍ଡ କୁଣ୍ଡାଇ ଦେଉଥାଏ - ଉର୍ବଶୀ କେବଳ ପଥର ମୂର୍ତ୍ତି ଭଳି ବସିରହିଥାଏ ।)

ଏ କିଛି ଦୁନିଆ ବାହାର କଥା ନୁହେଁ । ମାଇପି ଜାତି ଆମେ, ଏମିତି ଅକାଳରେ ମଥାରେ ବଜର ପଡ଼ିଲେ କିଏ ଅବା ଧୈର୍ଯ୍ୟ ଧରି ରହିପାରିବ କହିଲୁ ! ଛ'ମାସ ପାଗଳୀଙ୍କ ପରି ହୋଇଚି । ହେଲେ କାହିଁକି ? କାହାପାଇଁ ? ଅଗ୍ନିକୁ ସାକ୍ଷୀ ରଖି ଦଶଦିଗପାଳଙ୍କୁ ସାକ୍ଷୀ ରଖି, ହାତଧରି ବାହା ହେଇଥିଲି । ସୁଖରେ ହେଉ, ଦୁଃଖରେ ହେଉ ତା ସହିତ ତିନିବର୍ଷ ଘର ବାନ୍ଧି ରହିଥିଲି । କୋଳରେ ସେତେବେଳକୁ ମୋର ଛ'ମାସର ପୁଅ । ସଂସାର ଲୋକେ ଜାଣିଲେ, ଅମୁକ ଘର ବୋହୂ ଅମୁକର ସ୍ତ୍ରୀର କପାଳ ଫାଟିଲା, ସେ ବିଧବା ହେଲା । ଠାକୁରଙ୍କ ଦୟା କୋଳରେ ପୁଅଟିଏ ଦେଇଚନ୍ତି ।

ଉର୍ବଶୀ - (ଆକୁଳ କଣ୍ଠରେ) ଅପା ! (ଧୀରେ ଧୀରେ ଅନ୍ଧାର ହୋଇ ଆସୁଥାଏ)

ମଣି - ତୋ ମନକୁ ତୁ ପଚାର, ବୁଝୁ । ସେ କିଏ ? କୋଉଠି ଥିଲା ? କି ବାହାଘର ତୋ'ର ତା' ସହିତ ହେଇଚି ? ସାଇ ଜାଣିଲେନାହିଁ କି ଭାଇ ଜାଣିଲେନାହିଁ ! ତୁ ନିଜେ ବୋହୂ ହୋଇ ମହୁଶଯ୍ୟା ରାତିରେ ତା ମୁହଁକୁ ଆଗ ଭଲକରି ଚାହିଁଚୁନା ? କାହିଁକି ତା ପାଇଁ ତୁ ନିଜକୁ ଜାଳିପୋଡ଼ି ମାରିବୁ ? ସେଦିନ କେତେଥର ମୋ ମନକୁ ପାପ ଛୁଇଁଚି, ହେଲେ ତୋ ଏ ହାତକୁ ତ ମୁଁ ଖାଲି କରିପାରିଲିନାହିଁ । କାହିଁକି ମୋର ଏ ସୁନା ହାତ ଖାଲି ହେବ, କିଏ ମରିଯାଇଚି ବୋଲି ତୁ ବିଧବା ହେବୁ । ସେ ତୋର କିଏ ? ଗାତ ନା ଚୂଲି ! ! କ'ଣ ସେ ତୋ ପାଇଁ ଛାଡ଼ିଯାଇଚି ।

ଉର୍ବଶୀ - (କାନ୍ଦି କାନ୍ଦି) ତୋ ଗୋଡ଼ତଳେ ପଡୁଚି ଅପା, ତୁ ମତେ ବିଷ ଦେଇ ମାରିଦେ ପଛେ, ଏସବୁ କଥା ମତେ କହନା ।

ମଣି - ମୋ ସୁନାଟା ପରା - ମୋ ଲକ୍ଷ୍ମୀଟା ପରା - ତୁ ଆଉ ଏମିତି କାନ୍ଦନା । ତୋ' ପାଇଁ ମୋ ମନ ତଟିଚି ବୋଲି ସିନା ତୋତେ ମୁଁ ଏ କଥା କହୁଚି ! ତୋ' ମନକୁ ତୁ ପଚାର, ମୋ କଥା ଠିକ୍ କି ଭୁଲ୍ । ଚାଲ୍, ଉଠ୍ - ସଞ୍ଜ ଗଡ଼ିଲାଣି, କ'ଣ ଗଣ୍ଡାଏ ଖାଇବୁ । ନଇଲେ ଟିକେ ସରବତ୍ ଆଣି ଦେବି ପିଇବୁ ! ରହ, ମୁଁ ଆଗେ ଆଲୁଅଟା ଜାଳିଦିଏ ।

(ମଣି ସୁଇଚ୍ ଚିପି ଦେଇ ଭିତରକୁ ଚାଲିଗଲା । ଆଲୁଅ ଜଳିବା ସଂଗେ ସଂଗେ ଉର୍ବଶୀ ଦେଖିଲା ତା' ସାମ୍ନାରେ ଠିଆ ହୋଇଚି ମଦନ ।)

ଉର୍ବଶୀ - କିଏ ? ଆପଣ ! ଆପଣ ଏଠି ? ଅପା -ଅପା ।

ମଦନ - ଅପା ଚାଲିଗଲାଣି । ତୁମର ବୋଧହୁଏ ମନେଥିବ ଉର୍ବଶୀ, ଦିନେ ଏମିତି ମଣିଅପା ଚାଲିଗଲା ପରେ ତୁମେ ମୋ ଘରକୁ ଆସିଥିଲ - ଆଜି ମୁଁ ତୁମ ଘରକୁ ଆସିଚି । ଡରିଯାଅନା ଉର୍ବଶୀ, ଆଜି ମୋ'ଠାରେ ତୁମର ଭୟ କରିବାର କି ସଙ୍କୋଚ କରିବାର କୌଣସି କାରଣ ନାହିଁ ।

ଉର – ଭୟ କଥାଟା କହି ତୁମ ପ୍ରତି ମୋ' ମନରେ ଭୟ ଜଗାଇବାର ଚେଷ୍ଟା ତୁମେ କଲେ ସୁଦ୍ଧା ତୁମକୁ ମୁଁ ଭୟ କରିବିନାହିଁ । ମୁଁ ଜାଣିବାକୁ ଚାହେଁ ତୁମେ କାହିଁକି ଆସିଚ ?

ମଦନ – (ହସି) ତା'ହେଲେ ମୋର ଏଠିକି ଆସିବାଟା ଗୋଟାଏ ଦିଗରୁ ସାର୍ଥକ ହୋଇଚି, ଯେହେତୁ ତୁମେ ମୋତେ ଭୟ କରନା (ଉର୍ବଶୀ ଚାଲି ଯାଉଥିଲା) ତୁମେ ଚାଲିଯାଉଚ ଯେ ? ତୁମ ପ୍ରଶ୍ନର ଉତ୍ତର ତ ତୁମେ ପାଇନ ।

ଉର – ନା, ମୁଁ କିଛି ଜାଣିବାକୁ ଚାହେଁନା । ତୁମେ ଚାଲିଯାଅ ।

ମଦନ – ଚାଲିଯିବି ! ଯଦି ନ ଯାଏ ?

ଉର – ଏଇଟା ମୋର ଘର ମଦନବାବୁ ।

ମଦନ – ମୋ ପାଇଁ ତା'ହେଲେ ଏ ଆଉ ଏକ ଶୁଭ ସୂଚନା – କାରଣ, ଘରବାନ୍ଧିବାର ଆଗ୍ରହ ତୁମର ଅଛି ।

ଉର – ତୁମେ...ତୁମେ ମଣିଷ ରୂପରେ ଗୋଟାଏ ପିଶାଚ, ଗୋଟାଏ ପ୍ରେତାତ୍ମା । ଏଠୁ ଚାଲିଯାଅ କହୁଚି ।

ମଦନ – ଆଉ ଯଦି ନପାଏ, ତୁମେ ଜୋର୍ କରି ମୋତେ ଏଠୁ ତଡ଼ିଦେବ – ଏଇଯାନା ? କିନ୍ତୁ ତା କରିବା ପୂର୍ବରୁ ଏଇଟାକୁ ଚାହିଁ ଦେଖ ଉର୍ବଶୀ (ପକେଟ୍‌ରୁ ଗୋଟାଏ ରିଭଲ୍‌ଭର୍ କାଢ଼ିଲା) ଏଇଟା ମୁଁ ମୋ ପାଇଁ ଆଣିନି, ଆଣିଚି ତୁମର ବ୍ୟବହାରପାଇଁ । ବୁଝିପାରୁନା ବୋଧହୁଏ ? ମୋତେ ଜୋର୍ କରି ତଡ଼ିଦେବାକୁ ହେଲେ ଏଇଟା ତୁମର ଖୁବ୍ ଦରକାରରେ ଆସିବ – ଏଇଥିପାଇଁ ଏଇଟା ତୁମେ ରଖ ।

(ଉର୍ବଶୀ ହାତରେ ଦେଇଦେଲା)

ବର୍ତ୍ତମାନ ତୁମେ ଜାଣିବାକୁ ନ ଚାହିଁଲେ ସୁଦ୍ଧା ତୁମ ପ୍ରଶ୍ନର ଉତ୍ତର ମୁଁ ଦେଉଚି । ତୁମ ସହିତ ମୋର ଶେଷ ଦେଖା ହେବାର ପ୍ରାୟ ତିନିବର୍ଷ ପରେ, ପ୍ରଥମେ ତୁମେ ମୋତେ ଏଠି ଦେଖୁଚ । ମତେ ଦେଖି ତୁମ ଗାଁରେ ମୋର ସେଇ କ୍ୟାମ୍ପ୍‌ଘରର ଘଟଣାଠାରୁ ଆଜିପର୍ଯ୍ୟନ୍ତ ଯାହା ଯାହା ଘଟିଯାଇଚି, ସେସବୁର ଗୋଟାଏ ଚଳଚ୍ଚିତ୍ର ନିମିଷକ ମଧ୍ୟରେ ତୁମ ମନରେ ଦେଖାଦେଇଥିବ – ଆଉ ଏଇ ନିମିଷକ ମଧ୍ୟରେ ତୁମ ମନରେ ଖେଳିଯାଇଥିବ ଶତ ସହସ୍ର ହିଂସା-ପ୍ରତିହିଂସାର ଜୁଆର-ଭଟ୍ଟା, ତୁମ ମନ ପ୍ରାଣକୁ ଅସ୍ଥିର କରିଦେଇଥିବ । କିନ୍ତୁ ଉର୍ବଶୀ ତୁମର ଏଇ ଉପସ୍ଥିତ ଅବସ୍ଥାରେ ସେସବୁ କୁଆଡ଼େ ଉଭେଇଯିବ – ଖାଲି ରହିଯିବ, ତୁମ ଆଖି କୋଣରେ ଦୁଇଟୋପା ଲୁହ । (ଉର୍ବଶୀ ଆଖିରେ ଲୁହ ଦେଖାଦେଇଚି) ଆଉ ମୋର ଆସିବାର କାରଣ ତୁମେ ଜାଣିବାକୁ ଚାହିଁଥିଲନା, ମୁଁ ଆସିଚି ତୁମର ମୋ ବିଷୟରେ ଯେତିକି ଧାରଣା ଅଛି ଉର୍ବଶୀ, ସେତିକିରୁ ତୁମେ ନିଶ୍ଚୟ ଜାଣିଥିବ ଯେ, ବସି ବସି ଜୀବନରେ ନିଷ୍ଫଳ ସ୍ୱପ୍ନ ଦେଖିବାର ବିଳାସ ମୋର ନାହିଁ । ମୋ କଥା ଆଉ କାମ ଭିତରେ ତଫାତ୍ ଥାଏ ଖୁବ୍ କମ୍ । ତୁମେ ଘର ଛାଡ଼ି କଟକ ଆସିଲ – ସେଇ ସଂଗେ ସଂଗେ ମୁଁ ମଧ୍ୟ ହେଲି ଦେଶାନ୍ତରୀ । କିନ୍ତୁ

ତୁମେ ଶୁଣି ହୁଏତ ଆଶ୍ଚର୍ଯ୍ୟ ହେବ ଉର୍ବଶୀ ଯେ, ମୋତେ ନିଜକୁ ତୁମ ଚିନ୍ତାରୁ ଦୂରେଇ ରଖିବାପାଇଁ ମୋର ସମସ୍ତ ଚେଷ୍ଟା ବିଫଳ ହୋଇଚି । ସ୍ୱପ୍ନପୁରୀ କଲିକତାର ଏସ୍‌ପ୍ଲେନେଡ଼୍‌ରେ ମଟର ଛୁଟାଇ ଚାଲିଚି, ବମ୍ବେର ଜୁହୁବିଚ୍ ଆଉ ମେରାଇନ୍ ଡ୍ରାଇଭ୍‌ରେ ବହୁ ସନ୍ଧ୍ୟା କଟାଇ ଦେଇଚି, ଚନ୍ଦ୍ରାଲୋକରେ ବାରମ୍ବାର ଦେଖିଚି ତାଜମହଲର ମହିମା - ଅଜନ୍ତା ଆଉ ଏଲୋରା ଗୁମ୍ଫାରେ ମୋର ସପ୍ତାହ ପରେ ସପ୍ତାହ ବିତିଯାଇଛି । କିନ୍ତୁ ସବୁଠି କେବଳ ଶୁଣିଚି ତୁମର ସେଦିନର ସେଇ ଗୋଟିଏ କଥା - "ତୁମ ବିବାହର ଦାବି ନେଇ ତୁମେ ମୋ ନିକଟକୁ ଆସିଚ ।" ତା'ପରେ ମୁଁ କଟକ ଫେରିଆସିଲି । ତୁମେ ଶୁଣି ଆଶ୍ଚର୍ଯ୍ୟ ହେବ ଯେ, ତୁମର ଏଠାକାର ସମସ୍ତ ଇତିହାସ ମୁଁ ଜାଣେ । ଡାକ୍ତର ଦାସ, ବୀଣା, ଭାସ୍କର, ପଙ୍କଜ ଏମାନେ ସମସ୍ତେ ତୁମର କିପରି ଶୁଭାକାଂକ୍ଷୀ ତା' ମଧ୍ୟ ମୁଁ ଜାଣେ । କିନ୍ତୁ କାହାନ୍ତି ସେମାନେ ? ଜ୍ଞାନୀନ୍ଦ୍ରର ମୃତ୍ୟୁ ପରେ....

(ଏ କଥାରେ ଉର୍ବଶୀ ଯେମିତି ଯନ୍ତ୍ରଣାରେ ଅସ୍ଥିର ହୋଇଉଠିଲା ।)

ଉର - ଓଃ !

ମଦନ - ଏ କଥାରେ ତୁମେ ଖୁବ୍ ଆଘାତ ପାଇବ ମୁଁ ଜାଣେ । କିନ୍ତୁ ଯେଉଁ ନିରାଟ ସତ କଥାକୁ ତୁମେ ଏଡ଼େଇ ଦେଇ ଯାଉଚ, ଏମିତି ଆଘାତ ପାଇଲେ ସେଇଟାକୁ ତୁମେ ଗ୍ରହଣ କରିନେବ ବୋଲି ମୁଁ ଜାଣିଶୁଣି ତୁମକୁ ଆଘାତ ଦେଇଛି । ତୁମକୁ ସାହାଯ୍ୟ କରିବାପାଇଁ ତୁମର ବନ୍ଧୁମାନଙ୍କର ମନପ୍ରାଣ କାନ୍ଦିଉଠିଲେ ସୁଦ୍ଧା ସେମାନଙ୍କର କରିବାର କିଛିନାହିଁ । ସେଇଥିପାଇଁ ସେମାନଙ୍କର ଇଚ୍ଛା ଥିଲେ ସୁଦ୍ଧା ସେମାନେ ଏଠାକୁ ଆସିପାରୁନାହାଁନ୍ତି । କିନ୍ତୁ ଯାହାର ଆସିବାର କଥା ସେ ଆସିବ - ସେ ଆସିଛି । ତୁମ ନିକଟରେ ମୋର ଆଉ ଜ୍ଞାନୀନ୍ଦ୍ରର ସ୍ଥାନ କେଉଁଠି, ତାହା ତୁମେ ନିଶ୍ଚୟ ଜାଣ । ଦିନେ ତୁମକୁ ପାଇବାର ଗୋଟାଏ ଅଦମ୍ୟ ମୋହ ମୋ ଭିତରେ ଥିଲା - କିନ୍ତୁ ତୁମେ ମୋର ସେ ମୋହକୁ ଭାଙ୍ଗିଦେଇଥିଲ । ତା'ପରେ ତୁମେ ତୁମ ବିବାହର ଦାବି ନେଇ ମୋ ନିକଟକୁ ଆସିଥିଲ, ମୁଁ ମଧ୍ୟ ତୁମକୁ ନିରାଶ କରି ଫେରେଇ ଦେଇଥିଲି । ଆମ ଦୁହିଁଙ୍କର ଏଇ ଭୁଲ୍‌ର ସୁଯୋଗ ନେଇଥିଲା ଜ୍ଞାନୀନ୍ଦ୍ର । କିନ୍ତୁ ସେ ପାରିଲାନାହିଁ । କାହିଁକି ? କାହିଁକି ଏ ଦୁର୍ଯୋଗ ଘଟିଲା ? ବମ୍ବେରେ ପ୍ଲେଗ୍ ହେଲା ଉର୍ବଶୀ - ସେଠି ଜ୍ଞାନୀନ୍ଦ୍ର ଥିଲା - ମୁଁ ବି ଥିଲି । ଜ୍ଞାନୀନ୍ଦ୍ର ମଲା, ମୁଁ ବଞ୍ଚିଗଲି । କାହିଁକି ? ତୁମ ଭାଷାରେ ମୁଁ ପିଶାଚ ହୁଏ କି ପ୍ରେତାତ୍ମା ହୁଏ, ମୁଁ କହିବି ଏହା ହିଁ ଭଗବାନଙ୍କର ଉଦ୍ଦେଶ୍ୟ ! ସେଇଥିପାଇଁ ଆଜି ମୋର ଏ ଆସିବାଟାକୁ ତୁମେ, ତୁମର ବନ୍ଧୁଗଣ, ଏପରିକି ଜ୍ଞାନୀନ୍ଦ୍ରର ମୃତଆତ୍ମା ପର୍ଯ୍ୟନ୍ତ କେହି ଅସ୍ୱୀକାର କରିପାରିବେ ନାହିଁ, ନା ଉର୍ବଶୀ, କେହି ଅସ୍ୱୀକାର କରିପାରିବେ ନାହିଁ ।

(କଥା ଶେଷ ଆଡ଼କୁ ଉର୍ବଶୀ ଏକ ଜଡ଼ ପ୍ରତିମା ପରି ବସିରହିଥାଏ ।)

## ଷଷ୍ଠ ଦୃଶ୍ୟ

(ଉର୍ବଶୀର ଘର ଅଳିନ୍ଦ - କଥା କହି କହି ଆସିଲା ମଣି ।)

ମଣି - ଘର କରିବେ ଘର ! ! ଇଏ ଯଦି ଘର କରିବେ, ଘର କଲାବାଲା ଯିବେ କୁଆଡ଼େ - ବାବାଜୀ ହେବେ ନା ବୈଷ୍ଣମ ହେବେ ? ରାତି ଆସି ଅଧ ହେଲାଣି, ଏକା ଏକା ବସି ତାସ୍ ଖେଳ ଚାଲିଚି ! କ'ଣ ମିଳେ ସେ ଖେଳରୁ କେଜାଣି ? ମଲା ଶୁଭୁନାହିଁ କି ବାବୁ ? ଏ ବାବୁ, ଏ ଆଡ଼େ ଆସ ମ । (ମଦନ ଆସିଲା)

ମଦନ - କାହା ଉପରେ ଇମିତି ଗରଗର ହେଉଥିଲୁ ?

ମଣି - ତୁମରି ଉପରେ !

ମଦନ - କାହିଁକି ?

ମଣି - (ଚପା ଗଳାରେ) ସତରେ ତମ ଉପରେ ହଉଥିଲି କି ? ତାକୁ ଖାଲି ଶୁଣେଇ ଶୁଣେଇ କହୁଥିଲିନା, ନହେଲେ ତା'ମନରେ ପରତେ ଆସିବ କେମିତି ?

ମଦନ - ହୁଁ ! ! କ'ଣ ହେଲା ପୁଣି ?

ମଣି - ମଣିଅପାକୁ ନଚିହ୍ନିଲା ପରି କଥା କହୁଚ ? ଆଜି ଦି'ପହରୁ ତା ପଛରେ ମୁଁ ଲାଗିଚି ପରା ? ଏତେବେଳକେ ଯାଇ ବାଟକୁ ଆସିଲା । ଆସ ଦେଖିବ - କେମିତିକା ଶାଢ଼ି ପିନ୍ଧେଇ ଦେଇଛି - ଗୋଡ଼ରୁ ମୁଣ୍ଡଯାଏଁ ଗହଣା ଖଞ୍ଜିଦେଇଛି । ହେଇଟି ବାବୁ, ଦେଖିକରି ଚମକିପଡ଼ିବନାହିଁଟି ! ଏଡ଼ିକି ସୁନ୍ଦର ପୁଣି ସେ ଦୁଉଚି । ମୁଁ ମାଇପିଟାଏ ହେଇ ପରା ମୋ ଆଖି ଖୋସିହେଇଗଲା । ହଉ ତୁମେ ଶୋଇବା ଘରକୁ ଯାଅ - ପଲଙ୍କ ସଜେଇ ଦେଇଛି । ଆଜି ଜାଣି ତୁମର ମହୁଶଯ୍ୟା । ପାଞ୍ଚଦିନ ହେଲା ଆସିଲଣି - ତା'ଦେହ ତେମେ ଏଯାଏଁ ଛୁଇଁନ ।

ମଦନ - ହଁ, ପାଞ୍ଚଦିନ ହେଲା ମୁଁ ଏଠିକି ଆସିଲିଣି - ଏ ପାଞ୍ଚଦିନ ହେଲା ଦିନ ରାତି ମୁଁ ତାକୁ ବୁଝେଇଛି - କିନ୍ତୁ ପାଟିରେ ତା'ର ପଦେ କଥା ନାହିଁ - ଯେମିତି ସେ ପଥର ପାଲଟିଯାଇଛି ।

ମଣି - ମଣି ଅପା ଥିଲେ ପଥର ବି ଫାଟି ପାଣି ହୋଇଯିବ । ହଁ ବାବୁ, ସେ କଥା କ'ଣ ହେଲା ?

ମଦନ - କୋଉ କଥା ?

ମଣି - ବାହାଘର କଥା ।

ମଦନ - ବାହାଘର ତ ତିନିଦିନ ହେଲା ସରିଲାଣି, ଆଉ ପୁଣି କି ବାହାଘର ?

ମଣି - ଏଇୟା ? ତୁମେ ଉର ଗଳାରେ ଗୋଟାଏ ଫୁଲମାଳ ପକେଇଦେଲ - ସେ କାନ୍ଦି କାନ୍ଦି ତୁମ ବେକରେ ଗୋଟାଏ ମାଳ ପକେଇଦେଲା - ଏଇଥିରେ ସବୁ ହୋଇଗଲା ?

ମଦନ - ଆଉ ବାକି ରହିଲା କ'ଣ ଯେ ?

ମଣି - ନାଇଁ ବାକି କିଛି ରହିଲା ନାହିଁ ଯେ, ହେଲେ ତିଥିବାର ଦେଖ୍ ଢାକଢମକରେ ଯିମିତି ହବାର କଥା ! ଯେତେହେଲେ ଗୋଟାଏ ଶୁଭ କାମ ତ ?

ମଦନ - ଆଚ୍ଛା ତିଥିବାର ପଡ଼ିଲେ ସେ କଥା ଦେଖାଯିବ ।

(ଯାଉ ଯାଉ ସାମନାରେ କ'ଣ ଗୋଟାଏ ଦେଖି ଚମକିଉଠିଲା ।)

ଅପା !

ମଣି - କ'ଣ ?

ମଦନ - (ଡରିଯାଇ) ସେଇଟା କ'ଣ ସେଠି ଝୁଲୁଛି ?

ମଣି - (ଦେଖି) ଆଉ ହବନାହିଁ ? ସେଇଟା ପରା ତୁମର ସେ ଲମ୍ୱାକାଳିଆ କୋଟ୍‌ଟା, ତୁମେ ନିଜେ ସେଠି ଟାଙ୍ଗିଚ ।

ମଦନ - ମତେ ଯେମିତି ଜଣାଗଲା, ଗୋଟାଏ କାହାର ଶବ ସେଠି ଝୁଲୁଚି ।

ମଣି - ତୁନି ହୁଅ - ଆଜି ପରା ଦିନରେ ଏମିତି ଅମଙ୍ଗଳ କଥା ତୁଣ୍ଡରେ ଧରନ୍ତି !

ମଦନ - କିନ୍ତୁ କି ଆଶ୍ଚର୍ଯ୍ୟ କଥା ଅପା, ପ୍ରକୃତରେ ଶବଟାଏ ଦେଖିଲେ ବି ମୁଁ ଡରିବା ଲୋକ ନୁହେଁ, ଅଥଚ ମୋରି କୋଟ୍‌ଟାକୁ ଦେଖି ମୁଁ ଡରିଗଲି ।

ମଣି - ହଉ, ତୁମେ ଆସ !

## ସପ୍ତମ ଦୃଶ୍ୟ

(ଉର୍ବଶୀର ସେଇ କକ୍ଷ । ପଲଙ୍କଟି ବେଶ୍ ସୁନ୍ଦର ଭାବେ ସଜା ହୋଇଛି । ମଦନ ଆସିବାର ଟିକିଏ ପରେ ଉର୍ବଶୀ ସହିତ ମଣି ଆସିଲା । ଉର୍ବଶୀ ବୋହୂପରି ସାଜି ହୋଇଛି; କିନ୍ତୁ ତାକୁ ଦେଖିଲେ ଜଣାଯାଏ ଯେପରି ସେ ଗୋଟାଏ ଯନ୍ତ୍ରଚାଳିତା ମୂର୍ତ୍ତି ।)

ମଣି - ମାଇପି ଜୀବନର ସବୁ ପୁଣ୍ୟର ଫଳ ଏଇଠି ଲୋ ମା' । ଝିଅ ଜନ୍ମ ହେଇ ତୁ ଯାହା ସହିଚୁ, ଆଉ କେହି ସହନ୍ତା ନାହିଁ । ହେଲେ ଆଜିଠୁଁ ତୋ' ଭାଗ୍ୟ ଫେରିଲା ବୋଲି ଜାଣ । ତୋର ଏ ସୁଖ ଦେଖିବା ପାଇଁ ଶ୍ୟାମଭାଇ ଯାହା ରହିଲାନାହିଁ । ସେ ଥିଲେ ତା' ଗୋଡ଼ ପରା ଆଜି ତଳେ ଲାଗୁ ନଥା'ନା ।

(ଚାଲିଗଲା)

ମଦନ - ଉର୍ବଶୀ, ଯିଏ ତୁମର ଇତିହାସ ଜାଣେ, ସେ କହିବ ଉର୍ବଶୀଟା କଳଙ୍କିନୀ - ସେ ନଷ୍ଟ ହୋଇଯାଇଛି । କିନ୍ତୁ ମୋ ଆଖିରେ ତୁମେ ଶରଣକୁଳର ସେଇ କୁଆଁରୀ କନ୍ୟା ଉର୍ବଶୀ ।

ଉର୍ବଶୀ - ମତେ ଆପଣ କୌଣସି କଥା କୁହନ୍ତୁ ନାହିଁ କି ମତେ ଗୋଟାଏ ରକ୍ତମାଂସର ମଣିଷ ବୋଲି ଭାବନ୍ତୁ ନାହିଁ । ଆପଣଙ୍କ ହାତରେ ମୁଁ ଗୋଟାଏ ଖେଳନା, ଗୋଟାଏ କଣ୍ଢେଇ । ମତେ ଆପଣ ଯେମିତି ଇଚ୍ଛା ସେମିତି ଖେଳାନ୍ତୁ - ଯୋଉ ବାଟରେ ଇଚ୍ଛା ନିଅନ୍ତୁ ।

ମୋର କହିବାର କିଛି ନାହିଁ ।

ମଦନ - ନା ଉର୍ବଶୀ, ଆଜି କେବଳ ରୂପନୁହେଁ - ମନ, ପ୍ରାଣ ସବୁର ମିଳନ ମୁଁ ଚାହେଁ । ବମ୍ବେରେ ଜ୍ଞାନୀନ୍ଦ୍ରର ଛବି ସହିତ ତୁମ ଛବି ଦେଖି ପ୍ରଥମେ ମୋ ମନରେ ଆକସ୍ମିକ ଭାବରେ ଗୋଟାଏ ଧକ୍କା ଲାଗିଲା - ତା'ପରେ ମୁଁ କଟକ ଫେରିଆସିଲି । ଏଠି ଆସି ତୁମର ସମସ୍ତ ଇତିହାସ ଶୁଣି ତୁମ ପାଖକୁ ଆସିଲି । ତୁମେ କୁହ ଉର୍ବଶୀ, ଯେଉଁପରି ଭାବରେ ଏସବୁ ଘଟଣା ଘଟିଯାଇଛି, ସେଥିରେ ତୁମର ସ୍ୱାମୀ ହେବାର ଅଧିକାର କାହାର ? ମୋର ନା ଜ୍ଞାନୀନ୍ଦ୍ରର ? ଆଇନ୍ କୁହ, ଧର୍ମ କୁହ, ସମାଜ କୁହ - ଏ ସବୁର ଆଖିରେ ତୁମେ କ'ଣ ମୋର ସ୍ତ୍ରୀ ନୁହଁ ? ଆଉଥରେ ତୁମେ ନିଜକୁ ପଚାର ଉର୍ବଶୀ, ଦେଖିବ କି ଉତ୍ତର ତୁମେ ପାଉଛ ? ପ୍ରକୃତରେ ଉର୍ବଶୀ ଆଜି ହିଁ ଆମର ମଧୁଶଯ୍ୟା ରାତି । ଏଇ ଦେଖ, ଏଠି ରହିଚି - ଅଗୁରୁ, ଚନ୍ଦନ, ଫୁଲମାଳ....

ଉର୍ବଶୀ - (ବାଧାଦେଇ) ଓଃ, ଆପଣ ତୁନି ହୁଅନ୍ତୁ, ଏ ସବୁ କିଛି କୁହନ୍ତୁ ନାହିଁ ।

(ମଦନ ବୁଝିପାରିଲା ଏଇ ଘରର ସ୍ମୃତି ଉର୍ବଶୀକୁ ବିଚଳିତ କରିପକାଉଛି ।)

ମଦନ - କିନ୍ତୁ ତୁନି ହେବାର ଅବସ୍ଥା ମୋର ଆଉ ନାହିଁ ଉର୍ବଶୀ । ମୋର ମନ, ପ୍ରାଣ, ହୃଦୟ ଦେଇ ମୁଁ ଆଜି ତୁମକୁ ପାଇବାକୁ ଚାହେଁ । ଆଉ ସେଇଥିପାଇଁ ଆମକୁ ଏ ଘର ଛାଡ଼ି ଯିବାକୁ ହେବ । ବର୍ତ୍ତମାନ, ବର୍ତ୍ତମାନ ଆମେ ଏଠୁ ଚାଲିଯିବା ।

ଉର୍ବଶୀ - କୁଆଡ଼େ ?

ମଦନ - ଯୁଆଡ଼େ ମନ ଚାହିଁବ - ପୁରୀ, ଗୋପାଳପୁର, ଭାଇଜାଗ କିମ୍ବା ଆହୁରି ଦୂରକୁ ।

ଉର୍ବଶୀ - ହଁ, ଆପଣ ମୋତେ ଏଠୁ ନେଇଚାଲନ୍ତୁ..... ଏ ଘରୁ ମନେ ନେଇଚାଲନ୍ତୁ । ମୁଁ ଆଉ ଏଠି ରହିପାରିବି ନାହିଁ ।

ମଦନ - ତୁମେ ଠିକ୍ କହିଛ ଉର୍ବଶୀ । ଏଇ ଘରୁ ଜ୍ଞାନୀନ୍ଦ୍ର ତୁମକୁ ଛାଡ଼ି ଚାଲିଯାଇଛି - ତା'ର ଅତୃପ୍ତ ଆତ୍ମା ଏ ପର୍ଯ୍ୟନ୍ତ ଏଠି ଘୂରିବୁଲୁଛି । ଆମେ ଆଉ ଏଠି ରହିପାରିବାନାହିଁ - ମୁହୂର୍ତ୍ତେ ବି ନୁହେଁ । ଆଜି ଆମେ ଏଠୁ ଚାଲିଯିବା - ଆଜି- ବର୍ତ୍ତମାନ । !

(ସଂଗେ ସଂଗେ ମଦନ ଜିନିଷପତ୍ର ସଜାଡ଼ିବାରେ ଲାଗିପଡ଼ିଲା । ଏଇ ଅବସରରେ ଉର୍ବଶୀକୁ ଜଣାଗଲା, ଯେପରି ତା' ନାଁ ଧରି ବାହାରୁ କେହି ତାକୁ ଡାକୁଛି । କାନ ପାରି କିଛି ସମୟ ଶୁଣିବା ପରେ ମଦନର ଅଲକ୍ଷ୍ୟରେ ଘରୁ ସେ ବାହାରି ଗଲା ।)

## ଅଷ୍ଟମ ଦୃଶ୍ୟ

(ଉର୍ବଶୀ ଘରର ଅଳିନ୍ଦ । ଉର୍ବଶୀ ଆସିଲା । ବାହାରୁ ଜ୍ଞାନୀନ୍ଦ୍ରର ଡାକ ଶୁଭୁଛି । ଆଶଙ୍କା ଓ ଉଦ୍‌ବେଗରେ ସେ ଥରୁଥାଏ ।)

ଜ୍ଞାନ - (ବାହାରୁ) ଉର୍ବଶୀ, ଉର୍ବଶୀ ! (ଉର୍ବଶୀର ଅସ୍ଥିରତା ବଢ଼ିଚାଲିଛି) କବାଟ ଖୋଲ ଉର୍ବଶୀ !

(ଝଡ଼ ବେଗରେ ଯାଇ ଉର୍ବଶୀ କବାଟ ଖୋଲିଦେଲା । ଏଥର ଦେଖାଗଲା, ଉର୍ବଶୀ ପଛେଇ ପଛେଇ ଆସୁଛି - ପରେ ପରେ ଜ୍ଞାନୀନ୍ଦ୍ର ! ଜ୍ଞାନୀନ୍ଦ୍ରକୁ ଦେଖି ସୁଦ୍ଧା ଯେପରି ତା ଉପସ୍ଥିତିକୁ ସେ ବିଶ୍ୱାସ କରିପାରୁନି । ଆଉ ଉର୍ବଶୀର ଏ ବେଶ-ଭୂଷା ଦେଖି ଜ୍ଞାନୀନ୍ଦ୍ର ମନରେ ମଧ ଟିକିଏ ବିସ୍ମୟ ଜାଗିଛି ।

ଉର୍ବଶୀ - ତୁମେ ! ତୁମେ ଆସିଛ ! !

ଜ୍ଞାନ - କିନ୍ତୁ ତୁମେ କ'ଣ ଜାଣିଥିଲ ମୁଁ ଆଜି ଆସୁଛି ବୋଲି । (ଉର୍ବଶୀ ଯେମିତି ବୁଝିପାରିଲା ଜ୍ଞାନୀନ୍ଦ୍ରର ଇଙ୍ଗିତ) କ'ଣ ହୋଇଛି ଉର୍ବଶୀ - କ'ଣ ହୋଇଛି ? ମତେ ଦେଖି ସୁଦ୍ଧା ଯେମିତି ତୁମେ ବିଶ୍ୱାସ କରିପାରୁନ ? ....ମୁଁ ବୁଝିଛି, ମୋର ବହୁ ଆଗରୁ ଆସିବା କଥା । କିନ୍ତୁ ମୁଁ କ'ଣ କରିଥା'ନ୍ତି ? ପ୍ଲେଗ୍ ପାଇଁ ବମ୍ବେରେ କ୍ୱାରାନ୍‌ଟାଇନ୍ - ବମ୍ବେ ରାଜ୍ୟର ସମସ୍ତ ସୀମା ପୁଲିସ୍ ଜଗିରହିଛି । ଆସିବାର କୌଣସି ଉପାୟନାହିଁ, ମୁଁ ଚୋରଙ୍କ ପରି ଲୁଚି ଲୁଚି ଆସିଛି ।

(ଜ୍ଞାନୀନ୍ଦ୍ରର କଥା ଶୁଣୁ ଶୁଣୁ ଉର୍ବଶୀର ଆଖି ମୁଦିହୋଇଆସିଲା ।) ସେ ହୁଏତ ଟଳିପଡ଼ିଥା'ନ୍ତା - ଜ୍ଞାନୀନ୍ଦ୍ର ତାକୁ ଅଟକାଇନେଲା !) କ'ଣ ହୋଇଛି ଉର୍ବଶୀ ? ତୁମର ଯେମିତି ଚେତନା ଲୋପପାଇଆସୁଥିଲା । (ଉର୍ବଶୀର ଆଖିରେ ଲୁହ) ମୁଁ ଜାଣେ ତମ ନିକଟରେ ମୋ' ଅପରାଧର ସୀମାନାହିଁ । ତଥାପି, ତମରି ଚିନ୍ତା - ତମରି ସ୍ୱପ୍ନ ମୋ'ଯାତ୍ରା ପଥର ପାଥେୟ ହୋଇ ଆସିଛି ।

ଉର୍ବଶୀ - ତୁମର ସେ ମୁଦି ? ଯେଉଁଟା ଡା.ଦାସ ତୁମକୁ ଦେଇଥିଲେ ?

ଜ୍ଞାନ - ମୁଦି ? ତୁମେ କେମିତି ଜାଣିଲ ମୋ ମୁଦିଟା ଚୋରି ହୋଇଯାଇଛି ବୋଲି ?

ଉର୍ବଶୀ - ଚୋରି ହୋଇଯାଇଛି ?

ଜ୍ଞାନ - ଖାଲି ମୁଦିନୁହେଁ, ତା ସାଙ୍ଗେ ସାଙ୍ଗେ ମୋ ଫଟୋଟୋ ମଧ ଚୋରିଯାଇଛି । ସେ ଗୋଟାଏ ଇତିହାସ ଉର୍ବଶୀ- ସେ କଥା ପରେ ଶୁଣିବ ତୁମେ ଆଗେ ଘର ଭିତରକୁ ଚାଲ ।

ଉର୍ବଶୀ - ନା, ଏଇଠି କୁହ ।

ଜ୍ଞାନ - ଏଇ ବାରଣ୍ଡାରେ କାହିଁକି ?

ଉର୍ବଶୀ - ପ୍ରଶ୍ନ କରନାହିଁ । ତମେ ଏଇଠି କୁହ - କ'ଣ ହୋଇଛି ?

ଜ୍ଞାନ - ମୁଁ ବୁଝିପାରୁନାହିଁ...

ଉର୍ବଶୀ - ମୋର ଏତିକି ଅନୁରୋଧ ତୁମେ ରଖିବନାହିଁ ?

ଜ୍ଞାନ - ଆଚ୍ଛା ଶୁଣ । ମୁଁ ଦିନେ ଦେଖିଲି, ମୋର ସେ ମୁଦିଟା ଆଉ ଫଟୋ ମୋ ପାଖରେ ନାହିଁ । ଏତିକିବେଳେ ବମ୍ବେରେ ପ୍ଲେଗ୍ ଆରମ୍ଭ ହେଲା, ପ୍ଲେଗ୍‌ରେ ମଲା ମୋର ଚାକର ସଂଜୀବ, ମରିବା ଆଗରୁ ସେ କହିଗଲା ଯେ, ମୋର ଜଣେ ବନ୍ଧୁଙ୍କଠାରୁ ବହୁତ ଟଙ୍କା ଲାଞ୍ଚ ନେଇ ମୋର ସେ ମୁଦି ଆଉ ଫଟୋ ତାଙ୍କୁ ସେ ଦେଇଦେଇଛି ।

ଆଉ ତୁମେ ଜାଣ ଉର୍ବଶୀ ମୋର ସେ ବନ୍ଧୁଟି କିଏ ?

ଉର୍ବଶୀ - କିଏ ?

ଜ୍ଞାନ - ବମ୍ବେର ଦାସ ସାହେବ - ଆଉ ତୁମ ଗାଁର କଣ୍ଟ୍ରାକ୍ଟର ମଦନବାବୁ । ତାଙ୍କର ଏ ପରିଚୟ ପାଇବା ପରେ ଅବଶ୍ୟ ତାଙ୍କ ସହିତ ମୋର ଆଉ ଦେଖାହୋଇନି । କିନ୍ତୁ ମୁଁ ବୁଝିପାରୁନି ଉର୍ବଶୀ ଯେ, କାହିଁକି ମୋର ମୁଦି ଆଉ ଫଟୋଟା....

ଉର୍ବଶୀ - ଏଇ ତୁମର ସେ ମୁଦିଟା ? (ମୁଦିଟା ଦେଖାଇଲା)

ଜ୍ଞାନ - ମୁଁ ବୁଝିପାରୁନାହିଁ ଉର୍ବଶୀ । ଏ ଯେମିତି ଗୋଟେ ପ୍ରହେଳିକା - ଗୋଟାଏ ଇନ୍ଦ୍ରଜାଲ !

ଉର୍ବଶୀ - ହଁ, ଇନ୍ଦ୍ରଜାଲ - ଆଉ ସେଇ ଜାଲରେ ଥରକୁ ଥର ବାନ୍ଧିହେବାର ଭାଗ୍ୟନେଇ ମୁଁ ଜନ୍ମ ହୋଇଛି । ତୁମର ମୁଦି ଆଉ ଫଟୋ ବମ୍ବେରୁ ଚୋରି ହୋଇ କଟକ ଆସିଲା, ଆଉ ସେଇ ସଂଗେ ସଂଗେ ଖବର ଆସିଲା ଯେ, ତୁମେ ପ୍ଲେଗ୍‌ରେ - (ଉର୍ବଶୀ କାନ୍ଦିଉଠିଲା)

ଜ୍ଞାନ - ଉର୍ବଶୀ ! ! ଏ ଖବର ପ୍ରଚାର କରିଛି କିଏ ?

ଉର୍ବଶୀ - ମୁଁ କେମିତି ଜାଣିବି ? କମ୍ପାନୀରୁ ତ ଚିଠି ଆସିଥିଲା ।

ଜ୍ଞାନ - ବୁଝିଲି । ଦାସ୍ ସାହେବ ! ! କାହିଁ ସେ ? କେଉଁଠି ଅଛି ?

ଉର୍ବଶୀ - ନା - ନା - ତୁମେ ଏଠି ଆଉ ଦଣ୍ଡେ ରୁହନା - ଏଠୁ ଚାଲିଯାଅ ! ସେଇଟା ମଣିଷ ନୁହେଁ - ଗୋଟାଏ ରାକ୍ଷସ । ତୁମକୁ ସେ ଦେଖିଲେ....

ଜ୍ଞାନ - କିନ୍ତୁ ସେ କାହିଁ ?

(ଏତିକିବେଳେ ମଣି ଆସିଲା)

ମଣି - ଉର, ଉର । ଏଁ ! ଏଇଟା କିଏ ଲୋ ମା ? କାନ୍‌ତରାଟିବାବୁ । (ଡାକି ଡାକି ପୁଣି ଚାଲିଗଲା)

ଜ୍ଞାନ - କିଏ ? କାନ୍‌ତରାଟିବାବୁ ?

ଉର୍ବଶୀ - ନା-ନା- ତୁମେ ଯାଅନା ।

(ଜ୍ଞାନୀନ୍ଦ୍ର କିଛି ନ ଶୁଣି ଭିତରକୁ ଗଲା)

## ନବମ ଦୃଶ୍ୟ

(ଉର୍ବଶୀର ସେଇ କକ୍ଷ । ମଦନର ଜିନିଷପତ୍ର ବନ୍ଧା କାମ ଶେଷ ହୋଇଆସୁଛି । କ୍ଷିପ୍ରଗତିରେ ଆସିଲା ମଣି - ପଛେ ପଛେ ଜ୍ଞାନୀନ୍ଦ୍ର ଓ ଉର୍ବଶୀ ।)

ମଣି - କାନ୍‌ତରାଟିବାବୁ, କାନ୍‌ତରାଟିବାବୁ !

ମଦନ - ଉଁ ।

ମଣି - ଦେଖିଲ ଇଏ କିଏ ଆଇଚି ?

ମଦନ - କିଏ ଆଇଚି ? (ଦେଖି) ଓ, ଜ୍ଞାନୀନ୍ଦ୍ର!!!

ଜ୍ଞାନୀନ୍ଦ୍ର - ଦାସ୍ ସାହେବ ?

ମଦନ - ତୁମେ ତା'ହେଲେ ଫେରିଆସିଛ ଜ୍ଞାନୀନ୍ଦ୍ର ?

ଜ୍ଞାନୀନ୍ଦ୍ର - ଖୁବ୍ ଅସମୟରେ ବୋଧହୁଏ ଆସିଛି ? ଏଇଥିପାଇଁ ମୋର ମୁଦି ଆଉ ଫଟୋ ଚୋରି ହୋଇଥିଲା ନା ?

ମଦନ - ତା'ର କୈଫିୟତ୍ ଦେବାର ସମୟ କିମ୍ବା ସ୍ଥାନ ଇଏ ନୁହେଁ । ତମ ଆସିବାର ଆଉ ଦଶମିନିଟ୍ ଡେରି ହୋଇଥିଲେ ଆମ ଗାଡ଼ି ହୁଏତ କଟକ ସହର ଛାଡ଼ି ଦଶମାଇଲ ଦୂରରେ ଚାଲୁଥା'ନ୍ତା । ଯିଏ ବଞ୍ଚିଛି, ତାକୁ ମରିଯାଇଛି ବୋଲି ପ୍ରଚାର କରିବାରେ କୌଣସି ମୂଲ୍ୟ ନାହିଁ ମୁଁ ଜାଣେ । ଉର୍ବଶୀର ଭୁଲ୍ ଭାଙ୍ଗିବା ପାଇଁ କେବଳ ମୁଁ ଏ ବ୍ୟବସ୍ଥା କରିଥିଲି - ତା'ର ଭୁଲ୍ ମଧ ଭାଙ୍ଗିଛି । ଆଉ ତା'ଠୁଁ ବୋଧହୁଏ ଶୁଣିଥିବ ଯେ, ତା'ସହିତ ମୋର ମଧ ବିବାହ ହୋଇଯାଇଛି ।

ଜ୍ଞାନ - ଉର୍ବଶୀ!!

ଉର୍ବଶୀ - ମୁଁ କିଛି ଜାଣେନା । ଗଲା ପାଞ୍ଚଦିନ ଧରି ମତେ ଯେମିତି କିଏ ମନ୍ତ୍ର ବଳରେ ବାନ୍ଧିରଖିଥିଲା । ଆଜି ତୁମେ ଆସିଛ, ମୋର ସେ ବନ୍ଧନ ଫିଟିଛି ।

ମଦନ - ଉର୍ବଶୀ!

ଜ୍ଞାନୀନ୍ଦ୍ର - ମୁହଁ ଟେକି କଥା କହିବାର ଶକ୍ତି ତୁମର ଅଛି ଦାସ ସାହେବ ?

ମଦନ - ମୁଁ ଏବେଠୁଁ କହି ରଖୁଛି ଜ୍ଞାନୀନ୍ଦ୍ର ତୁମେ ଏ ରାସ୍ତାରୁ ହଟିଯାଅ ।

ଜ୍ଞାନ - ଆଉ ସେଇ ରାସ୍ତାରେ ଫୁଲର ପାଖୁଡ଼ା ବିଛେଇ ତୁମେ ଚାଲିବନା ?

ମଦନ - ଉର୍ବଶୀ ତମର କେବେ ନଥିଲା କି ଆଜି ମଧ ନାହିଁ ।

ଜ୍ଞାନ - ଉର୍ବଶୀ ଗୋଟାଏ ମାଟିର ଖେଳନା ନୁହେଁ ଦାସ ସାହେବ । ସେ କଥା ବିଚାର କରିବା ଆଗରୁ ତୁମେ ଯାହା କରିଛ ତା'ର ବିଚାର ଆଗେ ହେଉ ।

ମଦନ - (ଜ୍ଞାନୀନ୍ଦ୍ର ଆଡ଼କୁ ଟିକିଏ ଆଗେଇ ଯାଇ) ଜ୍ଞାନୀନ୍ଦ୍ର!

ଜ୍ଞାନ - ତୁମେ ମୋତେ ଦେହର ଜୋର୍ ଦେଖାଇବାକୁ ଚାହଁ ?

ମଦନ - ଦେହର ଜୋର୍ ମନର ଜୋର୍ ମୋର ସବୁ ଅଛି ଜ୍ଞାନୀନ୍ଦ୍ର, ମୁଁ ସବୁ କରିପାରେ । ଦିନେ ଏଇ ଉର୍ବଶୀକୁ ମୁଁ ଗୋଟାଏ ଫୁଲପରି ପାଦରେ ଦଳିଦେଇଥିଲି - ଆଜି ମୁଁ ଚାହୁଁଛି....

ଜ୍ଞାନୀନ୍ଦ୍ର - ତୁମେ ଯାହା ଚାହଁ, ତା' କରିବାର ଶକ୍ତି ତୁମର ସବୁଦିନେ ରହିପାରେନା ଦାସ ସାହେବ, ସେ ଶକ୍ତି ତୁମର ଆଉ ନାହିଁ ।

ମଦନ - ଜ୍ଞାନୀନ୍ଦ୍ର!!

ଜ୍ଞାନୀନ୍ଦ୍ର - ତୁମର ପରି ଗୋଟାଏ ସୈତାନକୁ ଶିକ୍ଷା ଦେବା ଭଳି ସୈତାନୀ ବୁଦ୍ଧି ମୋର ବି ଅଛି ଦାସ ସାହେବ!

(ଆଗେଇ ଯାଉଥିଲା)

ମଦନ - ହୁସିଆର୍ ଜ୍ଞାନୀନ୍ଦ୍ର, ସେଇଠି ଠିଆ ହୁଅ । ଆଉ ପାଦେ ବି ଆଗାଅ ନାହିଁ । ମଣିଅପା, ମୋର ରିଭଲ୍‌ଭର୍ ?

ଜ୍ଞାନ - ରିଭଲ୍‌ଭର୍ ?

ମଦନ - ସୂତାଏ ଘୁଞ୍ଚିଲେ ମୁଁ ଫାୟାର୍ କରିବି । ମଣିଅପା - (ମଣି ଟେବୁଲ୍ ଡ୍ର ଭିତରୁ କାଢ଼ି ରିଭଲ୍‌ଭର୍‌ଟା ବଢ଼ାଇଦେଲା ବେଳକୁ ହଠାତ୍ ସେଇଟା ଫୁଟି ଉଠିଲା ଓ ଗୁଳି ଯାଇ ବାଜିଲା ମଦନର ମଥାରେ । ମଣି କିଛି ବୁଝିପାରିଲାନାହିଁ - କାରଣ ତା' ଅଜାଣତରେ ଫାୟାର୍ ହୋଇଯାଇଛି । ତା'ହାତରୁ ରିଭଲ୍‌ଭର୍‌ଟା ଖସିପଡ଼ିଲା । ମଦନ ଆକୁଳରେ ଚିତ୍କାର କରି ତଳେ ଲୋଟିପଡ଼ିଲା ।

ଜ୍ଞାନ - (ମଣିକୁ ) ୟେ' ତୁମେ କ'ଣ କଲ ?

ମଣି - ମୁଁ ? ମୁଁ କ'ଣ କଲି ! ମୁଁ ତ କିଛି କରିନାହିଁ - ମୁଁ କିଛି କରିନାହିଁ ବାବୁ.... ମୁଁ କ'ଣ କଲି ??

(ଭୟରେ ସେଠୁ ପଳାଇଲା)

## ଦଶମ ଦୃଶ୍ୟ

(ରାସ୍ତା । ମଣି ଭୟରେ ପଳାଇ ଯାଉଥାଏ । ବିପରୀତି ଦିଗରୁ ଆସୁଥାଆନ୍ତି ଭାସ୍କର ଓ ପଙ୍କଜ ।)

ମଣି - ମୁଁ ତ କିଛି କରିନାହିଁ - ମୁଁ କ'ଣ କଲି ? ମୁଁ ତ କିଛି କରିନାହିଁ ।

ଭାସ୍କର - କିଏ ? ପିଇସୀ ନା ?

ମଣି - (ଚମକି) ମୁଁ ସତ କହୁଚି ବାବୁ, ମୁଁ ତ କିଛି କରିନାହିଁ ।

ପଙ୍କଜ - କିଏ କହୁଛି ତୁମେ କ'ଣ କରିଛ ବୋଲି ?

ଭାସ୍କର - ଆଉ କିଛି ନକର, ଝିଆରୀକୁ ଛାଡ଼ି ଏତେ ରାତିରେ ରାସ୍ତାକୁ ପଳେଇ ଆଇଚଟି ? ଏଇ କ'ଣ କମ୍ ହେଲାଣି ?

ମଣି - ବାବୁ, ଏଇ ବାଟେ ଗଲେ ମୁଁ ଷ୍ଟେସନ୍‌ରେ ପହଞ୍ଚି ପାରିବିଟି ?

ଭାସ୍କର - ତମେ କ'ଣ ଷ୍ଟେସନ୍ ବାହାରିଲଣି ! କିଛି କରି ନଥିଲେ ତୁମେ ଷ୍ଟେସନ୍‌କୁ ରାସ୍ତା ଖୋଜନ୍ତ କାହିଁକି ?

(ଜଣେ ପୋଲିସ୍ ସ.ଇ. ଓ କନ୍‌ଷ୍ଟେବଲ୍ ଆସିଲେ ।)

ସ.ଇ. - ୟେ' କିଏ ?

ଭାସ୍କର - ମଣିଅପା ।

ସ.ଇ. - ଓଃ, ତୁମେ ତା'ହେଲେ ମଣିଅପା ?

ମଣି - ତମ ପାଦ ଛୁଇଁ ନିୟମ କରୁଛି ବାବୁ, ମୁଁ କିଛି କରିନାହିଁ, କାନ୍‌ତରାଟି ବାବୁ ମତେ ସେଇଟା ମାଗିଲେ....

ସ.ଇ. - (ରିଭଲ୍‌ଭରଟା ଦେଖାଇ) ଏଇଟା ତ ?

ମଣି - ହଁ, ମୁଁ ବଢ଼େଇ ଦଉଁ ଦଉଁ ମନକୁ ଏଇଟା ଢୁ କରି ଫୁଟିଉଠିଲା ।

ଭାସ୍କର - କ'ଣ ? ଏଇଟା ଫୁଟିଲା ! ତମେ ତ କମ୍ ଜନ୍ତୁ ନୁହଁ ?

ମଣି - ମୁଁ କହୁନାଇଁ ବାବୁ !

ସ.ଇ. - ମୁଁ ବି କହୁନି ତୁମେ ମିଛ କହୁଛ ବୋଲି । ତମ କାନ୍ ତରାଟି ବାବୁ ବି ସେଇୟା କହିଛନ୍ତି ଯେ, ରିଭଲ୍‌ଭରରେ ଗୁଳି ଭର୍ତ୍ତି ଥିଲା, ସେଇଟା ଫାୟାର୍ ହୋଇଯାଇଛି । ଆଚ୍ଛା, ତୁମେ ଥାନାକୁ ଆସ । (ସିପାହୀ ମଣିକୁ ନେଇ ଚାଲିଗଲା)

ପଙ୍କଜ - କ'ଣ ହୋଇଛି କୁହନ୍ତୁ ତ ?

ସ.ଇ. - ଆପଣମାନେ ମଧ୍ୟ ଟିକେ ଥାନାକୁ ଆସନ୍ତୁ ।

ଭାସ୍କର - ଆମେ କାହିଁକି ଥାନାକୁ ଯିବୁ ଆଜ୍ଞା ?

ସ.ଇ. - (ହସି) ତାକୁ ଅଟକାଇ ରଖିଥିଲେ ବୋଲି ।

ଭାସ୍କର - ଆଚ୍ଛା, ଚାଲନ୍ତୁ ।

## ଏକାଦଶ ଦୃଶ୍ୟ

(ମହାନଦୀ କୂଳେ - ସମୟ - ରାତ୍ରି । ଜ୍ଞାନୀନ୍ଦ୍ର ଓ ଉର୍ବଶୀ ନଦୀ ବକ୍ଷକୁ ଚାହିଁ ଠିଆହୋଇଥା'ନ୍ତି । ଜ୍ଞାନୀନ୍ଦ୍ର ମୁହଁରେ ପୂର୍ବର ସେଇ ଗୀତ । ଗୀତ ଶେଷକୁ ଆସିଲେ ଭାସ୍କର ଓ ପଙ୍କଜ ।)

ଭାସ୍କର, ପଙ୍କଜ - Excuse us for the interruption.

ଜ୍ଞାନ - କିଏ ?

ଭାସ୍କର - ଦୁଇଜଣ ବିରକ୍ତ, ବିବ୍ରତ ଓ ବ୍ୟଥିତ ବନ୍ଧୁ ।

ଜ୍ଞାନ - କାହିଁକି ? ବିରକ୍ତ କାହିଁକି ? ଆଜି ପୁଣି କ'ଣ କଳିକଜିଆ ଲଗେଇବ ?

ପଙ୍କଜ - ହଁ, କିନ୍ତୁ ଆମ ଭିତରେ ନୁହେଁ, ତମ ଦୁହିଁଙ୍କ ସାଥିରେ ?

ଭାସ୍କର - ରାତି ଆସି ଏତେ ହେଲାଣି, ବାପା ତେଣେ ଅପେକ୍ଷା କରି ବସିଛନ୍ତି, ଟ୍ରେନ୍ ଟିକେଟ୍ କିଣା ସରିଲାଣି । ଅଥଚ ତୋର ଏଣେ 'ତୁମେ ଆଉ ମୁଁ - ମୁଁ ଆଉ ତୁମେ' ଚାଲିଛି । ଆଉ କାହା କଥା ମନେପଡ଼ିବ କାହିଁକି ?

ଜ୍ଞାନ - ଅତି ପ୍ରିୟ ସ୍ଥାନ ଆମର ଏ ନଈକୂଳ, ଘରକୁ ଯିବା ଆଗରୁ ଏଠୁ ବିଦାୟ ନେବାକୁ ଆସିଥିଲୁ ।

ଭାସ୍କର - ଭଲକଥା ବାବୁ, ଏଥର ବିଦାୟ ନେଇ ଚାଲ ।

(ଦୁଇଟି ଗୋଲାପ ଫୁଲ ଜ୍ଞାନୀନ୍ଦ୍ର ହାତକୁ ବଢ଼ାଇ ଦେଇ)

ଆମ ଦୁହିଁଙ୍କ ପକ୍ଷରୁ - ଗୋଟାଏ ତୋ ପାଇଁ ଆଉ ଗୋଟାଏ.....

(ଇଙ୍ଗିତରେ ଉର୍ବଶୀ କଥା ଜଣାଇ ଦେଲା । ଉର୍ବଶୀ ହସ ହସ ମୁହଁରେ ଜ୍ଞାନୀନ୍ଦ୍ର ହାତରୁ ଫୁଲଟି ନେଲାବେଳେ ନାଟକର ଯବନିକା ନଇଁ ଆସିଲା ।)

---o---

ଆଧୁନିକ ଓଡ଼ିଆ ନାଟକର 'ସୁବର୍ଣ୍ଣ ଯୁଗ'ର ଅନ୍ୟତମ ବିନ୍ଧାଣି ଗୋପାଳ ଛୋଟରାୟ (୧୯୧୬-୨୦୦୩) ଓଡ଼ିଆ ନାଟ୍ୟପ୍ରେମୀ ମହଲରେ ଏକ ଶ୍ରଦ୍ଧାଶୀଳ ଉଚ୍ଚାରଣ । ପ୍ରାୟ ଦୀର୍ଘ ଛଅ ଦଶନ୍ଧି ଧରି ସେ ନାଟକର ପ୍ରତିଟି କ୍ଷେତ୍ରକୁ ନିଜର ପ୍ରଚଣ୍ଡ ନାଟକୀୟ ବ୍ୟକ୍ତିତ୍ୱ ଦ୍ୱାରା ଆଚ୍ଛନ୍ନ କରି ରଖିଥିଲେ । ରଙ୍ଗମଞ୍ଚ ପାଇଁ ସେ ଥିଲେ ସ୍ୱତନ୍ତ୍ର ପରିଚୟ । ବେତାର ପାଇଁ ମଧ୍ୟ ସେ ଅପରିହାର୍ଯ୍ୟ ଥିଲେ । ମଞ୍ଚ ନାଟକ ପାଇଁ ସେ ଚିର ସମସ୍ୟା ଜର୍ଜରିତ ମାନବ ଜୀବନର ବିଭିନ୍ନ ସମସ୍ୟାକୁ ଆଧାର କରି ତାଙ୍କ ଯାଦୁକରୀ ସାଂଳାପିକ ମାୟା ତଥା ଚିତ୍ତ ଚମତ୍କାରୀ ହାସ୍ୟରସ ଦ୍ୱାରା ଯେଉଁ ଅପୂର୍ବ ଅନୁଭବ ସୃଷ୍ଟି କରାନ୍ତି, ଗୋଟିଏ କଥାରେ- ତାହାର ତୁଳନା ନାହିଁ ।

ଛୋଟରାୟଙ୍କ ନାଟ୍ୟମୟ ବ୍ୟକ୍ତିତ୍ୱ ଉଦ୍ଦେଶ୍ୟରେ ତାଙ୍କର ଜନ୍ମ ଶତବାର୍ଷିକୀରେ କେନ୍ଦ୍ର ସାହିତ୍ୟ ଅକାଦେମିର ସଶ୍ରଦ୍ଧ ଉପସ୍ଥାପନ- ଚାରୋଟି ପ୍ରତିନିଧି ଶ୍ରେଣୀୟ ନାଟକର ଏକ ମନୋଜ୍ଞ ସଂକଳନ 'ଛୋଟରାୟ ଚୟନିକା' ।

ଉଭୟ ନାଟକ ଏବଂ ଏହାର ଆଲୋଚନା ପାଇଁ ଓଡ଼ିଆ ଦର୍ଶକ-ଶ୍ରୋତା-ପାଠକ ମହଲରେ ପ୍ରଫେସର ଡକ୍ଟର ହେମନ୍ତ କୁମାର ଦାସ ସୁପରିଚିତ । ପାଞ୍ଚଖଣ୍ଡରେ ଓଡ଼ିଆ ନାଟକର ଏକ ବିସ୍ତୃତ ଇତିହାସ ରଚନା କରି ସେ ନାଟ୍ୟପ୍ରେମୀ ମହଲରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ସାରଳା ପୁରସ୍କାର ଭଳି ବହୁ ମର୍ଯ୍ୟାଦାଜନକ ସମ୍ମାନରେ ମଣ୍ଡିତ ଏଇ ସ୍ରଷ୍ଟା ଏବେ ମଧ୍ୟ ସାଧନାରତ ।

ପ୍ରଚ୍ଛଦ : ପ୍ରଣବେଶ ମାଇତି

ମୂଲ୍ୟ : ୩୮୦ ଟଙ୍କା

ISBN : 978-81-260-5366-7

*Gopal Chhotray Chayanika (Odia)*

Rs. 380/-






ସାହିତ୍ୟ ଅକାଦେମି